# ଯୁଗେ ଯୁଗେ
# ଉତ୍କଳୀୟ ଧର୍ମ ଓ ସଭ୍ୟତା

( ପ୍ରଥମ ଭାଗ )

ଅଧ୍ୟାପକ ମନ୍ମଥ ନାଥ ଦାସ

ଦେବୀଙ୍କୁ ଜନ୍ମ ଦିନରେ

ସ୍ନେହ ଉପହାର

ପ୍ରେମଲତା ଦେବୀ

୨।୩।୪୪

ରନଖଞ୍ଜ

# ଯୁଗେ ଯୁଗେ
# ଉତ୍କଳୀୟ ଧର୍ମ ଓ ସଭ୍ୟତା

( ପ୍ରଥମ ଭାଗ )

---

ମାନ୍ୟବର ଡକ୍ଟର ହରେକୃଷ୍ଣ ମହତାବଙ୍କ
ଲିଖିତ ମୁଖବନ୍ଧ ସହ

---

ଅଧ୍ୟାପକ ମନ୍ମଥ ନାଥ ଦାସ

ମୁଦ୍ରାକର
ଟାଉନ ପ୍ରେସ,
ବାଲେଶ୍ୱର ।

ପ୍ରଥମ ମୁଦ୍ରଣ
୧୯୬୨

ପ୍ରକାଶକ
ଶ୍ରୀ ମନୋଜ କୁମାର ଦାସ
ଉଷ୍ଟାମିସ୍
ପୋ: ଅ: ମୋଢଗଞ୍ଜ
ବାଲେଶ୍ୱର ।

ମୂଲ୍ୟ—ତିନି ଟଙ୍କା ମାତ୍ର

# ଉତ୍ସର୍ଗ



ମୋର

ଚିରଧର୍ମାନୁଗତା 'ମା'ଙ୍କ

କରକମଳରେ



# ମୁଖବନ୍ଧ

ଭାରତର ବିଭିନ୍ନ ଅଞ୍ଚଳର ଧର୍ମ ଓ ସଭ୍ୟତାର ଇତିହାସ ଓ କ୍ରମବିକାଶ ସମ୍ବନ୍ଧରେ କୌଣସି ପ୍ରକାରର ବୈଜ୍ଞାନିକ ଆଲୋଚନା କରିବା ବର୍ତ୍ତମାନ ପରିସ୍ଥିତିରେ ସହଜସାଧ୍ୟ ନୁହେଁ ; କାରଣ ବିଭିନ୍ନ ଅଞ୍ଚଳର ଐତିହାସିକ ଗବେଷଣା ବର୍ତ୍ତମାନ ସୁଦ୍ଧା ବୈଜ୍ଞାନିକ ରୀତିରେ ସମ୍ପୂର୍ଣ୍ଣ ହୋଇ ନାହିଁ । ଅନ୍ୟ ଅନେକ ଅଞ୍ଚଳରେ ଯାହାହେଲେ କିଛି ସନ୍ତୋଷଜନକ ଭାବରେ ହୋଇଛି ; କିନ୍ତୁ ଓଡ଼ିଶାରେ ତାହାସୁଦ୍ଧା ହୋଇ ନାହିଁ । ଓଡ଼ିଶାର ଧର୍ମ ଓ ସଭ୍ୟତାର କ୍ରମବିକାଶ ଜାଣିବାକୁ ହେଲେ ଯେଉଁସବୁ ଉପାଦାନ ଆବଶ୍ୟକ ତାହା ବର୍ତ୍ତମାନ ପର୍ଯ୍ୟନ୍ତ ମିଳି ନାହିଁ । ଏଥିପାଇଁ ଓଡ଼ିଶାର ରାଜନୈତିକ ଅବସ୍ଥା ବହୁ ପରିମାଣରେ ଦାୟୀ । ଓଡ଼ିଶା କହିଲେ ଯେଉଁ ଅଞ୍ଚଳଟି ବୁଝାଏ ଓ ଯାହା ଆଜି ଉଣାଅଧିକେ ଏକ ଶାସନାଧୀନ ହୋଇଛି, ସେ ଅଞ୍ଚଳଟି ଖଣ୍ଡ ଖଣ୍ଡ ହୋଇ ଦୀର୍ଘ ପ୍ରାୟ ପାଞ୍ଚଶହ ବର୍ଷ ହେଲା ବିଭିନ୍ନ ଶାସନାଧୀନ ହୋଇ ପ୍ରତ୍ୟେକ ଖଣ୍ଡ ଅନ୍ୟଠାରୁ ଅଲଗା ହୋଇ ଶହ ଶହ ବର୍ଷ ଗତ କରି ଚାଲିଗଲା । ଅବଶେଷରେ ଓଡ଼ିଶା କହିଲେ ବାଲେଶ୍ୱର, କଟକ ଓ ପୁରୀ ଏହାହିଁ ବୁଝାଇଲା । ଆଜିସୁଦ୍ଧା ସମ୍ବଲପୁରକୁ କେନ୍ଦ୍ର କରି ଯେଉଁ ଅଞ୍ଚଳଟି ଓଡ଼ିଶାର ଏକ ମୁଖ୍ୟଅଂଶ ତା'ର ପୂର୍ବ ଇତିହାସ ଜଣାଯାଇ ନାହିଁ । କେଉଁଝରରେ ସୀତାବିଞ୍ଜିର ଯେଉଁ ବିଚିତ୍ର ଆଲେଖ୍ୟ ବର୍ତ୍ତମାନ ଐତିହାସିକର ତୀବ୍ର କୌତୂହଳ ଜାତ କରାଇଛି ତାହା ସାଧାରଣଙ୍କ ଦୃଷ୍ଟିକୁ ଆସିଲା ମୋଟେ ଦଶବର୍ଷ ହେଲା ଓ ସେ ସମ୍ବନ୍ଧରେ କୌଣସି ତଥ୍ୟ ଅନୁମାନ ସୁଦ୍ଧା କରାଯାଇ ନାହିଁ । ଯେଉଁ ଅଞ୍ଚଳଟି ଗଡ଼ଜାତ ବୋଲି ପରିଚିତ ଥିଲା, ସେ ଅଞ୍ଚଳଟି ଯେ ଇତିହାସରେ ଭରା ଏଥିରେ ସନ୍ଦେହ ନାହିଁ ; ମାତ୍ର ସେ ଇତିହାସ ସମ୍ପୂର୍ଣ୍ଣ ଅଜଣା । ବହୁ

ସ୍ଥଳରେ ଶିଳାଲିପିମାନ ବର୍ତ୍ତମାନ ପର୍ଯ୍ୟନ୍ତ ପାଠୋଦ୍ଧାର ହୋଇ ନାହିଁ । ସମସ୍ତ ଲିପି ବା ତାମ୍ର ଶାସନ ଯେ ମିଳିଲାଣି ତା' ମଧ୍ୟ ନୁହେଁ । ଭୁବନେଶ୍ୱର ବା ପୁରୀକୁ କେନ୍ଦ୍ର କରି ଯେଉଁ ଇତିହାସର ଜ୍ଞାନ ବର୍ତ୍ତମାନ ସୁଦ୍ଧା ଆମମାନଙ୍କର ଅଛି ତାହା ମଧ୍ୟ ସମ୍ପୂର୍ଣ୍ଣ ନୁହେଁ ; କାରଣ ଅଧୁନା ପ୍ରାଚୀ ନଦୀ ତୀରରେ ପରିଭ୍ରମଣ କରି ଯେଉଁ ଐତିହାସିକ ଉପାଦାନ ମୋର ଦୃଷ୍ଟିଗୋଚର ହେଲା, ତା'ର ଗବେଷଣା ଆଜିଯାଏ ହୋଇ ନାହିଁ । ଅଥଚ ଲୋକ ମୁଖରେ ପ୍ରାଚୀ ସର୍ବପ୍ରସିଦ୍ଧି ଲାଭ କରିଛି । ଏହି ଅବସ୍ଥାରେ ଓଡ଼ିଶାର ଧର୍ମ ଓ ସଭ୍ୟତାର ସମ୍ପୂର୍ଣ୍ଣ ଇତିହାସ ଲେଖିବା ସମ୍ଭବ ନୁହେଁ । ଯାହା କିଛି ଆମମାନଙ୍କର ଜ୍ଞାନଗୋଚର ତାହା ଓଡ଼ିଶାର ଅଞ୍ଚଳବିଶେଷର ଇତିହାସ, ତେଣୁ ତାହା ଅପୂର୍ଣ୍ଣ ହେବା ସୁନିଶ୍ଚିତ ।

ଆହୁରି ଏକ ବଡ଼ ଅସୁବିଧା ଏହି ଯେ ବର୍ତ୍ତମାନ ପୂର୍ବ ଆର୍ଯ୍ୟ ସଭ୍ୟତାର ଯେଉଁ ନିଦର୍ଶନ ସ୍ଥାନେ ସ୍ଥାନେ ମିଳୁଛି ଓ ଯାହା ଐତିହାସିକମାନଙ୍କର କୌତୂହଳ ଜାତ କରି ସେମାନଙ୍କୁ ଦୀର୍ଘ ଗବେଷଣାରେ ନିଯୁକ୍ତ କରିଛି, ତା'ର ବାସ୍ତବିକ ରୂପରେଖା କିପରି ଥିଲା ତା' ଜଣା ଯାଉ ନାହିଁ । ଦ୍ରାବିଡ଼ ସଭ୍ୟତା ବୋଲି ଯାହା କୁହାଯାଉଛି, ତା'ର ସ୍ୱରୂପ ଜାଣିବାକୁ ହେଲେ ତାମିଲ ଅଞ୍ଚଳର ପୂର୍ଣ୍ଣ ଇତିହାସ ଅଧ୍ୟୟନ କରିବାକୁ ହେବ । କିନ୍ତୁ ତାହା ହୋଇ ନାହିଁ । ଭାରତର ଇତିହାସ ମଧ୍ୟ ପୁଙ୍ଖାନୁପୁଙ୍ଖରୂପେ ଅଧୀତ ହୋଇ ନାହିଁ । ଏହି ଅବସ୍ଥାରେ ମୋର ଯୁବକ ବନ୍ଧୁ 'ଯୁଗେ ଯୁଗେ ଉତ୍କଳୀୟ ଧର୍ମ ଓ ସଭ୍ୟତା' ନାମକ ଯେ ପୁସ୍ତକ ଲେଖିଛନ୍ତି ତା'ର ବିଚାର କରିବାକୁ ହେବ । ତାହିଁ ବିଷୟ ସମ୍ବନ୍ଧରେ ଏକ ସାଧାରଣ ଧାରଣା ଦେବ ଏଥିରେ ସନ୍ଦେହ ନାହିଁ । ସାହିତ୍ୟ ହିସାବରେ ପୁସ୍ତକଟି ସୁଲିଖିତ । ଶ୍ରୀମାନ୍ ମନ୍ମଥ ନାଥ ଦାସ ଜଣେ ଐତିହାସିକ ଓ ଅଧ୍ୟାପନା କ୍ଷେତ୍ରରେ ଥିବାରୁ ତାଙ୍କର ଗବେଷଣା କରିବାର ଅବସର ଓ ଅବକାଶ ଅଛି । ଇତିହାସର ସାଧାରଣ ଆଲୋଚନା ଛଡ଼ା ନିର୍ଦ୍ଦିଷ୍ଟ ବିଷୟର ପୁଙ୍ଖାନୁପୁଙ୍ଖ ଗବେଷଣା ଓ ଆଲୋଚନା ତାଙ୍କଠାରୁ ଆଶା କରାଯାଉଛି । ଏ ଆଶା ପୂରଣ କରିବା ପାଇଁ ସେ ଯତ୍ନବାନ ଥିବେ ଏଥିରେ ସନ୍ଦେହ ନାହିଁ । ମୋଟା ମୋଟି ଇତିହାସ ଲେଖିବାକୁ ଇତିହାସର ଉପାଦାନ ସଂଗ୍ରହ ଏକ ନୀରସ ଆୟାସସାଧ୍ୟ କାର୍ଯ୍ୟ । କିନ୍ତୁ ତାକୁ କାହାକୁ ହେଲେ କରିବାକୁ ହେବ । ହୁଏତ ସେଥିପ୍ରତି ବର୍ତ୍ତମାନ କାହାର ଦୃଷ୍ଟି ପଡ଼ିବ ନାହିଁ । କିନ୍ତୁ ସେଇଥିରେ ଅକ୍ଷୟ କୀର୍ତ୍ତି ନିହିତ ଅଛି । ଶ୍ରୀମାନ୍ ମନ୍ମଥ ଉତ୍ତରୋତ୍ତର ସେହି କୀର୍ତ୍ତିପଥର ଯାତ୍ରୀ ହୁଅନ୍ତୁ ଏହା ମୋର କାମନା ।

ଲେଖକ ନିଜେ ପୁସ୍ତକ ଲେଖି ତା'ର ବିକ୍ରୟ ଭାର ନିଜେ ବହନ କରିବା ସମ୍ଭବ ନୁହେଁ । ଲେଖକର ସହାୟକ ପ୍ରକାଶକ । ମୋର ଆଶା ଓ ବିଶ୍ୱାସ ଶ୍ରୀମାନ୍ ମନ୍ମଥଙ୍କ ଭଳି ସୁଲେଖକଙ୍କ ପୁସ୍ତକ ପ୍ରକାଶ କରିବା ପାଇଁ ପ୍ରକାଶକଙ୍କ ଅଭାବ ଘଟିବ ନାହିଁ । ଶେଷରେ ଶ୍ରୀମାନ୍ ମନ୍ମଥଙ୍କ ଉତ୍ସାହକୁ ମୁଁ ଧନ୍ୟବାଦ ଦେଉଛି ଓ ଆଶା କରୁଛି ସେ ଓଡ଼ିଶା ଇତିହାସ ଗଠନରେ ବହୁ ଉପାଦାନ ତାଙ୍କ ଜୀବନରେ ଯୋଗାଇବେ ।

ନୂତନ ଦିଲ୍ଲୀ
୧୩ । ୩ । ୫୨

**ଶ୍ରୀ ହରେକୃଷ୍ଣ ମହତାବ୍**

# ଉପକ୍ରମଣିକା

ଭାରତ ଚିରଦିନ ବ୍ୟାପୀ ବହୁ ଜାତି, ବହୁ ଧର୍ମ ଓ ବହୁ ସଭ୍ୟତାର ମିଳନ-ଭୂମି । ଇତିହ ଅତୀତ କାଳରୁ ଏ ଦେଶର ମାଟି ଉପରେ କେତେ ବିଭିନ୍ନ ସଭ୍ୟତା ପ୍ରସାର ଲାଭ କରିଛି ; ଭାରତର ମହାଦେଶୀୟ ପରିସର ମଧ୍ୟରେ କେତେ ବିଭିନ୍ନ ଜାତିର ମନୁଷ୍ୟ ବସବାସ କରିଆସିଛନ୍ତି । ଏହି ଦେଶର ବିଭିନ୍ନାଞ୍ଚଳରେ କକେସିୟ ବା ଶ୍ୱେତାଙ୍ଗ ଜାତି, ମଙ୍ଗୋଲିୟ ବା ପୀତାଙ୍ଗ ଜାତି ଏବଂ ଆଫ୍ରିକା ମହାଦେଶୀୟ ବା କୃଷ୍ଣାଙ୍ଗ ଜାତିର ମନୁଷ୍ୟ ସହସ୍ର ସହସ୍ର ବର୍ଷ ପୂର୍ବରୁ ବସବାସ କରି ଏ ଦେଶ ଭୂମିରେ ସାରା ପୃଥିବୀର ବିଭିନ୍ନ ମନୁଷ୍ୟ ଜାତିର ପ୍ରତିନିଧିତ୍ୱ କରିଛନ୍ତି । ଅଗଣିତ ଶତାବ୍ଦୀର ସମୟ ସ୍ରୋତ ମଧ୍ୟରେ ଏହି ପୃଥକ ମନୁଷ୍ୟ ଜାତିଗୁଡ଼ିକ ପରସ୍ପର ମଧ୍ୟରେ ରକ୍ତ ଓ ସଭ୍ୟତାର ଆଦାନପ୍ରଦାନ ଦ୍ୱାରା ଏକପ୍ରକାର ମିଶ୍ରିତ ଭାରତୀୟ ଜାତିରେ ପରିଣତ ହୋଇଯାଇଛନ୍ତି ସତ୍ୟ, ତଥାପି ସେହି ଆଦିମଜାତିଗତ ପାର୍ଥକ୍ୟ ଆଜିଯାଏ ବିଦ୍ୟମାନ । ଆଜିଯାଏ ଭାରତର ନିବିଡ଼ ଅରଣ୍ୟାନୀ ଏବଂ ଦୁର୍ଗମ ପାର୍ବତ୍ୟାଞ୍ଚଳ ମଧ୍ୟରେ ଘନ କୃଷ୍ଣକାୟ ଆଦିମ ଅଧିବାସୀମାନେ ସେମାନଙ୍କର ପୃଥକ୍ ଅବସ୍ଥିତି ବଜାୟ ରଖିଛନ୍ତି । ଆଫ୍ରିକା ଏବଂ ଅଷ୍ଟ୍ରେଲିୟା ମହାଦେଶର ଆଦିମ ଅଧିବାସୀମାନଙ୍କ ସହ ଏମାନଙ୍କର ଯେଉଁ ବର୍ଣ୍ଣ, କାନ୍ତି ଏବଂ ଆଚାର ବ୍ୟବହାରଗତ ସାମଞ୍ଜସ୍ୟ ରହିଛି ସେଥିରୁ ଏହା ଅନୁମେୟ ଯେ ଆଫ୍ରିକା, ଭାରତ ଏବଂ ଅଷ୍ଟ୍ରେଲିଆର ଏହି ଆଦିମ ଅଧିବାସୀମାନେ ଏକ ମନୁଷ୍ୟ ଶାଖାର ଅନ୍ତର୍ଗତ । ଭାରତର ଉତ୍ତର-ପଶ୍ଚିମ ସୀମାନ୍ତ ଦେଶରେ, ଯେଉଁଠାରେ ହିମାଦ୍ରି ପ୍ରାଚ୍ୟ ପାଶ୍ଚାତ୍ୟର ମିଳନ ପାଇଁ ସ୍ଥଳପଥ ଉନ୍ମୁକ୍ତ କରି ଦେଇଛି, ସେହି ଦୁର୍ଗମ ଗିରିପଥରେ ଯେଉଁ ସୁଦୂର ଅତୀତରୁ ପଶ୍ଚିମ ଏସିଆର ଶ୍ୱେତାଙ୍ଗ ଅଧିବାସୀମାନେ ଏ ଦେଶ ମଧ୍ୟକୁ ମାଡ଼ି ଆସିଛନ୍ତି । ଏମାନେ କକେସିୟ ମନୁଷ୍ୟ ଶାଖାର ଅନ୍ତର୍ଗତ । ସେହି ପଥରେ ମଧ୍ୟ ପ୍ରାଚ୍ୟର ମଙ୍ଗୋଲିୟମାନେ ମଧ୍ୟ ଭାରତ ମଧ୍ୟକୁ ପ୍ରବେଶ କରିଛନ୍ତି ଏବଂ ଏମାନେ ଅପର ଏକ ମନୁଷ୍ୟ ଶାଖାର ଅନ୍ତର୍ଭୁକ୍ତ । ଏହି ପୀତବର୍ଣ୍ଣ

ମଙ୍ଗୋଲୟମାନଙ୍କର ଅନ୍ୟ ଏକ ଶାଖା ଚୀନ ଦେଶର ଦକ୍ଷିଣାଞ୍ଚଳରୁ ବ୍ରହ୍ମଦେଶ ମଧ୍ୟଦେଇ ଭାରତ ଭିତରକୁ ପ୍ରବେଶ କରିଛନ୍ତି । ଉତ୍ତରରେ ହିମାଚଳର ପାଦ-ଭୂମିରୁ ଦକ୍ଷିଣରେ କନ୍ୟାକୁମାରୀ, ଏବଂ ପୂର୍ବରେ ବ୍ରହ୍ମଦେଶ ସୀମାନ୍ତରୁ ପଶ୍ଚିମରେ ହିନ୍ଦୁକୁଶ ପର୍ଯ୍ୟନ୍ତ, ଏହି ସୁବିସ୍ତୃତ ଭୂଖଣ୍ଡ ମଧ୍ୟରେ ଶ୍ୱେତାଙ୍ଗ, ପୀତାଙ୍ଗ ଏବଂ କୃଷ୍ଣାଙ୍ଗ ମନୁଷ୍ୟ, ସମସ୍ତେ ଏକ ଜାତିରେ ପରିଣତ ହେବା ପାଇଁ ପ୍ରତ୍ୟକ୍ଷ ଏବଂ ପରୋକ୍ଷଭାବେ ଚେଷ୍ଟା କରି ଆସିଛନ୍ତି । ଭାରତର ଭୌଗଳିକ ଏକତ୍ୱ ମଧ୍ୟରେ ସହସ୍ର ସହସ୍ର ବର୍ଷ ଧରି ଏହିସବୁ ବିଭିନ୍ନ ମନୁଷ୍ୟ ଜାତିଗୁଡ଼ିକ ସେମାନଙ୍କ ସମସ୍ତଙ୍କ ପାଇଁ ଏକ ଇତିହାସ, ଏକ ଧର୍ମ, ଏକ ଭାବ, ଏକ ସଂସ୍କୃତି, ଏକ ଚିନ୍ତା ଏବଂ ଏକ ସଭ୍ୟତା ପ୍ରସ୍ତୁତ କରି ନେଇଛନ୍ତି । ଆଜି କାଶ୍ମୀର ଉପତ୍ୟକାର ଶ୍ୱେତାଙ୍ଗ, ଭାରତର ପାର୍ବତ୍ୟାଞ୍ଚଳର କୃଷ୍ଣାଙ୍ଗ, ଆସାମ ଖଣ୍ଡର ପୀତାଙ୍ଗ ସମସ୍ତେ ଏକ ଭାରତୀୟ ଜାତି, ସମସ୍ତଙ୍କର ଏକ ଭାରତୀୟ ଜାତୀୟତା ଓ ସଭ୍ୟତା ଏବଂ ପ୍ରାୟ ସମସ୍ତଙ୍କର ଏକ ଧର୍ମ, ହିନ୍ଦୁଧର୍ମ । ସମୟର ଗତି କେତେ ବିଭିନ୍ନ ସ୍ତରର ସଭ୍ୟତା ଏବଂ କେତେ ଭିନ୍ନ ଶାଖାର ମନୁଷ୍ୟଙ୍କୁ ଏକାକାର କରି ଆଣିଛି । କିନ୍ତୁ ତଥାପି ଏହି ଏକୀକୃତ ସଭ୍ୟତା ମଧ୍ୟରେ ବିଭିନ୍ନ ସଭ୍ୟତାର ସ୍ତର ରେଖା ଏବେ ସୁଦ୍ଧା ବିଦ୍ୟମାନ ଏବଂ ଏହି ଏକୀକୃତ ଭାରତୀୟ ମହାଜାତି ମଧ୍ୟରେ ବିଭିନ୍ନ ମନୁଷ୍ୟ ଶାଖାର ବର୍ଣ୍ଣଗତ ରକ୍ତଗତ ଏବଂ ସଂସ୍କୃତିଗତ ପାର୍ଥକ୍ୟ ଆଜିସୁଦ୍ଧା ସ୍ପଷ୍ଟ । ଇତିହାସ ପ୍ରତ୍ୟେକ ଜାତିର, ପ୍ରତ୍ୟେକ ସଭ୍ୟତାର ଏବଂ ପ୍ରତ୍ୟେକ ଧର୍ମର ବିଶେଷତ୍ୱ ଉପରେ ଆଲୋକପାତ କରି ଚିରଦିନ ସେ ସବୁକୁ ଅମର କରି ରଖିଛି । ସବୁଜାତି, ସବୁଧର୍ମ, ସବୁସଭ୍ୟତାର ଅତୀତ ଅବସ୍ଥିତି ଉପରେ ଇତିହାସହିଁ ସବାକ୍ ସାକ୍ଷୀ ।

ଉତ୍କଳଖଣ୍ଡ ଭାରତର ଅଂଶ ମାତ୍ର । ଭାରତ ଭୂମିର ସୁବିସ୍ତୃତ କଳେବର ଯେତେବେଳେ ବିଭିନ୍ନ ଜାତିର ଲୀଳାକ୍ଷେତ୍ର ହୋଇଛି, ଉତ୍କଳଖଣ୍ଡ ମଧ୍ୟ ଭାରତର ଖୋଟିଏ ଅଂଶ ହିସାବରେ ଊଣା ଅଧିକ ଏ ଲୀଳାର ରଙ୍ଗଭୂମି ହୋଇଛି । ପରନ୍ତୁ, ଉତ୍କଳଖଣ୍ଡର ଭୂଗୋଳ ଓ ଉତ୍କଳର ଭୌଗଳିକ ଅବସ୍ଥିତି ଉତ୍କଳ ବକ୍ଷରେ ବିଭିନ୍ନ ଜାତିର ଅବସ୍ଥିତି, ବିଭିନ୍ନ ସଭ୍ୟତାର ସଂଘର୍ଷ ଏବଂ ବିଭିନ୍ନ ଧର୍ମର ବିକାଶ ଓ ବିଲୟ ପାଇଁ ସୁବର୍ଣ୍ଣ ସୁଯୋଗ ଯୋଗାଇ ଦେଇଛି । ଉତ୍କଳର ଭୂଗୋଳରେ ଦୁର୍ଗମ ଅରଣ୍ୟାନୀବେଷ୍ଟିତ ପାର୍ବତ୍ୟାଞ୍ଚଳ ତଥା ଅଗଣିତ ସ୍ରୋତସ୍ୱିନୀର ସମତଳ କୂଳଭୂମି, ଉଭୟ ପ୍ରାକୃତିକ ସ୍ଥଳ ବିଦ୍ୟମାନ । ଆଦିମ

କାଳରୁ ଭାରତର ପାର୍ବତ୍ୟାଞ୍ଚଳମାନଙ୍କରେହିଁ ଏ ଦେଶର ଆଦିମ ଅଧିବାସୀମାନେ ସ୍ୱଚ୍ଛନ୍ଦରେ ବସବାସ କରି ସେମାନଙ୍କର ଆଦିମ ସଭ୍ୟତା ରକ୍ଷା କରିଛନ୍ତି ଏବଂ ପରବର୍ତ୍ତୀ କାଳରେ ଉତ୍ତରାପଥ ତଥା ଦକ୍ଷିଣାପଥର ସମତଳଭୂମିମାନଙ୍କରେହିଁ ଉନ୍ନତ ସଭ୍ୟତାମାନଙ୍କର ପ୍ରସାର ହୋଇଛି । ଉତ୍କଳର ପାର୍ବତ୍ୟ ଓ ବନଭୂମି କେଉଁ ଅଜଣା ଅତୀତରୁ ଆଜି ପର୍ଯ୍ୟନ୍ତ ଭାରତର ଆଦିମ ଅଧିବାସୀମାନଙ୍କର ଗୋଟିଏ ବାସସ୍ଥଳୀ ଏବଂ ସେମାନଙ୍କ ସଭ୍ୟତାର ଗୋଟିଏ କେନ୍ଦ୍ର ; ଉତ୍କଳର ସମତଳ ପ୍ରଦେଶ ପରବର୍ତ୍ତୀ ଯୁଗମାନଙ୍କରେ ଦ୍ରାବିଡ଼ ଓ ଆର୍ଯ୍ୟ ସଭ୍ୟତାର ସଂଘର୍ଷ ଓ ମିଳନ କ୍ଷେତ୍ର । ଭାରତର ଅତି ଅଳ୍ପ ସଂଖ୍ୟକ ଅଞ୍ଚଳରେ ଭୂଗୋଳ ଏପରି ପାର୍ବତ୍ୟ ଭୂମି ଓ ସମତଳ ପ୍ରଦେଶର ଏକତ୍ର ସମାବେଶ କରିଛି ଏବଂ ତେଣୁ ଖୁବ୍ ଅଳ୍ପ ସଂଖ୍ୟକ ଅଞ୍ଚଳହିଁ ଭାରତର ତିନୋଟି ମୁଖ୍ୟ ସଭ୍ୟତା, ଆଦିମ, ଦ୍ରାବିଡ଼ ଓ ଆର୍ଯ୍ୟ ସଭ୍ୟତାକୁ ଏକତ୍ର ସ୍ଥାନ ଦେଇଛି । ଉତ୍କଳର ଏ ମିଶ୍ରିତ ଭୂଗୋଳ ବ୍ୟତୀତ ତାର ଭୌଗଳିକ ଅବସ୍ଥିତି ଏ ଦେଶ ମାଟିରେ ବିଭିନ୍ନ ଜାତିର ମନୁଷ୍ୟମାନଙ୍କର ବସବାସ ଓ ବିଭିନ୍ନ ସଭ୍ୟତାର ବିକାଶ ପାଇଁ ଏକ ଅପୂର୍ବ ସୁଯୋଗର ବନ୍ଦୋବସ୍ତ କରିଛି । ସେ ଭୌଗଳିକ ଅବସ୍ଥିତି ଏହି । ଭୌଗଳିକ ଦୃଷ୍ଟିରୁ ଭାରତବର୍ଷ ବାସ୍ତବ କ୍ଷେତ୍ରରେ ଉତ୍ତୁଙ୍ଗ ବିନ୍ଧ୍ୟାଚଳ ଦ୍ୱାରା ସମଭାବେ ଦ୍ୱିଖଣ୍ଡିତ । ବିନ୍ଧ୍ୟ ପର୍ବତମାଳା ମେଘନାଦ ପ୍ରାଚୀର ରୂପେ ଦଣ୍ଡାୟମାନ ରହି ଉତ୍ତର ଭାରତ ଓ ଦାକ୍ଷିଣାତ୍ୟକୁ ପରସ୍ପର ଠାରୁ ଚିରଦିନ ଧରି ବିଚ୍ଛିନ୍ନ କରି ରଖିବାକୁ ଚେଷ୍ଟା କରି ଆସିଛି । ହୁଏତ ଉତ୍ତର ଭାରତ ଦାକ୍ଷିଣାତ୍ୟ ସମ୍ପୂର୍ଣ୍ଣଭାବେ ପୃଥକ୍ ଅବସ୍ଥିତି ଉପଭୋଗ କରୁଥାଆନ୍ତେ ଏବଂ ଦୁହିଁଙ୍କ ମଧ୍ୟରେ କୌଣସି ଜାତିଗତ କିମ୍ବା ସଂସ୍କୃତି-ଗତ ସମ୍ବନ୍ଧ ନ ଥାନ୍ତା ଯଦି ଉତ୍କଳଖଣ୍ଡ ତା'ର ବିସ୍ତୃତ ସମତଳ ବକ୍ଷ ଉପର ଦେଇ ଆର୍ଯ୍ୟାବର୍ତ୍ତ ଓ ଦାକ୍ଷିଣାତ୍ୟ ଭିତରେ ସମ୍ପର୍କ ସ୍ଥାପନର ଯୋଜନା କରି ନ ଥାନ୍ତା । ଆର୍ଯ୍ୟାବର୍ତ୍ତ ଓ ଦାକ୍ଷିଣାତ୍ୟ ମଧ୍ୟରେ ଉତ୍କଳହିଁ ମିଳନ ପଥ । କାରଣ ଉତ୍କଳ-ଖଣ୍ଡର ସମତଳ ପ୍ରଦେଶକୁ ବିନ୍ଧ୍ୟାଚଳ ବିସ୍ତାର ଲାଭ କରି ନାହିଁ ଏବଂ ତେଣୁ ଉତ୍ତରରୁ ଦକ୍ଷିଣକୁ ଦ୍ୱାରପଥ ଉନ୍ମୁକ୍ତ ରହିଛି । ବହୁ ପୁରାତନ କାଳରୁ ଉତ୍ତର-ଭାରତରୁ ଜାତି ପରେ ଜାତି ଉତ୍କଳ ମଧ୍ୟଦେଇ ଦକ୍ଷିଣକୁ ଗତି କରିଛନ୍ତି । କକେସିୟ କିମ୍ବା ମଙ୍ଗୋଲିୟ, ଦ୍ରାବିଡ଼ୀୟ କିମ୍ବା ଆର୍ଯ୍ୟ ସମସ୍ତେ ଉତ୍କଳକୁ ସେମାନଙ୍କର ଗତିପଥରେ ପରିଣତ କରି ପ୍ରଥମେ ଉତ୍ତରରୁ ଦକ୍ଷିଣକୁ ଏବଂ ପରେ ଦକ୍ଷିଣରୁ ଉତ୍ତରକୁ ଯତାୟାତ କରିଛନ୍ତି । ବିଭିନ୍ନ ଜାତିର ଗତିପଥରେ

ଅବସ୍ଥାନ କରି ଉତ୍କଳ ବିଭିନ୍ନ ଜାତିକୁ ନିଜ ବକ୍ଷରେ ସ୍ଥାନ ଦେଇଛି ଏବଂ ବିଭିନ୍ନ ସଭ୍ୟତାର ଆଲୋକରେ ନିଜେ ଆଲୋକିତ ହୋଇଛି । ଜାତିତତ୍ତ୍ୱବିଦ୍‌ମାନେ ଆଜି ଜଣେ ଉତ୍କଳୀୟର ଅଙ୍ଗ ପ୍ରତ୍ୟଙ୍ଗରେ ମଙ୍ଗୋଲିୟ, ଦ୍ରାବିଡ଼ୀୟ ଓ ଆର୍ଯ୍ୟ, ଏ ତିନିଙ୍କର ମିଶ୍ରିତ ପ୍ରତିକୃତି ଦେଖିବାକୁ ପାଆନ୍ତି । ଦିନ ଥିଲା ଯେତେବେଳେ ମଙ୍ଗୋଲ, ଦ୍ରାବିଡ଼ ଓ ଆର୍ଯ୍ୟ ଏମାନେ ପୃଥିବୀର ବିଭିନ୍ନ ଜାତିର ମନୁଷ୍ୟ ହିସାବରେ ରକ୍ତବର୍ଣ୍ଣରେ ପରସ୍ପରଠାରୁ ସମ୍ପୂର୍ଣ୍ଣ ପୃଥକ୍ ଥିଲେ । କିନ୍ତୁ ସମୟର ଘୂର୍ଣ୍ଣିସ୍ରୋତ ଭିତରେ ସେମାନେ ଆଜି ଏକ ମନୁଷ୍ୟରେ ପରିଣତ ।

ସମଗ୍ର ପୃଥିବୀ ମଧ୍ୟରେ ଭାରତ ହେଉଛି ବହୁଧର୍ମର ଜନ୍ମଭୂମି । ଏହି ଭାରତ ଭୂମିରେ ପୃଥିବୀର ତିନୋଟି ବୃହତ୍ ଧର୍ମ ଯଥା ହିନ୍ଦୁଧର୍ମ, ବୌଦ୍ଧଧର୍ମ ଓ ଜୈନଧର୍ମ ଏବଂ ଅନେକାନେକ ଉପଧର୍ମର ଜନ୍ମ । ଏବଂ ସାରା ଭାରତ ମଧ୍ୟରେ ଉତ୍କଳହିଁ ହେଉଛି ସର୍ବଶ୍ରେଷ୍ଠ ଧର୍ମକ୍ଷେତ୍ର । ଆଦିମ କାଳରୁ ଉତ୍କଳ ବକ୍ଷରେ ଆଦିମ ଧର୍ମ, ଦ୍ରାବିଡ଼ ଧର୍ମ, ଆର୍ଯ୍ୟଧର୍ମ, ଜୈନଧର୍ମ, ବୌଦ୍ଧଧର୍ମ, ଶୈବଧର୍ମ, ଶାକ୍ତଧର୍ମ, ବୈଷ୍ଣବଧର୍ମ ଏବଂ ଅସଂଖ୍ୟ ଉପଧର୍ମମାନଙ୍କର ବହୁଳ ପ୍ରଭାବ ପଡ଼ିଛି । ଅଜଣା ଅତୀତ କାଳରେ ଏହି ଭୂମିର ଗହନ ଗିରିବନ ଆଦିମମାନଙ୍କର ପୂଜା ଉପଲକ୍ଷେ ଶୃଙ୍ଗ ନିନାଦରେ କମ୍ପି ଉଠିଥିଲା ; ଦିନେ ଏହି ଦେଶର ମାଟି ଉପରଦେଇ ବହିଯାଇଥିଲା ତଥାକଥିତ ଅସୁର ବା ଦ୍ରାବିଡ଼ମାନଙ୍କର ଧର୍ମ ; ତାପରେ ଉତ୍କଳଖଣ୍ଡର ଦିଗେ ଦିଗେ ଶୁଭିଥିଲା ଆର୍ଯ୍ୟମାନଙ୍କର ପ୍ରଣବ ଧ୍ୱନି ; ଦିନେ ଅତି ପ୍ରାଚୀନ କାଳରେ ଏ ଦେଶର ଏକ ସ୍ଥାନରେ ଜନ୍ମ ଗ୍ରହଣ କରିଥିଲେ ଜନୈକ ଜୈନ ତୀର୍ଥଙ୍କର; ତାପରେ ଏ ମାଟିର ସ୍ଥାନେ ସ୍ଥାନେ ଧର୍ମପ୍ରଚାର କରି ବୁଲିଥିଲେ ସ୍ୱୟଂ ମହାବୀର ଜୀନ; ସେହି ପ୍ରାଚୀନ ଦିନରେ ଗୌତମ ବୁଦ୍ଧଙ୍କର ବାଣୀ ବହନ କରି ଉତ୍ତରରୁ ଆସିଥିଲେ ଦଳ ଦଳ ବୌଦ୍ଧଭିକ୍ଷୁ ; ଏହି ଉତ୍କଳର ପୁଣ୍ୟଭୂମି ଉପରେ ଦିନେ ସମ୍ରାଟ ଅଶୋକ ଗାଇଥିଲେ 'ଧର୍ମଂ ଶରଣଂ ଗଚ୍ଛାମି' ; ଏହି ଦେଶର ବନ୍ଦର ପଥରେ ସଂଘମିତ୍ରା ଧର୍ମପ୍ରଚାର ଉଦ୍ଦେଶ୍ୟରେ ଯାଇଥିଲେ ସିଂହଳ ଦେଶ ; ଏହିଠାରେ ଧର୍ମ ମହାସଭା ଆହ୍ୱାନ କରିଥିଲେ ଜୈନ ସମ୍ରାଟ ଖାରବେଳ ; କାଳକ୍ରମେ ସାରା ଉତ୍କଳ ଉପରେ ମାଡ଼ି ଯାଇଥିଲା ପୌରାଣିକ ହିନ୍ଦୁଧର୍ମର ସ୍ରୋତ; ସେହି ଧର୍ମର ବିଭବ ଦେଖି ଆଶ୍ଚର୍ଯ୍ୟ ହୋଇଥିଲେ ଚୀନ ପରିବ୍ରାଜକ ହୁଏନ୍‌ସାଂ ; ଦିନେ ଉତ୍କଳର ପୁରପଲ୍ଲୀରେ ନିନାଦିତ ହୋଇ ଉଠିଥିଲା ଶୈବମନ୍ତ୍ର ; ସେହି ମନ୍ତ୍ରରେ ସ୍ଥାପିତ ହୋଇ

ଏଦେଶର ଦୈର୍ଘ୍ୟପ୍ରସ୍ଥରେ କେଶରୀସମ୍ରାଟମାନେ ନିର୍ମାଣ କରିଥିଲେ ସଂଖ୍ୟାହୀନ ମନ୍ଦିର; ଶିବଶକ୍ତିର ପୂଜାପୀଠରେ ମାଡ଼ି ଆସିଥିଲା ବୈଷ୍ଣବ ଧର୍ମର ସ୍ରୋତ, ସେହି ସ୍ରୋତରେ ତରଣୀ ଚଳାଇ ଏ ଦେଶକୁ ଆସିଥିଲେ ପରମଭକ୍ତ ରାମାନୁଜ, ସେହି ଧର୍ମ ପ୍ରେରଣାରେ ଚୋଡ଼ଗଙ୍ଗ, ଅନଙ୍ଗଭୀମ ନୀଳାଚଳ କ୍ଷେତ୍ରରେ ନିର୍ମାଣ କରିଥିଲେ ଜଗନ୍ନାଥ ମନ୍ଦିର, ଏହି ନୀଳାଚଳ ଧାମର ପବିତ୍ର ବକ୍ଷରେ ଦିନେ ସୁଲଳିତ ଛନ୍ଦରେ ସ୍ତୁତିଗାନ କରିଥିଲେ କବି ଜୟଦେବ; ଶେଷରେ ଉତ୍କଳର ପବିତ୍ର ବକ୍ଷରେ ଧର୍ମ ସଂକୀର୍ତ୍ତନ କରି ବର୍ଷ ବର୍ଷ ଧରି ପଦବ୍ରଜରେ ବୁଲିଥିଲେ ଚୈତନ୍ୟଦେବ ହିନ୍ଦୁଧର୍ମର ଚରମ ଦୁର୍ଦ୍ଦିନ ବେଳେ ଉତ୍କଳର ଧର୍ମ ବିଭବରେ ଚମତ୍କୃତ ହୋଇ ଛତ୍ରପତି ଶିବାଜୀ ଏ ଦେଶକୁ ଆଖ୍ୟା ଦେଇଥିଲେ 'ଦେବଭୂମି'; ପରିଶେଷରେ ଏହି ଦେବଭୂମିରେ ଦ୍ୱୈତାଙ୍ଗ ପଣ୍ଡିତମାନେ ଆଶ୍ଚର୍ଯ୍ୟାନ୍ୱିତଭାବେ ଦେଖି ପାରିଥିଲେ ଭାରତର ସର୍ବଧର୍ମର ସମନ୍ୱୟ ।

ଯୁଗେ ଯୁଗେ ଉତ୍କଳର ଏହିସବୁ ବିଭିନ୍ନ ଧର୍ମ ଓ ବିଭିନ୍ନ ମତବାଦକୁ ମେରୁଦଣ୍ଡ କରି ଏ ଦେଶର ସ୍ଥାପତ୍ୟ ଓ କଳା ସେମାନଙ୍କର ରୂପରେଖା ଗଢ଼ି ନେଇଛନ୍ତି । ଦିନେ କୁମାରୀ ପର୍ବତର ନିର୍ଜନ ଶିଖରରେ ମହାବୀର ଜୀନଙ୍କର ନଶ୍ୱର ଶରୀରର ଧ୍ୱଂସାବଶେଷ ଉପରେ ଏ ଦେଶର ଶିଳ୍ପୀମାନେ ନିର୍ମାଣ କରିଥିଲେ ଜୀନଙ୍କର ସ୍ମୃତିପୀଠ; ସେହି କାଳରେ କେବେ ଗୌତମ ବୁଦ୍ଧଙ୍କର ଦନ୍ତ ସଂରକ୍ଷିତ କରି ଏ ଦେଶର ଦନ୍ତପୁର ନଗରୀରେ ଉତ୍କଳୀୟମାନେ ନିର୍ମାଣ କରିଥିଲେ ଏକ ବିରାଟ ବୌଦ୍ଧସ୍ତୂପ, ଏହି ମାଟିର ଧଉଳିଗିରି ତଳେ ସମ୍ରାଟ ଅଶୋକ ନିର୍ମାଣ କରିଥିଲେ ମହାନଗରୀ ତୋଷଳୀ, ସେହି ନଗରୀକୁ ପୁନର୍ଜୀବିତ କରି ସମ୍ରାଟ ଖାରବେଳ ତିଆରି କରିଥିଲେ କଳିଙ୍ଗନଗର; ଏହି ନଗରର ଅଦୂରରେ ଖଣ୍ଡଗିରି ଉଦୟଗିରିର ଶୈଳକାନ୍ତାର ବକ୍ଷରେ ନିର୍ମିତ ହୋଇଥିଲା ଶତ ଶତ ଜୈନଗୁମ୍ଫା; ଦିନେ ରତ୍ନଗିରି, ଲଳିତଗିରିଠାରେ ସୃଷ୍ଟି ହୋଇଥିଲା ବୌଦ୍ଧ ଓ ବ୍ରାହ୍ମଣ୍ୟସ୍ଥାପତ୍ୟର ଅପରୂପ ଶିଳ୍ପକଳା, ଏହି ପ୍ରଦେଶର ଖିଚିଙ୍ଗଠାରେ ଦିନେ ଫୁଟି ଉଠିଥିଲା ହିନ୍ଦୁ ସ୍ଥାପତ୍ୟର ସୁନ୍ଦର ଛବି; ପରେ ପରେ ଉତ୍କଳୀୟ ଶିଳ୍ପୀମାନେ ଗଢ଼ିଥିଲେ ଯାଜପୁରଠାରେ ଅସଂଖ୍ୟ ଦେବମନ୍ଦିର; ଅଳ୍ପପରେ ଏକାମ୍ର କାନନର ବିସ୍ତୃତ ପ୍ରାଙ୍ଗଣରେ ଠିଆ ହୋଇଥିଲା ଲିଙ୍ଗରାଜଙ୍କର ନଭସ୍ପର୍ଶୀ ବିଶାଳ ମନ୍ଦିର ଯାହାକୁ କେନ୍ଦ୍ରକରି କାଳେ କାଳେ ନିର୍ମିତ ହୋଇଥିଲା ସଂଖ୍ୟାତୀତ ପୂଜାପୀଠ, ମନ୍ଦିର

ଓ ମୂର୍ତ୍ତି ; ଏହାପରେ ଦିନେ ନୀଳାଚଳର ସୁଶାନ୍ତ ସାଗର ତଟରେ ଗଙ୍ଗ ସମ୍ରାଟମାନେ ନିର୍ମାଣ କଲେ ଜଗନ୍ନାଥଙ୍କର ଭୁବନ-ବିଖ୍ୟାତ ମନ୍ଦିର ; ପରିଶେଷରେ ଚନ୍ଦ୍ରଭାଗା ତଟରେ ନିର୍ମିତ ହେଲା ଉତ୍କଳୀୟ ଶିଳ୍ପୀମାନଙ୍କର, ଅମରକୀର୍ତ୍ତି କୋଣାର୍କ, ଯାହାର ଶିଳ୍ପକଳା ଯୁଗେ ଯୁଗେ ପୃଥିବୀର ଦର୍ଶକମାନଙ୍କୁ ବିସ୍ମିତ କରି ଆସିଛି ; ଏବଂ ଏହି ସବୁ ସ୍ଥାପତ୍ୟର ଚାତୁର୍ଯ୍ୟରେ ଆଶ୍ଚର୍ଯ୍ୟ ହୋଇ ଆଧୁନିକ ପଣ୍ଡିତମାନେ ଉତ୍କଳକୁ କହନ୍ତି 'ଭାରତୀୟ ସ୍ଥାପତ୍ୟର ଯାଦୁଘର' । କୀର୍ତ୍ତିଶାଳିନୀ ଉତ୍କଳର ସହସ୍ର ବାଗରେ ଆଜି ବି କେତେ ସ୍ଥାପତ୍ୟର ଧ୍ୱଂସାବଶେଷ ଦେଖିବାକୁ ମିଳେ ତା ହାର ଇୟତ୍ତା ନାହିଁ ଏବଂ ଏହି ସମସ୍ତ ଧ୍ୱଂସସ୍ତୂପ ଆଜି ଉତ୍କଳୀୟ ସଭ୍ୟତାର ମୂକ ସାକ୍ଷୀ ।

ଯେଉଁ ଦେଶର ପ୍ରାଚୀନ ସ୍ଥାପତ୍ୟ ସାରା ଭାରତର ସ୍ଥାପତ୍ୟରାଜି ମଧ୍ୟରେ ଅଦ୍ୱିତୀୟ ସେ ଦେଶର ବିଭବ ମଧ୍ୟ ଥିଲା ଚମକପ୍ରଦ । ଦିନେ ଏହି ଦେଶର ରାଜବିଭବ ଦେଖି ଗ୍ରୀକ୍ ରାଜଦୂତ ମେଗାସ୍ଥିନିସ୍ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ ; ଦିନେ ଉତ୍କଳର ସାଗର-ପାରି ବାଣିଜ୍ୟ ବ୍ୟବସାୟ ଅବଲୋକନ କରି ଇଉରୋପ ଭୂଖଣ୍ଡର ବିଖ୍ୟାତ ଭୌଗଳିକ ଟୋଲେମି ଏବଂ ଐତିହାସିକ ପ୍ଲିନି ଚମତ୍କୃତ ହୋଇଯାଇଥିଲେ ; ଏହି ମାଟିର ସନ୍ତାନମାନେ ବହୁକାଳଧରି ଏ ଦେଶର ସମୃଦ୍ଧି ଓ ସଂସ୍କୃତି ବହନ କରି ବାହାରି ଯାଇଥିଲେ ଦେଶ ବିଦେଶକୁ ଯେଉଁ ଯାହାର ବିବରଣୀରେ ଆଜି ବି ସୁବର୍ଣ୍ଣଦ୍ୱୀପ, ବ୍ରହ୍ମ, ଓ ଚୀନ ଦେଶର ଇତିହାସ ମୁଖରିତ ; ଦିନେ ଏହି ଉତ୍କଳ ଭୂମିର ଚନ୍ଦ୍ରନଗର ଓ ପାଲୁର ପ୍ରଭୃତି ବନ୍ଦର-ମାନଙ୍କର ଶ୍ରୀ ବର୍ଣ୍ଣନାରେ ଚୀନ ପରିବ୍ରାଜକମାନଙ୍କର ଲେଖନୀ ଉତ୍ପର ହୋଇଥିଲା ; ଏହି ଦେଶର ସୁଖ ସମୃଦ୍ଧି ଦିନେ ଆରବ ଐତିହାସିକମାନେ ସ୍ୱଦେଶର ଇତିହାସ ଦେହରେ ଲିପିବଦ୍ଧ କରିଥିଲେ ; ଶେଷରେ ଦିନେ କୋଣାର୍କର ବିରାଟ ସ୍ଥାପତ୍ୟ ଅଙ୍ଗରେ ବ୍ୟୟିତ ହୋଇଥିବା ଅର୍ଥର ହିସାବ ନିକାଶ ଶୁଣି ମୁସଲମାନ ଐତିହାସିକ ଆବୁଲଫାଜଲ ବିସ୍ମିତ ହୋଇ ଉତ୍କଳୀୟ ସମୃଦ୍ଧିର ପ୍ରଶଂସା କରିଥିଲେ ।

ବିଭବଶାଳିନୀ ଉତ୍କଳ ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ମଧ୍ୟ ଆଦର୍ଶସ୍ଥାନ ଅଧିକାର କରି ପାରିଥିଲା । ସୁଦୂର ଅତୀତରେ ଦିନେ ପାଲିଭାଷା ଏହି ଉତ୍କଳ ଦେଶରୁ ଯାଇ ସିଂହଳ ଦ୍ୱୀପରେ ପ୍ରସାର ଲାଭ କରିଥିଲା । ଦିନେ ଏହି ଦେଶରେ ସାଧନା ଶିକ୍ଷା କରିବାକୁ ଆସୁଥିଲେ ଦୂର ଦୂରାନ୍ତରରୁ ବୌଦ୍ଧଶୀ ପରି ଖ୍ୟାତନାମା ପଣ୍ଡିତ ; ଉତ୍କଳର

ଶିକ୍ଷା ଓ ସଂସ୍କୃତିର ଖ୍ୟାତି ବ୍ୟାପି ଯାଇଥିଲା ସୁଦୂର ତିବ୍ବତ ଦେଶପର୍ଯ୍ୟନ୍ତ ; ଯେତେବେଳେ ଉତ୍କଳୀୟ ଶିକ୍ଷାର ଖ୍ୟାତି ଶୁଣି ଭାରତର ଉତ୍ତର ପଶ୍ଚିମ ସୀମାନ୍ତରୁ ଏଠାକୁ ଅଧ୍ୟୟନ କରିବାକୁ ଆସିଥିଲେ ପ୍ରଜ୍ଞାଙ୍କ ପରି କୃତୀଛାତ୍ର ; କୌଣସି ସମୟରେ ଉତ୍କଳର ରାଜା ସ୍ୱହସ୍ତ ଲିଖିତ ପୁସ୍ତକ ଉପହାର ପଠାଇଥିଲେ ଚୀନ ସମ୍ରାଟଙ୍କ ନିକଟକୁ ; ଏହି ଉତ୍କଳର ପୁଷ୍ପଗିରି ବିଶ୍ୱବିଦ୍ୟାଳୟ ଅବଲୋକନ କରି ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ ସେ ଯୁଗର ଜଣେ ଅଦ୍ୱିତୀୟ ପଣ୍ଡିତ ହୁଏନ୍‌ସାଂ ; ଯେତେବେଳେ ଗଞ୍ଜାମର ବୌଦ୍ଧ ପଣ୍ଡିତମାନେ ଆହ୍ୱାନ କରିଥିଲେ ନାଳନ୍ଦା ବିଶ୍ୱବିଦ୍ୟାଳୟର ଆଚାର୍ଯ୍ୟମାନଙ୍କୁ ତର୍କ ଯୁଦ୍ଧ କରିବାକୁ ; ଏବଂ ଭାରତ ଇତିହାସରେ ମୁସଲମାନ ଯୁଗବେଳେ ଶତ ଶତ ବର୍ଷଧରି ଏହି ଉତ୍କଳଭୂମି ହୋଇଥିଲା ହିନ୍ଦୁ ଶିକ୍ଷା ଓ ସଂସ୍କୃତିର କେନ୍ଦ୍ରସ୍ଥଳ ।

କିନ୍ତୁ ପ୍ରାଚୀନ ଉତ୍କଳର ଏହି ଗରିମାମୟୀ କୀର୍ତ୍ତିଗାଥା ଉପରେ ଦୃଷ୍ଟିପାତ କରିବାର ପ୍ରୟୋଜନୀୟତା କ'ଣ ? ଆଜି ଏହି ପ୍ରଗତିର ଯୁଗରେ ଛିଡ଼ା ହୋଇ ମନ ମଧ୍ୟକୁ ସ୍ୱତଃ ଏହି ପ୍ରଶ୍ନ ଆସୁଛି—ଯେଉଁ ଅତୀତ ମୃତ, କବର ମଧ୍ୟରୁ ସେହି ଅତୀତର ଚୂର୍ଣ୍ଣିଭୂତ ଅସ୍ଥିକଙ୍କାଳ ଖୋଳି ବାହାର କରି ଲାଭ କ'ଣ ? ଦେଶ ଆଜି ପ୍ରଗତି ପଥରେ ଅଗ୍ରଗାମୀ ; ଭବିଷ୍ୟର ରଙ୍ଗୀନ କଳ୍ପନାରେ ଦେଶବାସୀ ଆଜି ଅଧୀର । ଏପରି ବେଳେ ଅତୀତ ଉପରକୁ ଫେରି ଚାହିଁବାର ସମୟ କାହିଁ ଏବଂ ଫେରି ଚାହିଁଲେ ଲାଭ ବା କ'ଣ ? ପ୍ରଗତିର ଧ୍ୱଜାତଳେ ଅତୀତର ଆରାଧନା କେବଳ ପ୍ରତିକ୍ରିୟାଶୀଳତା କିମ୍ବା ରକ୍ଷଣଶୀଳତାର ପରିଚୟ ଦିଏ ସିନା !

ମାତ୍ର ଏହିଠାରେ ପ୍ରାଚୀନ ଚୀନ ଦେଶର ଗୋଟିଏ ପ୍ରବାଦ କଥା ମନେପଡ଼େ । ଥରେ ଜଣେ କର୍ମକ୍ଲାନ୍ତ ବୃଦ୍ଧ ବୀରପୁରୁଷ ନିଜ ବିଗତ ଜୀବନର ବିବିଧ ପ୍ରକାରର ଘଟଣା ସବୁକୁ ସ୍ମରଣ କରି ନିଜର ଶାନ୍ତିମୟ ଜୀବନ ପ୍ରତି ବିରକ୍ତି ପ୍ରକାଶ କରିଥିଲେ ଏବଂ ଯେତେବେଳେ ସେ ଗୋଟିଏ ଅତି କ୍ଷୁଦ୍ର ଶିଶୁକୁ ସମ୍ମୁଖରେ ଦେଖି ଦୁଃଖ ପ୍ରକାଶ କରି କହିଥିଲେ "ପୁନର୍ବାର ଏହି ଶିଶୁଟିର ଅବସ୍ଥାକୁ ଫେରିଯାଇ ହୁଅନ୍ତା କି ! କେଡ଼େ ସୁଖୀ ଏହି ଶିଶୁଟି" କର୍ମକ୍ଲାନ୍ତ ବୀରପୁରୁଷଙ୍କର ଏପରି ଉକ୍ତି ଶୁଣି ସେଠାରେ ଜଣେ ଦାର୍ଶନିକ ତାହାଙ୍କୁ କହିଥିଲେ, "Forget thy past and thou art an infant too." ଅର୍ଥାତ୍ "ନିଜର ଅତୀତ ଭୁଲନ୍ତୁ, ତାହାହେଲେ ଆପଣ ମଧ୍ୟ ସେହି ଶିଶୁ ।" ବାସ୍ତବିକ୍ ଯେ କ୍ଷୁଦ୍ର ଶିଶୁ ତା'ର ଜୀବନରେ ଅତୀତ

ବୋଲି କିଛି ନାହିଁ, କାରଣ ପୃଥିବୀରେ ସେ ସଦ୍ୟଜାତ। ତା'ର ଗର୍ବ କରିବାର କିଛି ନାହିଁ ; କାରଣ ତା'ର ନିଜର ମାନ, ସମ୍ମାନ, ଯଶ, ଖ୍ୟାତି, ଏ ସବୁ ବୋଲି କିଛି ନାହିଁ ; କିନ୍ତୁ ମନୁଷ୍ୟର ବୟସ ପ୍ରାପ୍ତି ସଙ୍ଗେ ସଙ୍ଗେ ତା'ର ଗୋଟିଏ ଅତୀତ ମଧ୍ୟ ଗଠିତ ହୁଏ। ସେହି ଅତୀତ ଦେହରେ ତା'ର ସୁଦିନ ଦୁର୍ଦ୍ଦିନର କେତେ ଘଟଣା ସ୍ମରଣୀୟ ହୋଇ ଲାଗି ରହେ। ଯେ ବୀରପୁରୁଷ, ତା'ର ଅତୀତ କେତେ କେତେ ଗୌରବାନ୍ୱିତ ଘଟଣାରେ ମଣ୍ଡିତ ଥାଏ ଏବଂ ସେହି ସବୁକୁ ସ୍ମରଣ କରି ଜୀବନ ପଥରେ ସେ କେତେ ଗର୍ବ ଅନୁଭବ କରିଥାଏ। ଯଦି ଏପରି ଜଣେ ବୟୋପ୍ରାପ୍ତ ମନୁଷ୍ୟ ନିଜର ଅତୀତ ଭୁଲିଯାଏ ତେବେ ସେହି ଅତୀତ ଭୁଲିଲା ସଙ୍ଗେ ସଙ୍ଗେ ସେ ନିଜ ଜୀବନର ଯଶ, ଖ୍ୟାତି, ମାନ, ସମ୍ମାନ, କର୍ମ, କୃତୀତ୍ୱ, ସବୁ ଭୁଲି ଏକ ଶିଶୁ ସନ୍ତାନର ଯାହା ମାନସିକ ଅବସ୍ଥା ସେହି ଅବସ୍ଥା ଲାଭ କରିବ ମାତ୍ର।

ଠିକ୍ ସେହିପରି ଯଦି ଗୋଟିଏ ଜାତି ତା'ର ଅତୀତ ଭୁଲି ବସିବ ତେବେ ସେ ଜାତି ନିଜର ପରମ୍ପରା, ନିଜର ଆଭିଜାତ୍ୟ, ନିଜର ସଭ୍ୟତା, ସମୃଦ୍ଧି, ଶିକ୍ଷା, ଦୀକ୍ଷା ସମସ୍ତ ଭୁଲି ଶେଷରେ ଏକ କ୍ଷୁଦ୍ର ଶିଶୁର ଅବସ୍ଥା ଭଜିବ। ସେଥିପାଇଁ ପୃଥିବୀର ପ୍ରତ୍ୟେକ ଜାତି ନିଜର ଅତୀତ ଗୌରବ ଚିରସ୍ମରଣୀୟ ରଖିବା ପାଇଁ ବ୍ୟାକୁଳ। ଯେଉଁ ଜାତିର ଅତୀତ ବାସ୍ତବିକ୍ ମହାନ୍ ସେ ଜାତି ସଦାବେଳେ ସେହି ମହାନ୍ ଅତୀତ ଉପରେ ଆଲୋକପାତ କରି ରଖିବାକୁ ଚେଷ୍ଟା କରେ। ଏବଂ ଯେଉଁ ଜାତି ସେହି ଚେଷ୍ଟାରୁ ବିରତ ରହେ ସେ ଜାତି ନିଜର ଅତୀତକୁ ଅନ୍ଧକାରାଚ୍ଛନ୍ନ ରଖିବା ସଙ୍ଗେ ସଙ୍ଗେ ଭବିଷ୍ୟତ ପାଇଁ ଆଲୋକ ଦେଖାଇବା ପାଇଁ ମଧ୍ୟ ଅସମର୍ଥ ହୋଇପଡ଼େ। ଅତୀତ ହେଉଛି ବର୍ତ୍ତମାନର ଜନନୀ ଏବଂ ବର୍ତ୍ତମାନର ଗର୍ଭରୁ ଜନ୍ମନିଏ ଭବିଷ୍ୟତ। ଅତୀତ ଚିରଦିନ ବର୍ତ୍ତମାନର ଆଦର୍ଶ ଓ ପ୍ରେରଣା ରୂପେ କାର୍ଯ୍ୟକରେ ଏବଂ ସେଥିରେ ଅନୁପ୍ରାଣିତ ହୋଇ ବର୍ତ୍ତମାନ ଭବିଷ୍ୟତ ପାଇଁ ନିର୍ଦ୍ଦେଶ ରଖିଯାଏ। ଅତୀତର ବୀରପୁରୁଷମାନେ ପ୍ରତ୍ୟେକ ଜାତିର ପୂଜ୍ୟ ; ଅତୀତର କୀର୍ତ୍ତିରାଜି ପ୍ରତ୍ୟେକ ଦେଶର ଅମୂଲ୍ୟ ସମ୍ପଦ ; ଏବଂ ଅତୀତର ଇତିହାସ ପ୍ରତ୍ୟେକ ଦେଶବାସୀଙ୍କର ପାଠ୍ୟ। ଯେଉଁ ଦେଶର ଅଧିବାସୀମାନଙ୍କ ପାଖରେ ଏହାର ବ୍ୟତିକ୍ରମ ପରିଲକ୍ଷିତ ହୁଏ ସେ ଦେଶର ଅଧିବାସୀମାନେ ଶିଶୁସନ୍ତାନ ପରି ବିଶ୍ୱ ପରିବାର ମଧ୍ୟରେ ଗୌରବହୀନ ଆସନ ପାଇଥାଆନ୍ତି। ଅତୀତର କୀର୍ତ୍ତି,

ଅତୀତର ବୀରତ୍ୱ ଏ ସମସ୍ତ ମଧ୍ୟରୁ ପ୍ରେରଣା ଓ ଉତ୍ତେଜନା ପାଇ ବାରମ୍ବାର ଗୋଟିଏ ଜାତି ଦୁର୍ଦ୍ଦିନ ମଧ୍ୟରେ ମୁଦ୍ଧା ଅଗ୍ରଗାମୀ ହେବାର ସ୍ପୃହା ପାଏ ।

ଅତୀତର ସାକ୍ଷୀ ହେଉଛି ଇତିହାସ । ଅତୀତକୁ ସ୍ମରଣ କରିବା ପାଇଁ ପ୍ରତ୍ୟେକ ଜାତିକୁ ତା'ର ଇତିହାସ ପୃଷ୍ଠା ଖୋଲିବାକୁ ପଡ଼େ ଏବଂ ସେହି ଇତିହାସ ପୃଷ୍ଠାରୁ ଅତୀତର ଗୌରବଗାଥା ଖୋଜି ଆଣି ନବ ପ୍ରେରଣାରେ ଅନୁପ୍ରାଣିତ ହେବାକୁ ହୁଏ । ପ୍ରତ୍ୟେକ ଦେଶର ଅଗ୍ରଗତି ପାଇଁ ସେ ଦେଶର ଇତିହାସ ଅସରନ୍ତି ପ୍ରେରଣା ଦେଇ ଆସିଛି । ସେଥିପାଇଁ ପ୍ରଗତି ପଥରେ ଯେତେ ଆଗେଇ ଗଲେ ମଧ୍ୟ ପୃଥିବୀର କୌଣସି ବୃହତ୍ ଜାତି ନିଜର ଅତୀତ ଭୁଲି ନାହିଁ କିମ୍ବା ଇତିହାସ ପ୍ରତି ଅବହେଳା କରି ନାହିଁ । ଆଜି ପ୍ରଗତିର ବହୁ ଊର୍ଦ୍ଧ୍ୱରେ ପହଞ୍ଚି ମଧ୍ୟ ଜାପାନ ଅଧିବାସୀମାନେ ନିଜ ଦେଶର ଇତିହାସକୁ ଧର୍ମଗ୍ରନ୍ଥରୂପେ ପୂଜା କରନ୍ତି । ବିଶାଳ ଚୀନ ଦେଶରେ ମଧ୍ୟ ପୂର୍ବପୁରୁଷମାନଙ୍କୁ ପୂଜା କରି ଅତୀତ ସ୍ମରଣ କରିବା ସେ ଦେଶବାସୀଙ୍କର ଧର୍ମର ଏକ ବିଶିଷ୍ଟ ଅଙ୍ଗ । ଏହି ପ୍ରଗତିଶୀଳ ଶତାବ୍ଦୀରେ ମଧ୍ୟ ଦିନେ ମୁସୋଲିନୀ ଦାରିଦ୍ର୍ୟ ପ୍ରପୀଡ଼ିତ, ଅଧଃପତିତ ଇଟାଲୀୟ-ମାନଙ୍କ ମନରେ ନବ ଉନ୍ମାଦନା ଖେଳାଇ ଦେଇଥିଲେ କେବଳ ଇଟାଲିର ପ୍ରାଚୀନ ଇତିହାସ ଆବୃତ୍ତି କରି ଏବଂ ଏକ ଗୌରବୋଜ୍ଜ୍ୱଳ ଅତୀତର ସ୍ୱାଦ ଦେଇ । ସେହି ଅତୀତ ଗୌରବର ଉନ୍ମାଦନାରେ ଇଟାଲୀୟ ତରୁଣ ତରୁଣୀ ଦେଖି ପାରିଥିଲେ ଜଣେ ସିଜାର କିମ୍ବା ଅଗଷ୍ଟାସ୍‌ଙ୍କର ପ୍ରାଚୀନ ରୋମୀୟ ସାମ୍ରାଜ୍ୟ ଏବଂ ସେହି ସାମ୍ରାଜ୍ୟର ପୁନରୁଦ୍ଧାର କଲେ ସେମାନେ ଲକ୍ଷ ଲକ୍ଷ ସଂଖ୍ୟାରେ ଢାଳି ଦେଇଥିଲେ ସେମାନଙ୍କର ଜୀବନ । ଠିକ୍ ସେହିପରି ଜାର୍ମାନ ଜନତାକୁ ସନାତନ ଆର୍ଯ୍ୟଜାତିର ସନ୍ତାନ ବୋଲି ଉଦ୍‌ବୋଧନ ଦେଇ ସେମାନଙ୍କ ମନରେ ହିଟ୍‌ଲର ଯେଉଁ ପ୍ରାଚୀନ ମହତ୍ତ୍ୱର ଉତ୍ତେଜନା ଦେଇଥିଲେ ଏବଂ ପ୍ରାଚୀନ ଟିଉଟନ-ମାନଙ୍କର ଲୁପ୍ତ-ଗୌରବ ଫେରାଇ ଆଣିବାକୁ ଯେଉଁ ଇଙ୍ଗିତ ପ୍ରଦାନ କରିଥିଲେ ତା' ଫଳରେ ଦିନେ ଜାର୍ମାନ ଜାତି ସାରା ପୃଥିବୀକୁ ଟଳମଳ କରିଦେଇ ପାରିଥିଲେ । ଆଜି ପ୍ରଗତିର ଶୀର୍ଷସୀମା ଆରୋହଣ କରି ମଧ୍ୟ ରୁଷ୍‌ବାସୀମାନେ ନିଜ ଅତୀତର ଗୌରବ ଉଦ୍ଧାର ପାଇଁ ବ୍ୟସ୍ତ । ଏପରିକି ଯେଉଁ ଜାତିମାନେ ଆଜି ପୃଥିବୀ ପୃଷ୍ଠରେ ନୂତନ, ଯେଉଁମାନଙ୍କର ଅତୀତ ବୋଲି ପ୍ରାୟ କିଛି ନାହିଁ, ସେପରି ଜାତି-ମାନେ ମଧ୍ୟ ନିଜର ଗୋଟିଏ ଅତୀତ ସୃଷ୍ଟି କରିବାକୁ ବ୍ୟାକୁଳ ଏବଂ ସେହି ଅତୀତର

ଅତୀତ ମଧ୍ୟରୁ ଯେତକ ଟିକିଏ କୃତୀତ୍ୱର ସନ୍ଧା ମିଳିବ ସେତିକିରେ ଗର୍ବ ଅନୁଭବ କରିବାକୁ ଇପ୍ସିତ । ଯେତିକି ଟିକିଏ ଅତୀତ ଅଛି ତାହାରି ମଧ୍ୟରୁ ଆଜି ଆମେରିକାର ଯୁକ୍ତରାଷ୍ଟ୍ର ଜଣେ ଜର୍ଜ ୱାସିଂଟନ୍ ; ବେଞ୍ଜାମିନ୍ ଫ୍ରାଙ୍କଲିନ୍ କମ୍ବା ଅବ୍ରାହାମ୍ ଲିଙ୍କନ୍ ପ୍ରଭୃତିଙ୍କର ବୀରତ୍ୱ ଓ କୃତୀତ୍ୱ ବାହାର କରି ଏବଂ ସେହି-ମାନଙ୍କ ନାମ ଧରି ପୃଥିବୀବାସୀଙ୍କ ଆଗରେ ଗର୍ବ କରେ । ଅଥଚ ଏପରି ଦେଶ ତୁଳନାରେ ଭାରତର ଅତୀତ କେତେ ସୁଗଭୀର ଏବଂ ଭାରତର ଇତିହାସ କେତେ ସୁମହାନ୍ । ଭାରତ ଯଦି ଆଜି ପୃଥିବୀର ଜାତିପୁଞ୍ଜ ସମ୍ମୁଖରେ ଏକ ସମ୍ମାନଜନକ ସ୍ଥାନ ଅଧିକାର କରିଥାଏ ତେବେ ସେଥିପାଇଁ ଅନେକ ପରିମାଣରେ କେବଳ ଏ ଦେଶର ଇତିହାସହିଁ ଦାୟୀ ଏବଂ କହିବା ବାହୁଲ୍ୟ ଯେ ଭାରତର ସ୍ୱାଧୀନତା ସଂଗ୍ରାମ ଓ ଜାତୀୟ ଜାଗରଣ ପଛରେ ସର୍ବଶ୍ରେଷ୍ଠ ପ୍ରେରଣା ରୂପେ ଯଦି କିଛି କାମ କରିଥାଏ ସେ ହେଉଛି ପ୍ରାଚୀନ ମହତ୍ତ୍ୱର ସ୍ମୃତି ।

ଭାରତର ଗୌରବୋଜ୍ଜ୍ୱଳ ଅତୀତକୁ ଉତ୍କଳର ଦାନ ଅତି ମହାର୍ଘ । ଭାରତୀୟ ଧର୍ମ, ସଭ୍ୟତା, ସ୍ଥାପତ୍ୟ, କଳା, ସଙ୍ଗୀତ ଓ ବାଣିଜ୍ୟ ଏ ସମସ୍ତ କ୍ଷେତ୍ରରେ ପ୍ରାଚୀନ ଉତ୍କଳୀୟମାନଙ୍କର ବିଶେଷତ୍ୱପୂର୍ଣ୍ଣ କୃତୀତ୍ୱ ରହିଛି । କିନ୍ତୁ ଦୁଃଖର ବିଷୟ ଆଜିଯାଏ ଉତ୍କଳ ଭୂମିର ଇତିହାସ ଅବହେଳିତ ଅବସ୍ଥାରେ ପଡ଼ି ରହିଛି । ଆଜିଯାଏ ଉତ୍କଳୀୟ ସମୃଦ୍ଧିର ଅକଳନ୍ତ ସମାଚାର ଏ ଦେଶର ଧ୍ୱଂସସ୍ତୂପମାନଙ୍କ ମଧ୍ୟରେ ନିହିତ ରହିଛି । ଆଜିଯାଏ ଏ ମାଟିର ସନ୍ତାନମାନଙ୍କ ବୀରତ୍ୱର କେତେ ଅମର କାହାଣୀ ଭାରତ ଇତିହାସରେ ସ୍ଥାନ ପାଇ ନାହିଁ । ଭାରତ ଇତିହାସକୁ ଉତ୍କଳର କେତେ କେତେ ଦାନ ଆଜିଯାଏ ଭାରତବାସୀ କ'ଣ ଉତ୍କଳବାସୀଙ୍କୁ ମଧ୍ୟ ଅଜଣା । ସ୍ୱାଧୀନତା ଲାଭ ପରେ ଭାରତ ଭୂମିରେ ଯେଉଁ ଐତିହାସିକ ପରିବର୍ତ୍ତନ ସଂଘଟିତ ହୋଇଛି ସେଥି ମଧ୍ୟରେ ଆଜି ସାରା ଭାରତ ନିଜ ଅତୀତର ପରମ୍ପରା ଆଡ଼କୁ ଫେରିଚାହିଁ ସେହି ମହାନ୍ ପରମ୍ପରାର ଆଦର୍ଶରେ ଭବିଷ୍ୟତ ଗଠନ କରିବାକୁ ଯାଉଛି । ଭାରତର ଅନ୍ୟ ଐତିହାସିକ ସ୍ଥାନମାନଙ୍କ ସହ ତାଳ ମିଳାଇ ଆଜି ଉତ୍କଳବାସୀମାନଙ୍କୁ ମଧ୍ୟ ନିଜର ଅବହେଳିତ ଇତିହାସ ଖୋଲିବାକୁ ପଡ଼ିବ ଏବଂ ଅତୀତର ଅନ୍ଧକାରାଚ୍ଛନ୍ନ କୀର୍ତ୍ତିରାଜି ଉପରେ ଆଲୋକପାତ କରିବାକୁ ହେବ । ତେଣୁ ଅତୀତର କବର ଖୋଳି ଅସ୍ଥିକଙ୍କାଳ ଖୋଜିବାରେ ମଧ୍ୟ ସାର୍ଥକତା ଅଛି । ପ୍ରକୃତ ପଥରେ ଏ ମଧ୍ୟ ଏକ ଜାତୀୟ ଜାଗୃତି ।

ଉତ୍କଳୀୟ ଧର୍ମ ଓ ସଭ୍ୟତାର ଇତିହାସ ଲେଖିବା ପାଇଁ ଚେଷ୍ଟା କରିବା କେବଳ ଦୁଃସାହସ ବ୍ୟତୀତ ଆଉ କିଛି ନୁହେଁ । ଐତିହାସିକ ବିଷୟବସ୍ତୁ ପ୍ରଚୁର ପରିମାଣରେ ଉତ୍କଳର ବିଭିନ୍ନ ସ୍ଥାନରେ ପଡ଼ିରହିଛି କିନ୍ତୁ ସେ ସବୁରୁ ତଥ୍ୟ ସଂଗ୍ରହ କରି ଇତିହାସ ଆକାରରେ ଲେଖି ରଖିବା ପାଇଁ ଯେତିକି ଶକ୍ତି ଓ ସାମର୍ଥ୍ୟ ଆବଶ୍ୟକ ତାହା ଏ ପ୍ରଦେଶର ଲେଖକଙ୍କର ନାହିଁ । ଓଡ଼ିଶାର ଲେଖକମାନଙ୍କର ଦୁର୍ଦ୍ଦଶା କେବଳ ସେହି ଲେଖକମାନଙ୍କୁହିଁ ଜଣା, ଅନ୍ୟମାନଙ୍କୁ ନୁହେଁ । ଏଠାରେ ଲେଖକ ବହୁ କଷ୍ଟରେ ଲେଖେ, କିନ୍ତୁ ତା'ର ଲେଖା ପ୍ରକାଶ କରି ଜନସାଧାରଣଙ୍କ ଆଗରେ ପ୍ରଚାର କରିବା ପାଇଁ ପ୍ରକାଶକ ନ ଥାନ୍ତି । ତେଣୁ ଲେଖକ ଦେବୀ ସରସ୍ୱତୀଙ୍କର ଦ୍ୱାହି ଦେଇ ବିଶ ପରିବାରକୁ ଉପବାସ ରଖି ଶେଷରେ ନିଜ ବ୍ୟୟରେ ବହି ପ୍ରକାଶ କରେ । କିନ୍ତୁ ସେ ବହି ପଢ଼ିବା ପାଇଁ ଓଡ଼ିଶାରେ ପାଠକ ନ ଥାନ୍ତି । ଶେଷରେ ଲେଖକର ବହିଗଦା ଉଇହଙ୍କା ତଳେ ଆଶ୍ରୟ ନିଏ । ସେହିଠାରେ ଲେଖକ ଦୀର୍ଘଶ୍ୱାସ ତ୍ୟାଗକରି ଦେଖିପାରେ ନିଜ ପରିଶ୍ରମର ଚରମ ପରିଣତି ଏବଂ ବାଗ୍‌ଦେବୀଙ୍କର ଅପାର କୃପା । ବହୁଦିନ ତଳେ କବିବର ରାଧାନାଥ ଯାହା ମର୍ମେ ମର୍ମେ ଅନୁଭବ କରି ଲେଖିଥିଲେ ସେହିକଥା ଅପ୍ରଯୋଜ୍ୟ ହେଲେ ଲିଖିବା ମନେ ପଡ଼େ,

'ଦେବୀ ବୀଣାପାଣି କେଉଁ ଶାପ ଫଳେ,
କରୁଣା ତୋହର ଊଣା ଏ ଉତ୍କଳେ ।'

ଆଦିମକାଳରୁ ଆରମ୍ଭ କରି ଓଡ଼ିଶାର ସ୍ୱାଧୀନତା ଲୋପପର୍ଯ୍ୟନ୍ତ ସ୍ତରେ ସ୍ତରେ ଏ ଦେଶ ମାଟିରେ ଯେତେସବୁ ଧର୍ମ, ଉପଧର୍ମ ଓ ସଭ୍ୟତାର ଛାପ ପଡ଼ିଛି ସେହି ସବୁ ଲେଖି "ଯୁଗେ ଯୁଗେ ଉତ୍କଳୀୟ ଧର୍ମ ଓ ସଭ୍ୟତା" ନାମକ ଖଣ୍ଡିଏ ବୃହତ୍ ପୁସ୍ତକ ପ୍ରକାଶ କରିବାକୁ ଆଶାକରି ବହୁଦିନ ଧରି ପରିଶ୍ରମ କରୁଥିଲି । କିନ୍ତୁ ସେ ଆଶା ଦୁରାଶାରେ ପରିଣତ ହେଲା । ସମସ୍ତ ବିଷୟବସ୍ତୁକୁ ଖଣ୍ଡିଏ ପୁସ୍ତକ ଆକାରରେ ପ୍ରକାଶ କରିବାକୁ ଆର୍ଥିକ ଦୃଷ୍ଟିରୁ ସମର୍ଥ ହୋଇ ନ ପାରି ପ୍ରଥମେ ବହିର ଏହି ପ୍ରଥମ ଭାଗଟି ମୁଦ୍ରଣ କରିଇଲି । ଏହି ପ୍ରଥମ ଭାଗର ରଚନାଗୁଡ଼ିକ ପାଣ୍ଡୁଲିପିରେ ଯେପରି ଭାବରେ ଲେଖିଥିଲି ପ୍ରେସ୍‌କୁ ପଠାଇଲା ବେଳେ ସେଥିରୁ ଅଧେ ଲେଖାଏଁ ବାଦ୍ କରି ଦେବାକୁ ପଡ଼ିଲା । କାରଣ ପାଣ୍ଡୁଲିପି ପାଠକରି ମୋର କେତେକ ବନ୍ଧୁ ମତ ପ୍ରକାଶ କଲେ ଯେ ଗବେଷଣାମୂଳକ ଶୁଷ୍କ ବିଷୟବସ୍ତୁଗୁଡ଼ିକ

ଜନସାଧାରଣଙ୍କ ଦ୍ୱାରା ଆଦର ସହକାରେ ଗୃହୀତ ହେବ ନାହିଁ । ମା ଲକ୍ଷ୍ମୀଙ୍କ ଆଶୀର୍ବାଦରୁ ବହିର କଳେବର ବୃଦ୍ଧି କରିବା ପାଇଁ ମୋର ମଧ୍ୟ ସଦାବେଳେ ଭୟ ଥାଏ । ସୁତରାଂ ଅନେକ ଦିଗରୁ ଭାବି ଚିନ୍ତି ଶେଷରେ ପ୍ରତ୍ୟେକ ରଚନାରୁ ନୀରସ ଗବେଷଣାଗୁଡ଼ିକୁ ବାଦ୍‌ଦେଇ ସର୍ବସାଧାରଣଙ୍କ ଉପଯୋଗୀ ହେଲା ଭଳି ସହଜ କରିବାକୁ ବାଧ୍ୟ ହେଲି । ପରିଶ୍ରମ ସହକାରେ ଯାହା ଯତ୍‌କିଞ୍ଚିତ ଲେଖିଥିଲି ତାହାର ଅଧିକାଂଶ କେବଳ ସେହି ପାଣ୍ଡୁଲିପି ଦେହରେ ବିଲୀନ ହୋଇଲା । ଏହା ହେଲା ପ୍ରଥମ ଭାଗର ଦଶା । ପୁସ୍ତକର ଦ୍ୱିତୀୟ ଭାଗ ପାଇଁ ଯେଉଁ ସମସ୍ତ ରଚନା ରହିଛି ତାହା ପ୍ରଥମ ଭାଗର ରଚନାଗୁଡ଼ିକ ଅପେକ୍ଷା ଅଧିକତର ବିଶେଷତ୍ୱ-ପୂର୍ଣ୍ଣ । କିନ୍ତୁ ସେ ସବୁ ଚିରଦିନ ପାଇଁ ସେହି ପାଣ୍ଡୁଲିପି ଆକାରରେ ରହିବ, ଏହା ବ୍ୟତୀତ ଅପର ଆଶା ବୋଧହୁଏ ନାହିଁ । ଇତି ।

ଉଷାମେସ୍, ବାଲେଶ୍ୱର ।
୨୬ - ୧ - ୬୨

**ଶ୍ରୀ ମନ୍ମଥ ନାଥ ଦାସ**

# ବିଷୟ ସୂଚୀ

| ବିଷୟ | ପୃଷ୍ଠାଙ୍କ |
|---|---|




# ଦ୍ୱିତୀୟ ଭାଗର ବିଷୟବସ୍ତୁ





# ପ୍ରାଗୈତିହାସିକ ଆଦିମ ଜାତି

ଆଜି ଉତ୍କଳର ବିସ୍ତୃତ ବନାଞ୍ଚଳମାନଙ୍କରେ ଯେଉଁ ସାନ୍ତାଳ, ହୋ, କୋଲ୍ହ, କନ୍ଧ, ଚେଞ୍ଚୁ, ମୁଣ୍ଡା, ସଉରା, କୋୟା ପ୍ରଭୃତି ଜାତିର ମନୁଷ୍ୟ ବସବାସ କରୁଛନ୍ତି, ସେହିମାନେହିଁ ଏଦେଶ ମାଟିର ପ୍ରଥମ ସନ୍ତାନ । ଶତ ସହସ୍ର ବର୍ଷର କେଉଁ ପୁରୁଣା ଯୁଗରେ ଭଗବାନ ପ୍ରଥମେ ପୃଥିବୀ ପୃଷ୍ଠରେ ଆଦି ମନୁଷ୍ୟମାନଙ୍କୁ ସୃଷ୍ଟି କଲେ କିମ୍ବା ବିବର୍ତ୍ତନ ପଥରେ କେବେ ଧୀରେ ଧୀରେ ପଶୁର ଶରୀରରୁ ମନୁଷ୍ୟ ତାର ସ୍ୱ ଆକୃତି ଧାରଣକଲା, ଏସବୁ ବିଷୟ ଇତିହାସର ଶ୍ୟେନ ଚକ୍ଷୁର ବାହାରେ । ଇତିହାସ କେବଳମାତ୍ର କେତେକ ସହସ୍ର ବର୍ଷ ପଶ୍ଚାତକୁ ତାର ତୀକ୍ଷ୍ଣ ଦୃଷ୍ଟି ଭେଦ କରାଇ ପାରିଛି ଏବଂ ଯେତିକି ପଶ୍ଚାତକୁ ଇତିହାସ ଫେରି ଚାହିଁ ପାରିଛି, ସେଠାରେ ସେ ପୃଥିବୀର ଆଦିମାନବମାନଙ୍କୁ ବସବାସ କରିବାର ଦେଖିଛି । ପୃଥିବୀର ପ୍ରତ୍ୟେକ ସ୍ଥାନରେ ଦିନେ ସେ ସ୍ଥାନର ଆଦିମ ଅଧିବାସୀମାନେହିଁ ବାସ-କରୁଥିଲେ । ପରବର୍ତ୍ତୀ ଯୁଗରେ ହୁଏତ ଅନ୍ୟ ସଭ୍ୟ ଜାତିମାନଙ୍କର ଆଗମନ ଓ ଆକ୍ରମଣ ଫଳରେ ଏହି ଆଦିମମାନଙ୍କୁ ସ୍ଥାନାନ୍ତରିତ ହେବାକୁ ହୋଇଛି, କିମ୍ବା ଏକାଥରକେ କୌଣସି କୌଣସି ସ୍ଥାନରୁ ଲୋପ ପାଇ ଯିବାକୁ ପଡ଼ିଛି । ତଥାପି ପୃଥିବୀର ଅନେକ ସ୍ଥାନରେ ସେମାନେ ଆଜିସୁଦ୍ଧା ସେମାନଙ୍କର ଅସ୍ତିତ୍ୱ ରକ୍ଷା କରିପାରିଛନ୍ତି । ଭାରତକୁ ଦ୍ରାବିଡ଼ ଏବଂ ଆର୍ଯ୍ୟମାନଙ୍କର ଆସିବାର ବହୁପୂର୍ବରୁ ଏଦେଶ ଏହି ଆଦିମ ଅଧିବାସୀଙ୍କର ଜନ୍ମଭୂମି ଏବଂ କ୍ରୀଡ଼ାସ୍ଥଳୀ ଥିଲା । ଉତ୍କଳ-ଖଣ୍ଡରେ ଯେଉଁମାନେ ଆଜି ଆଦିବାସୀ ନାମରେ ଖ୍ୟାତ, ସେମାନେ ଭାରତର ସେହି ଆଦିମ ଅଧିବାସୀଙ୍କର ବଂଶଧର । ଅନେକଦିନଧରି ଏହି ଆଦିବାସୀ ବା କୋଲ୍ହ, କନ୍ଧ, ସାନ୍ତାଳ, ହୋ ପ୍ରଭୃତି ଜାତିର ଲୋକମାନଙ୍କୁ ଦ୍ରାବିଡ଼ ନାମରେ ଆଖ୍ୟାତ କରାଯାଉଥିଲା । ଭାରତବର୍ଷର ସମଗ୍ର ଜନତାକୁ ପ୍ରଧାନତଃ ଦୁଇଭାଗରେ ବିଭକ୍ତ କରାଯାଉଥିଲା—ଆର୍ଯ୍ୟ ଏବଂ ଅନାର୍ଯ୍ୟ । ଏବଂ ଏହି ଅନାର୍ଯ୍ୟମାନଙ୍କୁ ଦ୍ରାବିଡ଼ ଜାତିର ମନୁଷ୍ୟବୋଲି ବିଶ୍ୱାସ କରାଯାଉଥିଲା । କିନ୍ତୁ ଅଧୁନା ଜାତିତତ୍ତ୍ୱବିଦ୍‌ମାନେ ନିର୍ଭୁଲଭାବେ ଜାଣିପାରିଛନ୍ତି ଯେ ଦ୍ରାବିଡ଼ମାନେ ସାନ୍ତାଳ, କନ୍ଧ ପ୍ରଭୃତି ଆଦିବାସୀ ସଂପ୍ରଦାୟର ଲୋକ ନୁହଁନ୍ତି ; ସେମାନେ ପରବର୍ତ୍ତୀ ଯୁଗର ଏକ ଉନ୍ନତ ସଭ୍ୟତାର ମନୁଷ୍ୟ । ମହେଞ୍ଜୋଦାରୋ ଏବଂ ହରପ୍ପାର ଧ୍ୱଂସାବଶେଷ ପୃଥିବୀ ଗର୍ଭରୁ ଆବିଷ୍କୃତ ହେବା ପରେ ଦ୍ରାବିଡ଼ୀୟ ସଭ୍ୟତାର ପ୍ରକୃତ ପରିଚୟ ମିଳିଛି, ଏବଂ ସେ ସଭ୍ୟତା ଯେ ଅତି ଉନ୍ନତ ସ୍ତରର ସଭ୍ୟତା ଥିଲା ଏଥିରେ ସନ୍ଦେହ ନାହିଁ ।

ଅନେକାନେକ କାରଣରୁ ନିଃସନ୍ଦେହରୂପେ ଏହା ପ୍ରମାଣ କରାଯାଇଛି ଯେ ଆଜି-କାଲିକାର ଆଦିବାସୀମାନେ ଦ୍ରାବିଡ଼ମାନଙ୍କର ବଂଶଧର ନୁହନ୍ତି—ଆଦିବାସୀ ଏବଂ ଦ୍ରାବିଡ଼ ଏ ଦୁହେଁ ପରସ୍ପରଠାରୁ ସମ୍ପୂର୍ଣ୍ଣ ପୃଥକ । ପରବର୍ତ୍ତୀ ଅଧ୍ୟାୟରେ ଆମ୍ଭେମାନେ ଦ୍ରାବିଡ଼ମାନଙ୍କ ବିଷୟ ଆଲୋଚନା କରିବୁଁ । ଏହି ଅଧ୍ୟାୟରେ ପ୍ରାଗ୍‌ଦ୍ରାବିଡ଼ୀୟ ଆଦିବାସୀମାନଙ୍କ ସମ୍ବନ୍ଧରେ ପଦେଅଧେ ଆଲୋଚନା କରାଯାଉ ।

ବିଖ୍ୟାତ ଜାର୍ମାନ ଜାତିତତ୍ତ୍ୱବିତ୍ ଏଗନ୍-ଭନ୍ ଏଇକ୍‌ଷ୍ଟାଦ୍ ଭାରତର ପ୍ରାଚୀନ ଜାତିମାନଙ୍କ ଉପରେ ଦୀର୍ଘକାଳଧରି ଗବେଷଣା କରି ମତ ପ୍ରକାଶ କରିଛନ୍ତି ଯେ ଅତି ସୁଦୂର ଅତୀତରେ, ଯେଉଁ ଅତୀତ ଭୂତତ୍ତ୍ୱବିତ୍‌ମାନଙ୍କ ଭାଷାରେ ତୁଷାର ଯୁଗ ବୋଲି ଖ୍ୟାତ, ସେ ଯୁଗରେ ସମଗ୍ର ଦକ୍ଷିଣ ଭାରତ ଏକ ପ୍ରକାର ନିଗ୍ରୋ ଜାତିର ମନୁଷ୍ୟମାନଙ୍କଦ୍ୱାରା ଅଧ୍ୟୁଷିତ ହେଉଥିଲା । ଭନ୍ ଏଇକ୍‌ଷ୍ଟାଦ୍ ଭାରତର ଏହି ପ୍ରାଚୀନତମ ମନୁଷ୍ୟମାନଙ୍କୁ ଭାରତୀୟ ନିଗ୍ରୋ ବୋଲି ଆଖ୍ୟା ଦେଇଛନ୍ତି । ଏହି ବିଶେଷଜ୍ଞଙ୍କ ମତରେ ପୃଥିବୀର ସେଇ ତୁଷାର ଯୁଗରେ, ଆଫ୍ରିକା ମହାଦେଶଠାରୁ ଆରମ୍ଭ କରି ଦକ୍ଷିଣ ଭାରତ, ଆଣ୍ଡାମାନ, ମାଳୟ ଏବଂ ପ୍ରଶାନ୍ତ ମହାସାଗରୀୟ ଦ୍ୱୀପପୁଞ୍ଜ ପର୍ଯ୍ୟନ୍ତ ଏହି ବିସ୍ତୃତ ଭୂଖଣ୍ଡ ନିଗ୍ରୋ ଜାତୀୟ ମନୁଷ୍ୟମାନଙ୍କର ବାସାଞ୍ଚଳ ଥିଲା ; ଏବଂ ଭାରତୀୟ ନିଗ୍ରୋମାନେ ଏହି ବିସ୍ତାରିତ ନିଗ୍ରୋ ଜାତିର ଏକ ଅଂଶ ମାତ୍ର । ହ୍ୟାକ୍‌ସ୍‌ଲେ ସାହେବ ଏହି ଭାରତୀୟ ଆଦିମମାନଙ୍କର ଅଷ୍ଟ୍ରେଲିଆ ମହାଦେଶର ଆଦିମମାନଙ୍କ ସହ ଜାତୀୟ ଘନିଷ୍ଠତା ଥିବାର ବିଶ୍ୱାସ କରନ୍ତି । ମିଷ୍ଟାର ଥାର୍‌ଷ୍ଟନ୍ ମଧ୍ୟ ଏହିପରି ଏକ ମତ ପୋଷଣ କରନ୍ତି ଏବଂ ତାହାଙ୍କ ମତାନୁଯାୟୀ ଭାରତର ଆଦିମମାନଙ୍କର ସିଂହଳ ଦ୍ୱୀପର ଆଦିମ ଅଧିବାସୀ ଭେଡ ଜାତୀୟ ଲୋକଙ୍କ ସହ, ସେଲିବାସର ଆଦିମ ଅଧିବାସୀ ତୋଆଲମାନଙ୍କ ସହ, ସୁମାତ୍ରା ଦ୍ୱୀପର ଆଦିମ ଜାତି ବାଟିନ୍ ଏବଂ ସମ୍ଭବତଃ ଅଷ୍ଟ୍ରେଲିଆ ମହାଦେଶର ଆଦିମ ଅଧିବାସୀମାନଙ୍କ ସହ ଜାତିଗତ ସମ୍ପର୍କ ଥିଲା । ଅର୍ଥାତ୍ ଏସବୁ ଆଦିମ ଜାତି ଏକ ମନୁଷ୍ୟ ଗୋଷ୍ଠୀର ଅନ୍ତର୍ଭୁକ୍ତ ।

ସୁତରାଂ ତୁଷାର ଯୁଗର ଏହି ଭାରତୀୟ ନିଗ୍ରୋମାନେ ବାସ୍ତବପକ୍ଷେ ଭାରତର ପ୍ରାଚୀନତମ ମନୁଷ୍ୟ । ସହସ୍ର ସହସ୍ର ବର୍ଷ ଧରି ଏହି ମନୁଷ୍ୟମାନେ ଭାରତର ଅପ୍ରତିଦ୍ୱନ୍ଦ୍ୱୀ ଅଧିକାରୀ ଥିଲେ, ଏଥିରେ ସନ୍ଦେହ ନାହିଁ । ତୁଷାର ଯୁଗର ଅବସାନ ପରେ ଯେତେବେଳେ ପ୍ରସ୍ତର ଯୁଗ ଆସିଲା ସେତେବେଳେ ମଧ୍ୟ ଏହି ମନୁଷ୍ୟମାନେ ଭାରତର ଏକମାତ୍ର ଅଧିବାସୀ । ଅବଶ୍ୟ ଏହି କୃଷ୍ଣାଙ୍ଗ ଆଦିମମାନେ ସେପରି ସଂଖ୍ୟା ବହୁଳ ନଥିଲେ, ତଥାପି ଭନ୍ ହେମେନଡର୍ଫଙ୍କ ଭାଷାରେ ହଜାର ହଜାର ବର୍ଷଧରି ଏହି କୃଷ୍ଣାଙ୍ଗ ଆଦିମମାନେହିଁ ଯେଉଁ ବିଶାଳ ଭୂଖଣ୍ଡକୁ ଆଜି ଆମେ ଭାରତବର୍ଷ ବୋଲି କହୁଛୁଁ ସେହି ଭୂଖଣ୍ଡର ସର୍ବେସର୍ବା ଥିଲେ । ପ୍ରସ୍ତର ଯୁଗର

ସମଗ୍ର ଭାରତ ଏହି ପ୍ରାଚୀନ ମାନବମାନଙ୍କର ଲୀଳାକ୍ଷେତ୍ର ଥିଲା । ଅବଶ୍ୟ ନିଃସନ୍ଦେହ ରୂପେ ସେଯୁଗର ଭାରତ ପରବର୍ତ୍ତୀ ଯୁଗର ଭାରତ ଠାରୁ ସମ୍ପୂର୍ଣ୍ଣ ପୃଥକ ଧରଣର ଦେଶ ଥିଲା । ସେଯୁଗର ମନୁଷ୍ୟ ଧାତୁ ଦ୍ରବ୍ୟର ବ୍ୟବହାର ଜାଣି ନ ଥିଲା, ସେଯୁଗର ମନୁଷ୍ୟକୁ କୃଷିବିଦ୍ୟା ମଧ୍ୟ ଜଣା ନ ଥିଲା । ସେତେବେଳେ ସମଗ୍ର ଦେଶ ଅରଣ୍ୟାଚ୍ଛାଦିତ । ସିନ୍ଧୁ, ଗଙ୍ଗା, ଯମୁନା, ସରସ୍ୱତୀ, ବ୍ରହ୍ମପୁତ୍ର, କୃଷ୍ଣା, କାବେରୀ, ଗୋଦାବରୀ, ନର୍ମଦା, ପ୍ରାଚୀ ଏବଂ ଭାରତର ଅନ୍ୟାନ୍ୟ ଶତ ଶତ ସ୍ରୋତସ୍ୱିନୀ ସେତେବେଳେ ସେମାନଙ୍କ ଉଭୟ କୂଳରେ ଘନ ନିବିଡ଼ ଅରଣ୍ୟାନୀମାନଙ୍କ ବନ୍ଧନ କରି ଲୁକ୍କାୟିତ ଭାବରେ ବହି ଯାଉଥିଲେ । ବହୁ ପ୍ରାଚୀନ ସେ ସମୟ । ଆଜି ସେଯୁଗର କେତେକେତେ ସ୍ରୋତସ୍ୱିନୀ ଭୂପୃଷ୍ଠରୁ ଲୋପ ପାଇ ଗଲେଣି, ସେକାଳର ସେଇ ବଣ ଜଙ୍ଗଲ ଆଜି ଜନବହୁଳ ନଗରୀ, ପଲ୍ଲୀରେ ପରିଣତ ହୋଇ ଗଲୁଣି । ପ୍ରସ୍ତର ଯୁଗର ଆଦିମ ସଭ୍ୟତା କୃଷି ବାଣିଜ୍ୟର ସଭ୍ୟତା ନ ଥିଲା, ସେ ଥିଲା ଶିକାର ଏବଂ ଖାଦ୍ୟ ଆହରଣର ସଭ୍ୟତା । ଦିଗନ୍ତ ବିସ୍ତାରୀ ବନାନୀ ଥିଲା ସେକାଳ ମନୁଷ୍ୟର ଶିକାରକ୍ଷେତ୍ର ଏବଂ ଅସରନ୍ତି ପଶୁରାଜ୍ୟ ମଧ୍ୟରେ ଥିଲା ମନୁଷ୍ୟର ଶିକାର ସାମଗ୍ରୀ । ସରଳ, ନିର୍ଭୀକ, ସାହସୀ ଏବଂ ଶକ୍ତିଶାଳୀ ଏହି ଆଦିମମାନେ ସେମାନଙ୍କର ଅନୁନ୍ନତ ଧରଣର ପ୍ରସ୍ତର ନିର୍ମିତ ଅସ୍ତ୍ର ସାହାଯ୍ୟରେ ପଶୁ ପକ୍ଷୀ ଶିକାର ଦ୍ୱାରା ଏବଂ ଜଙ୍ଗଲର ଫଳ ମୂଳ ଆହରଣ ଦ୍ୱାରା ଜୀବିକା ନିର୍ବାହ କରୁଥିଲେ । କାଳକ୍ରମେ ପ୍ରତ୍ନ-ପ୍ରସ୍ତର ଯୁଗ ଏବଂ ନବ ପ୍ରସ୍ତର ଯୁଗ ଧୀରେ ଧୀରେ ମନୁଷ୍ୟକୁ ପରବର୍ତ୍ତୀ କାଳର ଉନ୍ନତ-ତର ଯୁଗ ପ୍ରତି ଇଙ୍ଗିତ ପ୍ରଦାନପୂର୍ବକ ନିଜର ସମାପ୍ତି ସାଧନ କଲେ । ବହୁ କାଳର ସମୟ ସ୍ରୋତ ମଧ୍ୟରେ ଆଦିମ ଅଧିବାସୀମାନେ ଧୀରେ ଧୀରେ ଧାତୁ ସଭ୍ୟତାର ସୀମା ସ୍ପର୍ଶ କରୁଥିଲେ । କିନ୍ତୁ ପ୍ରସ୍ତର ଯୁଗର ଅବସାନ ଏବଂ ଧାତୁ ଯୁଗର ଆରମ୍ଭ, ଏହି ସନ୍ଧିବେଳେ ଆଦିମ ଭାରତ ମଧ୍ୟକୁ ଉନ୍ନତ ଏବଂ ଅଧିକତର ସଭ୍ୟ ଜାତିମାନଙ୍କର କ୍ରମାଗତ ସ୍ରୋତ ମାଡ଼ି ଆସିଲା । ଦ୍ରାବିଡ଼ ଏବଂ ଆର୍ଯ୍ୟମାନଙ୍କର ପ୍ରବେଶ ଏବଂ ବିସ୍ତାରଲାଭ ସଙ୍ଗେ ସଙ୍ଗେ ଭାରତରେ ପ୍ରାଚୀନତମ ମନୁଷ୍ୟମାନଙ୍କର ଏକଚ୍ଛତ୍ର ଆଧିପତ୍ୟ ଶେଷ ହୋଇଆସିଲା । ଅସରନ୍ତି ସଂଖ୍ୟାରେ ଭାରତର ଉତ୍ତର-ପଶ୍ଚିମ ସୀମାନ୍ତ ପାରିରୁ ସଭ୍ୟ ଏବଂ ଉନ୍ନତ ଜାତିମାନେ ଭାରତ ଭିତରକୁ ମାଡ଼ି ଆସିଲେ । ନବାଗତ ଏହି ସଭ୍ୟ ଜାତିମାନଙ୍କର ଭାରତର ଆଦିମମାନଙ୍କ ସହ କୌଣସି ପ୍ରକାର କିଛି ସମ୍ପର୍କ ନ ଥିଲା । ନବାଗତମାନେ କୃଷି, ଶିଳ୍ପ ଏବଂ ବାଣିଜ୍ୟରେ ପାରଗତାଲାଭ କରିସାରିଥିଲେ । ସେମାନେ ଅନେକ ପ୍ରକାର ଧାତୁର ବ୍ୟବହାର ଜାଣିଥିଲେ, ଏବଂ ଉନ୍ନତ ଧରଣର ଏକ ଧାତୁ ସଭ୍ୟତା ଗଠନ କରିନେଇଥିଲେ । ଉତ୍ତର-ପଶ୍ଚିମାଞ୍ଚଳର ଶୀତ ଜଳବାୟୁରୁ ଆସିଥିବା ହେତୁ ଏମାନଙ୍କ ଶରୀରର ବର୍ଣ୍ଣ ଆଦିମମାନଙ୍କ ବର୍ଣ୍ଣ ଠାରୁ ସମ୍ପୂର୍ଣ୍ଣ ପୃଥକ ଥିଲା । ଏମାନଙ୍କ ଆଗମନ ସଙ୍ଗେ ସଙ୍ଗେ ଭାରତ ଭୂଖଣ୍ଡରେ ଏକ

ଯୁଗାନ୍ତକାରୀ ପରିବର୍ତ୍ତନ ଘଟିଲା । ନୂତନ ମନୁଷ୍ୟ, ନୂତନ ସଭ୍ୟତା, ନୂତନ ଯୁଗର ଆରମ୍ଭ । କେତେ ଅଜଣା ଯୁଗ ପାଇଁ ଭାରତର ଆଦିମମାନେ ଏହି ଅନାହୂତ ଆଗନ୍ତୁକମାନଙ୍କ ସହ ଜୀବନ ମରଣ ସଂଗ୍ରାମ କରିଥିବେ । କିନ୍ତୁ ପରିଶେଷରେ ଉନ୍ନତ ଆଗନ୍ତୁକମାନଙ୍କର ଯୁଦ୍ଧନୀତି ଏବଂ କୂଟନୀତିରେ ପରାଜିତ ହୋଇ ଆଦିମମାନଙ୍କୁ ଭାରତ ଉପରେ ସେମାନଙ୍କର ଯେଉଁ ଅପ୍ରତିଦ୍ୱନ୍ଦ୍ୱୀ ଅଧିକାର ଥିଲା ସେଥିରୁ ବଞ୍ଚିତ ହେବାକୁ ହୋଇଥିଲା । ବିଶେଷଜ୍ଞମାନଙ୍କ ମତରେ ଆଗନ୍ତୁକ ଉନ୍ନତ ଜାତିମାନଙ୍କର କ୍ରମାଗତ ଆଗମନ ଏବଂ ବିସ୍ତାରଲାଭ ଫଳରେ ଆଦିମମାନଙ୍କୁ କ୍ରମେ କ୍ରମେ ଭାରତର ସମତଳ ପ୍ରଦେଶମାନଙ୍କରୁ ଦୁର୍ଗମ ପାର୍ବତ୍ୟ ଅଞ୍ଚଳମାନଙ୍କୁ ଅପସରି ଯିବାକୁ ପଡ଼ିଲା । ଆଗନ୍ତୁକମାନେ ପ୍ରଧାନତଃ କୃଷିଜୀବୀ ଥିଲେ । ସୁବିସ୍ତୃତ ସୈନ୍ଧବ ଏବଂ ଗାଙ୍ଗେୟ ଉପତ୍ୟକା କ୍ରମେ ସେମାନଙ୍କର ବାସସ୍ଥଳୀରେ ପରିଣତ ହେବାକୁ ଲାଗିଲା । ଧୀରେ ଧୀରେ ସମଗ୍ର ଉତ୍ତର ଭାରତର ସମତଳ ପ୍ରଦେଶମାନ, ଆଦିମମାନଙ୍କର ଚିର ବାସସ୍ଥଳୀ ନିବିଡ଼ ଅରଣ୍ୟ ପରିବର୍ତ୍ତେ, କୃଷିଜୀବୀମାନଙ୍କର କୃଷି କ୍ଷେତ୍ରରେ ପରିଣତ ହେବାକୁ ଲାଗିଲା । ପ୍ରକୃତି ଆଦିମ ମାନଙ୍କୁ ବଣ ଜଙ୍ଗଲର ସନ୍ତାନ ରୂପେ ଜନ୍ମ ଦେଇଛି । କୃଷି ସଭ୍ୟତାର ପ୍ରସାର-ଯୋଗେ ଯେତେବେଳେ ଉତ୍ତର ଭାରତରୁ ବଣ ଜଙ୍ଗଲ ଲୋପ ପାଇବାକୁ ବସିଲା ସେତେବେଳେ ବାଧ୍ୟ ହୋଇ ଆଦିମମାନଙ୍କୁ ସମତଳ ପ୍ରଦେଶର ବଣ ଜଙ୍ଗଲ ଛାଡ଼ି ବୃଷ୍ଟି-ବହୁଳ ପାର୍ବତ୍ୟ ପ୍ରଦେଶମାନଙ୍କୁ ନିଜର ବାସଭୂମିରେ ପରିଣତ କରିବାକୁ ପଡ଼ିଲା । ପୂର୍ବରେ ହେମପୁଞ୍ଜି ପର୍ବତମାଳା, ମଧ୍ୟଭାରତରେ ବିନ୍ଧ୍ୟ ପାର୍ବତ୍ୟାଞ୍ଚଳ, ଦକ୍ଷିଣରେ ପୂର୍ବଘାଟ ଓ ପଶ୍ଚିମଘାଟ ପର୍ବତ ଶ୍ରେଣୀ, ଏଇ ସମସ୍ତ ଦୁର୍ଗମ ପ୍ରଦେଶ ପରିଶେଷରେ ଆଦିମମାନଙ୍କର ବାସାଞ୍ଚଳରେ ପରିଣତ ହେଲା । ହେମେନ୍ଡର୍ଫ କହନ୍ତି, ଭାରତ ମଧ୍ୟକୁ ପୂର୍ବ ଏବଂ ପଶ୍ଚିମରୁ କୃଷିବିଦ୍ୟାବିତ୍ ଜାତି-ମାନଙ୍କ ଆଗମନ ଏବଂ ସେମାନଙ୍କ ଦ୍ୱାରା ଭାରତର ଉର୍ବର ସମତଳ ଭୂମିମାନଙ୍କର ଅଧିକାର ଫଳରେ ଆଦିମମାନଙ୍କର ଭାଗ୍ୟ ବିପର୍ଯ୍ୟୟ ଘଟିଲା, ଏବଂ ସେମାନେ କ୍ରମେ ଧ୍ୱଂସ ଆଡ଼କୁ ଆଗେଇ ଚାଲିଲେ, କିନ୍ତୁ ତଥାପି, ସମତଳ ପ୍ରଦେଶ ଛାଡ଼ି ସେମାନେ ଦୁର୍ଗମ ପାହାଡ଼ ପର୍ବତମାନଙ୍କରେ ଆଶ୍ରୟ ନେବାକୁ ଲାଗିଲେ ଏବଂ ଏହି ଦୁର୍ଗମ ଅଞ୍ଚଳଗୁଡ଼ିକ କୃଷିକାର୍ଯ୍ୟପାଇଁ ଅନୁପଯୋଗୀ ହୋଇଥିବାରୁ ସଭ୍ୟ ଜାତିମାନେ ଏ ଅଞ୍ଚଳଗୁଡ଼ିକୁ ନିଜ, ଅଧିକାରକୁ ·ନେବା ପାଇଁ ସେପରି ପ୍ରବଳ ଉଦ୍ୟମ କରି ନ ଥିଲେ । ସୁତରାଂ ପ୍ରକୃତିର ଅଭେଦ୍ୟ ଦୁର୍ଗଗୁଡ଼ିକ ଆଦିମମାନଙ୍କର ବାସସ୍ଥଳୀରେ ପରିଣତ ହେଲା । ସେହି ସୁଦୂର ଅତୀତ କାଳରୁ ଅଦ୍ୟାବଧି ପ୍ରାକୃତିକ ଭାରତର ଗହନ ଗିରି-କନ୍ଦର ଏବଂ ଅଗମ୍ୟ ବନରାଜି ଆଦିମ ଅଧିବାସୀଙ୍କର ବାସଭୂମି ରୂପେ ବ୍ୟବହୃତ ହୋଇ ଆସୁଅଛି । ସ୍ୱାଧୀନ ବନ୍ୟ ଜୀବନ ଯାପନ କରି ଆଦିମମାନେ ଭାରତର ଅପରାପର ଅଗଣିତ ଜାତିମାନଙ୍କ ପାଖରୁ ଯେତିକି ଦୂର ସମ୍ଭବ ପୃଥକ ରହି ଆସିଛନ୍ତି । ଭାରତ ଇତିହାସର ଦୀର୍ଘ ଗତିପଥରେ କେତେ ସଭ୍ୟତାର

ଉତ୍‌ଥାନ, ପତନ, କେତେ ସାମ୍ରାଜ୍ୟର ବିଲୟ ଅଭ୍ୟୁଦୟ ଘଟିଛି, କେତେ ମହାସମର, କେତେ ରକ୍ତପାତ, କେତେ ବାତ୍ୟା, ବନ୍ୟା, ବହିଯାଇଛି । କିନ୍ତୁ ବହିର୍ଜଗତ ସହିତ ସମ୍ପର୍କ ନ ରଖି ଆଦିମମାନେ ଏ ସମସ୍ତ ଘୂର୍ଣ୍ଣି ପାଖରୁ ବହୁତ ଦୂରରେ ନିଜକୁ ରଖିବାକୁ ପ୍ରାଣପଣେ ଚେଷ୍ଟା କରିଛନ୍ତି । ଅବଶ୍ୟ, ଯୁଗ ଯୁଗ ବ୍ୟାପୀ ଏକ ମାତୃଭୂମିର ବକ୍ଷ ଉପରେ ସଭ୍ୟଜାତିମାନଙ୍କ ସହ ଆଦିମମାନଙ୍କୁ ବାସ କରିବାକୁ ହୋଇଛି, ଯାହା ଫଳରେ କି ଆଦିମମାନଙ୍କ ସଭ୍ୟତା, ଧର୍ମ ଓ ଜୀବନ ପନ୍ଥା ଉପରେ ଅନ୍ୟ ଜାତିମାନଙ୍କର ସଭ୍ୟତାର ଛାପ ଅନେକ ମାତ୍ରାରେ ପଡ଼ିଥିବ । ତଥାପି ଜାତିତତ୍ତ୍ୱବିତ୍‌ମାନଙ୍କ ମତରେ, ଆଜି ପର୍ଯ୍ୟନ୍ତ ଆଦିମମାନଙ୍କର ଧର୍ମ, ସଂସ୍କୃତି ଏବଂ ଜୀବିକା ପୂର୍ବଠାରୁ ପ୍ରାୟ ଅପରିବର୍ତ୍ତିତ ରହିଛି । ପରିବର୍ତ୍ତନ-ଶୀଳ ଜଗତରେ ସମସ୍ତ ଜାତିର ପରିବର୍ତ୍ତନ ଘଟିଛି । ଆଦିମମାନଙ୍କର ପରିବର୍ତ୍ତନ ମଧ୍ୟ ସ୍ୱାଭାବିକଭାବେ ସମ୍ଭବ । କିନ୍ତୁ ଆଦିମମାନଙ୍କ ପରିବର୍ତ୍ତନ ଅନ୍ୟମାନଙ୍କ ପରିବର୍ତ୍ତନ ତୁଳନାରେ ପ୍ରାୟ କିଛି ନୁହେଁ । ବଂଶ ପରଂପରା ଧରି, ଯେତେଦୂର ସମ୍ଭବ ବହିର୍ଜଗତ ସହିତ ସମ୍ପର୍କ ନ ରଖି ଆଦିମମାନେ ସେମାନଙ୍କ ପ୍ରାଚୀନ ସଂସ୍କୃତିର ମୂଳଭିତ୍ତି ଠିକ୍‌କି ଅପରିବର୍ତ୍ତିତ ରଖିଛନ୍ତି । ଏହାହିଁ ହେଲା ସେମାନଙ୍କ ବିଶେଷତ୍ୱ । ବାସ୍ତବ ପକ୍ଷରେ, ଆଦିମମାନେହିଁ ଅତୀତ ଉତ୍କଳ, ଅତୀତ ଭାରତ ତଥା ଅତୀତ ପୃଥିବୀର ଜୀବନ୍ତ ସନ୍ତକ ।

କ'ଣ ଥିଲା ଏହି ଆଦିମ ଭାରତୀୟଙ୍କର କୃଷ୍ଟି ? ଯେଉଁମାନେ ଉଲଗ୍ନ ଶିକାରଜୀବୀ, ଯେଉଁମାନେ ବଣ ଜଙ୍ଗଲରେ ପଶୁମାନଙ୍କପରି ବସବାସ କରୁଥିଲେ, ଯେଉଁମାନଙ୍କ ଶରୀରର ରଙ୍ଗ ଘନକୃଷ୍ଣ, ଭାଷା ଅବୋଧଗମ୍ୟ, ଯେଉଁମାନେ ବିଜ୍ଞାନ, ସାହିତ୍ୟ, କଳା ପାଖରୁ ବହୁତ ଦୂରରେ, ଯେଉଁମାନଙ୍କ ନିବାସ ଆକାଶଚୁମ୍ବୀ ଅଟ୍ଟାଳିକାରେ ନୁହେଁ, ଅନ୍ଧକାର ଗିରିଗୁହା କିମ୍ବା କ୍ଷୁଦ୍ର କ୍ଷୁଦ୍ର ପର୍ଣ୍ଣକୁଟୀରରେ, ଯେଉଁମାନଙ୍କୁ ରାଜନୀତି, ଅର୍ଥନୀତି ବା ଅନ୍ୟ କୌଣସି ନୀତିର ପ୍ରଥମବର୍ଣ୍ଣ ସୁଦ୍ଧା ଅଜଣା, ସେମାନଙ୍କର ପୁଣି କୃଷ୍ଟି କଅଣ ? ପୁରାଣ ଯେଉଁମାନଙ୍କୁ ଦସ୍ୟୁ, ଇତର, ମ୍ଳେଚ୍ଛରୂପେ ବର୍ଣ୍ଣନା କରିଛି, ଶାସ୍ତ୍ର ଯେଉଁମାନଙ୍କୁ ଅସ୍ପୃଶ୍ୟରୂପେ ପରିଚୟ ଦେଇଛି, ଇତିହାସ ଯେଉଁମାନଙ୍କୁ ଅସଭ୍ୟ, ଅନୁନ୍ନତରୂପେ ଚିତ୍ରିତ କରିଛି, ଆର୍ଯ୍ୟମାନେ ଯେଉଁମାନଙ୍କୁ ଅନାର୍ଯ୍ୟ ନାମରେ ବିଖ୍ୟାତ କରାଇଛନ୍ତି, ସେହି ଆଦିମମାନଙ୍କର ପୁଣି ସଂସ୍କାର କଣ ? ତେବେ କ'ଣ ଆଦିମମାନେ ସଂସ୍କାରବିହୀନ ଏକପ୍ରକାର ପଶୁମାତ୍ର ? ସେମାନଙ୍କର ଜୀବିକା, ସଂଗଠନ, ବିଶ୍ୱାସ, ଏସବୁ ପଛରେ କ'ଣ କୌଣସି ପ୍ରକାର ସଂସ୍କୃତି, ନୀତି, ଏବଂ ଧର୍ମର ଆଭାସ ନାହିଁ ? ଯଦି ସଭ୍ୟତାର ଅର୍ଥ ପ୍ରଧାନତଃ ବସ୍ତୁବାଦ, ଯଦି ରକ୍ତପାତ, ଯୁଦ୍ଧ, ନରହତ୍ୟା, ଏସବୁ ସଭ୍ୟତାର ଆଦର୍ଶ, ଯଦି ଦୁର୍ନୀତି, ମିଥ୍ୟା, କପଟତା ଇତ୍ୟାଦି ସଭ୍ୟତାର ଅଙ୍ଗ, ତେବେ ଆଦିମମାନଙ୍କର ସଭ୍ୟତା ବୋଲି କିଛି ନାହିଁ । ତଥାକଥିତ

ସଭ୍ୟଜାତିମାନେ ଆଜି ସଭ୍ୟତାର ଚରମ ସୀମାରେ ପହଁଚିଅଛନ୍ତି ବୋଲି ଗର୍ବିତ । କିନ୍ତୁ ସେହି ତଥାକଥିତ ସଭ୍ୟତା କ'ଣ ମୁଖ୍ୟତଃ ଗୋଟାଏ କୃତ୍ରିମ ସଭ୍ୟତା ନୁହେଁ ? ମନୁଷ୍ୟ ଆଜି ଯନ୍ତ୍ର ସଭ୍ୟତାର ଦାସ, ଅର୍ଥହିଁ ହୋଇଛି ମନୁଷ୍ୟ ଜୀବନର କାମ୍ୟବସ୍ତୁ, ନାସ୍ତିକତା, ଅବିଶ୍ୱାସ, ପ୍ରବଞ୍ଚନା ଆଜିକାଲିକାର ମନୁଷ୍ୟର ଭୂଷଣ, ନୈତିକତା, ଚରିତ୍ର, ଧର୍ମଭୟ ଏ ସମସ୍ତ ତଥାକଥିତ ସଭ୍ୟମାନଙ୍କର ଘୃଣ୍ୟ ପଦାର୍ଥ, ନୀତିହୀନ ରାଜନୀତି ଆଜି ମନୁଷ୍ୟର ଧର୍ମ, ଚତୁର୍ଦ୍ଦିଗରେ କେବଳ ଜଡ଼ବାଦ, ଏହାହିଁ ଏ ଯୁଗର ସଭ୍ୟତା ! ମନୁଷ୍ୟ ଯନ୍ତ୍ରବାଦୀ ହୋଇ ଆତ୍ମବଳ ହରାଇଛି, ବାସ୍ତବବାଦୀ ହୋଇ ଆଧ୍ୟାତ୍ମିକ ଶକ୍ତି ଭୁଲିଛି, ଶିକ୍ଷିତ ହୋଇ ଅବିଶ୍ୱାସୀ ହୋଇଛି, ଜ୍ଞାନ ଅର୍ଜନ କରି ଈଶ୍ୱର ବିଶ୍ୱାସ ଛାଡ଼ିଛି ; ଆଜି ନୀତି-ନାମରେ ମନୁଷ୍ୟ ଅନୀତି ପରାୟଣ, ଧର୍ମ ନାମରେ ମନୁଷ୍ୟ ରକ୍ତ-ପିପାସୁ, ଶାନ୍ତି ନାମରେ ମନୁଷ୍ୟ ଯୁଦ୍ଧପ୍ରିୟ । ଯେଉଁ ସଭ୍ୟତା ତାହାର ଶୀର୍ଷ ସୀମାରେ ଏପରି ବିକୃତ, ତଥାକଥିତ ସଭ୍ୟ ମନୁଷ୍ୟମାନେ ସେହି ସଭ୍ୟତାର ପୂଜାରୀ । ଅବଶ୍ୟ ଏହି ବିପଥଗାମୀ ସଭ୍ୟତାର ଆବର୍ଜନା ଗଦା ତଳେ ହୁଏତ ଏପରି କିଛି ରହିଛି ଯାହାପାଇଁ ମନୁଷ୍ୟ ସମାଜ ସଭ୍ୟତା ନାମରେ ଧ୍ୱଂସ ପାଇ ଯାଇ ନାହିଁ । ତଥାପି ଏ ବସ୍ତୁବାଦୀ ସଭ୍ୟତା ମୁଖ୍ୟତଃ ଦୁଃଖମୟ । କାରଣ ଏ ସଭ୍ୟତା ଶତାବ୍ଦୀ ଶତାବ୍ଦୀ ବ୍ୟାପୀ ନିଜର କଳେବର ବୃଦ୍ଧି କରି ନିଜକୁ ଜଟିଳ କରିପକାଇଛି । ଜଟିଳତା ମଧ୍ୟରେ ହୁଏତ କିଛି ଭଲ ଅଛି, କିନ୍ତୁ ଆବର୍ଜନାର ପରିମାଣ ମଧ୍ୟ ସେହି ମାତ୍ରାରେ ଅଧିକ । ଏ ଜଟିଳ ସଭ୍ୟତାର ଚୂଡ଼ାନ୍ତ ପରିଣତି କେଉଁଠି ସେ କଥା ଚିନ୍ତା ଶକ୍ତିର ବାହାରେ । ହୋଇପାରେ ଦିନେ ଏହି ପ୍ରକୃତିବିଜୟୀ ଆଣବିକ ସଭ୍ୟତା ସ୍ୱଉଦ୍ଭାବିତ ଆଣବିକ ଶକ୍ତି ହସ୍ତରେ ଧ୍ୱଂସପ୍ରାପ୍ତ ହୋଇଯାଇ ପାରେ । ଦିନେ ନିଜର ଶୀର୍ଷ ସୀମା ଆରୋହଣ କରି ଅତୀତର ମିଶର ସଭ୍ୟତା ପୃଥିବୀ ପୃଷ୍ଠରୁ ଚିରଦିନ ପାଇଁ ଲୁପ୍ତ ହୋଇଛି ; ଦିନେ ସମୃଦ୍ଧିଶାଳୀ ସୁମେରୀୟ ସଭ୍ୟତା ଧ୍ୱଂସସ୍ତୂପ ମଧ୍ୟରେ ନିଜର ଅସ୍ତିତ୍ୱ ବିସର୍ଜନ କରିଛି ; ପୃଥିବୀ ପୃଷ୍ଠରେ କେତେ ସଭ୍ୟତା ମସ୍ତକ ଉତ୍ତୋଳନ କରିଛି ଏବଂ ଅଜାଣିତଭାବେ ବିଲୟ ଭଜିଛି ; ଠିକ୍ ସେହିପରି ଆଜିର ଏ ବୈଜ୍ଞାନିକ ସଭ୍ୟତା ତା'ର କେଉଁ ଏକ ଦୁର୍ବଳ ମୁହୂର୍ତ୍ତରେ ନିଜକୁ ଧ୍ୱଂସ ଦିଗକୁ ଟାଣି ନେଇପାରେ, କିମ୍ବା ସମ୍ପୂର୍ଣ୍ଣରୂପେ ଧ୍ୱଂସ ନ ହେଲେ ସୁଦ୍ଧା ନିଜର କେବଳ ସତ୍ତା ଟିକକ ଭବିଷ୍ୟର ଏକ ନୂତନ ସଭ୍ୟତା ପାଇଁ ବଞ୍ଚାଇ ରଖି ନିଜର ବିକୃତ ଅଙ୍ଗ ପ୍ରତ୍ୟଙ୍ଗ ସମସ୍ତର ଲୋପ ସାଧନ କରିପାରେ ।

ଆଦିମମାନଙ୍କର ଯଦି ସଂସ୍କାର ବୋଲି କିଛି ଥିଲା ତେବେ ସେ ସଂସ୍କାର ଏପରି ଏକ ଜଟିଳ, ବହୁମୁଖୀ ସଂସ୍କାର ନଥିଲା । ସେ ଥିଲା ଏକ ସରଳ, ସହଜ, ପ୍ରାକୃତିକ ସଂସ୍କାର । ସମ୍ପୂର୍ଣ୍ଣ ବିପରୀତ ଏକ ସଭ୍ୟତାରେ ଆମମାନଙ୍କର ଗଠନ, ତେଣୁ ଆମ ଚକ୍ଷୁରେ ଆଦିମମାନେ ଅସଭ୍ୟ, ସେମାନଙ୍କର ସଭ୍ୟତା ବୋଲି କିଛି

ନାହିଁ । କିନ୍ତୁ ପୃଥିବୀର ପ୍ରାଚୀନତମ ଯେଉଁ ଜାତି, ସେ ଜାତିର ସଂସ୍କାର ବୋଲି କିଛି ନଥିଲା ବା ନାହିଁ ଏକଥା କହିବା ସତ୍ୟ ନୁହେଁ । ପ୍ରତ୍ୟେକ ଯୁଗରେ ପ୍ରତ୍ୟେକ ଜାତିର ଗୋଟିଏ ସ୍ୱ-ସଂସ୍କାର ଥିଲା ; ଭଲ ହେଉ କିମ୍ବା ଖରାପ ହେଉ ପୃଥିବୀରେ ବିଭିନ୍ନ ପ୍ରକାର ସଭ୍ୟତାର ଉତ୍‌ଥାନ ପତନ ହୋଇଛି । ଆଦିମମାନଙ୍କର ମଧ୍ୟ ସଂସ୍କାର ଥିଲା । ସହସ୍ର ସହସ୍ର ବର୍ଷର ଘାତ ପ୍ରତିଘାତ ମଧ୍ୟଦେଇ ଆଜିପର୍ଯ୍ୟନ୍ତ ମଧ୍ୟ ସେ ସଂସ୍କାରର ମେରୁଦଣ୍ଡ ରହିଛି । ଯେଉଁମାନେ ଆଜିକାଲି ଆଦିବାସୀ ନାମରେ ଖ୍ୟାତ, ଅର୍ଥାତ୍ ଯେଉଁମାନେ ଅତୀତର ସେହି ଆଦିମ ଅଧିବାସୀମାନଙ୍କର ଅଧିକ ବଂଶଧର ସେମାନେ ବାହାରର ସଭ୍ୟତାର ସଂସର୍ଗରେ ଆସିସୁଦ୍ଧା ସ୍ୱ ସଭ୍ୟତାର ସତ୍ତା ଭୁଲି ନାହାନ୍ତି । ଯନ୍ତ୍ରଯୁଗ ଆଦିମମାନଙ୍କର ପ୍ରାକୃତିକ ଜୀବନ ଉପରେ ପ୍ରଭାବ ବିସ୍ତାର କରିବାକୁ ଚେଷ୍ଟା କରିଛି ; ରାଜନୀତି, ଅର୍ଥନୀତି, କୂଟନୀତି ଏସମସ୍ତ ଆଦିମମାନଙ୍କୁ ଜଟିଳତାର ମାର୍ଗ ଦେଖାଇ ଆସୁଛି, ବିଜ୍ଞାନ ଆଦିମମାନଙ୍କୁ ପ୍ରଲୋଭନ ଦେଖାଉଛି ; ତଥାପି, ଅନ୍ୟ ଜାତିମାନଙ୍କ ପରି ଆଦିମମାନେ ନିଜର ଅତୀତ ସଂସ୍କାରର ବଳିଦାନପୂର୍ବକ କୃତ୍ରିମତା ଆଗରେ ଆତ୍ମସମର୍ପଣ କରିନାହାନ୍ତି । ଶତ ପ୍ରଭାବିତ ହେଲେସୁଦ୍ଧା ସେମାନଙ୍କର ନିଜସ୍ୱ ସେମାନଙ୍କ ପାଖରେ ରହିଛି ।

ଭାରତୀୟ ଆଦିମମାନଙ୍କର ସଂସ୍କାର ପୃଥିବୀର ଅନ୍ୟାନ୍ୟ ସ୍ଥାନର ଆଦିମମାନଙ୍କ ସଂସ୍କାର ସହିତ ପ୍ରାୟ ସମାନ ଥିଲା । କାରଣ ବିଭିନ୍ନ ଗତିରେ ପ୍ରାୟ ଏକ ସମୟରେ ପୃଥିବୀର ବିଭିନ୍ନ ସ୍ଥାନରେ ଆଦିମ ଜାତିର ସୃଷ୍ଟି ହୋଇଛି ଏବଂ ଏକ ପ୍ରାକୃତିକ ନିୟମାବଳୀ ତଳେ ସମସ୍ତ ସ୍ଥାନର ଆଦିମମାନଙ୍କୁ ନିଜର ଜୀବନ ଗଠନ କରିବାକୁ ହୋଇଥିଲା । ପୂର୍ବ ଉଲ୍ଲିଖିତ ତୁଷାର ଯୁଗରେ ଆଦି ମନୁଷ୍ୟମାନଙ୍କର ସମସ୍ତ ଶକ୍ତି କେବଳ ଖାଦ୍ୟ ଆହରଣ ଏବଂ ଆତ୍ମରକ୍ଷା ପାଇଁ ନିୟୋଜିତ ହେଉଥିଲା । ପ୍ରତ୍ନ-ପ୍ରସ୍ତର ଯୁଗରେ କ୍ରମେ ମନୁଷ୍ୟ ଆଉ ଟିକିଏ ଉନ୍ନତ ହୋଇ କାଷ୍ଠ ଏବଂ ପ୍ରସ୍ତରର ଅସ୍ତ୍ର ତିଆରି କରିବା ଶିଖି ପାରିଥିଲା । ମଧ୍ୟ-ପ୍ରସ୍ତର ଯୁଗରେ ଏହି ଅସ୍ତ୍ରଗୁଡ଼ିକ ଆଉ ଟିକିଏ ଉନ୍ନତ ଧରଣର ହୋଇ ପାରିଥିଲା । ପରବର୍ତ୍ତୀ ପ୍ରସ୍ତର ଯୁଗ ବା ପ୍ରସ୍ତର ଯୁଗର ଶେଷବେଳକୁ ମନୁଷ୍ୟ ଅନେକ ଉନ୍ନତ ହୋଇ-ଯାଇଥିଲା ଏବଂ ପାହାଡ଼ ପର୍ବତର ଗୁମ୍ଫା କିମ୍ବା କ୍ଷୁଦ୍ର କ୍ଷୁଦ୍ର କୁଡ଼ିଆକୁ ନିଜର ଗୃହରୂପେ ବ୍ୟବହାର କରିବା, ନିଆଁର ବ୍ୟବହାର କରିବା, ଖାଦ୍ୟ ଆହରଣ ତଥା ଖାଦ୍ୟ ସଞ୍ଚୟ ଆଦି ଶିଖିବା, ବିଭିନ୍ନ ପ୍ରକାର ମାଟି କିମ୍ବା ପଥରର ଅଳଙ୍କାର ବ୍ୟବହାର କରିବା, ଗଛର ବକ୍‌କଲ ଇତ୍ୟାଦି ସାହାଯ୍ୟରେ ନିଜର ଲଜ୍ଜା ନିବାରଣ କରିବା, ନାନା କୌଶଳରେ ବନ୍ୟ ହିଂସ୍ରଜନ୍ତୁ ଶିକାର କରିବା, ଗ୍ରୀଷ୍ମ ଏବଂ ଶୀତର ପ୍ରଭାବରୁ ନିଜକୁ ରକ୍ଷା କରିବା, ବିବାହ ଏବଂ ପରିବାର ପୋଷଣ କରିବା, ଇଙ୍ଗିତ ସାହାଯ୍ୟରେ କଥାବାର୍ତ୍ତା ନକରି ନିଜ ମଧ୍ୟରେ ଏକ ପ୍ରକାର ଭାଷା ପ୍ରଚଳନ କରିବା ଇତ୍ୟାଦି ଅନେକ ବିଷୟରେ ମନୁଷ୍ୟ ଦକ୍ଷତାଲାଭ

କରିପାରିଥିଲା । ଏହି ଯୁଗରେ ଆଦିମମାନଙ୍କ ମଧ୍ୟରେ ଏକପ୍ରକାର ଆଦିମ ଧର୍ମର ସୃଷ୍ଟି ହୋଇଥିଲା ଏବଂ କ୍ରମେ କ୍ରମେ ସଂସ୍କୃତିର ଅଙ୍ଗ ରୂପେ କଳା ଏବଂ ସଙ୍ଗୀତର ମଧ୍ୟ ଉଦ୍ଭାବନ ଏବଂ ପ୍ରଚଳନ ହୋଇଥିଲା । ପ୍ରତ୍ୟେକ ସଭ୍ୟତାର ଆରମ୍ଭ ଠିକ୍ ଏହିପରି ଭାବରେହିଁ ହୋଇଛି । ଆଜି ଯେଉଁମାନେ ନାନା ବେଶଭୂଷାରେ ପରିଶୋଭିତ ହୋଇ ବହୁବିଧ ଯାନବାହନରେ ବିଚରଣ କରି ସଭ୍ୟତାର ଅଗ୍ରଦୂତ ହୋଇଛନ୍ତି ସେମାନଙ୍କର ଅଜା-ପିତାମାନେ ମଧ୍ୟ ଦିନେ ଉଲଗ୍ନ ଅବସ୍ଥାରେ ବଣ ଜଙ୍ଗଲରେ ପଶୁପକ୍ଷୀ ଶିକାର କରି ଜୀବିକା ପୋଷଣ କରୁଥିଲେ । ସବୁ ସଭ୍ୟତାର ମନୁଷ୍ୟଙ୍କୁ ତୁଷାର ଯୁଗ, ପ୍ରସ୍ତର ଯୁଗ ଇତ୍ୟାଦି ବିଭିନ୍ନସ୍ତର ମଧ୍ୟରେ ଗତି କରିବାକୁ ପଡ଼ିଛି ଏବଂ ତେଣୁ ସବୁ ସଭ୍ୟତାର ଆରମ୍ଭ ପ୍ରାୟ ଏକ ଛାଞ୍ଚରେ ତିଆରି । ତେବେ ଆଦିମମାନଙ୍କର ସଭ୍ୟତା ଏବଂ ଆମମାନଙ୍କ ସଭ୍ୟତା ମଧ୍ୟରେ ଏତିକି ପାର୍ଥକ୍ୟ ଯେ ଗୋଟିଏ ସରଳ ଜୀବନଯାପନ ପାଇଁ ଯେତିକି ଦୂର ଅଗ୍ରସର ହେବା ଦରକାର ଠିକ୍ ସେତିକି ଦୂର ଅଗ୍ରସର ହୋଇ ଆଦିମ ସଭ୍ୟତା ତା'ର ଅଗ୍ରଗତି ବନ୍ଦ କରି ଦେଇଛି, ଅଥଚ ଆମ୍ଭମାନଙ୍କର ସଭ୍ୟତା ଅସରନ୍ତି ମାର୍ଗରେ ଆଗେଇ ଚାଲିଛି, କ୍ରମେ ଜଟିଳରୁ ଜଟିଳତର ହୋଇ ଶେଷରେ ନିଜର ବିସ୍ତୃତ ପରିସର ମଧ୍ୟରେ ବହୁ ବିକୃତ ଭାବଧାରା ଏବଂ ଆବର୍ଜନାକୁ ପ୍ରଶ୍ରୟ ଦେଇଛି । ପ୍ରକୃତି ପାଖରୁ ମନୁଷ୍ୟର ଯେତିକି ଦାବୀ ସେତିକିରେ ଆଦିମ ସଭ୍ୟତା ସନ୍ତୁଷ୍ଟ ; ପ୍ରକୃତି ପାଖରୁ ଦୂରରେ ରହି ଜୀବନକୁ କୃତ୍ରିମ ପଥରେ ଆଗେଇ ନେବା ଏହା ଆଦିମ ସଂସ୍କାରର ବାହାରେ । ସରଳ ଜୀବନ ଯାପନ, ଅଳ୍ପରେ ସନ୍ତୋଷ, ଏବଂ ନିର୍ଦ୍ଦୋଷ ଆମୋଦ ପ୍ରମୋଦ ଏହି କେତୋଟିକୁ ମୂଳଦୁଆ କରି ଆଦିମ-ମାନେ ନିଜର ଜୀବନ ତିଆରି କରି ନେଇଛନ୍ତି । ପ୍ରସ୍ତର ଯୁଗରେ ଆଦିମମାନେ ପର୍ବତ ପାହାଡ଼ର ପ୍ରାକୃତିକ ଗୁହାଗୁଡ଼ିକରେ ଆଶ୍ରୟ ନେଇ ନିଜକୁ ହିଂସ୍ରଜନ୍ତୁ-ମାନଙ୍କର ଆକ୍ରମଣରୁ ତଥା ଶୀତ ଏବଂ ଗ୍ରୀଷ୍ମର ପ୍ରକୋପରୁ ରକ୍ଷା କରୁଥାଆନ୍ତି । ପରବର୍ତ୍ତୀ ଯୁଗରେ ସେହି ଗିରିଗୁହାଗୁଡ଼ିକ ସେମାନଙ୍କର ବାସଗୃହରୂପେ ବ୍ୟବହୃତ ହେଲା । କ୍ରମେ କ୍ରମେ ଜନବୃଦ୍ଧି ସଙ୍ଗେ ସଙ୍ଗେ ଯେତେବେଳେ ସୀମାବଦ୍ଧ ଗୁହାଗୁଡ଼ିକରେ ସ୍ଥାନାଭାବ ଘଟିଲା, ସେତେବେଳେ ଗୁହାମାନଙ୍କର ଅନୁକରଣ କରି ଆଦିମମାନେ ଗଛର ଡାଳପତ୍ର ସାହାଯ୍ୟରେ ଛୋଟ ଛୋଟ କୁଡ଼ିଆ ନିର୍ମାଣ କରି ଶିଖିଲେ । ଦିନେ କୁଡ଼ିଆ ପରିବର୍ତ୍ତେ ଅଟ୍ଟାଳିକା ପାଇଁ ଆଦିମମାନେ ଚେଷ୍ଟିତ ହୋଇ ନାହାନ୍ତି, କାରଣ କୁଡ଼ିଆଦ୍ୱାରହିଁ ସେମାନଙ୍କ ବସବାସର ପ୍ରୟୋଜନୀୟତା ଦୂରୀଭୂତ ହୋଇଥିଲା । ବିଶେଷଜ୍ଞମାନେ ଦର୍ଶାଇ ଦିଅନ୍ତି ଯେ ଯେଉଁହେତୁ ସେଯୁଗର ଆଦିମମାନେ ପର୍ବତ ଗୁହାରେ ବାସ କରୁଥିଲେ ଆଜି ବହୁ ଯୁଗ ପରେ ସୁଦ୍ଧା ଏ ଯୁଗର ଆଦିବାସୀମାନଙ୍କ ମଧ୍ୟରୁ ଅନେକେ ଠିକ ଗୁହା ସଦୃଶ କୁଡ଼ିଆରେ ବାସକରି ସେମାନଙ୍କ ପୂର୍ବପୁରୁଷମାନଙ୍କ କଥା ମନେ ପକାଇ ଦେଉଛନ୍ତି । ଆଜିସୁଦ୍ଧା ଅନେକ କୁଡ଼ିଆର ଦ୍ୱାରଦେଶ ଏତେ ସଙ୍କୀର୍ଣ୍ଣ ଏବଂ

ଅନୁଚିତ ଯେ କୁଡ଼ିଆ ଭିତରକୁ ଯିବାବେଳେ ମନୁଷ୍ୟଙ୍କୁ ହାମୁଡ଼ି କରି ଯିବାକୁ ହୁଏ । ବିଶେଷଜ୍ଞମାନଙ୍କ ମତରେ ଏହା ଅତୀତର ଗହ୍ୱର-ନିବାସୀ ଆଦିମମାନଙ୍କର ପରମ୍ପରା । ବଂଶ ପରମ୍ପରା ଧରି ଆଦିମମାନେ ପ୍ରଥମେ ଗିରିଗୁହା ଏବଂ ପରେ ପର୍ଣ୍ଣକୁଟୀରରେ ବସବାସ କରି ନିଜର ଜୀବନାତିପାତ କରି ଆସୁଅଛନ୍ତି । ଏ କୁଟୀରସଭ୍ୟତା ଅନ୍ୟମାନଙ୍କ ଚକ୍ଷୁରେ ଯେତେ ହେୟ ହେଉ ନା କାହିଁକି ଏହା ପଛରେ ଯେଉଁ ସରଳ ଆନନ୍ଦ ନିହିତ ରହିଛି ସେ ଆନନ୍ଦ ଅନ୍ୟ ଜାତିମାନଙ୍କର ଆକାଶଚୁମ୍ବୀ ତୁଙ୍ଗ ସୌଧ ସଭ୍ୟତା ପଛରେ ନାହିଁ । ଏହିପରି ଆଦିମମାନଙ୍କର ନିବାସ । ସେମାନଙ୍କର ଖାଦ୍ୟ ବ୍ୟବସ୍ଥା ମଧ୍ୟ ସେହିପରି ସହଜ । ପ୍ରତ୍ୟେକ ଜାତିକୁ ତା'ର ଇତିହାସର ଆରମ୍ଭରେ ଶିକାରଜୀବୀରୂପେ ଦେଖିବାକୁ ମିଳେ । ପ୍ରତ୍ୟେକ ମନୁଷ୍ୟକୁ ସବୁ ପ୍ରଥମେ ତା'ର ସମସ୍ତ ଶକ୍ତି କେବଳ ଖାଦ୍ୟ ଆହରଣରେ ନିୟୋଜିତ କରିବାକୁ ହୋଇଥିଲା ଏବଂ ସାଧାରଣତଃ ଏହି ଖାଦ୍ୟ ଆହରଣର ଅର୍ଥ ଥିଲା ଶିକାର । ଅତୀତ କାଳରୁ ଆଜି ପର୍ଯ୍ୟନ୍ତ ଆଦିମମାନେ ଶିକାରଜୀବୀ । ଅବଶ୍ୟ ଖ୍ରୀଷ୍ଟ ପୂର୍ବ ଯୁଗରେ ଆଦିମମାନେ ସଭ୍ୟ ଜାତିମାନଙ୍କଠାରୁ କିଛି ପରିମାଣରେ କୃଷିବିଦ୍ୟା ଶିକ୍ଷା କରିବାକୁ ଚେଷ୍ଟା କରିଥିଲେ ଏଥିରେ ସନ୍ଦେହ ନାହିଁ । ବଣ, ପର୍ବତର ଅନୁର୍ବର ମାଟି ଉପରେ ଯେତିକି ଦୂର କୃଷିକାର୍ଯ୍ୟ ସମ୍ଭବ ସେତିକି ଦୂର ପର୍ଯ୍ୟନ୍ତ ଆଦିମମାନେ ଆଗେଇ ଅଛନ୍ତି । ଆଜିକାଲି ଭାରତ ତଥା ଉତ୍କଳର ଅନେକ ସ୍ଥାନରେ ଆଦିମମାନଙ୍କୁ କୃଷିଦ୍ୱାରା ଜୀବିକା ନିର୍ବାହ କରିବାର ଦେଖାଯାଏ । ଏମାନେ ଅତୀତରେ ଆର୍ଯ୍ୟମାନଙ୍କ ପାଖରୁ କୃଷି ସଭ୍ୟତାର ଅନୁକରଣ କରି ଆଜି କୃଷିବିଦ୍ୟାଦ୍ୱାରା ଜୀବିକା ନିର୍ବାହ କରିବା ପାଇଁ ବେଶୀ ଅଧିକ ସମର୍ଥ ହୋଇଅଛନ୍ତି । କିନ୍ତୁ କୃଷିବିଦ୍ୟାରେ ଯେତେ ଅଗ୍ରସର ହେଲେ ସୁଦ୍ଧା ଶିକାର-ଜୀବିକା ତ୍ୟାଗ କରିବାକୁ ସମର୍ଥ ହୋଇ ପାରି ନାହାନ୍ତି । ଶିକାରର ପ୍ରଧାନ ଅସ୍ତ୍ର ଧନୁ ଏବଂ ଶର । ଧାତୁଯୁଗ ଆଗରୁ ଅନୁନ୍ନତ ଧରଣର ପ୍ରସ୍ତର ନିର୍ମିତ ହତିଆର ସାହାଯ୍ୟରେ ଆଦିମମାନେ ଶିକାର କରୁଥିଲେ । କିନ୍ତୁ କ୍ରମେ ଯେତେବେଳେ ଲୁହାର ବ୍ୟବହାର ମନୁଷ୍ୟକୁ ଜଣାଗଲା ସେତେବେଳେ ଲୌହଯୁକ୍ତ ଶର ସାହାଯ୍ୟରେ ଶିକାର କାର୍ଯ୍ୟ ସହଜ ହୋଇଗଲା । ଆଜି ପ୍ରତ୍ୟେକ ଆଦିମ ପରିବାରରେ ଧନୁଶର ନିଶ୍ଚୟ ଦେଖିବାକୁ ମିଳିବ, କାରଣ ଏହି ସହଜସାଧ୍ୟ ଅସ୍ତ୍ର ଯେତିକି ମାରାତ୍ମକ, ସେତିକି ସରଳ ପ୍ରଣାଳୀରେ ନିର୍ମିତ ଏବଂ ସେତିକି ମାତ୍ରାରେ ଏହା ଆଦିମମାନଙ୍କ ଜୀବିକା ନିର୍ବାହର ଏକ ପ୍ରଧାନ ପନ୍ଥା । ଆଦିମମାନେ ମାଂସାଶୀ, ପାଶ୍ଚାତ୍ୟ ଜଗତର ଯେତେ ସବୁ ସଭ୍ୟ ଜାତି ସେମାନେ ମଧ୍ୟ ମାଂସାଶୀ । ପାଶ୍ଚାତ୍ୟ ଅଧିବାସୀମାନେ ମାଂସାଶୀ କାରଣ ଶୀତପ୍ରଧାନ ଜଳବାୟୁରେ ମାଂସର ଆବଶ୍ୟକତା ଅପରିହାର୍ଯ୍ୟ । ଆଦିମମାନେ ମାଂସାଶୀ, କାରଣ ସେମାନେ ସୃଷ୍ଟିର ଆଦିମ ମନୁଷ୍ୟ, ଏବଂ ସୃଷ୍ଟିର ପ୍ରତ୍ୟେକ ଆଦିମ ମନୁଷ୍ୟକୁ ଶିକାରଦ୍ୱାରାହିଁ ଜୀବିକା ନିର୍ବାହ କରିବାକୁ

ପଡ଼ୁଥିଲୁ । ଏପରିକି ଅତୀତ କାଳରେ ଆର୍ଯ୍ୟ ମୁନି ଋଷି, ରାଜା ସମ୍ରାଟ, ସେମାନେ ମଧ୍ୟ ମାଂସାଶୀ ଥିଲେ, କାରଣ କୃଷି ଜୀବିକା ସେମାନଙ୍କୁ ଜଣାଥିଲେ ସୁଦ୍ଧା ଶିକାର ଜୀବିକା ସେମାନଙ୍କର ସୁଦୂର ପୂର୍ବପୁରୁଷମାନଙ୍କର ଜୀବନପନ୍ଥା ଥିଲା ଯାହାକୁ କି ଆର୍ଯ୍ୟମାନେ ଏକାବେଳକେ ଭୁଲି ପାରି ନ ଥିଲେ । ଅତି ଅତୀତ କାଳରେ ପ୍ରତ୍ୟେକ ଜାତିକୁ ପ୍ରଧାନତଃ ମାଂସାଶୀ ରୂପେ ଜୀବିକା ନିର୍ବାହ କରିବାକୁ ପଡ଼ୁଛି । ପରବର୍ତ୍ତୀ ଯୁଗରେ ମାଂସ ପରିବର୍ତ୍ତେ ଶସ୍ୟ ମନୁଷ୍ୟର ପ୍ରଧାନ ଖାଦ୍ୟରେ ପରିଣତ ହୋଇଛି । ଆଜି ଆଦିମମାନେ ମଧ୍ୟ ଶସ୍ୟକୁ ସେମାନଙ୍କର ମୁଖ୍ୟ ଖାଦ୍ୟରେ ପରିଣତ କଲେଣି । ଯଦିଚ ସେମାନେ କୃଷିବିଦ୍ୟାରେ ସେପରି ବିଶେଷ ପାରଗତା ଲାଭ କରି ପାରି ନାହାନ୍ତି, ତଥାପି ଅନ୍ୟ ପ୍ରତିବେଶୀ ଜାତି - ମାନଙ୍କ ସଂସର୍ଗରେ ଆସିବା ଯୋଗୁଁ ସେମାନଙ୍କୁ ଶସ୍ୟ ସଂଗ୍ରହ କରିବାକୁ ସେପରି କଷ୍ଟ ହେଉ ନାହିଁ । କିନ୍ତୁ ଯେତେ ଯାହା ହେଉ, ଯେଉଁ ଆଦିମ ଅଧିବାସୀ- ମାନେ ସମତଳ ପ୍ରଦେଶମାନଙ୍କ ପାଖରୁ ବହୁ ଦୂର ଦୁର୍ଗମ ଅଗମ୍ୟ ପର୍ବତ ପାହାଡ଼ ମଧ୍ୟରେ ବସବାସ କରୁଛନ୍ତି ସେମାନଙ୍କର ଆଜିସୁଦ୍ଧା ମାଂସହିଁ ପ୍ରଧାନ ଖାଦ୍ୟ ଏବଂ ଶିକାରହିଁ ଶ୍ରେଷ୍ଠ ଜୀବିକା । ଏ ହେଲା ଆଦିମମାନଙ୍କର ଖାଦ୍ୟ । ସେମାନଙ୍କର ପୋଷାକ ପରିଚ୍ଛଦ ମଧ୍ୟ ଯେତେଦୂର ସମ୍ଭବ ସରଳ ଏବଂ ସଂକ୍ଷେପ । ସୃଷ୍ଟିର ଆରମ୍ଭରେ ମନୁଷ୍ୟକୁ ଉଲଗ୍ନ ରୂପେହିଁ ଦେଖିବାକୁ ମିଳୁଛି । କ୍ରମେ ସେହି ଉଲଗ୍ନ ମନୁଷ୍ୟ ଲଜ୍ଜା ନିବାରଣ ପାଇଁ ଗଛର ପତ୍ର ଏବଂ ବଳ୍‌କଳ ପ୍ରଭୃତିକୁ ନିଜର ପରିଚ୍ଛଦ ରୂପେ ବ୍ୟବହାର କରିଛି । ତା'ପରେ ସଭ୍ୟତାର ଅଗ୍ରଗତି ସଙ୍ଗେ ସଙ୍ଗେ ସେ ସୂକ୍ଷ୍ମ ବସ୍ତ୍ରର ବ୍ୟବହାର କରିଛି । ଆଦିମମାନେ ପ୍ରଥମେ ନିଶ୍ଚୟ ଉଲଗ୍ନ ଥିଲେ । ତା'ପରେ ସେମାନେ ଗଛର ପତ୍ର ଏବଂ ବଳ୍‌କଳ ବ୍ୟବହାର କରି ଲଜ୍ଜା ନିବାରଣ କଲେ । କ୍ରମେ କ୍ରମେ ଅପର ଜାତିମାନଙ୍କର ସଂସର୍ଗରେ ଆସି ସାମାନ୍ୟ ମାତ୍ରାରେ ଲୁଗା ପଟା ପିନ୍ଧି ଶିଖିଲେ । କିନ୍ତୁ ଆପାଦମସ୍ତକ ବସ୍ତ୍ର ବିଜଡ଼ିତ ହୋଇ ଶୀତ, ଗ୍ରୀଷ୍ମ, ବର୍ଷା ସବୁ ଋତୁରେ ଆଲୋକ, ପବନକୁ ଶରୀର ପାଖରୁ ପୃଥକ ରଖିବାକୁ ଆଦିମମାନେ କେବେହେଁ ଚେଷ୍ଟା କରି ନାହାନ୍ତି । ଲଜ୍ଜା ନିବାରଣ ପାଇଁ ଯେତିକି ବସ୍ତ୍ରାଭରଣର ପ୍ରୟୋଜନ ସେତିକିରେ ସେମାନେ ସନ୍ତୁଷ୍ଟ । ଏପରିକି ଯେଉଁ ଆଦିମମାନେ ଏ ପର୍ଯ୍ୟନ୍ତ ଆମ ସଭ୍ୟତାକୁ ଦୂରରେ ରଖି ସେମାନଙ୍କର ଅଭେଦ୍ୟ ଗିରି ଦୁର୍ଗ ମଧ୍ୟରେ ସ୍ୱଚ୍ଛନ୍ଦରେ ବସବାସ କରୁଛନ୍ତି ସେମାନେ ଅତି ସଂକ୍ଷେପରେ ଲଜ୍ଜା ନିବାରଣ ଛଡ଼ା ଲୁଗାପଟା ପ୍ରତି ପ୍ରାୟ ଆକୃଷ୍ଟ ହୋଇ ନାହାନ୍ତି । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ବିଖ୍ୟାତ ଐତିହାସିକ ଓ ତଥ୍ୟ- ସଂଗ୍ରାହକ ସାର୍ ଉଇଲିୟମ ହାଣ୍ଟାର୍ ଓଡ଼ିଶାର ପାର୍ବତ୍ୟ ଅଞ୍ଚଳରେ 'ଜୁଆଙ୍ଗ' ବା 'ପତ୍ରୁଆ' ନାମକ ଏକ ଆଦିମ ସମ୍ପ୍ରଦାୟର ଲୋକଙ୍କୁ ଦେଖିଥିଲେ ଯେଉଁମାନେକି ସେ ପର୍ଯ୍ୟନ୍ତ ଲୁଗାର ବ୍ୟବହାର ଜାଣି ନ ଥିଲେ ଏବଂ ଗଛର ପତ୍ର ସାହାଯ୍ୟରେ ଲଜ୍ଜା ନିବାରଣ କରୁଥିଲେ । ସନ ୧୮୭୧ ମସିହାର ଜନ-ସୁମାରି ବେଳେ

ଏହି ଜୁଆଙ୍ଗ ସମ୍ପ୍ରଦାୟର ଲୋକସଂଖ୍ୟା କେବଳମାତ୍ର ଦଶ ହଜାର ଥିଲା । ବ୍ରିଟିଶ ସରକାର ଏହି ସଂପ୍ରଦାୟର ଲୋକମାନଙ୍କ ମଧ୍ୟରେ ଲୁଗାର ପ୍ରଚଳନ କରିବା ପାଇଁ ଚେଷ୍ଟା କରି ସୁଦ୍ଧା ସଫଳକାମ ହୋଇ ପାରି ନ ଥିଲେ । ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଜୁଆଙ୍ଗମାନେ ଧାତୁର ବ୍ୟବହାର ଜାଣି ନ ଥିଲେ ଏବଂ ସେମାନଙ୍କ ସ୍ୱଭାଷାରେ ଲୁହା କିମ୍ବା ଅନ୍ୟ କୌଣସି ଧାତୁର ପ୍ରତିଶବ୍ଦ ମଧ୍ୟ ନ ଥିଲା । କିନ୍ତୁ ଏହି ଜୁଆଙ୍ଗ ଗାଇଜରେ ପ୍ରସ୍ତର ନିର୍ମିତ ବହୁବିଧ ଅସ୍ତ୍ରଶସ୍ତ୍ର ଦେଖିବାକୁ ମିଳେ । ସେମାନଙ୍କର କୁଡ଼ିଆ ମନୁଷ୍ୟର ସବୁଠାରୁ ସଂକୀର୍ଣ୍ଣ ଏବଂ ଛୋଟ ବାସସ୍ଥଳୀମାନଙ୍କ ମଧ୍ୟରେ ଅନ୍ୟତମ । ଡାକ୍ତର ସାହେବଙ୍କ ଭାଷାରେ ଏହି ଜୁଆଙ୍ଗମାନେ ଏ ଯୁଗପାଇଁ ସୁଦୂର ପ୍ରସ୍ତରଯୁଗର ଅବଶିଷ୍ଟାଂଶ ମାତ୍ର । ସେ ଯାହାହେଉ, ସ୍ୱଳ୍ପରେ ଲଜ୍ଜା ନିବାରଣ କରି ଆଦିମ ନରନାରୀ ଚିରଦିନ ସେମାନଙ୍କର ସ୍ୱାସ୍ଥ୍ୟବାନ ଅଙ୍ଗ ସୌଷ୍ଠବକୁ ବାରମାସ, ଷଡ଼ଋତୁ, ଶୀତ, ଗ୍ରୀଷ୍ମ, ବର୍ଷା ବସନ୍ତର ବିଭିନ୍ନ ପ୍ରାକୃତିକ ପ୍ରକୋପ ମଧ୍ୟରେ କର୍ମବ୍ୟସ୍ତ ରଖିଛନ୍ତି । ସେମାନଙ୍କର ମାଂସପେଶୀ ପ୍ରଚଣ୍ଡ ସୂର୍ଯ୍ୟରଶ୍ମିରେ ଦୃଢ଼ୀଭୂତ, ବର୍ଷାର ମୂଷଳଧାରା ପାଇଁ ଅଭ୍ୟସ୍ତ ଏବଂ ଶୀତର ଦାରୁଣ ପ୍ରକୋପ ପାଇଁ ମଧ୍ୟ ପ୍ରସ୍ତୁତ । ପ୍ରକୃତ ଗହଣରେ ଆଦିମମାନଙ୍କର ଉନ୍ମୁକ୍ତ, ଅର୍ଦ୍ଧନଗ୍ନ ଶରୀରହିଁ ସେମାନଙ୍କର ଶ୍ରେଷ୍ଠ ବେଶ ଭୂଷା ।

ଏ ଗଲା ଆଦିବାସୀମାନଙ୍କର ବାସସ୍ଥଳୀ, ଅହାର ଓ ବେଶ ଉପରେ ଅତି ସଂକ୍ଷେପରେ ପଦେ । ବର୍ତ୍ତମାନ ସେମାନଙ୍କର ଧର୍ମ, ବିଶ୍ୱାସ ଏବଂ କଳା-କୌଶଳ ଉପରେ ସଂକ୍ଷେପରେ ଆଲୋଚନା କରାଯାଉ । ଆଦିମମାନଙ୍କର ଧର୍ମ ପୃଥିବୀର ପ୍ରାଚୀନତମ ଧର୍ମ ଏବଂ ଏଧର୍ମର ମେରୁଦଣ୍ଡ ହେଉଛି ପ୍ରକୃତ ପୂଜା । ଆଦିମାନବ ପ୍ରକୃତିର ପ୍ରଚଣ୍ଡ ରୂପରେ ଭୟ ତ୍ରସ୍ତ ହୋଇ ଆକାଶ, ପବନ, ଝଞ୍ଜା, ଅଗ୍ନି, ପର୍ବତ, ନଦୀ ପ୍ରଭୃତିର ଆରାଧନା କରିଛି । ପ୍ରକୃତିର ପ୍ରତ୍ୟେକ ହିତପ୍ରଦ ଅବିଷ୍କାର ପଛରେ ସତେ ଯେପରି କୌଣସି ଅଦେଖା ହାତ ରହିଛି ଏବଂ ସେହି ଅଦେଖା ଦେବତାର କୋପରେ ମନୁଷ୍ୟର ବିପଦ ଏହାହିଁ ଆଦିମମାନଙ୍କର ବିଶ୍ୱାସ । ବିଶେଷଜ୍ଞମାନଙ୍କ ମତରେ ଆଦିମମାନେ ଏକ ସର୍ବଶକ୍ତିମାନ୍ ଈଶ୍ୱରଙ୍କର ଅସ୍ତିତ୍ୱ ଉପରେ ବିଶ୍ୱାସ କରିପାରି ନାହାନ୍ତି । ଏକେଶ୍ୱରବାଦ ସେମାନଙ୍କୁ ଅଜଣା ଅଜଣା; କାରଣ ପ୍ରକୃତିର ବିଭିନ୍ନ ରୂପକୁ ବିଭିନ୍ନ ଶକ୍ତିରୂପେ ବିଶ୍ୱାସ କରି ଆଦିମମାନେ ଅନେକ ଦେବଦେବୀର କଳ୍ପନା କରିଅଛନ୍ତି । ଆକାଶ ଦେବତା, ଅଗ୍ନି ଦେବତା, ନଦୀ ଦେବତା, ଅରଣ୍ୟ ଦେବତା, ପର୍ବତ ଦେବତା ଇତ୍ୟାଦି ଅନେକାନେକ ଦେବତା ଆଦିମମାନଙ୍କର ପୂଜ୍ୟ । ବିବର୍ତ୍ତନ ପଥରେ ପ୍ରତ୍ୟେକ ଧର୍ମର ଆରମ୍ଭ ଠିକ୍ ଏହି ପ୍ରକୃତି ପୂଜା ପାଖରୁ । ଅତୀତର ବୈଦିକ ଆର୍ଯ୍ୟ ମୁନି ଋଷିମାନେ ମଧ୍ୟ ବେଦର ଅମର ପଂକ୍ତିରେ ପ୍ରକୃତିର ରୂପ ବର୍ଣ୍ଣନା କରି ଅଗ୍ନି, ବରୁଣ, ପବନ ପ୍ରଭୃତି ଦେବତାମାନଙ୍କର ସ୍ତୁତି କରି ଯାଇଥିଲେ । ତେବେ

ବୈଦିକ ପ୍ରକୃତି ପୂଜା ଏବଂ ଆଦିମ ପ୍ରକୃତି ପୂଜା ମଧ୍ୟରେ ପାର୍ଥକ୍ୟ ଏହି ଯେ ବୈଦିକ ଆର୍ଯ୍ୟମାନେ ପ୍ରକୃତିର ବିଭିନ୍ନ ଅବୟବ ଯଥା ଅଗ୍ନି, ପବନ, ଆକାଶ, ବର୍ଷା ପ୍ରଭୃତିକୁ ମାନବ ହିତୈଷୀ ଦେବତା ରୂପେ କଳ୍ପନା କରି ସେମାନଙ୍କର ଗୁଣ ବର୍ଣ୍ଣନା କରୁଥିଲେ ଏବଂ ସଦାସର୍ବଦା ମାନବର ଉପକାର ପାଇଁ ଏହି ଦେବତାମାନଙ୍କୁ ପୂଜା, ଆରାଧନା ଏବଂ ସ୍ତୁତିଗାନଦ୍ୱାରା ସନ୍ତୁଷ୍ଟ ରଖିବାକୁ ଚେଷ୍ଟା କରୁଥିଲେ । କିନ୍ତୁ ଆଦିମମାନଙ୍କ ପାଖରେ ପ୍ରକୃତି ଭୟାବହ, ଭୟଙ୍କର ଏବଂ ଅତି ପ୍ରଳୟଙ୍କରୀ । ପ୍ରକୃତିର ପ୍ରତ୍ୟେକ ଅଙ୍ଗ ଆଦିମ ମନରେ ଭୟ ସଞ୍ଚାର କରିଛି । ଅରଣ୍ୟ ଦେବତାକୁ କିପରି କିମ୍ବା ହିତୈଷୀ ଦେବତାରୂପେ ଦେଖିବା ଅସମ୍ଭବ, କାରଣ ଅରଣ୍ୟ ଦେବତାର ଗହନ ଗର୍ଭରେ କେତେ ଭୟଙ୍କର ହିଂସ୍ରଜନ୍ତୁ ସତେ ଯେପରି ମନୁଷ୍ୟକୁ ଗ୍ରାସ କରିବାକୁ ଦେବତା ପାଖରୁ ଆଦେଶ ପାଇ ଅପେକ୍ଷା କରିଛନ୍ତି । ପର୍ବତ ଦେବତା ମଧ୍ୟ ତଦ୍ରୂପ ଭୟଙ୍କର । ବର୍ଷା, ବାତ୍ୟା କଅଣ ଆଦିମମାନଙ୍କର କ୍ଷୁଦ୍ର ପର୍ଣ୍ଣକୁଟୀର ଧ୍ୱସ୍ତ ବିଧ୍ୱସ୍ତ କରି ଦିଏନା ? ତେବେ ବର୍ଷା ଦେବତା ଏବଂ ଝଞ୍ଜା ଦେବତା କ'ଣ ଭୟଙ୍କର ଏବଂ ନିର୍ଦ୍ଦୟ ନୁହେଁ ? ଅଗ୍ନିଦେବତାଙ୍କ କୋପରେ ଆଦିମମାନଙ୍କ ବାସାଞ୍ଚଳ ପୋଡ଼ି ଧ୍ୱଂସ ହୋଇଯାଏ, ତେଣୁ ସେ ମଧ୍ୟ ଭୟଙ୍କର । ଆର୍ଯ୍ୟମାନେ ଇନ୍ଦ୍ର ଦେବତାର ସ୍ତୁତି ଗାନ କରୁଥିଲେ କାରଣ ଇନ୍ଦ୍ରଙ୍କ ଦୟାରେ ବର୍ଷା ହେଉଥିଲା ଏବଂ ବର୍ଷାଦ୍ୱାରା ସେମାନଙ୍କର କୃଷିକାର୍ଯ୍ୟ ସଫଳ ହେଉଥିଲା । ଇନ୍ଦ୍ରଙ୍କ ପରି ଅପର ସମସ୍ତ ଦେବତାଙ୍କ ପାଖରୁ ମଧ୍ୟ ଆର୍ଯ୍ୟମାନେ ଉପକାର ପାଇବାର ବିଶ୍ୱାସ କରୁଥିଲେ ଏବଂ ସେହି ବିଶ୍ୱାସ ପାଇଁ ଦେବତାମାନଙ୍କୁ ସନ୍ତୁଷ୍ଟ କରିବାର ପ୍ରବଳ ଉଦ୍ୟମ ସେମାନଙ୍କ ଧର୍ମରେ ଗଢ଼ି ଉଠିଥିଲା । କିନ୍ତୁ ଦେବତା ପାଖରୁ ଉପକାର ପାଇବାର ଆଶା ଟିକିଏ ଆଦିମମାନଙ୍କ ମନରେ ଜାଗରିତ ହୋଇ ପାରି ନଥିଲା କାରଣ ସେମାନେ ଦେବତାମାନଙ୍କୁ କେବଳ ମନୁଷ୍ୟର କ୍ଷତି ସାଧନ କରୁଥିବାର ଦେଖିଥିଲେ । ଆଦିମ ବିଶ୍ୱାସରେ ଦେବତା ଖୁବ୍ ଶକ୍ତିଶାଳୀ, କିନ୍ତୁ ଦେବତାର ସେ ଶକ୍ତି ମନୁଷ୍ୟକୁ ଦଣ୍ଡ ଦେବାପାଇଁ । ଅବଶ୍ୟ ଦେବତାମାନଙ୍କ ପ୍ରତି ଏହି ପ୍ରବଳ ଭୟ ଆଦିମମାନଙ୍କୁ ଧର୍ମଭିରୁ କରିଛି ଏବଂ ଏହି ଧର୍ମଭୟ ସେମାନଙ୍କର ନୈତିକ ମେରୁଦଣ୍ଡ ସବଳ କରିଛି । ଅପରାଧ, ଅନ୍ୟାୟ କଲେ ନିଶ୍ଚୟ ଦେବତା ପାଖରୁ ଦଣ୍ଡ ମିଳିବ, ସୁତରାଂ ଅନ୍ୟାୟ, ଅବିଚାର ପାଖରୁ ଦୂରରେ ରହିବାକୁ ପଡ଼ିବ । ପାପ କଲେ ପୂଜା ଦେଇ ଦେବତାଙ୍କୁ ସନ୍ତୁଷ୍ଟ କରି ସେ ପାପରୁ ମୁକ୍ତି ପାଇବାର ଏ ଯେଉଁ ଅଭିପ୍ରାୟ ଏହା ଆମ ଧର୍ମର ଗୋଟିଏ ଅଙ୍ଗ, ଏହାଦ୍ୱାରା ପାପକୁ ପ୍ରଶ୍ରୟ ଦିଆଯାଉଛି ଏବଂ ଦେବତାଙ୍କୁ ମଧ୍ୟ କଳଙ୍କିତ କରାଯାଉଛି । କିନ୍ତୁ ଆଦିମ ଦେବତା ପାପର ଦଣ୍ଡ ଦେବାକୁହିଁ ପ୍ରସ୍ତୁତ, ପାପ କ୍ଷମା କରିବାକୁ ନୁହେଁ । ଏହି ଦଣ୍ଡଭୟ କାରଣରୁ ଯୁଗ ଯୁଗ ଧରି ଆଦିମମାନଙ୍କୁ ଘୃଣ୍ୟ ଧରଣର ମିଥ୍ୟା, କପଟତା, କୁକର୍ମ, ପାପାଚାର ପାଖରୁ ଦୂରରେ ରଖିଛି । ଆମ-ମାନଙ୍କର ଭଗବାନ ଯେତିକି ଶକ୍ତିଶାଳୀ ସେତିକି ଦୟାଳୁ ଏବଂ ସେତିକି କ୍ଷମାଶୀଳ

ମଧ୍ୟ । କିନ୍ତୁ ଆଦିମ ବିଶ୍ୱାସରେ ଶକ୍ତି ଏବଂ ଦୟା ଏ ଦୁଇଟି ଯେପରି ବିପରୀତାର୍ଥ ବୋଧକ ଶବ୍ଦ ଏବଂ ଏକ ବ୍ୟକ୍ତିବିଶେଷ ନିକଟରେ ଯେପରି ଏ ଦୁଇଟି ପଦାର୍ଥର ସମ୍ମିଶ୍ରଣ ଅସମ୍ଭବ । ଶକ୍ତିଶାଳୀ ଦେବତାକୁ ଆଦିମମାନଙ୍କର କେତେ ପ୍ରବଳ ଭୟ ସେ ବିଷୟରେ ହାଷ୍ଟିଂସ ସାହେବ ଏ କାଳର ଜନୈକ ଆଦିମର ଦୃଷ୍ଟାନ୍ତ ଦେଇ ଗୋଟିଏ ଘଟଣାର ଉଲ୍ଲେଖ କରିଅଛନ୍ତି । ଥରେ ଜଣେ ଖ୍ରୀଷ୍ଟିୟାନ ଧର୍ମପ୍ରଚାରକ ସର୍ବଶକ୍ତିମାନ ଈଶ୍ୱରଙ୍କର ଗୁଣାବଳୀ କୀର୍ତ୍ତନ କରି ସାନ୍ତାଳମାନଙ୍କ ଆଗରେ ଖ୍ରୀଷ୍ଟିୟାନ ଧର୍ମ ସମ୍ବନ୍ଧରେ ବକ୍ତୃତା ଦେଉଥିଲେ । ଈଶ୍ୱରଙ୍କର ଶକ୍ତି ବିଷୟ ଶୁଣି ସାରିଲା ପରେ ଶ୍ରୋତାମାନଙ୍କ ମଧ୍ୟରୁ ଜଣେ ସାନ୍ତାଳ ପଚାରିଲା, "ଯଦି ସେହି ସର୍ବଶକ୍ତିମାନ ଈଶ୍ୱର ମୋତେ ଖାଇ ଯାଆନ୍ତି ତେବେ ?" ସୁତରାଂ, ଯା ପାଖରେ ଶକ୍ତି ଅଛି ତା' ପାଖରୁ ଅଶଙ୍କା କରିବାର ମଧ୍ୟ ଯଥେଷ୍ଟ କାରଣ ଅଛି, ଏହା ଏ ପର୍ଯ୍ୟନ୍ତ ଆଦିମମାନଙ୍କର ବିଶ୍ୱାସ । ସେ ଯାହାହେଉ, ଆଦିମମାନେ ଦେବତାମାନଙ୍କୁ ଭୟ କରନ୍ତି ଏବଂ ଦେବତା ପାଖରୁ ଉପକାରର ପ୍ରତ୍ୟାଶା ନ ରଖି ମଧ୍ୟ ସେମାନଙ୍କୁ ସନ୍ତୁଷ୍ଟ ରଖିବାର ଚେଷ୍ଟା କରନ୍ତି । ପ୍ରକୃତି ପୂଜା ଛଡ଼ା ଆଦିମମାନଙ୍କୁ ଅନ୍ୟ ଦେବତା, ଯଥା, ନିଜର ବଂଶ-ଦେବତା, ଗୃହ-ଦେବତା, ଜାତି-ଦେବତା ଇତ୍ୟାଦି ଅନ୍ୟାନ୍ୟ ଦେବତାମାନଙ୍କୁ ମଧ୍ୟ ପୂଜା କରିବାକୁ ପଡ଼େ । ଦେବତାମାନଙ୍କ ଛଡ଼ା ପୂର୍ବପୁରୁଷମାନଙ୍କର ପ୍ରେତାତ୍ମାମାନଙ୍କୁ ମଧ୍ୟ ସନ୍ତୁଷ୍ଟ ରଖିବାକୁ ହୁଏ । ଆଦିମମାନଙ୍କ ବିଶ୍ୱାସରେ ପୃଥିବୀରେ ଅଗଣିତ ଭୂତ, ପ୍ରେତ, ପିଶାଚ, ରାକ୍ଷସମାନଙ୍କର ବସବାସ ରହିଛି, ଯେଉଁମାନେକି ମନୁଷ୍ୟମାନଙ୍କର ଅନିଷ୍ଟ କରିବା ପାଇଁ ସର୍ବଦା ଚେଷ୍ଟିତ । ଏମାନଙ୍କ କୋପ ଏବଂ ଦାଉରୁ ରକ୍ଷା ପାଇବା ପାଇଁ ଆଦିମମାନେ ସଦା ସର୍ବଦା ବ୍ୟସ୍ତ । ଆଦିମମାନଙ୍କର ପୂଜା ପଦ୍ଧତିର ସଂଖ୍ୟା ଯଥେଷ୍ଟ । ସେମାନଙ୍କ ନିଜ ମତରେ ସେମାନେ ସେମାନଙ୍କର ଉତ୍ସବ ଇତ୍ୟାଦି ପାଳନ କରନ୍ତି । ଦେବତାମାନଙ୍କର ସନ୍ତୋଷ ପାଇଁ ଆଦିମମାନେ କେବଳ ପୂଜା, ଉପାସନା ବ୍ୟତୀତ ରକ୍ତ ଦାନରେ ମଧ୍ୟ ବିଶ୍ୱାସ କରୁଥିଲେ ଏବଂ କରନ୍ତି । ଓଡ଼ିଶାର ସାନ୍ତାଳମାନେ ଆଜି ପର୍ଯ୍ୟନ୍ତ ଛେଳି, କୁକୁଡ଼ା ପ୍ରଭୃତିର ରକ୍ତରେ ନିଜର ଦେବତାମାନଙ୍କୁ ସନ୍ତୁଷ୍ଟ କରନ୍ତି । କିନ୍ତୁ କେବଳ ପଶୁ ପକ୍ଷୀର ରକ୍ତରେ ଆଦିମ ମନ ସନ୍ତୁଷ୍ଟ ନ ଥିଲା । ଦେବତାର ପୂଜା ପାଇଁ ନରରକ୍ତ ଦାନ କରିବା ପାଇଁ ମଧ୍ୟ ସେମାନେ ଅଭ୍ୟସ୍ତ ଥିଲେ । ଉତ୍କଳଖଣ୍ଡର କନ୍ଧମାନେ ନରରକ୍ତ ଦାନ ବା ନରବଳି ପାଇଁ ପ୍ରସିଦ୍ଧ । ଏହି କନ୍ଧ ସମ୍ପ୍ରଦାୟ ବହୁ ପୁରୁଣା କାଳରୁ ଓଡ଼ିଶାର ପାର୍ବତ୍ୟାଞ୍ଚଳ ବିଶେଷତଃ ଦକ୍ଷିଣରେ ଗଞ୍ଜାମ, ଭଇଜାଗ ଜିଲ୍ଲାମାନଙ୍କରେ ବସବାସ କରି ଆସୁଛନ୍ତି । ଦେଢ଼ ହଜାର ବର୍ଷ ପୂର୍ବେ ଗ୍ରୀକ୍ ଭୌଗଳିକମାନେ କନ୍ଧମାନଙ୍କୁ ଭାରତର ଏହି ଉତ୍କଳ ଅଞ୍ଚଳରେହିଁ ବସବାସ କରୁଥିବାର ଦେଖିଥିଲେ । ତା' ବହୁ ପୂର୍ବରୁ ଆର୍ଯ୍ୟମାନଙ୍କ ଦ୍ୱାରା ବିତାଡ଼ିତ ହୋଇ କନ୍ଧମାନେ ବୋଧହୁଏ ଉତ୍କଳର ପର୍ବତ ପାହାଡ଼ ମଧ୍ୟରେ ଆଶ୍ରୟ ନେଇଥିଲେ । ଅନ୍ୟାନ୍ୟ ଆଦିମ

ସମ୍ପ୍ରଦାୟମାନଙ୍କ ପରି କନ୍ଧମାନେ ମଧ୍ୟ ଅନେକ ଦେବଦେବୀ, ଭୂତ, ପ୍ରେତ, ରାକ୍ଷସ ଇତ୍ୟାଦିରେ ବିଶ୍ୱାସ କରୁଥିଲେ ଏବଂ ସେମାନଙ୍କୁ ସନ୍ତୁଷ୍ଟ କରିବାକୁ ନାନାପ୍ରକାର ପୂଜା, ପର୍ବ ପାଳନ କରୁଥିଲେ । ସବୁ ଦେବତା ମଧ୍ୟରେ କନ୍ଧମାନେ ମାଟି ଦେବତା ବା ପୃଥିବୀ ଦେବତାକୁ ଅଧିକ ମାତ୍ରାରେ ଭୟ କରୁଥିଲେ ଏବଂ ସେମାନଙ୍କ ବିଶ୍ୱାସ ଅନୁଯାୟୀ ଏହି ଦେବତାକୁ ସନ୍ତୁଷ୍ଟ କରିବାର ଏକମାତ୍ର ଉପାୟ ଥିଲା ନରବଳି । ଯାହାକୁ ବଳି ଦିଆଯାଉଥିଲା ସେ 'ମେରିହା' ନାମରେ ଖ୍ୟାତ । ଏହି ମେରିହାକୁ ବଳି ଦିଆ ଯାଇ ସାରିଲା ପରେ ତାହାର ମାଂସକୁ ଖଣ୍ଡ ଖଣ୍ଡ କରି କାଟି ଏଯୁଗର କନ୍ଧମାନେ ନିଜ ନିଜର ଶସ୍ୟ କ୍ଷେତ୍ରରେ ସେ ମାଂସଖଣ୍ଡକୁ ପୋତି ଦେଉଥିଲେ । ତଦ୍ୱାରା ସେ କ୍ଷେତ୍ରରେ ଉତ୍ତମ ଶସ୍ୟ ଉତ୍ପନ୍ନ ହେବ ବୋଲି ସେମାନଙ୍କର ବିଶ୍ୱାସ ଥିଲା । କନ୍ଧମାନଙ୍କର ଏହି ନରବଳି ପ୍ରଥା ଧର୍ମ ନାମରେ ଏକ ଚରମ ନୃଶଂସତାର ଦୃଷ୍ଟାନ୍ତ ଏଥିରେ ସନ୍ଦେହ ନାହିଁ । କିନ୍ତୁ ଏପରି ନୃଶଂସତା ଅପରାପର ଧର୍ମରେ ମଧ୍ୟ ଦେଖାଯାଏ । ନରବଳି ପ୍ରଥା କେବଳ ଯେ କନ୍ଧମାନଙ୍କର ଧର୍ମର ଗୋଟିଏ ଅଙ୍ଗ ତାହା ନୁହେଁ, ପରନ୍ତୁ, ପୃଥିବୀର ବହୁ ପୁରାତନ ଧର୍ମରେ ନରବଳି ପ୍ରଥାର ପ୍ରଚଳନ ଥିଲା ଏହାର ଭୂରି ଭୂରି ପ୍ରମାଣ ରହିଛି । ପୌରାଣିକ ଯୁଗରେ ଆର୍ଯ୍ୟମାନଙ୍କ ସମାଜରେ ନରବଳି ପ୍ରଥାର ପ୍ରଚଳନ ଥିଲା ଏ କଥାର ପ୍ରମାଣ ପୁରାଣମାନଙ୍କରୁ ମିଳେ । ପ୍ରାଚୀନ ଗ୍ରୀକ୍ ସଭ୍ୟତାରେ ମଧ୍ୟ ନରବଳିର ଦୃଷ୍ଟାନ୍ତ ରହିଛି । ମେକ୍ସିକୋ ଦେଶର ନରବଳି ପ୍ରଥା ପୃଥିବୀ ପ୍ରସିଦ୍ଧ, କାରଣ ଦେବତା ଉଦ୍ଦେଶ୍ୟରେ ଏପରି ଅଗଣିତ ସଂଖ୍ୟାରେ ନିରୀହ ନରନାରୀଙ୍କୁ ବଳି ପୀଠରେ ହତ୍ୟା କରିବାର ଅନ୍ୟ କୌଣସି ଧର୍ମରେ ବା ଦେଶରେ ଦେଖା ଯାଇ ନାହିଁ । ଦକ୍ଷିଣ ଆମେରିକାର ଲୋହିତ ଭାରତୀୟ-ମାନଙ୍କ ମଧ୍ୟରେ ନରବଳି ପ୍ରଥାର ପ୍ରଭୂତ ପ୍ରଚଳନ ଥିଲା । ଆଫ୍ରିକା ମହାଦେଶର ନିଗ୍ରୋମାନେ ମଧ୍ୟ ନରବଳିରେ ବିଶ୍ୱାସ କରୁଥିଲେ । ଫିଲିପାଇନ ଦ୍ୱୀପପୁଞ୍ଜର ସ୍ଥାୟୀ ଅଧିବାସୀମାନଙ୍କ ମଧ୍ୟରେ ଏ ପ୍ରଥାର ପ୍ରଚଳନ ଥାଏ । ପ୍ରାଚୀନ ଆରବମାନଙ୍କର ନରବଳିରେ ବିଶ୍ୱାସ ଥିଲା । ମିଶର ଦେଶରେ ପ୍ରାଚୀନ ମିଶରୀୟମାନେ ସେମାନଙ୍କର ଶସ୍ୟ କ୍ଷେତ୍ରରେ ନରବଳି ଦେଉଥାଆନ୍ତି । ବୋର୍ଣ୍ଣିଓ ଦ୍ୱୀପରେ ମଧ୍ୟ ଏହିପରି ଶସ୍ୟ କ୍ଷେତ୍ରରେ ନରବଳି ଦେବାର ପ୍ରଥା ଥିଲା । ଏ ସବୁ ଦେଶ ଛଡ଼ା ଅନ୍ୟାନ୍ୟ ଅନେକ ଦେଶରେ ମଧ୍ୟ ନରବଳି ପ୍ରଥାର ଯଥେଷ୍ଟ ପ୍ରଚଳନ ଥିଲା । ସୁତରାଂ ନରବଳି ପରି ନୃଶଂସ ପ୍ରଥା ପାଇଁ କେବଳ କନ୍ଧମାନଙ୍କୁ ଦୋଷାରୋପ ନ କରି ପୃଥିବୀର ଅନ୍ୟାନ୍ୟ ଅନେକ ଜାତିଙ୍କୁ ମଧ୍ୟ ସ୍ୱଚ୍ଛନ୍ଦରେ ଦୋଷ ଦିଆଯାଇ ପାରେ । ଏବେସୁଦ୍ଧା ହିନ୍ଦୁ ସମାଜରେ ନରମେଧ ଯଜ୍ଞ ନ ହେଉଥିଲେ ସୁଦ୍ଧା ଦେବତାମାନଙ୍କୁ କ୍ଷୁଦ୍ର ବୃହତ୍ ଅନେକ ପ୍ରକାରର ପଶୁମାନଙ୍କର ରକ୍ତରେ ସନ୍ତୁଷ୍ଟ କରାଯାଉଛି । ଛାଗ, ମେଷ, ମହିଷ, ଅଗଣିତ ସଂଖ୍ୟାରେ ହିନ୍ଦୁ ଦେବ ଦେବୀଙ୍କ ଆଗରେ ପ୍ରତିବର୍ଷ ବଳି ପଡ଼ୁଛନ୍ତି ।

ଧର୍ମକୁ ବ୍ୟାଖ୍ୟା ଦେଇ ଏ ଯେଉଁ ରକ୍ତପାତ ଏହା ମନୁଷ୍ୟର ଗୋଟିଏ ଅତି ବଡ଼ କୁସଂସ୍କାର ଏବଂ ଅନ୍ଧବିଶ୍ୱାସ ଏଥିରେ ସନ୍ଦେହ ନାହିଁ । ସେ ଯାହା ହେଉ, ୧୮୩୬ ମସିହାରେ ଓଡ଼ିଶାର କନ୍ଧମାନେ ଇଂରାଜ ଶାସନ ତଳକୁ ଆସିଲେ ଏବଂ ଏଥି ସଙ୍ଗେ ସଙ୍ଗେ ସେମାନଙ୍କର ମେରିହା ପ୍ରଥା ବା ନରବଳି ସରକାରୀ ଆଇନ ଦ୍ୱାରା ବନ୍ଦ କରାଗଲା । ତଦବଧି କନ୍ଧମାନେ ନରରକ୍ତ ପରିବର୍ତ୍ତେ ଛାଗ ମହିଷାଦି ପଶୁ ରକ୍ତରେ ସେମାନଙ୍କର ଧରଣୀ ଦେବୀ ବା ଦେବତାଙ୍କୁ ସନ୍ତୁଷ୍ଟ କରାଉଛନ୍ତି ।

ଯୁଗେ ଯୁଗେ ପୃଥିବୀର ପ୍ରତ୍ୟେକ ଧର୍ମ ଏବଂ ବିଶ୍ୱାସର ପରିବର୍ତ୍ତନ ହୋଇଛି । ଆଦିମ ଧର୍ମ ଏବଂ ବିଶ୍ୱାସର ମଧ୍ୟ ଅନେକ ମାତ୍ରାରେ ପରିବର୍ତ୍ତନ ହୋଇଛି । ଆର୍ଯ୍ୟମାନଙ୍କର ସଂମିଶ୍ରଣରେ ଆସି ଆଦିମମାନେ ଆର୍ଯ୍ୟ ଦେବଦେବୀଙ୍କୁ ଅନେକ କ୍ଷେତ୍ରରେ ନିଜର କରିନେବାକୁ ବାଧ୍ୟ ହୋଇଛନ୍ତି । ଆଜିକାର ଭାରତରେ ପ୍ରକୃତ ପକ୍ଷେ ଲକ୍ଷ ଲକ୍ଷ ଆଦିବାସୀ ଏକପ୍ରକାର ଅଧା ହିନ୍ଦୁ । ହିନ୍ଦୁ ପୂଜା ପଦ୍ଧତି ମଧ୍ୟ ସେମାନେ ଅନେକ ଦିଗରୁ ଊଣା ଅଧିକ ଅନୁକରଣ କରିଛନ୍ତି । ଅନ୍ୟ ଦିଗରେ ହିନ୍ଦୁମାନେ ମଧ୍ୟ ଜେଉଁ ଅତୀତ କାଳରୁ ଆଦିମ ଧର୍ମ ଏବଂ ବିଶ୍ୱାସରୁ ଅନେକ ପଦାର୍ଥ ନିଜ ଧର୍ମ ମଧ୍ୟକୁ ସାଦରେ ଟାଣି ନେଇଛନ୍ତି । ବିଶ୍ୱାସ କରାଯାଏ, ଅନେକ ହିନ୍ଦୁ ଦେବଦେବୀ ଏବଂ ଅନେକ ହିନ୍ଦୁ ପର୍ବପୂଜା ହିନ୍ଦୁମାନଙ୍କର ନିଜସ୍ୱ ନୁହଁ ଏବଂ ସେ ସବୁ ଆଦିମ ଧର୍ମକୁ ଅନୁକରଣ କରାଯାଇଛି । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କାରଣ, ଭାରତ ଭୂଖଣ୍ଡରେ ବହୁଧର୍ମର ସଂଘର୍ଷ ଏବଂ ମିଳନ ଯୁଗ ଯୁଗ ଧରି ଘଟିଛି ଏବଂ ଯାହା ଫଳରେ ବିଭିନ୍ନ ଧର୍ମ ମଧ୍ୟରେ ପରସ୍ପରର ଭାବ ଏବଂ ବିଶ୍ୱାସର ଆଦାନ ପ୍ରଦାନ ହୋଇଛି । ହିନ୍ଦୁ ଧର୍ମ ଆଦିମଧର୍ମ ଉପରେ ନିଜର ପ୍ରଭାବ ବିସ୍ତାର କରିଛି ଏବଂ ଆଦିମ ଧର୍ମଦ୍ୱାରା ନିଜେ ମଧ୍ୟ ପ୍ରଭାବିତ ହୋଇଛି । କିନ୍ତୁ ହିନ୍ଦୁଧର୍ମ ଆଦିମ ଧର୍ମକୁ ଆତ୍ମସାତ୍ କରି ପାରିନାହିଁ ଏତିକରେ ହିଁ ଆଦିମ ଧର୍ମର ଚରମ ବିଶେଷତ୍ୱ । ଯେଉଁ ଲକ୍ଷ ଲକ୍ଷ ଆଦିବାସୀ ଅଦ୍ୟାବଧି ବହିର୍ଜଗତ ସହିତ ସମ୍ପର୍କ ରଖିବାକୁ ଇଚ୍ଛା କରି ନାହାନ୍ତି ସେମାନେ ସେମାନଙ୍କର ଅତୀତ ଧର୍ମ ଓ ବିଶ୍ୱାସ ଅକ୍ଷୁଣ୍ଣ ରଖିଅଛନ୍ତି । ଅତୀତର ସେହି ପ୍ରକୃତି ପୂଜା ଆଜି ମଧ୍ୟ ସେମାନଙ୍କର ଧର୍ମ ।

ଆଦିମମାନଙ୍କର ଆଇନ କାନୁନ୍ ଅତ୍ୟନ୍ତ ସରଳ ବିଶ୍ୱାସ ଉପରେ ଗଢ଼ା । ଯେ ହତ୍ୟାକାରୀ ତା'ର ରକ୍ତରେହିଁ ହତ୍ୟାର ପ୍ରତିଶୋଧ ନେବାର କଥା ଏବଂ ଏ ପ୍ରତିଶୋଧ ନେବାର ଭାର ନିହତ ବ୍ୟକ୍ତିର ବନ୍ଧୁବାନ୍ଧବ, ଆତ୍ମୀୟ ସ୍ୱଜନମାନଙ୍କ ଉପରେ ନ୍ୟସ୍ତ । କିନ୍ତୁ ହତ୍ୟାକାରୀ ଯଦି ନିହତ ବ୍ୟକ୍ତିର ଆତ୍ମୀୟ ସ୍ୱଜନମାନଙ୍କୁ ଉପଯୁକ୍ତ ପରିମାଣର ଶସ୍ୟ ପ୍ରଭୃତି କ୍ଷତି ପୂରଣ ଦଣ୍ଡ ଦେଇ ସେମାନଙ୍କୁ ସନ୍ତୁଷ୍ଟ କରିପାରେ ତେବେ ତାହାକୁ କ୍ଷମା କରାଯାଏ । ଯଦି କେହି ଜଣେ ଅନ୍ୟଜଣକୁ

ଅଭୁକ୍ତ କରେ ତେବେ ତାହାକୁ ଆହତବ୍ୟକ୍ତି ସମ୍ପୂର୍ଣ୍ଣ ସୁସ୍ଥ ହେଲା ପର୍ଯ୍ୟନ୍ତ ତାର ଭରଣ ପୋଷଣର ଦାୟିତ୍ୱ ନେବାକୁ ହୁଏ । ବାଦ, ପ୍ରତିବାଦ, କଳି, ଝଗଡ଼ା, ପ୍ରଭୃତିର ମୀମାଂସା ସାଧାରଣତଃ ଦ୍ୱନ୍ଦ୍ୱ ଯୁଦ୍ଧଦ୍ୱାରା ହେଉଥିଲା । ଜଣେ ପ୍ରକୃତରେ ଦୋଷୀ କି ନୁହେଁ ତାହା ଜାଣିବାପାଇଁ ଆଦିମ ସମାଜରେ କେତେଗୁଡ଼ିଏ ବିଶ୍ୱାସ-ମୂଳକ ପ୍ରଥା ଥାଏ । ଯଦି ଦୋଷୀ ଦୋଷ ସ୍ୱୀକାର ନକରେ ତେବେ ତାହାକୁ ଉତ୍ତପ୍ତ ଲୌହଖଣ୍ଡ ଉପର ଦେଇ ଚାଲିବାକୁ ହେଉଥିଲା ଏବଂ ଏଥିରେ ଯଦି ତା'ର କିଛି କ୍ଷତି ହେଉ ନଥିଲା ତେବେ ସେ ନିର୍ଦ୍ଦୋଷ ପ୍ରମାଣିତ ହେଉଥିଲା ଏବଂ ଯଦି କ୍ଷତି ହେଉଥିଲା ତେବେ ଦୋଷୀ ବୋଲି ପ୍ରମାଣିତ ହେଉଥିଲା । ଏପରି ଅପରାଧୀ ନିର୍ଣ୍ଣୟ ପ୍ରଣାଳୀ ପ୍ରାଚୀନ ଇଂଲଣ୍ଡର ଏଙ୍ଗ୍ଲୋ-ସ୍ୟାକ୍ସନ୍‌ମାନଙ୍କ ମଧ୍ୟରେ ମଧ୍ୟ ପ୍ରଚଳିତ ଥିଲା । ଆଦିମମାନେ ଦେବତା ଆଗରେ ଶପଥ ନେବାରେ ଯଥେଷ୍ଟ ବିଶ୍ୱାସ କରୁଥିଲେ । ଏହି ଶପଥଦ୍ୱାରା ମଧ୍ୟ ଅନେକ ସମୟରେ ଦୋଷୀ, ନିର୍ଦ୍ଦୋଷର ପରିଚୟ ମିଳୁଥିଲା । ଚୋର ଯଦି କିଛି ଚୋରି କରିଥାଏ ତେବେ ତାକୁ ସେ ଚୋରି ଜିନିଷ କିମ୍ବା ଫେରାଇ ଦେବାକୁ ପଡ଼ିବ, ନଚେତ୍ ସେ ଜିନିଷର ଦ୍ୱିଗୁଣିତ ମୂଲ୍ୟ ଦେବାକୁ ପଡ଼ିବ । କିନ୍ତୁ ଚୋର ଯଦି ଥରକୁ ଦୁଇଥର ଚୋରି କରେ ଏବଂ ତାହା ପ୍ରମାଣିତ ହୋଇଯାଏ ତେବେ ସେ ଚୋରକୁ ସମାଜର ସବୁଠାରୁ ଯାହା ଗୁରୁଦଣ୍ଡ ତାହାହିଁ ଶାସ୍ତି ଦିଆଯାଉଥିଲା । ଅର୍ଥାତ୍, ତାହାକୁ ସମାଜଚ୍ୟୁତ କରାଯାଉଥିଲା । ଏହିପରି ଦଣ୍ଡବିଧି ଉଣାଅଧିକ ସବୁ ଆଦିମ ସମ୍ପ୍ରଦାୟ ମଧ୍ୟରେ ପ୍ରଚଳିତ ଥିଲା । ମୋଟ ଉପରେ, ଆଦିମମାନଙ୍କର ଆଇନ କାନୁନ ଏକ ଜଟିଳ ସମସ୍ୟା ନଥିଲା । ସେମାନଙ୍କର ବିଚାର ପ୍ରଣାଳୀ ଥିଲା ସହଜ, ସେମାନଙ୍କର ବିଶ୍ୱାସ ଥିଲା ଅଟଳ ଏବଂ ଯଦିଚ ଅନେକ କ୍ଷେତ୍ରରେ ସେମାନେ ଅନ୍ଧ ବିଶ୍ୱାସୀ ଥିଲେ ତଥାପି ସେମାନଙ୍କର ସେହି ଅନ୍ଧ ବିଶ୍ୱାସ ପଛରେ ନ୍ୟାୟ ଏବଂ ସତ୍ୟ ବିଶ୍ୱାସ ମଧ୍ୟ ଥିଲା ।

ଆଦିମମାନଙ୍କର ଗୋଟିଏ ଅତି ପ୍ରଶଂସନୀୟ ସାମାଜିକ ଦିଗ ହେଉଛି ଆଦିମ ସମାଜରେ ନାରୀର ସ୍ଥାନ । ଆଦିମ ରମଣୀ କୌଣସି ଯୁଗରେ ପର୍ଦ୍ଦାନସୀନ କିମ୍ବା ଗୃହକୋଣ ବନ୍ଦିନୀ ରୂପେ ରହିନାହିଁ । ସେ ଚିରଦିନ ପୁରୁଷର ସହକର୍ମୀ, ଚିରଦିନ ପୁରୁଷପରି କର୍ମବ୍ୟସ୍ତ ଏବଂ ମୁକ୍ତ । ଅଥଚ, ପାଶ୍ଚାତ୍ୟ ଦେଶୀୟ ନାରୀ ସ୍ୱାଧୀନତାର ଆବର୍ଜନା ମଧ୍ୟ ଆଦିମ ସମାଜରେ ଦେଖିବାକୁ ମିଳେ ନାହିଁ । ସାଧାରଣତଃ ଆଦିମ ନାରୀ ତା'ର ସ୍ୱାମୀ ଉପରେ ଯଥେଷ୍ଟ ଆଧିପତ୍ୟ ବିସ୍ତାର କରି ଆସିଛି । ଆଦିମ ସମାଜରେ ବହୁ ବିବାହ ପ୍ରଥା ପ୍ରାୟ ବିରଳ । ଏପରିକି ଓଡ଼ିଶାର କନ୍ଧମାନଙ୍କ ମଧ୍ୟରେ ପ୍ରଥମା ସ୍ତ୍ରୀର ଜୀବିତାବସ୍ଥାରେ ସ୍ୱାମୀ ଦ୍ୱିତୀୟ ସ୍ତ୍ରୀ ବିବାହ କରେ ନାହିଁ ଏବଂ ଯଦି କଦାଚିତ ସେ ଦ୍ୱିତୀୟ ସ୍ତ୍ରୀ ବିବାହ କରେ ତେବେ ତାହା ପ୍ରଥମା ସ୍ତ୍ରୀର ଅନୁମତି ସହକାରେ । ସମାଜରେ ଯୁବକ ଯୁବତୀ-

ମାନଙ୍କର ଚରିତ୍ରକୁ ପବିତ୍ର ରଖିବା ପାଇଁ ଯଥେଷ୍ଟ ଯତ୍ନ ନିଆଯାଏ। ସାନ୍ତାଳ-ମାନଙ୍କ ମଧ୍ୟରେ ଅବିବାହିତ ଯୁବକମାନଙ୍କୁ ଅତିଶୟ କଡ଼ା ନଜରରେ ରଖାଯାଏ ଏବଂ ସେପାଇଁ ସାନ୍ତାଳ ବସତିରେ ପୃଥକ କର୍ମଗୃହ ନିଯୁକ୍ତ କରାଯାଇଥାଏ। ଓଡ଼ିଶାର ଜୁଆଙ୍ଗମାନଙ୍କ ମଧ୍ୟରେ ପ୍ରଚଳିତ ବିଧି ଏହି ଯେ ସମସ୍ତ ବାଳିକାଙ୍କୁ ବଂଶ-କର୍ତ୍ତାର ତତ୍ତ୍ୱାବଧାନରେ ଗୋଟିଏ ଗୃହରେ ରାତି ଯାପନ କରିବାକୁ ହୁଏ, ଏବଂ ବସତିର ସମସ୍ତ ବାଳକ ଏବଂ ଯୁବକମାନଙ୍କୁ ମଧ୍ୟ ଦୂରରେ ଅନ୍ୟ ଗୋଟିଏ ଗୃହରେ ସେହିପରି ରାତି ଯାପନ କରିବାକୁ ପଡ଼େ। ହାଣ୍ଟାର ସାହେବ କହନ୍ତି ସମସ୍ତ ଯୁବକଙ୍କୁ ଗୋଟିଏ ଗୃହରେ ଆବଦ୍ଧ କରି ରଖିବାର ଏ ବ୍ୟବସ୍ଥା ଭାରତର ସୁଦୂର ଅଞ୍ଚଳମାନଙ୍କରେ ବିଭିନ୍ନ ଆଦମ ସମ୍ପ୍ରଦାୟ ମଧ୍ୟରେ ଦେଖିବାକୁ ମିଳେ। ଏପରି ଶାସନଗତ ଶୃଙ୍ଖଳା ମଧ୍ୟରେ ଆଦମମାନଙ୍କର ନୈତିକତା ଏବଂ ଚରିତ୍ର ଗଠିତ ହୋଇଅସୁଛି। ଧର୍ମଭୀରୁ ଏବଂ ନୀତିଭୀରୁ ଆଦମମାନଙ୍କର ଏପରି ସାମାଜିକ ନିୟମାବଳୀ ବାସ୍ତବିକ୍ ସେମାନଙ୍କର ପ୍ରାକୃତିକ ସଭ୍ୟତାର ଗୋଟିଏ ପ୍ରଶଂସନୀୟ ଅଙ୍ଗ।

ଆଦମ କଳା କୌଶଳ ଉନ୍ନତ ଏବଂ ମାର୍ଜିତ। ସରଳ ସଙ୍ଗୀତର ମୂର୍ଚ୍ଛନା, ସୁମଧୁର ବାଦ୍ୟଯନ୍ତ୍ରର ସୁଲଳିତ ତାନ, ତଥା ଆଦମ ନୃତ୍ୟର କଳାପୂର୍ଣ୍ଣ ଛନ୍ଦ, ଏସବୁ ଆଦମମାନଙ୍କର ଅତି ଆଗତର ସମ୍ପଦ। ଏହି ସମସ୍ତ ପଛରେ ମଧ୍ୟ ସେମାନଙ୍କ ଜାତିର ଏବଂ ସଂସ୍କୃତିର ଗୌରବ। ଆଦମ ସଙ୍ଗୀତ ଲହରୀ ଶ୍ରୁତି ମଧୁର, କି ପର୍ବତନିବାସୀ, କି ପଲ୍ଲୀନିବାସୀ, କି ସ୍ତ୍ରୀ କି ପୁରୁଷ, ସମସ୍ତ ଆଦମହିଁ ସଙ୍ଗୀତ ଭକ୍ତ। ପୁରୁଷମାନଙ୍କ ଅପେକ୍ଷା ସ୍ତ୍ରୀମାନେ ଅଧିକ ମାତ୍ରାରେ ସଙ୍ଗୀତ ପ୍ରିୟ ଏବଂ ସାଧାରଣତଃ ସ୍ତ୍ରୀମାନଙ୍କର ସଙ୍ଗୀତ ଧ୍ୱନି ସହ ପୁରୁଷମାନଙ୍କର ବଂଶୀଧ୍ୱନି ତାଳ ମିଳାଇ ଥାଏ। କର୍ମରତା ଆଦମ ରମଣୀମାନଙ୍କର ସଙ୍ଗୀତ ଲହରୀ, ଭ୍ରାମ୍ୟମାଣ ଆଦମ ଯୁବକମାନଙ୍କର ବଂଶୀଧ୍ୱନି ଯୁଗ ଯୁଗ ଧରି ଉତ୍କଳର ଗିରିବନ ମଧ୍ୟରୁ ସମତଳ ପ୍ରଦେଶକୁ ବହି ଆସିଛି। ଆଦମମାନଙ୍କର ବାଦ୍ୟଯନ୍ତ୍ର ବହୁପ୍ରକାରର। ଗୁଙ୍ଗୁ, ମାଦଳ, କେନ୍ଦରା, ବଂଶୀ, ଏହା ଭିତରୁ ପ୍ରତ୍ୟେକଟିର ସ୍ୱନ ମଧୁର ଏବଂ ହୃଦୟସ୍ପର୍ଶୀ। ଆଦମମାନଙ୍କର ନୃତ୍ୟକଳା ଭାରତୀୟ ତଥା ଉତ୍କଳୀୟ ନୃତ୍ୟ-କଳାର ଗୋଟିଏ ବିଶିଷ୍ଟ ଅଙ୍ଗ। ଗୁଙ୍ଗୁ, ମାଦଳର ତାଳସହ ଛନ୍ଦ ମିଳାଇ ତାନେ ତାନେ ଯୁବକ ଯୁବତୀଙ୍କର ଅଙ୍ଗଚାଳନା, ଜ୍ୟୋତ୍ସ୍ନା-ବିଧୌତ ରଜନୀର ପ୍ରାକୃତିକ ମାଦକତା ସହ ଆଦମ ନରନାରୀଙ୍କର ସମ୍ମିଳିତ ନୃତ୍ୟ, ଏବଂ ନୃତ୍ୟସହ ସ୍ୱର ମୂଳକିତ ସଙ୍ଗୀତ ଏହାହିଁ ଆଦମମାନଙ୍କର ନିର୍ଦ୍ଦୋଷ ଆମୋଦ ପ୍ରମୋଦ। କର୍ମକ୍ଳାନ୍ତ ଜୀବନ ମଧ୍ୟରେ ନୃତ୍ୟଗୀତ ସେମାନଙ୍କର ଆନନ୍ଦ ଏବଂ ଏହି ଆନନ୍ଦ-ପୂର୍ଣ୍ଣ ନୃତ୍ୟଗୀତ ସେମାନଙ୍କର ଶ୍ରେଷ୍ଠ ଉତ୍ସବ।

ଏହାହିଁ ଚିରନ୍ତନ ଆଦିମ ସଂସ୍କାରର କ୍ଷୀଣାଭାସ ମାତ୍ର । ପରିଶେଷରେ ଏତିକି ଦ୍ରଷ୍ଟବ୍ୟ ଯେ ଅନାଦି ଆଦିମ କାଳରୁ ଉତ୍କଳ ଭୂମି ଆଦିମମାନଙ୍କର କ୍ରୀଡ଼ା ଭୂମି ହୋଇ ଆସିଛି । ଦ୍ରାବିଡ଼ ଆର୍ଯ୍ୟମାନଙ୍କର ଆସିବାର ବହୁ ପୂର୍ବରୁ ଏମାନେ ହୁଏତ ଏ ଦେଶର ସମତଳ ଭୂମିରେ ବସବାସ କରୁଥିଲେ । କିନ୍ତୁ କାଳକ୍ରମେ ସେମାନଙ୍କ ଦ୍ୱାରା ବିତାଡ଼ିତ ହୋଇ ଉତ୍କଳର ଗିରିବନରେ ଆଶ୍ରୟ ନେଇ ତଦବଧି ସେହି ଦୁର୍ଗମ ଅଞ୍ଚଳରେ ବସବାସ କରି ଆସୁଅଛନ୍ତି । ହଜାର ହଜାର ବର୍ଷ ପୂର୍ବେ କୃଷ୍ଣାଙ୍ଗ ଏହି ଆଦିମମାନଙ୍କୁ ଆର୍ଯ୍ୟମାନେ 'ଦସ୍ୟୁ' ନାମରେ ଆଖ୍ୟାତ କରିଥିଲେ । ଏହି କୃଷ୍ଣାଙ୍ଗ ଦସ୍ୟୁମାନଙ୍କୁ ଧ୍ୱସ୍ତ ବିଧ୍ୱସ୍ତ ଏବଂ ପରାଜିତ କରିଥିବା ଯୋଗୁଁ ଆର୍ଯ୍ୟ ଦେବତାମାନଙ୍କର ଗୁଣ କୀର୍ତ୍ତନ କରି ଋକ୍ ବେଦରେ ବୈଦିକ କବିମାନେ ଆନନ୍ଦ ପ୍ରକାଶ କରି ଯାଇଛନ୍ତି । ପୌରାଣିକ ଯୁଗରେ ଆର୍ଯ୍ୟ ସମ୍ରାଟ ରାମଚନ୍ଦ୍ରଙ୍କର ଦ୍ରାବିଡ଼ ରାକ୍ଷସମାନଙ୍କ ବିରୁଦ୍ଧରେ ଅଭିଯାନ ବେଳେ ଏହି ଆଦିମମାନେହିଁ ତାହାଙ୍କର ବାନର ବାହିନୀ ଗଠନ କରିଥିବାର ଅନୁମାନ । ଇତିହାସ ଚକ୍ଷୁରେ ରାମଚନ୍ଦ୍ର ଭଗବାନଙ୍କର ଅବତାର ନୁହନ୍ତି, ସେ ଆର୍ଯ୍ୟମାନଙ୍କର ରାଜା ମାତ୍ର; ରାବଣ ରାକ୍ଷସ ସମ୍ରାଟ ନୁହନ୍ତି, ଆର୍ଯ୍ୟ-ବିଦ୍ୱେଷୀ ଜନୈକ ଶକ୍ତିଶାଳୀ ଦ୍ରାବିଡ଼ ସମ୍ରାଟ ; ଏବଂ ହନୁମାନ, ବାଳି, ସୁଗ୍ରୀବ ଏବଂ ଅଙ୍ଗଦ ଏମାନେ ବଣ ଜଙ୍ଗଲର ବାନର ନୁହନ୍ତି, ଏମାନେ ଦାକ୍ଷିଣାତ୍ୟର ପର୍ବତନିବାସୀ ଆଦିମ ଅଧିବାସୀ । ମହାପୁରାଣ ରାମାୟଣର ଏହାହିଁ ଐତିହାସିକ ମେରୁଦଣ୍ଡ । ଇତିହାସ ଯୁଗର ଆରମ୍ଭରେ ଆଦିମମାନଙ୍କୁ ଉତ୍କଳର ପାର୍ବତ୍ୟାଞ୍ଚଳରେ ବସବାସ କରୁଥିବାର ଦେଖା ଯାଇଛି । ବିଶେଷତଃ ଉତ୍କଳର ମଧ୍ୟାଞ୍ଚଳ ଅତି ପ୍ରାଚୀନ କାଳରେ ଶବରମାନଙ୍କଦ୍ୱାରା ଅଧ୍ୟୁଷିତ ହୋଇଥିଲା ବୋଲି ପ୍ରାଚୀନ ପୁରାଣମାନଙ୍କରୁ ଜଣାଯାଏ । ଖ୍ରୀଷ୍ଟ ଯୁଗର କେତେକ ଶତାବ୍ଦୀ ପୂର୍ବେ ଏବଂ ପରେ ଯେଉଁସବୁ ଗ୍ରୀକ୍ ଭୌଗଳିକ ଏବଂ ଐତିହାସିକ ଭାରତ ଉପରେ ଦୃଷ୍ଟିପାତ କରିଥିଲେ ସେମାନଙ୍କ ମଧ୍ୟରୁ ଅନେକଙ୍କ ବିବରଣୀରୁ ଉତ୍କଳରେ ଏହି ଶବରମାନଙ୍କର ନିବାସ ବିଷୟ ପ୍ରତ୍ୟକ୍ଷ ଏବଂ ପରୋକ୍ଷ ଭାବେ ଜାଣିବାକୁ ମିଳେ । ସେହି ପ୍ରାଚୀନ କାଳରୁ ଆଜି ପର୍ଯ୍ୟନ୍ତ ଶବର ଏବଂ ଅପର ଆଦିମ ଗୋଷ୍ଠୀମାନ ଉତ୍କଳର ଗଡ଼ଜାତ ଅଞ୍ଚଳରେ ବସବାସ କରି ଆସୁଛନ୍ତି । ଆଜି ଓଡ଼ିଶାର ଗଡ଼ଜାତ ଅଞ୍ଚଳରେ ଆଦିବାସୀମାନେହିଁ ସଂଖ୍ୟା ଗରିଷ୍ଠ ଅଧିବାସୀ । ଇତିହାସ ଯୁଗରେ ଆଦିମମାନେ ଉତ୍କଳୀୟ ରାଷ୍ଟ୍ରନୀତି ସହି ପ୍ରାୟ ସମ୍ପୃକ୍ତ ରହି ନାହାନ୍ତି କହିଲେ ଚଳେ । କିନ୍ତୁ ଉତ୍କଳୀୟ ଧର୍ମ ଓ ସଂସ୍କୃତି ଉପରେ ଯେ ସେମାନଙ୍କର କିଛି ନା କିଛି ପ୍ରଭାବ ନପଡ଼ିଛି ସେ କଥା କହିବା ଅସମ୍ଭବ । ଭାରତର ଅନ୍ୟାନ୍ୟ ଖଣ୍ଡରେ ଆଦିମମାନଙ୍କର ପ୍ରଭାବ ଯେପରି ଭାବରେ ଏବଂ ଯେତିକି ମାତ୍ରାରେ ପଡ଼ିଥାଉନା କାହିଁକି ଉତ୍କଳଖଣ୍ଡରେ ଯେ ସେ ପ୍ରଭାବର ଯଥେଷ୍ଟ ଗୁରୁତ୍ୱ ଅଛି ଏଥିରେ ସନ୍ଦେହ ନାହିଁ । ଏତିକି କହିଲେ ଯଥେଷ୍ଟ ହେବ ଯେ ଯୁଗ ଯୁଗ ଧରି ଉତ୍କଳୀୟମାନଙ୍କର ପରମ ଆରାଧ୍ୟ ଯେଉଁ ଜଗନ୍ନାଥ

ସେ ମଧ୍ୟ ଦିନେ ଏ ଦେଶର ଆଦିମ ଶବରମାନଙ୍କର ଦେବତା ରୂପେ ସେହିମାନଙ୍କର
ଗିରି ଗହ୍ୱରରେ ପୂଜା ପାଉଥିଲେ ଏବଂ ସେହି ଶବରମାନଙ୍କର ବଂଶଧରମାନେ ଆଜି
ମଧ୍ୟ ଜଗନ୍ନାଥଙ୍କର ପୂଜାରୀ ଏହା ଉତ୍କଳର ଜନଶ୍ରୁତି ଚିରଦିନ ବ୍ୟାପୀ ଦୃଢ଼ଭାବେ
ଘୋଷଣା କରି ଆସିଛି ।

---

# ଦ୍ରାବିଡ଼ ଜାତି ଏବଂ ଉତ୍କଳଖଣ୍ଡରେ ଦ୍ରାବିଡ଼ୀୟ ପ୍ରଭାବ

ଉତ୍ତର-ପଶ୍ଚିମ ସୀମାନ୍ତର ଦୁର୍ଗମ ଗିରିପଥ ଅତିକ୍ରମ କରି ଆର୍ଯ୍ୟମାନେ ପଞ୍ଚନଦ କୂଳରେ ପ୍ରବେଶ କରିବା ପୂର୍ବରୁ ଅପର ଏକ ସଭ୍ୟ ଜାତିର ମନୁଷ୍ୟ ସେମାନଙ୍କର ଉନ୍ନତ ସଭ୍ୟତା ଭାରତ ବକ୍ଷରେ ବିସ୍ତାର କରି ସାରିଥିଲେ । ଏହି ସଭ୍ୟ ଜାତି ଇତିହାସରେ ଦ୍ରାବିଡ଼ ନାମରେ ପରିଚିତ । ବହୁଦିନ ଯାବତ୍ ଏହି ଦ୍ରାବିଡ଼ମାନଙ୍କୁ ଭାରତର ଆଦିମ ଅଧିବାସୀ ବୋଲି ବିଶ୍ୱାସ କରାଯାଉଥିଲା । କିନ୍ତୁ ବର୍ତ୍ତମାନ ସେ ଭ୍ରମ ଦୂର ହୋଇଛି ଏବଂ ଦ୍ରାବିଡ଼ ଏବଂ ଆଦିମମାନେ ଯେ ଏକ ଜାତିର ମନୁଷ୍ୟ ନୁହନ୍ତି ଏ ବିଷୟ ନିର୍ଭୁଲ ରୂପେ ପ୍ରମାଣିତ ହୋଇଛି । ର୍‍ୟାପ୍‌ସନ୍ କହନ୍ତି, "ଏହା କୌଣସି ମତେ ଧରି ଯାଇ ନ ପାରେ ଯେ ଦ୍ରାବିଡ଼-ଭାଷୀମାନେ ଆଦିମ । ଉତ୍ତର ଭାରତ ତଥା ଦକ୍ଷିଣ ଭାରତରେ ପାହାଡ଼ ଜଙ୍ଗଲର ଆଦିମ ମନୁଷ୍ୟ ଏବଂ ସମତଳ ଉର୍ବର ପ୍ରଦେଶର ସଭ୍ୟ ଅଧିବାସୀମାନଙ୍କ ମଧ୍ୟରେ ଏକା ପ୍ରକାରର ପ୍ରଶସ୍ତ ପାର୍ଥକ୍ୟ ବିଦ୍ୟମାନ ; କେତେକ ନୃତତ୍ତ୍ୱବିଦ୍‌ମାନଙ୍କ ମତରେ ଏ ପାର୍ଥକ୍ୟ କେବଳ ସଂସ୍କୃତିଗତ ନୁହେଁ, ଏହା ଜାତିଗତ ପାର୍ଥକ୍ୟ ।"[1] ମିଷ୍ଟର ଥାରଷ୍ଟନଙ୍କ କଥାରେ, "ପରବର୍ତ୍ତୀ ଯୁଗର ଅଧିକତର ସଭ୍ୟ ଦ୍ରାବିଡ଼ମାନଙ୍କ ପରିବର୍ତ୍ତେ ପ୍ରାଗ୍-ଦ୍ରାବିଡ଼ୀୟ ଆଦିମ ଅଧିବାସୀମାନଙ୍କୁହିଁ ପ୍ରାଚୀନତମ ଜାତି ରୂପେ ପରିଗଣିତ କରାଯିବ । ଏହି ପ୍ରାଗ୍-ଦ୍ରାବିଡ଼ୀୟମାନେ ସେମାନଙ୍କର ବାମନାକୃତି ଏବଂ ପ୍ରଶସ୍ତ ନାସିକା ଦ୍ୱାରା ଦ୍ରାବିଡ଼ମାନଙ୍କ ପାଖରୁ ପୃଥକ ବୋଲି ଜଣା ପଡ଼ଯାନ୍ତି ।"[2] ପ୍ରାୟ ସମସ୍ତ ଆଧୁନିକ ଐତିହାସିକ ଏବଂ ଜାତିତତ୍ତ୍ୱବିଦ୍ ଆଦିମ ଏବଂ ଦ୍ରାବିଡ଼ମାନଙ୍କୁ ସମ୍ପୂର୍ଣ୍ଣ ପୃଥକ ଜାତିର ମନୁଷ୍ୟ ବୋଲି ବିଶ୍ୱାସ କରନ୍ତି । ଆଦିମ-ମାନେ ଭାରତର ପ୍ରାଚୀନତମ ଅଧିବାସୀ, କିନ୍ତୁ ଦ୍ରାବିଡ଼ମାନେ ଏକ ପରବର୍ତ୍ତୀ ଯୁଗର ମନୁଷ୍ୟ । ତଥାପି ଦ୍ରାବିଡ଼ମାନେ ମଧ୍ୟ ପ୍ରାକ୍-ଐତିହାସିକ ଯୁଗର ଅଧିବାସୀ ଏବଂ ସେମାନଙ୍କର ସଭ୍ୟତା ମଧ୍ୟ ପ୍ରାଗ୍-ଐତିହାସିକ ସଭ୍ୟତା । ଆର୍ଯ୍ୟମାନଙ୍କର ଭାରତ ପ୍ରବେଶ ପୂର୍ବରୁ ଭାରତର ବିଭିନ୍ନ ସ୍ଥାନ ଏହି ଦ୍ରାବିଡ଼ ଜାତି ଏବଂ ସେମାନଙ୍କ

1. E. J. Rapson-Cambridge History of India Vol. I, Ch. II.
2. Thurston quoted in Cambridge History of India Vol. I, Ch II.

ସଭ୍ୟତାର କେନ୍ଦ୍ର-ସ୍ଥଳରେ ପରିଣତ ହୋଇ ସାରିଥିଲା । ଦ୍ରାବିଡ଼ମାନଙ୍କର ସେହି ଉନ୍ନତ ସଭ୍ୟତାର ସ୍ୱରୂପ ଏକପ୍ରକାର ନିର୍ଣ୍ଣିତ ହୋଇ ସାରିଛି । କିନ୍ତୁ କିଏ ଥିଲେ ଏହି ଦ୍ରାବିଡ଼ମାନେ, ଭାରତ ମାଟିରେ ସେମାନଙ୍କର ଜନ୍ମ ନା ଆର୍ଯ୍ୟମାନଙ୍କ ପରି ସେମାନେ ମଧ୍ୟ ନବାଗତ ଅପରିଚିତ ଆଗନ୍ତୁକ, ଏ ବିଷୟ ନେଇ ଐତିହାସିକମାନଙ୍କ ମଧ୍ୟରେ ଏ ପର୍ଯ୍ୟନ୍ତ ମତଭେଦ ଚାଲିଛି । କେତେକ ଐତିହାସିକଙ୍କ ମତରେ ଦ୍ରାବିଡ଼-ମାନେ ଭାରତର ସନ୍ତାନ ଏବଂ ସେମାନଙ୍କ ସଭ୍ୟତା ଏକ ଭାରତୀୟ ସଭ୍ୟତା । ଅପର କେତେକ ଐତିହାସିକଙ୍କ ମତରେ ଦ୍ରାବିଡ଼ମାନେ ଏସିଆ ମହାଦେଶର ପଶ୍ଚିମ-ଭାଗରୁ ଭାରତର ପଶ୍ଚିମ ବା ଉତ୍ତର-ପଶ୍ଚିମ ସୀମାନ୍ତ ପଥରେ ଏଦେଶ ମଧ୍ୟକୁ ପ୍ରବେଶ କରିଛନ୍ତି । ଏ ଦୁଇଟି ମତ ମଧ୍ୟରେ କେଉଁ ମତଟି ପ୍ରକୃତ ସତ୍ୟ ତାହା ନିରୂପଣ କରିବା କଷ୍ଟକର । ଦ୍ରାବିଡ଼ମାନେ ଭାରତର ସନ୍ତାନ ଥିଲେ କିମ୍ବା ପଶ୍ଚିମ ଏସିଆରୁ ଆସିଥିଲେ ଏ ବିଷୟ ଆଲୋଚନା କରିବା ପୂର୍ବରୁ ଆଉ ଗୋଟିଏ ବିଷୟ ପ୍ରତି ବିଶେଷ ଲକ୍ଷ୍ୟ ରଖିବାକୁ ପଡ଼ିବ । ତାହା ହେଉଛି ଏହା । ଯେତେ-ବେଳେ ଭାରତଖଣ୍ଡରେ ଦ୍ରାବିଡ଼ୀୟ ସଭ୍ୟତା ଏବଂ ଦ୍ରାବିଡ଼ ଜାତିର ପ୍ରତିପତ୍ତି, ଠିକ୍ ସେତିକିବେଳେ ଭାରତ ବାହାରେ ମେସୋପୋଟାମିୟା-ଖଣ୍ଡରେ ସୁମେରୀୟ ସଭ୍ୟତା ଏବଂ ସୁମେରୀୟ ଜାତିର ମଧ୍ୟ ପ୍ରତିପତ୍ତି । ଏହି ପ୍ରାଚୀନ ଦ୍ରାବିଡ଼ୀୟ ଏବଂ ପ୍ରାଚୀନ ସୁମେରୀୟ ସଭ୍ୟତାଦ୍ୱୟ ମଧ୍ୟରେ ଏତେଦୂର ଘନିଷ୍ଠ ସମ୍ବନ୍ଧ ଏବଂ ସାମଞ୍ଜସ୍ୟ ଥିବାର ପ୍ରମାଣ ମିଳିଛି ଯେ ଏହି ସମ୍ବନ୍ଧ ଏବଂ ସାମଞ୍ଜସ୍ୟକୁ ଭିତ୍ତିକରି ଅନେକ ଜାତିତତ୍ତ୍ୱବିଦ୍ ଭାରତର ଦ୍ରାବିଡ଼ ଏବଂ ମେସୋପୋଟାମିୟାର ସୁମେରୀୟ-ମାନଙ୍କୁ ଏକ ଗୋଷ୍ଠୀ ବା ଏକ ଜାତିର ମନୁଷ୍ୟ ବୋଲି ବିଶ୍ୱାସ କରୁଛନ୍ତି । ଦୁଇ ସଭ୍ୟତାର ଧ୍ୱଂସାବଶେଷ ମଧ୍ୟରୁ ଯେଉଁସବୁ ସାମଗ୍ରୀ ମିଳିଛି ସେ ସବୁ ଏକା-ସମୟରେ ଏବଂ ଏକାହସ୍ତରେ ନିର୍ମିତ ହୋଇଥିଲାପରି ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କୁ ପ୍ରତୀୟମାନ ହୁଏ । ଦ୍ରାବିଡ଼ମାନଙ୍କର ପ୍ରାକୃତିକ ଶାରୀରିକ ଗଠନ ସୁମେରୀୟ-ମାନଙ୍କ ଗଠନ ସହ ସମାନ ଥିଲା ବୋଲି ସେମାନଙ୍କର କଙ୍କାଳରୁ ବିଶେଷଜ୍ଞମାନେ ସ୍ଥିର କରିଛନ୍ତି । ଦ୍ରାବିଡ଼ମାନେ ସୁମେରୀୟମାନଙ୍କ ପରି ବାଣିଜ୍ୟ ବ୍ୟବସାୟରେ ଅତି ଧୁରନ୍ଧର ଥିଲେ । ସୁମେରୀୟମାନେ ପ୍ରାଚ୍ୟଖଣ୍ଡରେ ଅଦ୍ୱିତୀୟ ନିର୍ମାତା ରୂପେ ପରିଚିତ ; ସେମାନଙ୍କ ନିର୍ମିତ ବ୍ୟାବିଲୋନ୍, ନିନେଭ ପ୍ରଭୃତି ବିରାଟ ନଗରୀମାନଙ୍କର ଧ୍ୱଂସାବଶେଷ ସେମାନଙ୍କ ନିର୍ମାଣ ଶକ୍ତିର ଯଥେଷ୍ଟ ପରିଚୟ ଦିଏ । ଠିକ୍ ସେହିପରି ଦ୍ରାବିଡ଼ମାନେ ମଧ୍ୟ ସେମାନଙ୍କର ନିର୍ମାଣ ଶକ୍ତିପାଇଁ ପ୍ରସିଦ୍ଧ । ମହେଞ୍ଜୋଦାରୋ, ହରପ୍ପା, ତଥା ଦକ୍ଷିଣ ଭାରତର ବହୁ ପ୍ରୋଥିତଗର୍ଭ ନଗରୀ ଦ୍ରାବିଡ଼ୀୟ ନିର୍ମାଣ ଶକ୍ତିର ପରିଚାୟକ । ଦ୍ରାବିଡ଼ ଏବଂ ସୁମେରୀୟମାନଙ୍କ ମଧ୍ୟରେ ଏହିପରି ଜାତିଗତ ଏବଂ ସଭ୍ୟତାଗତ ସମତା ବ୍ୟତୀତ ବାଣିଜ୍ୟ ବ୍ୟବସାୟଗତ ସମ୍ବନ୍ଧ ମଧ୍ୟ ଖୁବ୍ ଘନିଷ୍ଠଭାବେ ରହିଥିଲା । ବିଭିନ୍ନ ପ୍ରକାରର ଭାରତୀୟ ପଣ୍ୟ-ଦ୍ରବ୍ୟ ବ୍ୟାବିଲୋନ, ଉର୍ ପ୍ରଭୃତି ସୁମେରୀୟ ନଗରୀମାନଙ୍କର ଧ୍ୱଂସାବଶେଷ

ମଧ୍ୟରୁ ବାହାରିଛି ଏବଂ ଏହି ସବୁ ପଣ୍ୟଦ୍ରବ୍ୟ ପ୍ରାଚୀନ ଦ୍ରାବିଡ଼ୀୟମାନଙ୍କଦ୍ୱାରା ଜଳପଥରେ ସେ ସବୁ ସହରମାନଙ୍କୁ ନିଆ ଯାଉଥିବାର ବିଶ୍ୱାସ । ଅନ୍ୟାନ୍ୟ ଅନେକ କାରଣରୁ ଭାରତର ଦ୍ରାବିଡ଼ ଏବଂ ଟାଇଗ୍ରିସ୍-ଇଉଫ୍ରେଟିସ୍ ଉପତ୍ୟକା ବା ମେସୋପୋଟାମିଆର ସୁମେରୀୟମାନଙ୍କୁ ଏକ ଜାତିର ମନୁଷ୍ୟ ବୋଲି ବିଶ୍ୱାସ କରାଯାଉଛି । ଯଦି ଦ୍ରାବିଡ଼ ଏବଂ ସୁମେରୀୟ ଏ ଦୁହେଁ ଏକ ଜାତିର ମନୁଷ୍ୟ ତେବେ ନିଶ୍ଚୟ ସେମାନେ ଦିନେ ଏକ ସ୍ଥାନରେ ବାସ କରୁଥିବେ ଏବଂ ପରେ ସେ ସ୍ଥାନରୁ ଅପର ଦିଗକୁ ଶାଖା ପ୍ରଶାଖାରେ ବିଭକ୍ତ ହୋଇ ଚାଲିଯାଇଥିବେ । ଯେଉଁମାନେ ବିଶ୍ୱାସ କରନ୍ତି ଯେ ଦ୍ରାବିଡ଼ମାନେ ଭାରତବର୍ଷର ବାହାର ଦେଶରୁ ଆସିଛନ୍ତି ସେମାନଙ୍କ ମତରେ ଦ୍ରାବିଡ଼ମାନେ ସୁମେରୀୟମାନଙ୍କର ଏକ ଶାଖା ଏବଂ କାଳକ୍ରମେ ସେମାନେ ସୁମେରୁ ଦେଶ ବା ମେସୋପୋଟାମିଆରୁ ଭାରତକୁ ଚାଲିଆସିଛନ୍ତି ଏବଂ ଭାରତରେ ସୁମେରୀୟ ସଭ୍ୟତାର ପ୍ରଚଳନ କରାଇଛନ୍ତି । ଯେଉଁମାନେ ବିଶ୍ୱାସ କରନ୍ତି ଯେ ଦ୍ରାବିଡ଼ମାନେ ଭାରତର ଲୋକ ଏବଂ ସେମାନେ ବାହାରୁ ଆସି ନାହାନ୍ତି ସେମାନଙ୍କ ମଧ୍ୟରୁ କେତେକଙ୍କ ମତରେ ଦ୍ରାବିଡ଼ ଏବଂ ସୁମେରୀୟମାନଙ୍କ ମଧ୍ୟରେ କୌଣସି ପ୍ରକାର ଜାତିଗତ ସମ୍ପର୍କ ନାହିଁ, ସେ ଦୁଇଜାତି ପରସ୍ପରଠାରୁ ସମ୍ପୂର୍ଣ୍ଣ ପୃଥକ, ଏବଂ ଅପର କେତେକଙ୍କ ମତରେ ଦ୍ରାବିଡ଼ମାନେ ଭାରତର ଗୋଟିଏ ପ୍ରାଚୀନ ଜାତି ଏବଂ ସେମାନଙ୍କର ଏକ ଶାଖା ଭାରତ ବାହାରକୁ ଯାଇ ମେସୋପୋଟାମିଆରେ ନିଜର ସଭ୍ୟତା ବିସ୍ତାର କରିଥିଲେ ଏବଂ ଏହି ଶାଖାର ଲୋକମାନେହିଁ ପ୍ରାଚୀନ ସୁମେରୀୟ । ସୁତରାଂ ବର୍ତ୍ତମାନ ଦ୍ରାବିଡ଼ ଏବଂ ସୁମେରୀୟମାନଙ୍କ ମଧ୍ୟରେ ଜାତିଗତ ସମ୍ବନ୍ଧ ନେଇ ତିନୋଟି ବିଭିନ୍ନ ମତ ପରିଦୃଷ୍ଟ ହୁଏ । ପ୍ରଥମ, ଦ୍ରାବିଡ଼ ଏବଂ ସୁମେରୀୟ ଏକ ଜାତିର ମନୁଷ୍ୟ ଏବଂ ଦ୍ରାବିଡ଼ମାନେ ସୁମେରୀୟମାନଙ୍କର ଏକ ଶାଖାରୂପେ ସୁମେରୁ ଦେଶରୁ ଭାରତ ମଧ୍ୟକୁ ଆସିଛନ୍ତି । ଦ୍ୱିତୀୟ, ଦ୍ରାବିଡ଼ ଏବଂ ସୁମେରୀୟ ମଧ୍ୟରେ କୌଣସି ପ୍ରକାର ଜାତିଗତ ସମ୍ବନ୍ଧ ନାହିଁ । ତୃତୀୟ, ଦ୍ରାବିଡ଼ ଏବଂ ସୁମେରୀୟ ମଧ୍ୟରେ ଜାତିଗତ ସମ୍ପର୍କ ଥିଲା, କିନ୍ତୁ ଦ୍ରାବିଡ଼ମାନେ ଭାରତବର୍ଷର ଅଧିବାସୀ ଏବଂ ସେମାନଙ୍କର ଏକ ଶାଖା ଭାରତ ବାହାରକୁ ଯାଇ ସେଠାରେ ସୁମେରୀୟ ନାମରେ ଖ୍ୟାତ । ଏହି ତିନୋଟି ମତ ମଧ୍ୟରେ ଅନ୍ତତଃ ଦୁଇଟି ମତ ଗୋଟିଏ ବିଷୟରେ ଏକ ଏବଂ ତାହା ହେଉଛି, ଦ୍ରାବିଡ଼ ଏବଂ ସୁମେରୀୟମାନଙ୍କ ମଧ୍ୟରେ ଜାତିଗତ ସମ୍ପର୍କ ଥିଲା । ଅନେକାନେକ କାରଣ ଏବଂ ପ୍ରମାଣ ପାଇଁ ଏହି ମତଟି ଅଧିକତର ବିଶ୍ୱାସଯୋଗ୍ୟ ଏବଂ ସତ୍ୟତାମୂଳକ ବୋଲି ପଣ୍ଡିତମାନେ କହନ୍ତି । କିନ୍ତୁ ଏ ମତ ପକ୍ଷରେ ପ୍ରଶ୍ନ ରହିଛି, ଦ୍ରାବିଡ଼ମାନେ ସୁମେରୀୟମାନଙ୍କର ଶାଖାରୂପେ ପଶ୍ଚିମ ଏସିଆରୁ ଭାରତକୁ ଆସିଛନ୍ତି ନା ସୁମେରୀୟମାନେ ଦ୍ରାବିଡ଼ମାନଙ୍କର ଶାଖାରୂପେ ଭାରତରୁ ପଶ୍ଚିମ ଏସିଆ ଯାଇଛନ୍ତି ? ଐତିହାସିକ ହ୍ୟାଭେଲ୍ ଓ ଐତିହାସିକ ହଲ୍‌ଙ୍କ ମତ ଅନୁସାରେ ସୁମେରୀୟମାନେ ଦ୍ରାବିଡ଼ମାନଙ୍କର ଏକ ଶାଖା ଏବଂ ସେମାନେ

ଭାରତରୁ ପଶ୍ଚିମ ଏସିଆର ଟାଇଗ୍ରିସ୍-ଇଉଫ୍ରେଟିସ୍ ଉପତ୍ୟକାକୁ ଅପସରି ଯାଇ ସେଠାରେ ସେମାନଙ୍କର ସଭ୍ୟତା ବିସ୍ତାର କରିଥିଲେ ।[1] ଅପର ପକ୍ଷରେ ରାପ୍‌ସନ୍ ପ୍ରମୁଖ ଐତିହାସିକମାନେ ମତ ପୋଷଣ କରନ୍ତି ଯେ ଦ୍ରାବିଡ଼ମାନେ ପଶ୍ଚିମ-ଏସିଆରୁହିଁ ଭାରତ ମଧ୍ୟକୁ ପ୍ରବେଶ କରିଛନ୍ତି ଏବଂ ସେମାନଙ୍କର ସୁମେରୀୟମାନଙ୍କ ସହ ଜାତିଗତ ସମ୍ପର୍କ ଥିଲା ।[2] ବର୍ତ୍ତମାନ ଦ୍ରାବିଡ଼ ଏବଂ ସୁମେରୀୟମାନଙ୍କ ମଧ୍ୟରେ ସମ୍ବନ୍ଧ ଥିଲା ଜାଣିସୁଦ୍ଧା ଦ୍ରାବିଡ଼ମାନେ ଭାରତ ବାହାରର ଲୋକ କିମ୍ବା ଭିତରର ଲୋକ ସେ ବିଷୟ ଜାଣି ହେଉ ନାହିଁ । ହୁଏତ ଦ୍ରାବିଡ଼ମାନେ ଭାରତର ଲୋକ ଏବଂ ସେମାନଙ୍କର ଗୋଟିଏ ଶାଖା ମେସୋପୋଟାମିୟା ଭିତରକୁ ଚାଲିଯାଇଥିଲେ । ନଚେତ୍ ଏହା ମଧ୍ୟ ହୋଇପାରେ ଯେ ଦ୍ରାବିଡ଼ମାନେ ଭାରତ ବାହାରୁ ଏ ଦେଶକୁ ଆସିଥିଲେ । ଦୁଇଟି ମତ ମଧ୍ୟରୁ କେଉଁଟି ଠିକ୍ ତାହା ନିଶ୍ଚିତଭାବେ କହିବା କଷ୍ଟକର । ତେବେ, ଦ୍ରାବିଡ଼ମାନେ ପଶ୍ଚିମ ଏସିଆରୁ ଭାରତ ମଧ୍ୟକୁ ଆସିଥିଲେ ଏମତ ସପକ୍ଷରେ ଗୋଟିଏ ଅତିବଡ଼ ପ୍ରମାଣ ରହିଛି । ସେ ପ୍ରମାଣଟି ହେଉଛି ଏହି ପ୍ରକାର । ପ୍ରାଚୀନ ଦ୍ରାବିଡ଼ମାନଙ୍କର ବଂଶଧରମାନଙ୍କୁ ଏ ଯୁଗରେ କେବଳ ବିନ୍ଧ୍ୟ ପର୍ବତମାଳାର ଦକ୍ଷିଣଭାଗରେହିଁ ଦେଖିବାକୁ ମିଳେ । ବିନ୍ଧ୍ୟର ପାଦ ଦେଶରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ଏହି ବିଭୂଜାକାର ଭାରତୀୟ ଅନ୍ତରୀପ ମଧ୍ୟରେ ଦ୍ରାବିଡ଼-ଜାତୀୟ ଭାଷାମାନଙ୍କର ପ୍ରଚଳନ । ତାମିଲ, ତେଲେଗୁ, କାନାଡ଼ୀ ଓ ମାଲୟାଲମ ପ୍ରଭୃତି ଭାଷାମାନ ଦ୍ରାବିଡ଼ ଭାଷା ଏବଂ ଦାକ୍ଷିଣାତ୍ୟର ଏହି ଭାଷା-ଭାଷୀ ମନୁଷ୍ୟମାନଙ୍କୁ ପ୍ରାଚୀନ ଦ୍ରାବିଡ଼ମାନଙ୍କର ବଂଶଧର ବୋଲି ସବୁ ସମ୍ମତି କ୍ରମେ ବିଶ୍ୱାସ କରାଯାଏ । ଦାକ୍ଷିଣାତ୍ୟ ବ୍ୟତୀତ ଭାରତର ଅନ୍ୟ କୌଣସି ଅଞ୍ଚଳରେ ଦ୍ରାବିଡ଼-ଭାଷୀ ଲୋକଙ୍କୁ ଦେଖିବାକୁ ମିଳେ ନାହିଁ । କିନ୍ତୁ ସୁଦୂର ବେଲୁଚିସ୍ଥାନର ଏକ ପାର୍ବତ୍ୟାଞ୍ଚଳରେ 'ବ୍ରାହୁଇ' ନାମକ ଏକ ଦ୍ରାବିଡ଼ୀ ଭାଷା ଏବେ ସୁଦ୍ଧା ବିଦ୍ୟମାନ । ବେଲୁଚିସ୍ଥାନ ଭାରତବର୍ଷର ପଶ୍ଚିମ ସୀମାନ୍ତର ଦ୍ୱାରପଥରେ ଅବସ୍ଥିତ । ଯେତେବେଳେ ଦାକ୍ଷିଣାତ୍ୟ ବ୍ୟତୀତ ସାରା ଭାରତ ତଥା ପୃଥିବୀର ଅନ୍ୟ କୌଣସି ସ୍ଥାନରେ ଦ୍ରାବିଡ଼ୀ ଭାଷାର କୌଣସି ଅସ୍ତିତ୍ୱ ଦେଖିବାକୁ ମିଳେ ନାହିଁ ସେପରି ସ୍ଥଳେ ଭାରତର ପଶ୍ଚିମ ଦ୍ୱାରଦେଶରେ ଏକ ଦୁର୍ଗମ ପାର୍ବତ୍ୟାଞ୍ଚଳ ମଧ୍ୟରେ ଏକ ଦ୍ରାବିଡ଼ୀ ଭାଷାର ଅବସ୍ଥିତି ବାସ୍ତବିକ କୌତୂହଳପ୍ରଦ । ଏପରି ଏକ କୌତୂହଳ ପଛରେ ଯେ ନିଶ୍ଚୟ କିଛି ଐତିହାସିକ ତଥ୍ୟ ରହିଛି ଏଥିରେ ସନ୍ଦେହ ନାହିଁ । ଦାକ୍ଷିଣାତ୍ୟର ଦ୍ରାବିଡ଼ୀ ଭାଷୀ ଏବଂ ବେଲୁଚିସ୍ଥାନର ବ୍ରାହୁଇ-ଭାଷୀ ଥରେ ଏକ ଜାତିର ମନୁଷ୍ୟ ଥିଲେ ଏବଂ ଏକ ଭାଷା ବ୍ୟବହାର କରୁଥିଲେ ଏ ବିଷୟ ସେମାନଙ୍କର ଭାଷାଗତ ସାମଞ୍ଜସ୍ୟ ନିଶ୍ଚିତ ପ୍ରମାଣ କରେ । ଅଧିକନ୍ତୁ, ଏହି ଭାଷାଗତ ସାମଞ୍ଜସ୍ୟ ପ୍ରତି ଲକ୍ଷ୍ୟ ରଖି ଅନେକେ

1. Havell-Aryan Rule in India, Hall-Ancient History of Near East.
2. Cambridge History of India P. 43.

ବିଶ୍ୱାସ କରନ୍ତି ଯେ ଦ୍ରାବିଡ଼ମାନେ ଭାରତର ପଶ୍ଚିମ ଦ୍ୱାରଦେଶ ବା ବେଲୁଚିସ୍ଥାନ ମଧ୍ୟ ଦେଇ ଭାରତ ଭିତରକୁ ପ୍ରବେଶ କରିଥିଲେ ଏବଂ ଉତ୍ତର ଭାରତ ଓ ଦକ୍ଷିଣ ଭାରତ ଉଭୟ ଖଣ୍ଡରେ ବସତି ସ୍ଥାପନ କରିଥିଲେ । କାଳକ୍ରମେ ଉତ୍ତରରୁ ଆର୍ଯ୍ୟମାନଙ୍କଦ୍ୱାରା ବିତାଡ଼ିତ ହୋଇ ବିନ୍ଧ୍ୟର ଦକ୍ଷିଣ ଦେଶକୁ ଦ୍ରାବିଡ଼ମାନେ ଦ୍ରାବିଡ଼-ଦେଶରେ ପରିଣତ କରିଥିଲେ । ଉତ୍ତର ଭାରତରେ ଆର୍ଯ୍ୟ ସଭ୍ୟତା, ଆର୍ଯ୍ୟଜାତି ଏବଂ ଆର୍ଯ୍ୟ-ଭାଷା କ୍ରମେ ଦ୍ରାବିଡ଼ମାନଙ୍କର ଅସ୍ତିତ୍ୱ ସୁଦ୍ଧା ଲୋପ କରିଦେଇ ପାରିଲା । ସେଥିପାଇଁ ଉତ୍ତରରେ ଦ୍ରାବିଡ଼ ଭାଷାର ଆଭାସ ସୁଦ୍ଧା ନାହିଁ । କିନ୍ତୁ କୌଣସି କ୍ରମେ ଦ୍ରାବିଡ଼-ଭାଷୀମାନଙ୍କର ଗୋଟିଏ କ୍ଷୁଦ୍ର ଅଂଶ ସେହି ପ୍ରାଚୀନ କାଳରୁ ସେମାନଙ୍କର ଭାରତ ପ୍ରବେଶ ପଥରେ ରହିଯାଇଛି । ହଜାର ହଜାର ବର୍ଷଧରି ବେଲୁଚିସ୍ଥାନର ପାର୍ବତ୍ୟାଞ୍ଚଳ ମଧ୍ୟରେ ନିଜର ଅସ୍ତିତ୍ୱ ରକ୍ଷା କରି କ୍ଷୁଦ୍ର ବ୍ରାହୁଇ-ଭାଷୀ ସମ୍ପ୍ରଦାୟ ଅତୀତର ଏକ ବିରାଟ ସତ୍ୟ ଏ ପର୍ଯ୍ୟନ୍ତ ଧାରଣ କରି ଆସିଛନ୍ତି ଏବଂ ସେ ସତ୍ୟ ହେଉଛି, ଦିନେ ଦ୍ରାବିଡ଼ମାନେ ଭାରତର ପଶ୍ଚିମ ପଥ ଦେଇ ଏସିଆର ପଶ୍ଚିମ ବା ଉତ୍ତର-ପଶ୍ଚିମ ଖଣ୍ଡରୁ ଭାରତ ମଧ୍ୟକୁ ମାଡ଼ି ଆସିଥିଲେ । ଏକ ବିରାଟ ଜନ ସ୍ରୋତର ଶୁଷ୍କ ଗତିପଥରେ 'ବ୍ରାହୁଇ' ଯୁଗଯୁଗ ବ୍ୟାପୀ ସେ ଗତିର ସାମାନ୍ୟ ସ୍ମୃତିଚିହ୍ନ ମାତ୍ର । କିନ୍ତୁ ଏହା ମଧ୍ୟ ହୋଇପାରେ ଯେ 'ବ୍ରାହୁଇ' ଭାରତର ବହିର୍ଗାମୀ ଦ୍ରାବିଡ଼ ସଭ୍ୟତାର ଏକ ଚିହ୍ନ । ହୁଏତ ଭାରତ ମଧ୍ୟରୁ ଦ୍ରାବିଡ଼ମାନେ ପଶ୍ଚିମ ଏସିଆକୁ ଗତିକଲାବେଳେ ସେମାନଙ୍କର କ୍ଷୁଦ୍ର ଅଂଶଟିଏ ବେଲୁଚିସ୍ଥାନର ପାର୍ବତ୍ୟ ଗର୍ଭରେ ଲୁଚି ରହି ଯାଇଛି । ସୁତରାଂ ବେଲୁଚିସ୍ଥାନରେ ବ୍ରାହୁଇ ଭାଷାର ଅବସ୍ଥିତି ଏ ବିଷୟ ଦ୍ରାବିଡ଼ମାନଙ୍କର ଭାରତ ମଧ୍ୟକୁ ଆଗମନ ଏବଂ ଭାରତରୁ ସେମାନଙ୍କର ବହିର୍ଗମନ ଏ ଉଭୟ ଘଟଣାରୁ କୌଣସି ଗୋଟିକକୁ ପ୍ରମାଣ କରୁଛି । କିନ୍ତୁ, ଭାରତ ଇତିହାସରେ ଚିରଦିନ ଭାରତର ବହିର୍ଦେଶରୁହିଁ ଏଦେଶ ମଧ୍ୟକୁ ବିଭିନ୍ନ କାଳରେ ବିଭିନ୍ନ ଜାତିର ଜନସ୍ରୋତ ବହି ଆସିଛି । କୌଣସି ଯୁଗରେ ଭାରତ ବକ୍ଷରୁ କୌଣସି ଜାତି ଭାରତର ସୀମାନ୍ତ ଲଂଘନ କରି ଇଉରୋପ କିମ୍ବା ଏସିଆ ମଧ୍ୟକୁ ଖାଦ୍ୟାନ୍ୱେଷଣ ପାଇଁ ବାହାରି ଯାଇ ନାହିଁ । ଏହା ଶସ୍ୟଶ୍ୟାମଳା ଭାରତ ଭୂଖଣ୍ଡର ବିଶେଷତ୍ୱ । ତେଣୁ ଦ୍ରାବିଡ଼ମାନେ ଯେ ଭାରତ ବକ୍ଷରୁ ଏ ଦେଶ ଛାଡ଼ି ବାହାରକୁ ବାହାରି ଯାଇଛନ୍ତି ଏବଂ ଯିବାପଥରେ ବେଲୁଚିସ୍ଥାନରେ ସେମାନଙ୍କର ବ୍ରାହୁଇ ଭାଷାରୂପ ପଦାଙ୍କ ରଖିଯାଇଛନ୍ତି ଏ ବିଷୟ ଅପେକ୍ଷା ଦ୍ରାବିଡ଼ମାନଙ୍କର ପଶ୍ଚିମ ଏସିଆରୁ ବେଲୁଚିସ୍ଥାନ ପଥରେ ଭାରତ ମଧ୍ୟକୁ ପ୍ରବେଶ କରିଥିବାର ଏବଂ ସେ ପଥରେ ସେମାନଙ୍କର ଏକ କ୍ଷୁଦ୍ର ସନ୍ତକ ରଖି ଆସିଥିବା ବିଷୟ ଅଧିକ ସ୍ୱାଭାବିକ । ମାର୍ଶାଲ, ବାର୍ନେଟ, ଏବଂ ର୍‌ୟାପସନ୍ ପ୍ରଭୃତି ଐତିହାସିକମାନେ ଦ୍ରାବିଡ଼ମାନଙ୍କର ଉତ୍ତର କିମ୍ବା ଉତ୍ତର-ପଶ୍ଚିମ ଏସିଆଖଣ୍ଡରୁ ବେଲୁଚିସ୍ଥାନ ପଥରେ ଭାରତ ପ୍ରବେଶ କରିଥିବାର ବିଶ୍ୱାସ କରନ୍ତି ।

ଯେଉଁ ଐତିହାସିକମାନଙ୍କ ମତରେ ଦ୍ରାବିଡ଼ମାନେ ଭାରତର ଲୋକ ଏବଂ ସେମାନେ ବାହାରୁ ଆସି ନାହାନ୍ତି କିମ୍ବା ସେମାନଙ୍କର ବାହାରର କୌଣସି ଜାତିସହ ସମ୍ପର୍କ ନାହିଁ, ସେମାନେ ବିଶ୍ୱାସ କରନ୍ତି ଯେ ଭାରତର ଗୃହଅଞ୍ଚଳ, ଉତ୍ତରାପଥ ତଥା ଦାକ୍ଷିଣାତ୍ୟରେ, ଦ୍ରାବିଡ଼ମାନେ ପ୍ରଥମେ ବାସ କରୁଥିଲେ । କିନ୍ତୁ ଯେତେବେଳେ ଆର୍ଯ୍ୟମାନେ ଭାରତ ଅଧିକାର କଲେ ସେତେବେଳେ ପରାଜିତ ଦ୍ରାବିଡ଼ମାନେ ବିନ୍ଧ୍ୟର ଦକ୍ଷିଣକୁ ଅପସରି ଗଲେ । ଆର୍ଯ୍ୟମାନେ ପ୍ରଥମେ ପଞ୍ଜାବ ଖଣ୍ଡରେ ପ୍ରବେଶ କରିଥିବାର ବିଶ୍ୱାସ । ତେଣୁ ଏହି ମତର ଐତିହାସିକମାନଙ୍କ ବିଶ୍ୱାସରେ ପଞ୍ଜାବ ତଥା ଉତ୍ତରରୁ ପରାଜିତ ଦକ୍ଷିଣଗାମୀ ଦ୍ରାବିଡ଼ମାନଙ୍କର ଗୋଟିଏ ଅଂଶ ପଞ୍ଜାବର ଦକ୍ଷିଣ-ପଶ୍ଚିମ ଦିଗରେ ଅବସ୍ଥିତ ବେଲୁଚିସ୍ଥାନ ମଧ୍ୟକୁ ମଧ୍ୟ ଅପସରି ଯାଇଥିବେ ଏବଂ 'ବ୍ରାହୁଇ' ଜାତୀ ଲୋକେ ସେହି ଦ୍ରାବିଡ଼ମାନଙ୍କର ଅବଶିଷ୍ଟାଂଶ ।

ଯୁକ୍ତି ବହୁଳ ପ୍ରମାଣ ସମ୍ମୁଖରେ ଦ୍ରାବିଡ଼ମାନେ ଭାରତର ପଶ୍ଚିମ ସୀମାନ୍ତ ଅତିକ୍ରମ କରି ପଶ୍ଚିମ ଏସିଆରୁ ଏ ଦେଶ ମଧ୍ୟକୁ ଆସିଥିଲେ ବୋଲି ଅଧିକତର ବିଶ୍ୱାସଯୋଗ୍ୟ । ପାରସ୍ୟର ଦକ୍ଷିଣାଞ୍ଚଳ ଏବଂ ବେଲୁଚିସ୍ଥାନ ମଧ୍ୟ ଦେଇ ଏମାନେ ପ୍ରଥମେ ସିନ୍ଧୁ ପ୍ରଦେଶରେ ପ୍ରବେଶ କରିଥିଲେ ଏବଂ ସିନ୍ଧୁନଦୀର ଉର୍ବର ଉପତ୍ୟକାରେ ପ୍ରଥମେ ବସତି ସ୍ଥାପନ କରିଥିଲେ । ଦ୍ରାବିଡ଼ମାନଙ୍କର ଭାରତ ପ୍ରବେଶ କାଳ ଖ୍ରୀଷ୍ଟପୂର୍ବ ଚାରି ସହସ୍ର ବର୍ଷ ପୂର୍ବ ଅର୍ଥାତ୍ ଆଜିକୁ ଛଅ ସହସ୍ର ବର୍ଷ ପୂର୍ବେ ବୋଲି ଅନୁମିତ ହୋଇଛି । କେତେକଙ୍କ ମତରେ ସେମାନେ ଆଉ କିଛି ସମୟ ଆଗରୁ ଆସିଥିବା ମଧ୍ୟ ସମ୍ଭବପର । ଦ୍ରାବିଡ଼ମାନଙ୍କର ପ୍ରବେଶକାଳରେ ସିନ୍ଧୁ ପ୍ରଦେଶ ଏ ଯୁଗର ସିନ୍ଧୁ ପ୍ରଦେଶ ପରି ଏକ ମରୁଭୂମି ନ ଥିଲା । ସେ କାଳରେ ସିନ୍ଧୁ ପ୍ରଦେଶର ଜଳବାୟୁ ଅତ୍ୟନ୍ତ ଆର୍ଦ୍ର ଥିଲା ଏବଂ ସିନ୍ଧୁ ଉପତ୍ୟକା ଏକ ଉର୍ବର ଶସ୍ୟଶ୍ୟାମଳ ସମତଳ ଭୂମିରୂପେ ମନୁଷ୍ୟ ବସବାସର ଯଥେଷ୍ଟ ଉପଯୋଗୀ ଥିଲା । ଏହି ଉନ୍ନତ ଜଳବାୟୁରେ ଦ୍ରାବିଡ଼ମାନେ ପ୍ରଥମେ ସେମାନଙ୍କର ବସତି ସ୍ଥାପନ କଲେ । କ୍ରମେ ସିନ୍ଧୁ ଉପତ୍ୟକା ଉପରେ ସେମାନଙ୍କର ଏକ ବିରାଟ ସଭ୍ୟତାର ମୂଳପତ୍ତନ ହେଲା । ଦ୍ରାବିଡ଼ମାନେ ଥିଲେ ଏକ ଉନ୍ନତ ଏବଂ ସଭ୍ୟ ଜାତି । ସୈନ୍ଧବ ଉପତ୍ୟକାର ଉର୍ବର ମାଟି ଏବଂ ତଦାନୀନ୍ତନ ସିନ୍ଧୁର ଶୀତଳ ଆର୍ଦ୍ର ଜଳବାୟୁ ଦ୍ରାବିଡ଼ମାନଙ୍କୁ ସେମାନଙ୍କର ସଭ୍ୟତା ଗଠନ ପାଇଁ ପ୍ରଭୂତ ସାହାଯ୍ୟ କରିଥିଲା । ଛଅ ସହସ୍ର ବର୍ଷ ପୂର୍ବର ସେହି ସୈନ୍ଧବ ସଭ୍ୟତାର ମୂକସାକ୍ଷୀ ଆଜି ମହେଞ୍ଜୋ-ଦାରୋ ଏବଂ ହରପ୍ପାର ଧ୍ୱଂସାବଶେଷ । ଅବଶ୍ୟ ମହେଞ୍ଜୋଦାରୋ ଏବଂ ହରପ୍ପା ନିର୍ମିତ ହେବାର ବହୁ ପୂର୍ବରୁ ସିନ୍ଧୁ ଉପତ୍ୟକାର ସେହି ଦ୍ରାବିଡ଼ ସଭ୍ୟତା ତା'ର ଶୀର୍ଷ ସୀମାରେ ପହଞ୍ଚି ସାରିଥିଲା ଏବଂ ଏ ଦୁଇ ମହାନଗରୀର ଧ୍ୱଂସାବଶେଷ ବ୍ୟତୀତ ସେହି ବିରାଟ ସଭ୍ୟତାର ସ୍ୱରୂପ ପ୍ରମାଣ କରିବା

ପାଇଁ ବହୁବର୍ଷ ଐତିହାସିକ ତଥ୍ୟ ରହିଛି । ତଥାପି ଦ୍ରାବିଡ଼ ନାଗରିକ ଜୀବନ, ନିର୍ମାଣ ପ୍ରଣାଳୀ, ଧର୍ମ, ଅର୍ଥନୀତି, ବାଣିଜ୍ୟ, ବ୍ୟବସାୟ, ପରିଧାନ, ଅଳଙ୍କାର, ଅସ୍ତ୍ର, ଶସ୍ତ୍ର ଏବଂ ଦ୍ରାବିଡ଼ୀୟ ସଭ୍ୟତାର ଅପରାପର ପ୍ରତିଭାର ଦୀର୍ଘ ପରିଚୟ ଏହି ମହେଞ୍ଜୋଦାରୋ ଏବଂ ହରପ୍ପାର ଧ୍ୱଂସସ୍ତୂପ ମଧ୍ୟରୁ ମିଳେ । ମହେଞ୍ଜୋଦାରୋ ଏବଂ ହରପ୍ପା ଭାରତର ପ୍ରାଗ୍-ଐତିହାସିକ ସଭ୍ୟତାର ଶ୍ରେଷ୍ଠ ନିଦର୍ଶନ । ଏ ଦୁଇ ନଗରୀ ଯେ ଦ୍ରାବିଡ଼ମାନଙ୍କଦ୍ୱାରା ନିର୍ମିତ ହୋଇଥିଲା ଏହାହିଁ ଅଧିକାଂଶ ପଣ୍ଡିତଙ୍କର ମତ । ତଥାପି କେହି କେହି ଏ ଦୁଇ ନଗରୀକୁ ଆର୍ଯ୍ୟମାନଙ୍କଦ୍ୱାରା ନିର୍ମିତ ବୋଲି ବିଶ୍ୱାସ କରିବାକୁ ଚେଷ୍ଟା କଲେଣି ।[1] କିନ୍ତୁ ମହେଞ୍ଜୋଦାରୋ ଓ ହରପ୍ପା ଯେ ଦ୍ରାବିଡ଼ୀୟ ସଭ୍ୟତାର ଦୁଇଟି ଚିହ୍ନ ଏ ମତ ସପକ୍ଷରେ ଯଥେଷ୍ଟ ପ୍ରମାଣ ରହିଛି । ୧୯୨୧ ମସିହାରେ ଶ୍ରୀଯୁକ୍ତ ଦୟାରାମ ସାହାନି ହରପ୍ପାର ଧ୍ୱଂସସ୍ତୂପ ଖନନ କରି ବହୁ ପ୍ରାଚୀନ ସାମଗ୍ରୀ ପାଇଥିଲେ । ୧୯୨୨ ମସିହାରେ ସୁନାମଧନ୍ୟ ଐତିହାସିକ ରାଖାଲ ଦାସ ବନ୍ଦୋପାଧ୍ୟାୟ ପ୍ରୋଥିତଗର୍ଭ ମହେଞ୍ଜୋଦାରୋ ଉପରେ ଖନନ କାର୍ଯ୍ୟ ଆରମ୍ଭ କରନ୍ତି ଏବଂ ସେହି ପ୍ରଶସ୍ତ ଧ୍ୱଂସ-ସ୍ତୂପ ଗର୍ଭରୁ ପ୍ରାଗ୍ ଐତିହାସିକ ଯୁଗର ବହୁ ସାମଗ୍ରୀ ପ୍ରାପ୍ତ ହୁଅନ୍ତି । ହରପ୍ପା ଗର୍ଭରୁ ବାହାରିଥିବା ପଦାର୍ଥଗୁଡ଼ିକ ସଙ୍ଗେ ମହେଞ୍ଜୋଦାରୋର ସାମଗ୍ରୀଗୁଡ଼ିକର ଅଭେଦ୍ୟ ସାମଞ୍ଜସ୍ୟ ଥିବାର ପରିଲକ୍ଷିତ ହୁଏ । ଏହି ଦୁଇ ଧ୍ୱଂସାବଶେଷର ଆବିଷ୍କାର ଭାରତୀୟ ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ମଧ୍ୟରେ ଚାଞ୍ଚଲ୍ୟ ସୃଷ୍ଟି କରେ ଏବଂ ତଦାନୀନ୍ତନ ପ୍ରତ୍ନତତ୍ତ୍ୱ ବିଭାଗର ଜନ୍ ମାର୍ଶାଲ, ମ୍ୟାକେ, କାଶୀନାଥ ଦୀକ୍ଷିତ ଏବଂ ନନୀଗୋପାଳ ମଜୁମଦାର ପ୍ରମୁଖ ବିଖ୍ୟାତ ପଣ୍ଡିତମାନେ ମହେଞ୍ଜୋଦାରୋ ଓ ହରପ୍ପା ତଥା ପଞ୍ଜାବଠାରୁ ସୁଦୂର ବେଲୁଚିସ୍ଥାନ ପର୍ଯ୍ୟନ୍ତ ଏହି ବିସ୍ତୃତ ଭୂଖଣ୍ଡର ବିଭିନ୍ନ ସ୍ଥାନରେ ଖନନ କାର୍ଯ୍ୟ ଆରମ୍ଭ କରନ୍ତି । ଏହି ବିସ୍ତାରିତ ଖନନ କାର୍ଯ୍ୟ ଫଳରେ ବହୁ ସ୍ଥାନରେ ବହୁ ପ୍ରାଚୀନ କୀର୍ତ୍ତିର ଧ୍ୱଂସାବଶେଷ ଥିବାର ଜଣାପଡ଼େ ଏବଂ ବହୁ ପ୍ରାଚୀନ ସାମଗ୍ରୀର ସନ୍ଧାନ ମିଳେ । ସିନ୍ଧୁ ନଦୀର ପୂର୍ବାର୍ଦ୍ଧ ତୀର ଦେଶରେ ତଥା ପଞ୍ଜାବଠାରୁ ବେଲୁଚିସ୍ଥାନ ପର୍ଯ୍ୟନ୍ତ ଏହି କେତେ ଶହ ମାଇଲ ବ୍ୟାପୀ ଅଞ୍ଚଳ ମଧ୍ୟରେ ଦିନେ ଯେ ଏକ ବିରାଟ ସଭ୍ୟତା ମସ୍ତକ ଉତ୍ତୋଳନ କରିଥିଲା ଏବଂ ସେ ସଭ୍ୟତା ଆଜି ପୃଥିବୀ ଗର୍ଭରେ ପୋତି ପଡ଼ିଛି ଏ ବିଷୟ ନିଃସନ୍ଦେହରୂପେ ପ୍ରମାଣିତ ହୁଏ । ଏହି ସିନ୍ଧୁ ସଭ୍ୟତାର ବିଭିନ୍ନ କେନ୍ଦ୍ର ଏବେ ସୁଦ୍ଧା ମାଟି ଭିତରେ ପଡ଼ି ରହିଛି, କେବଳ ମହେଞ୍ଜୋଦାରୋ ଏବଂ ହରପ୍ପା ଏହି ଦୁଇଟି କେନ୍ଦ୍ର ଉପରେହିଁ ଯଥାଯୋଗ୍ୟ ଖନନ କାର୍ଯ୍ୟ ହୋଇଛି । ମହେଞ୍ଜୋଦାରୋ ସିନ୍ଧୁନଦୀ ମୁହାଣରୁ ଉତ୍ତରକୁ ଦୁଇଶହ ମାଇଲ ଦୂରରେ ନଦୀର ପଶ୍ଚିମ ତଟରେ

---

[1] ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ଘୋଷ ତାହାଙ୍କ ଲିଖିତ 'ପ୍ରାଚୀନ ଭାରତୀୟ ସଭ୍ୟତାର ଇତିହାସ' ନାମକ ପୁସ୍ତକରେ ମହେଞ୍ଜୋଦାରୋ ଏବଂ ହରପ୍ପା ବୈଦିକ ଆର୍ଯ୍ୟ ସଭ୍ୟତାର କେନ୍ଦ୍ର ଥିଲବୋଲି ପ୍ରମାଣ କରିବାକୁ ଅନେକ ଚେଷ୍ଟା କରିଛନ୍ତି । ଅନ୍ୟ କେତେକ ମଧ୍ୟ ଏହିପରି ମତ ସପକ୍ଷରେ ଯୁକ୍ତି ଦେଖାନ୍ତି ।

ଅବସ୍ଥିତ ଏବଂ ହରପ୍ପା ଆଉ ଗୃହଶହ ମାଇଲ ଉତ୍ତରକୁ ପଞ୍ଜାବ ପ୍ରଦେଶରେ ଏବଂ ଇରାବତୀ ନଦୀ ତଟରେ ଅବସ୍ଥିତ । ମହେଞ୍ଜୋଦାରୋ ଏବଂ ହରପ୍ପା ଯେ ଦ୍ରାବିଡ଼ମାନଙ୍କଦ୍ୱାରା ନିର୍ମିତ ତାହାର ପ୍ରଥମ ପ୍ରମାଣ ହେଉଛି ଏହି ଦୁଇ ସହର ସିନ୍ଧୁ ଉପତ୍ୟକାରେ ଅବସ୍ଥିତ ଏବଂ ସିନ୍ଧୁ ଉପତ୍ୟକାର ଏହି ପ୍ରାଗ୍-ଐତିହାସିକ ସିନ୍ଧୁ ସଭ୍ୟତା ଦ୍ରାବିଡ଼ ସଭ୍ୟତାର ନାମାନ୍ତର ମାତ୍ର । କାରଣ ଦ୍ରାବିଡ଼ମାନେ ବେଲୁଚିସ୍ଥାନ ପଥରେ ପ୍ରଥମେ ସୈନ୍ଧବ ଉପତ୍ୟକାରେ ପ୍ରବେଶ କରିଥିଲେ ଏବଂ ସେହି ସ୍ଥାନରେହିଁ ସେମାନଙ୍କର ସଭ୍ୟତାର ପୂର୍ଣ୍ଣ ବିକାଶ ହୋଇଥିଲା । ଏ ମତ ଯେତେବେଳେ ଗ୍ରହଣ କରାଯାଉଛି ସେତେବେଳେ ସେହି ବେଲୁଚିସ୍ଥାନ ପାଖରୁ ଆରମ୍ଭ କରି ସିନ୍ଧୁ ଉପତ୍ୟକା ସୀମା ମଧ୍ୟରେ ଯେଉଁସବୁ ପ୍ରାଚୀନ, ପ୍ରାଗ୍-ଐତିହାସିକ ଧ୍ୱଂସାବଶେଷ ବାହାରୁଛି ସେ ସବୁ ସେହି ଦ୍ରାବିଡ଼ମାନଙ୍କର ବୋଲି ବିଶ୍ୱାସ କରିବାର ଯୁକ୍ତିସଙ୍ଗତ । ଦ୍ୱିତୀୟତଃ, ତାମ୍ର-ପ୍ରସ୍ତର ଯୁଗର ପ୍ରାଚୀନ ସୁମେରୀୟମାନେ ମେସୋପୋଟାମିଆର ସମତଳ ଭୂଖଣ୍ଡରେ ବ୍ୟାବିଲୋନ, ଉର୍ ପ୍ରଭୃତି ସମୃଦ୍ଧିଶାଳୀ ନଗରୀମାନ ନିର୍ମାଣ କରିଥିଲେ । ଦ୍ରାବିଡ଼ମାନଙ୍କୁ ଯେତେବେଳେ ସେହି ସୁମେରୀୟମାନଙ୍କର ସମଜାତୀୟ ମନୁଷ୍ୟ ବୋଲି ବିଶ୍ୱାସ କରାଯାଏ ସେତେବେଳେ ଦ୍ରାବିଡ଼ମାନଙ୍କଦ୍ୱାରା ମହେଞ୍ଜୋଦାରୋ ଓ ହରପ୍ପା ନିର୍ମିତ ହୋଇଥିବା ବିଶ୍ୱାସଯୋଗ୍ୟ । ବ୍ୟାବିଲୋନ ଏବଂ ଉର୍ ନଗରୀର ଧ୍ୱଂସାବଶେଷ ମଧ୍ୟରୁ ଯେଉଁସବୁ ପଦାର୍ଥ ବାହାରୁଛି ସେ ସବୁର ଅବିକଳ ନକଲ ମହେଞ୍ଜୋଦାରୋ ଏବଂ ହରପ୍ପାରୁ ମଧ୍ୟ ବାହାରୁଛି । ସୁତରାଂ ଯେଉଁ ଯୁଗରେ ବ୍ୟାବିଲୋନ୍ ଏବଂ ଉର୍ ନଗରୀ ତିଆରି ହୋଇଛି ସେହି ଯୁଗରେ ସିନ୍ଧୁ କୂଳରେ ମହେଞ୍ଜୋଦାରୋ ଏବଂ ହରପ୍ପା ମଧ୍ୟ ନିର୍ମିତ ହୋଇଥିବା ଅତି ସ୍ୱାଭାବିକ । ତୃତୀୟରେ ଭାରତର ଦ୍ରାବିଡ଼ମାନେ ତାମ୍ର ପ୍ରସ୍ତର-ଯୁଗର ମନୁଷ୍ୟ ଏବଂ ସେମାନଙ୍କର ସଭ୍ୟତା ତାମ୍ର-ପ୍ରସ୍ତର ଯୁଗୀୟ ସଭ୍ୟତା । ଅଥଚ, ମହେଞ୍ଜୋଦାରୋ ଓ ହରପ୍ପାର ସଭ୍ୟତା ମଧ୍ୟ ସେହି ତାମ୍ର ପ୍ରସ୍ତର ଯୁଗର ସଭ୍ୟତା । ସୁତରାଂ ଏ ସଭ୍ୟତାର ନିର୍ମାତା ଯେ ଦ୍ରାବିଡ଼ ଜାତି ଏଥିରେ ସନ୍ଦେହ ନାହିଁ । ଚତୁର୍ଥରେ, ମହେଞ୍ଜୋଦାରୋ ଯେ ଗୋଟିଏ ସମୃଦ୍ଧିଶାଳୀ ବାଣିଜ୍ୟ କେନ୍ଦ୍ର ଥିଲା ତାହା ପ୍ରାୟ ସର୍ବବାଦୀସମ୍ମତ । ଭାରତବର୍ଷର ବିଭିନ୍ନ ସ୍ଥାନରୁ ଏବଂ ଏସିଆଖଣ୍ଡର ନାନା ଅଞ୍ଚଳରୁ ବାଣିଜ୍ୟ ପାଇଁ ଏଠାକୁ ବହୁ ଲୋକଙ୍କର ଯାତାୟାତ ଲାଗି ରହିଥାଏ । ଏ ସବୁ କଥା ସେ ନଗରୀର ଧ୍ୱଂସସ୍ତୂପ ମଧ୍ୟରୁ ଆବିଷ୍କୃତ ବହୁ ଦେଶୀୟ ପଣ୍ୟଦ୍ରବ୍ୟରୁ ପ୍ରମାଣିତ ହୋଇଛି । ମହେଞ୍ଜୋଦାରୋର ଏହି ଉନ୍ନତ ବାଣିଜ୍ୟ ବ୍ୟବସାୟ ଯେ ଦ୍ରାବିଡ଼ ଜାତୀୟ ସଂସ୍କୃତି ଏହା ନିଃସନ୍ଦେହ । କାରଣ, 'ଆର୍ଯ୍ୟମାନଙ୍କର ସଂସ୍କୃତି ବାଣିଜ୍ୟ ବ୍ୟବସାୟର ବିରୁଦ୍ଧବାଦୀ ଥିଲା ଏବଂ କୃଷିଜୀବୀ ଆର୍ଯ୍ୟମାନେ ବାଣିଜ୍ୟ ବ୍ୟବସାୟକୁ ପ୍ରତି ଘୃଣା କରୁଥିଲେ । ଆର୍ଯ୍ୟମାନେ ଥିଲେ ଯୋଦ୍ଧା, କବି ଏବଂ ଦାର୍ଶନିକ । ସେମାନଙ୍କର ଜୀବିକା ଥିଲା କୃଷି । ସେମାନଙ୍କର ସଂସ୍କୃତିର ମେରୁଦଣ୍ଡ ଥିଲା ଆଧ୍ୟାତ୍ମିକ ଚିନ୍ତାଧାରା

ଏବଂ ଆଧ୍ୟାତ୍ମିକ ଉନ୍ନତି ସାଧନ । ଅପର ଦିଗରେ ଦ୍ରାବିଡ଼ମାନେ ଥିଲେ ବସ୍ତୁବାଦୀ, ସେମାନେ ଆଧ୍ୟାତ୍ମିକ ଚିନ୍ତା ପରିବର୍ତ୍ତେ ଆର୍ଥିକ ଉନ୍ନତିରେ ଅଧିକ ବିଶ୍ୱାସ କରୁଥିଲେ, ଏବଂ ସେମାନେ ପ୍ରାଚୀନ ଗ୍ରୀକ୍ ଓ ବେବିଲୋନୀୟମାନଙ୍କ ପରି ବାଣିଜ୍ୟ ବ୍ୟବସାୟରେ ଅତି ଧୁରନ୍ଧର ଥିଲେ ।'[1] ଦ୍ରାବିଡ଼ ଏବଂ ଆର୍ଯ୍ୟମାନଙ୍କ ମଧ୍ୟରେ ଏପରି ସଭ୍ୟତାଗତ ପାର୍ଥକ୍ୟ ଥିଲାବେଳେ ଅର୍ଥାତ୍ ଆର୍ଯ୍ୟମାନେ ବାଣିଜ୍ୟ ବ୍ୟବସାୟ ଘୃଣା କରୁଥିଲାବେଳେ ଏବଂ ଦ୍ରାବିଡ଼ମାନେ ଏଥିରେ ଚରମ ଉତ୍କର୍ଷତା ଲାଭ କରିଥିଲାବେଳେ ମହେଞ୍ଜୋଦାରୋ ପରି ସମୃଦ୍ଧିଶାଳୀ ବାଣିଜ୍ୟ କେନ୍ଦ୍ର ଯେ ଦ୍ରାବିଡ଼ମାନଙ୍କର ନହୋଇ ଆର୍ଯ୍ୟମାନଙ୍କର ହେବ ଏହା ସତ୍ୟ ବିରୁଦ୍ଧ । ପଞ୍ଚମତଃ, ବୈଦିକ ଆର୍ଯ୍ୟମାନେ ନଗର ନିର୍ମାଣ କାର୍ଯ୍ୟରେ ନିପୁଣତା ଲାଭ କରିଥିଲେ ବୋଲି କୌଣସି ପ୍ରମାଣ ନାହିଁ ।[2] ଭାରତରେ ବୈଦିକ ଆର୍ଯ୍ୟ ସଭ୍ୟତାର ଧ୍ୱଂସସ୍ତୂପ ଏପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ ଏବଂ ବେଦରେ ଆର୍ଯ୍ୟମାନଙ୍କର ନିର୍ମାଣ କୌଶଳର କୌଣସି ଇଙ୍ଗିତ ମଧ୍ୟ ନାହିଁ । ପୃଥିବୀର ପ୍ରାଚୀନ ସଭ୍ୟତାମାନଙ୍କ ମଧ୍ୟରେ ମିଶର ସଭ୍ୟତା, ସୁମେରୁ ସଭ୍ୟତା, ଏବଂ ଦ୍ରାବିଡ଼ ସଭ୍ୟତାର ମନୁଷ୍ୟମାନେ ସେମାନଙ୍କର ଉନ୍ନତ ନିର୍ମାଣ ପ୍ରଣାଳୀ ପାଇଁ ଜଗତ ପ୍ରସିଦ୍ଧ ; ଏବଂ ପ୍ରାଚୀନ ଚୀନ ସଭ୍ୟତା ଏବଂ ପ୍ରାଚୀନ ଆର୍ଯ୍ୟ ସଭ୍ୟତା ସେମାନଙ୍କର ଆଧ୍ୟାତ୍ମିକ ଚିନ୍ତାଶକ୍ତି ଏବଂ ଦର୍ଶନ ପାଇଁ ଭୁବନ ବିଖ୍ୟାତ । ଅତୀତ ମିଶର ସଭ୍ୟତାର ମୂକସାକ୍ଷୀ ଆଜି ଆକାଶଚୁମ୍ବୀ ପିରାମିଡ଼; ପ୍ରାଚୀନ ସୁମେରୁ ସଭ୍ୟତାର ମୂକସାକ୍ଷୀ ବ୍ୟାବିଲୋନ ଏବଂ ଉର୍ ; ପ୍ରାଚୀନ ଦ୍ରାବିଡ଼ ସଭ୍ୟତାର ମୂକସାକ୍ଷୀ ମଧ୍ୟ ମହେଞ୍ଜୋଦାରୋ ଏବଂ ହରପ୍ପା ଏହା ନିଶ୍ଚୟ ବିଶ୍ୱାସଯୋଗ୍ୟ । ପ୍ରାଚୀନ ଚୀନ ଅଧିବାସୀ ଏବଂ ଭାରତୀୟ ଆର୍ଯ୍ୟମାନେ ସେମାନଙ୍କର ଧର୍ମ ଶାସ୍ତ୍ର ଏବଂ ଦର୍ଶନ ଶାସ୍ତ୍ରମାନଙ୍କରେହିଁ ସେମାନଙ୍କ ସଭ୍ୟତାର ଚୂଡ଼ାନ୍ତ ନିଦର୍ଶନ ଲିପିବଦ୍ଧ କରିଯାଇଛନ୍ତି ଏବଂ ସେମାନଙ୍କର ସେହି ଧର୍ମ ଏବଂ ଦର୍ଶନ ଗ୍ରନ୍ଥହିଁ ସେମାନଙ୍କର ଚିରସ୍ଥାୟୀ ପିରାମିଡ଼ । ଷଷ୍ଠରେ, ପୁରାତତ୍ତ୍ୱବିଦ୍-ମାନେ ମହେଞ୍ଜୋଦାରୋ ଗର୍ଭରୁ ଯେଉଁସବୁ ନରକଙ୍କାଳ ପାଇଛନ୍ତି ଏବଂ ସେ ସବୁ ପରୀକ୍ଷା କରି ସେଠାକାର ମନୁଷ୍ୟମାନଙ୍କର ଯେଉଁପରି ଆକୃତି ଥିଲାବୋଲି ଅନୁମାନ କରନ୍ତି ସେ ଆକୃତିବିଶିଷ୍ଟ ମନୁଷ୍ୟ ଦ୍ରାବିଡ଼ ଜାତୀୟ ମନୁଷ୍ୟ ବୋଲି ସେମାନଙ୍କର ମତ । ସୁତରାଂ ମହେଞ୍ଜୋଦାରୋ ଯେ ଦ୍ରାବିଡ଼ ନିର୍ମିତ ଏହା ସ୍ୱତଃ-ସିଦ୍ଧ । ସପ୍ତମତଃ, ସିନ୍ଧୁ ସଭ୍ୟତା ଥିଲା ମୁଖ୍ୟତଃ ପୌର ସଭ୍ୟତା ଏବଂ ବୈଦିକ ସଭ୍ୟତା ଥିଲା ମୁଖ୍ୟତଃ ଗ୍ରାମ୍ୟ ସଭ୍ୟତା । ସୁତରାଂ ସିନ୍ଧୁ ସଭ୍ୟତା ଯେ ବୈଦିକ ସଭ୍ୟତା ନୁହେଁ ଏହା ପ୍ରମାଣସାଧ୍ୟ । ଅଷ୍ଟମରେ, ମହେଞ୍ଜୋଦାରୋ ଏବଂ ହରପ୍ପା

---

1. Havell --- The History of Aryan Rule in India P. 5.
2. ଫାର୍ଗୁସନଙ୍କ ମତରେ ପ୍ରାଚୀନ ଭାରତୀୟ ସ୍ଥାପତ୍ୟ ପ୍ରତି ଅର୍ଯ୍ୟମାନଙ୍କର କିଛି ଦାନ ନାହିଁ । ଅର୍ଯ୍ୟମାନଙ୍କ ବ୍ୟତୀତ ଅନ୍ୟ ପ୍ରାଚୀନ ଭାରତୀୟ ଜାତିର ( ଦ୍ରାବିଡ଼ ) ମନୁଷ୍ୟମାନେ ଭାରତୀୟ ସ୍ଥାପତ୍ୟର ମୂଳଦୁଆ ଦେଇଥିଲେ ।

ଗର୍ଭରୁ ଯେଉଁସବୁ ସୀଲ୍ ମୋହର ବାହାରିଛି ସେସବୁ ଉପରେ ଯେଉଁ ଭାଷାର ଅକ୍ଷର ଲେଖା ହୋଇଛି ସେ ଅକ୍ଷର ଏପର୍ଯ୍ୟନ୍ତ ପ୍ରତ୍ନତତ୍ତ୍ୱବିଦ୍‌ମାନଙ୍କଦ୍ୱାରା ସମ୍ପୂର୍ଣ୍ଣରୂପେ ପଠିତ ହୋଇ ପାରି ନାହିଁ । କିନ୍ତୁ ସେ ଲିପି ଯେ ଆର୍ଯ୍ୟମାନଙ୍କର ଲିପି ନୁହେଁ ଏ ବିଷୟ ନିଶ୍ଚିତ । ଅଥଚ, ସେହି ଲିପିଲିଖିତ ମୋହର ପଶ୍ଚିମ ଏସିଆର ଉର୍ ନଗରୀର ଧ୍ୱଂସସ୍ତୂପ ମଧ୍ୟରୁ ବାହାରିଛି । ସୁତରାଂ ସିନ୍ଧୁ ଉପତ୍ୟକା ଏବଂ ପଶ୍ଚିମ ଏସିଆଖଣ୍ଡରେ ଏକ ପ୍ରକାର ଲିପି ବ୍ୟବହୃତ ହେଉଥିଲା ଏହା ପ୍ରମାଣିତ ହେଉଛି । ଯେତେବେଳେ ଏହି ଲିପି ଆର୍ଯ୍ୟ ଭାଷାର ଲିପି ନୁହେଁ ସେତେବେଳେ ମହେଞ୍ଜୋଦାରୋ ଏବଂ ହରପ୍ପା ମଧ୍ୟ ଆର୍ଯ୍ୟମାନଙ୍କର ହୋଇ ନ ପାରେ । ନବମତଃ, ମାର୍ଶାଲ୍ ଏବଂ ମ୍ୟାକେ ଏ ଦୁହିଙ୍କ ମତରେ ସିନ୍ଧୁ ସଭ୍ୟତା ପ୍ରାଗ୍‌ବୈଦିକ, କାରଣ ସିନ୍ଧୁସଭ୍ୟତା ଖ୍ରୀଷ୍ଟଜନ୍ମର ତିନିହଜାର ବର୍ଷ ପୂର୍ବର ସଭ୍ୟତା ଏବଂ ସେମାନଙ୍କ ମତରେ ଆର୍ଯ୍ୟମାନେ ଏ ସମୟର ବହୁପରେ ଭାରତ ମଧ୍ୟକୁ ଆସିଛନ୍ତି । ଅବଶ୍ୟ ଆର୍ଯ୍ୟମାନଙ୍କର ଭାରତ ପ୍ରବେଶ ସମ୍ବନ୍ଧରେ ମାର୍ଶାଲ୍ ଏବଂ ମ୍ୟାକେ ଯେଉଁ ସମୟ ନିର୍ଦ୍ଧାରିତ କରିଛନ୍ତି ତାହା ଭୁଲ, କାରଣ ଆର୍ଯ୍ୟମାନେ ସେମାନଙ୍କ ନିର୍ଣ୍ଣୀତ ସମୟର ବହୁପୂର୍ବେ ଭାରତ ପ୍ରବେଶ କରିଛନ୍ତି ବୋଲି ଅନ୍ୟମାନଙ୍କର ମତ । ତେବେ ଆର୍ଯ୍ୟମାନେ ଯେତେ ଅନିଶ୍ଚିତ ଅତୀତ କାଳରେ ଏ ଦେଶକୁ ଆସି ଥାଆନ୍ତୁ ନା କାହିଁକି ସେମାନଙ୍କ ଆସିବା ପୂର୍ବରୁ ଯେ ଏ ଦେଶରେ ଅପର ଏକ ସଭ୍ୟତା ବିସ୍ତାର ଲାଭକରିଥିଲା ତାହା ଅବିଶ୍ୱାସ କରିବାର କିଛି କାରଣ ନାହିଁ । ଦଶମରେ, ବୈଦିକ ଆର୍ଯ୍ୟମାନେ ପ୍ରତିମାପୂଜକ ନ ଥିଲେ ; ଋକ୍ ବେଦରେ ପ୍ରତିମା ର ନାମଗନ୍ଧ ସୂଚିତ ନାହିଁ । ଅଥଚ ମହେଞ୍ଜୋଦାରୋ ଏବଂ ହରପ୍ପାର ଧ୍ୱଂସାବଶେଷ ମଧ୍ୟରୁ ପ୍ରତିମା ପୂଜାର ଯଥେଷ୍ଟ ନିଦର୍ଶନ ମିଳିଛି । ସୁତରାଂ ମହେଞ୍ଜୋଦାରୋ ଏବଂ ହରପ୍ପାର ସଭ୍ୟତା ବୈଦିକ ସଭ୍ୟତା ହୋଇ ନ ପାରେ; ତାହା ଦ୍ରାବିଡ଼ ସଭ୍ୟତା । ଅନ୍ୟାନ୍ୟ ଅନେକ କାରଣ ରହିଛି ଯାହାବଳରେ ସିନ୍ଧୁ ସଭ୍ୟତା ଦ୍ରାବିଡ଼ମାନଙ୍କର ବୋଲି ପ୍ରମାଣିତ ହୁଏ ଏବଂ ମହେଞ୍ଜୋଦାରୋ ଏବଂ ହରପ୍ପା ସେହିମାନଙ୍କଦ୍ୱାରା ନିର୍ମିତବୋଲି ବିଶ୍ୱାସ ହୁଏ । ମହେଞ୍ଜୋଦାରୋ ଗର୍ଭରୁ ଯେଉଁ ଦେବୀ ମୂର୍ତ୍ତି ବାହାରିଛି ସେଥିରୁ ଅନେକେ ବିଶ୍ୱାସ କରନ୍ତି ଯେ ସିନ୍ଧୁ ଉପତ୍ୟକାରେ ଦେବୀ ପୂଜାର ପ୍ରଚଳନ ଥିଲା । ଏ ଦେବୀ ଦୁର୍ଗା ବୋଲି ଅନେକଙ୍କର ଅନୁମାନ । ଯୋଗାସନ ଉପବିଷ୍ଟ ଅପର ଏକ ପୁରୁଷ ମୂର୍ତ୍ତିକୁ ଶିବ ବୋଲି ଅନୁମାନ କରାଯାଏ । ଯଦି ମହେଞ୍ଜୋଦାରୋର ସେହି ମାତୃକା ମୂର୍ତ୍ତି ଓ ପୁରୁଷ ମୂର୍ତ୍ତି ପ୍ରକୃତପକ୍ଷେ ଦୁର୍ଗା ଏବଂ ଶିବ ତେବେ ସେମାନଙ୍କର ଉପାସକମାନେ ଯେ ନିଶ୍ଚୟ ଦ୍ରାବିଡ଼ ଥିଲେ ଏହା କୁହା ଯାଇପାରେ । କାରଣ ଶିବ ଦୁର୍ଗା ଦ୍ରାବିଡ଼ମାନଙ୍କର ଦେବଦେବୀ । କାଳକ୍ରମେ ଆର୍ଯ୍ୟମାନେ ଏହି ଦ୍ରାବିଡ଼ ଦେବଦେବୀଙ୍କୁ ନିଜସ୍ୱ କରି ନେଇଛନ୍ତି । ତେବେ ମହେଞ୍ଜୋଦାରୋର ଏହି ତଥାକଥିତ ଶିବ ଦୁର୍ଗା ପ୍ରକୃତ ଶିବ ଦୁର୍ଗା କି ନୁହେଁ ତାହା ସନ୍ଦେହଜନକ ।

ସିନ୍ଧୁ ସଭ୍ୟତାର ପ୍ରକୃତ ସ୍ୱରୂପ ପୂର୍ଣ୍ଣମାତ୍ରାରେ ନିର୍ଣ୍ଣୀତ ନ ହେଲା ପର୍ଯ୍ୟନ୍ତ, ସମସ୍ତ ସିନ୍ଧୁ ଉପତ୍ୟକାର ବାଲୁକାରାଶି ଗର୍ଭରୁ ପ୍ରାଗ୍-ଐତିହାସିକ ଧ୍ୱଂସାବଶେଷ ସମୂହର ନିଃଶେଷ ଖନନ ନ ହେବା ପର୍ଯ୍ୟନ୍ତ ଏବଂ ମହେଞ୍ଜୋଦାରୋ-ହରପ୍ପାର ଲିପିଯୁକ୍ତ ସୀଲ୍ ମୋହରମାନଙ୍କର ପାଠୋଦ୍ଧାର ନ ହେଲା ପର୍ଯ୍ୟନ୍ତ, ମହେଞ୍ଜୋଦାରୋ ଏବଂ ହରପ୍ପାର ପ୍ରକୃତ ନିର୍ମାତା କିଏ ସେ ବିଷୟ ନିଃସନ୍ଦେହ ରୂପେ କହିବା ଅସମ୍ଭବ । ତଥାପି ଏ ଦୁଇ ପ୍ରାଗ୍-ଐତିହାସିକ ନଗରୀ ଆର୍ଯ୍ୟମାନଙ୍କର ନ ହୋଇ ଦ୍ରାବିଡ଼ମାନଙ୍କର ହୋଇ ପାରେ ବୋଲି ଅଧିକ ବିଶ୍ୱାସଯୋଗ୍ୟ । ଖ୍ରୀଷ୍ଟ ଜନ୍ମର ତିନି ସହସ୍ର ବର୍ଷ ପୂର୍ବେ ମହେଞ୍ଜୋଦାରୋ ଏବଂ ହରପ୍ପାର ନିର୍ମାଣ କାର୍ଯ୍ୟ ଶେଷ ହୋଇଥିଲା ବୋଲି ବିଶେଷଜ୍ଞମାନଙ୍କର ମତ । ଏହାର ଏକ ହଜାର କିମ୍ବା ଦୁଇ ହଜାର ବର୍ଷ ପୂର୍ବରୁ ଦ୍ରାବିଡ଼ମାନେ ସିନ୍ଧୁ ଉପତ୍ୟକାର ଅଧିପତି ହୋଇଥିବେ । ଯେତେବେଳେ ଆର୍ଯ୍ୟମାନେ ଉତ୍ତର-ପଶ୍ଚିମ ଗିରିପଥ ଅତିକ୍ରମ କରି ଭାରତ ମଧ୍ୟରେ ପ୍ରବେଶ କଲେ ସେତେବେଳେ ସେମାନଙ୍କର ସଭ୍ୟତା ଦ୍ରାବିଡ଼ମାନଙ୍କ ସଭ୍ୟତା ସହ ସଂଘର୍ଷରେ ଆସିଲା । କେହି କେହି ଐତିହାସିକଙ୍କ ମତରେ ଆର୍ଯ୍ୟମାନଙ୍କ ଆକ୍ରମଣ ଫଳରେ ଦ୍ରାବିଡ଼ମାନେ ମହେଞ୍ଜୋଦାରୋ, ହରପ୍ପା ତଥା ସମଗ୍ର ସିନ୍ଧୁ ଉପତ୍ୟକା ପରିତ୍ୟାଗ କରି ଭାରତର ଅନ୍ୟ ଅଞ୍ଚଳମାନଙ୍କୁ ଅପସରି ଯାଇଥିଲେ ଏବଂ ସେମାନଙ୍କଦ୍ୱାରା ପରିତ୍ୟକ୍ତ ହୋଇ ଶେଷରେ ମହେଞ୍ଜୋଦାରୋ ଏବଂ ହରପ୍ପା ଧ୍ୱଂସ ମୁଖରେ ପତିତ ହୋଇଥିଲା । ପୃଥିବୀର ବହୁ ନଗରୀର ଧ୍ୱଂସ ପାଇଁ ବୈଦେଶିକ ଆକ୍ରମଣ ଦାୟୀ, ଏବଂ ମହେଞ୍ଜୋଦାରୋ-ହରପ୍ପା ମଧ୍ୟ ସେହିପରି ବୈଦେଶିକ ଆକ୍ରମଣ ଫଳରେ ଧ୍ୱଂସୀଭୂତ ହୋଇଥିବେ । ଜାର୍ମାନ ପଣ୍ଡିତ ଗ୍ଲାଜେନାପ୍ ଲେଖିଛନ୍ତି, "ଜାର୍ମାନମାନଙ୍କଦ୍ୱାରା ପ୍ରାଚୀନ ଗ୍ରୀକ୍ ଏବଂ ରୋମୀୟ ସଭ୍ୟତା ଧ୍ୱଂସପ୍ରାପ୍ତ ହେଲାପରି ଯାଯାବର ଆର୍ଯ୍ୟ ବର୍ବରମାନଙ୍କ ଦ୍ୱାରା ଦ୍ରାବିଡ଼ ସଭ୍ୟତା ଧ୍ୱଂସପ୍ରାପ୍ତ ହୋଇଥିଲା; କିନ୍ତୁ ତା' ପରବର୍ତ୍ତୀ ଯୁଗରେ ଭାରତୀୟ ସଭ୍ୟତା ଉପରେ ବିଶେଷ ପ୍ରଭାବ ବିସ୍ତାର କରିଥିଲା ।" ନଚେତ୍ ସିନ୍ଧୁ ଏବଂ ଇରାବତୀ ନଦୀର ଗତି ପରିବର୍ତ୍ତନ ଦ୍ୱାରା କିମ୍ବା ସେମାନଙ୍କର ବନ୍ୟା ଫଳରେ ଏ ଦୁଇ ନଗରୀ ପରିତ୍ୟକ୍ତ ହୋଇଥିବ ଏବଂ ଶେଷରେ ଜନମାନବ ଶୂନ୍ୟ ଅବସ୍ଥାରେ ଧ୍ୱଂସସ୍ତୂପରେ ପରିଣତ ହୋଇ ଯାଇଥିବ । ମହେଞ୍ଜୋଦାରୋ-ହରପ୍ପା ଆର୍ଯ୍ୟମାନଙ୍କ ଦ୍ୱାରା ଧ୍ୱଂସ ହୋଇଥିଲା କି ନାହିଁ ସେ ବିଷୟ କେବଳ ଅନୁମାନ କରିବା ଛଡ଼ା ଅନ୍ୟ କିଛି ଯୁକ୍ତିଦ୍ୱାରା ପ୍ରମାଣ କରିହେବା ଅସମ୍ଭବ । ସେ ଯାହାହେଉ, ଆର୍ଯ୍ୟମାନଙ୍କ ଆଗମନ ଫଳରେ ଏବଂ ଆର୍ଯ୍ୟ-ଦ୍ରାବିଡ଼ ସଂଘର୍ଷ ହେତୁ ପ୍ରାଗ୍-ଐତିହାସିକ ଭାରତବର୍ଷରେ ଯେ ଏକ ମହାବିପ୍ଳବର ସୃଷ୍ଟି ହୋଇଥିବ ଏଥିରେ ସନ୍ଦେହ ନାହିଁ । ଆର୍ଯ୍ୟମାନେ ଭାରତ ପ୍ରବେଶ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ଦ୍ରାବିଡ଼ମାନଙ୍କ ପରି ଏକ ଶକ୍ତିଶାଳୀ ଏବଂ ଉନ୍ନତ ଜାତି ସହିତ ଯୁଦ୍ଧ କରିବାକୁ ହୋଇଥିଲା ଏହା ସେହି ଆର୍ଯ୍ୟମାନଙ୍କର ଆଦି ଶାସ୍ତ୍ର ସମସ୍ତ ପ୍ରମାଣ

କରେ । ଋକ୍ ବେଦରେ ଆର୍ଯ୍ୟ ଋଷିମାନେ ଶତ୍ରୁର ଧ୍ୱଂସ ସାଧନ ପାଇଁ ସେମାନଙ୍କର ଦେବତାମାନଙ୍କୁ ସ୍ତୁତି ଜଣାଇଥିଲେ । ଆର୍ଯ୍ୟମାନଙ୍କର ରାମାୟଣ ସେ କେବଳ ସେହି ଆର୍ଯ୍ୟ-ଦ୍ରାବଡ଼ ସଂଘର୍ଷ ଉପରେ ଲିଖିତ ଏକ ମହାକାବ୍ୟ । ରାମାୟଣ ବୈଦିକ ଯୁଗ ପରେ ଲିଖିତ । ସେତେବେଳକୁ ଉତ୍ତର ଭାରତ ଆର୍ଯ୍ୟାବର୍ତ୍ତରେ ପରିଣତ ହୋଇସାରି ଥିଲା ଏବଂ ପରାଜିତ ଦ୍ରାବଡ଼ମାନେ ଦାକ୍ଷିଣାତ୍ୟରେ ସେମାନଙ୍କର ଆଧିପତ୍ୟ ବିସ୍ତାର କରିସାରି ଥିଲେ । ରାମାୟଣ ଯୁଗରେ ଆରମ୍ଭ ହୋଇଥିଲା ଆର୍ଯ୍ୟମାନଙ୍କର ଦାକ୍ଷିଣାତ୍ୟ ଅଭିଯାନ । ରାମାୟଣ ଏକ ପୁରାଣ । ଏହାର କଲେବର କବିର କଳ୍ପନାରେ ପରିପୂର୍ଣ୍ଣ । କିନ୍ତୁ ରାମାୟଣର ବହିଃ ବପୁ ଦେହରୁ କଳ୍ପନା, ହିତକଥା, ଏବଂ ଦର୍ଶନ ପ୍ରଭୃତି ବାଦ୍ ଦେଲେ ଯାହା ଅବଶିଷ୍ଟାଂଶ ରହିବ ତାହା ତଦାନୀନ୍ତନ ଭାରତର ସମସାମୟିକ ଇତିହାସ । ଆଜି ଆରବ୍ୟ-ଉପନ୍ୟାସର କାଳ୍ପନିକ ଗଳ୍ପ ମଧ୍ୟରୁ ସେ ଯୁଗର ଐତିହାସିକ ତଥ୍ୟ ସଂଗୃହିତ ହେଉଛି । ଇଉରୋପୀୟ କବିକୁଳଗୁରୁ ହୋମାରଙ୍କର ଲିଖିତ ପୁରାଣ ମଧ୍ୟରୁ ସେ ଯୁଗର ଇତିହାସ ଲିଖିତ ହେଲାଣି । ସେହିପରି ଭାରତର ରାମାୟଣ ଯେତେ କାଳ୍ପନିକ ହେଲେମଧ୍ୟ ତାହାର ମେରୁଦଣ୍ଡ ହେଉଛି ସେ କାଳର ଇତିହାସ । ରାମାୟଣ ବର୍ଣ୍ଣିତ ଅସୁରମାନେ ଯେ ଦାକ୍ଷିଣାତ୍ୟ ଏବଂ ଲଙ୍କା ଦ୍ୱୀପର ଦ୍ରାବଡ଼ ଶକ୍ତି ଏଥିରେ ସନ୍ଦେହ ନାହିଁ । ଏପରିକି ଅସୁର ଶବ୍ଦର ଉତ୍ପତ୍ତି ସମ୍ବନ୍ଧେ କେହି କେହି ପଣ୍ଡିତ ଏହିପରି ବିଶ୍ୱାସ କରନ୍ତି ଯେ ଦ୍ରାବଡ଼ମାନେ ପଶ୍ଚିମ ଏସିଆର ଏସିରିଆ ଖଣ୍ଡରୁ ଆସିଥିବା ଯୋଗୁଁ ଆର୍ଯ୍ୟମାନଙ୍କ ଦ୍ୱାରା ସେମାନଙ୍କୁ ଏସିରୀୟ ବା ଅସୁର ନାମରେ ଆଖ୍ୟାତ କରାଯାଇଛି । ରାମାୟଣ ବର୍ଣ୍ଣିତ ଦୁର୍ଦ୍ଧର୍ଷ ପ୍ରତାପୀ ଅସୁର ସମ୍ରାଟ ରାବଣଙ୍କର କାର୍ଯ୍ୟକଳାପ, ବୁଦ୍ଧିବୃତ୍ତି ଇତ୍ୟାଦିରୁ ଦ୍ରାବଡ଼ ପରାକ୍ରମର ଯଥେଷ୍ଟ ପରିଚୟ ମିଳେ । ଦ୍ରାବଡ଼ମାନଙ୍କର ଶୌର୍ଯ୍ୟ ବୀର୍ଯ୍ୟ, କଳ କୌଶଳ ଇତ୍ୟାଦିର ଭୂରି ଭୂରି ପରିଚୟ ଏହି ରାମାୟଣରୁ ମିଳେ । କେବଳ ପୌରାଣିକ ପ୍ରମାଣମାନଙ୍କ ଛଡ଼ା ଦ୍ରାବଡ଼ ସଭ୍ୟତାର ପରିଚୟ ଦେବାପାଇଁ ଐତିହାସିକ ପ୍ରମାଣ ମଧ୍ୟ ଯଥେଷ୍ଟ ରହିଛି । ପୌରାଣିକ ଯୁଗରେ ଉତ୍ତର ଭାରତରେ ଆର୍ଯ୍ୟମାନେ ସେମାନଙ୍କର ଆଧିପତ୍ୟ ପୂର୍ଣ୍ଣମାତ୍ରାରେ ବିସ୍ତାର କରିଥିଲେ ଏବଂ ଦାକ୍ଷିଣାତ୍ୟର ଦ୍ରାବଡ଼ଶକ୍ତି ବିରୁଦ୍ଧରେ ଯୁଦ୍ଧ କରିଥିଲେ । କିନ୍ତୁ ଏ ସଂଘର୍ଷର ଫଳାଫଳ ଆର୍ଯ୍ୟମାନଙ୍କୁ ଦାକ୍ଷିଣାତ୍ୟର ଅଧିପତି କରାଇ ପାରି ନ ଥିଲା । ଯଦିଚ ଦ୍ରାବଡ଼ମାନଙ୍କୁ ଆର୍ଯ୍ୟମାନଙ୍କ ନିକଟରେ ପରାଜୟ ସ୍ୱୀକାର କରି ସମଗ୍ର ଉତ୍ତର ଭାରତକୁ ବିଜେତାମାନଙ୍କ ହସ୍ତରେ ଛାଡ଼ି ଦେବାକୁ ହୋଇଥିଲା ତଥାପି ସେମାନେ ଦାକ୍ଷିଣାତ୍ୟଖଣ୍ଡକୁ ନିଜର କରି ରଖି ପାରିଥିଲେ । ଦାକ୍ଷିଣାତ୍ୟ ଚିରଦିନ ଧରି ଦ୍ରାବଡ଼ ଜାତି, ଦ୍ରାବଡ଼ ଭାଷା, ଏବଂ ଦ୍ରାବଡ଼ ସଭ୍ୟତାର କେନ୍ଦ୍ରସ୍ଥଳ । ଦାକ୍ଷିଣାତ୍ୟର ନୃତତ୍ତ୍ୱ, ଇତିହାସ, ସାହିତ୍ୟ, ସ୍ଥାପତ୍ୟ ଏ ସମସ୍ତ ମଧ୍ୟରୁ ସେହି ଦ୍ରାବଡ଼ ସଭ୍ୟତାରହିଁ ପରିଚୟ ମିଳେ । ବରଂ ସେ ଦ୍ରାବଡ଼

ସଭ୍ୟତାର ପରିଚୟ ଏ ସଙ୍କୀର୍ଣ୍ଣ ପରିସର ମଧ୍ୟରେ ଦିଆଯାଇ ନ ପାରେ । ଯେଉଁ ଦ୍ରାବିଡ଼ ଜାତିର ନିର୍ଭୀକ ନାବିକ ଜଳପଥରେ ପ୍ରାଚୀନ ମିଶର, ପ୍ରାଚୀନ ଗ୍ରୀସ୍, ଏବଂ ପରବର୍ତ୍ତୀ କାଳରେ ରୋମୀୟ ସାମ୍ରାଜ୍ୟ ସହ ସଭ୍ୟତା ସୂତ୍ର ଲଗାଇ ରଖିଥିଲା, ଯେଉଁ ଜାତିର ବ୍ୟବସାୟୀ ଦକ୍ଷିଣ ଭାରତର ବିବିଧ ପଣ୍ୟ ଦ୍ରବ୍ୟ ସୁଦୂର ପାଶ୍ଚାତ୍ୟଖଣ୍ଡର ଶତ ଶତ ବିପଣୀମାନଙ୍କରେ ବିକ୍ରୟ କରି ସେ ଅଞ୍ଚଳରୁ ଅର୍ଥ ଶୋଷଣ କରୁଥିଲା, ଯେଉଁ ଜାତିର ବଣିକ ସ୍ଥଳପଥରେ ଉତ୍ତରାପଥର ବିଭିନ୍ନ ଆର୍ଯ୍ୟ ନରପତିମାନଙ୍କ ରାଜଧାନୀକୁ ଦ୍ରାବିଡ଼ ଦେଶର ମହାର୍ଘ ପଦାର୍ଥମାନ ଯୋଗାଇ ରଖିଥିଲା, ସେ ଜାତିର ସାହସ ଏବଂ ସଭ୍ୟତା ବାସ୍ତବିକ ପ୍ରଶଂସନୀୟ । ମାଲବ ଉପକୂଳର ଟିକ୍ କାଠ ପ୍ରାଚୀନ ଉର୍ ନଗରୀର ଧ୍ୱଂସସ୍ତୂପ ମଧ୍ୟରୁ ବାହାରିଛି ଏବଂ ତାହା ମାଲବ ଉପକୂଳ ଓ ପଶ୍ଚିମ ଏସିଆ ମଧ୍ୟରେ ଯେଉଁ ଯୋଗାଯୋଗ ସୂତ୍ର ଥିଲା ତାହା ପ୍ରମାଣ କରୁଛି । ପ୍ରାଚୀନ ଯୁଗ ବ୍ୟତୀତ ଖ୍ରୀଷ୍ଟ ଜନ୍ମର ଅବ୍ୟବହିତ ପୂର୍ବବର୍ତ୍ତୀ ଏବଂ ପରବର୍ତ୍ତୀ ଶତାବ୍ଦୀମାନଙ୍କରେ ଦାକ୍ଷିଣାତ୍ୟ ଏବଂ ଇଉରୋପ ମହାଦେଶ ମଧ୍ୟରେ ଯେଉଁ ଯୋଗାଯୋଗ ଲାଗି ରହିଥିଲା ତାହାର ଅସଂଖ୍ୟ ପ୍ରମାଣ ସେ ଯୁଗମାନଙ୍କର ଦ୍ରାବିଡ଼ୀ ତାମିଲ୍ ସାହିତ୍ୟ ତଥା ଗ୍ରୀକ୍ ଏବଂ ରୋମୀୟ ଐତିହାସିକମାନଙ୍କ ଇତିହାସରୁ ମିଳେ । ଦାକ୍ଷିଣାତ୍ୟର ବିଭିନ୍ନ ସ୍ଥାନରୁ ଆବିଷ୍କୃତ ରୋମୀୟ ମୁଦ୍ରାମାନଙ୍କରୁ ଦାକ୍ଷିଣାତ୍ୟ ଏବଂ ରୋମ ସାମ୍ରାଜ୍ୟର ବାଣିଜ୍ୟଗତ ସମ୍ପର୍କ ଜଣାପଡ଼େ । ଦ୍ରାବିଡ଼ ବାଣିଜ୍ୟ କେନ୍ଦ୍ର ଏବଂ ବନ୍ଦରମାନଙ୍କରେ ଗ୍ରୀକ୍ ବା ଯବନ ବଣିକମାନଙ୍କର ଯାତାୟାତ ଲାଗି ରହିଥାଏ । ଏମାନେ ସ୍ଥଳପଥ ଏବଂ ଜଳପଥରେ ସୁଦୂର ଗ୍ରୀକ୍ ଜଗତରୁ ଦାକ୍ଷିଣାତ୍ୟ ପର୍ଯ୍ୟନ୍ତ ମହାର୍ଘ ମଣି ମୁକ୍ତା, ସିଲ୍କ, ଏବଂ ତୁଳାର ସୂକ୍ଷ୍ମ ବସ୍ତ୍ର ପ୍ରଭୃତି ନାନା ପ୍ରକାର ମୂଲ୍ୟବାନ ପଦାର୍ଥ କ୍ରୟ କରିବାକୁ ଆସୁ ଥାଆନ୍ତି । ଏପରିକି ଦ୍ରାବିଡ଼ ନରପତିମାନଙ୍କର ଶରୀରରକ୍ଷୀ ହେବାପାଇଁ ଯବନ ସୈନ୍ୟ ବା ଏସିଆବାସୀ ଗ୍ରୀକ୍‌ମାନଙ୍କର ଲୋଡ଼ା ଥାଏ । ବିବିଧ ପ୍ରକାର ପଣ୍ୟ ମଧ୍ୟରେ ଦାକ୍ଷିଣାତ୍ୟରୁ ନିଆ ଯାଉଥିବା ମୁକ୍ତା, ହାତୀଦାନ୍ତ, ଧାନ, ଚାଉଳ, ମରିଚ, ମସଲା ପ୍ରଭୃତି ଦ୍ରବ୍ୟ ବିଶେଷଭାବରେ ପାଶ୍ଚାତ୍ୟ ଜଗତରେ ଆଦୃତ ହେଉଥିଲା । ଏ ସବୁ ଛଡ଼ା ଦକ୍ଷିଣ ଭାରତରୁ ମୟୂର ଇତ୍ୟାଦି ପଶୁ ପକ୍ଷୀର ମଧ୍ୟ ବିଦେଶକୁ ରପ୍ତାନୀ ହେଉଥାଏ । ଅଦ୍ୟାବଧି କେତେ ଦ୍ରାବିଡ଼ ଦେଶୀୟ ପଦାର୍ଥର ପାଶ୍ଚାତ୍ୟ ଜଗତରେ ସୁଦ୍ଧା ସେମାନଙ୍କର ସେହି ଦ୍ରାବିଡ଼ୀ ନାମ ଦେଖିବାକୁ ମିଳେ । ତାମିଲ୍ ଭାଷାର 'ପିପ୍‌ପଲି' ଶବ୍ଦରୁ ଇଂରାଜୀ ଭାଷାରେ 'ପିପ୍‌ପାର' ଶବ୍ଦର ଉତ୍ପତ୍ତି ଏବଂ ତାମିଲ୍ ଭାଷାର 'ଆରସି' ଶବ୍ଦରୁ ଇଂରାଜୀ ଭାଷାରେ 'ରାଇସ୍' ଶବ୍ଦର ଉତ୍ପତ୍ତି ହୋଇଛି । ଦାକ୍ଷିଣାତ୍ୟର ପିପ୍‌ପଳି ବା ମରିଚ ଏବଂ ଆରସି ବା ଚାଉଳ ପାଶ୍ଚାତ୍ୟଖଣ୍ଡରେ ବହୁ ପରିମାଣରେ ବିକ୍ରିତ ଏବଂ ଆଦୃତ ହେଉଥାଏ ଏବଂ ସେହି 'ପିପ୍‌ପଳି' ଓ 'ଆରସି' ଶବ୍ଦ ଗ୍ରୀକ୍, ଲାଟିନ ପ୍ରଭୃତି ଭାଷା ମଧ୍ୟଦେଇ ନିଜର ରୂପ ପରିବର୍ତ୍ତନ କରି କରି ଶେଷରେ ଇଂରାଜୀରେ 'ପିପ୍‌ପାର'

ଏବଂ 'ଗ୍ରିସ୍' ରୂପରେ ପରିଣତ ହୋଇଛି । ଏହିପରି ଦ୍ରାବିଡ଼ ଜାତୀୟ ଅନେକ ଶବ୍ଦ ପାଶ୍ଚାତ୍ୟ ଭାଷାମାନଙ୍କ ମଧ୍ୟରେ ସ୍ଥାନ ପାଇ ଯାଇଛି । ଏସବୁ ଦ୍ରାବିଡ଼ ଶବ୍ଦ ସୁଦୂର ଅତୀତରେ ପାଶ୍ଚାତ୍ୟଖଣ୍ଡ ଏବଂ ଦ୍ରାବିଡ଼ ଦେଶ ମଧ୍ୟରେ ଯେଉଁ ଘନିଷ୍ଠ ସମ୍ବନ୍ଧ ଥିଲା ତାହାର୍ହିଁ ପ୍ରମାଣ କରେ ।

ଏକ କଥାରେ, ପୃଥିବୀର ଶ୍ରେଷ୍ଠତମ ସଭ୍ୟତାମାନଙ୍କ ମଧ୍ୟରେ ଦ୍ରାବିଡ଼ ସଭ୍ୟତା ଅନ୍ୟତମ ଏବଂ ଏ ସଭ୍ୟତା ପ୍ରାଚୀନ ପୃଥିବୀର ମିଶର, ସୁମେରୁ ଏବଂ ଗ୍ରୀସ୍ ଦେଶର ସଭ୍ୟତାମାନଙ୍କ ସହ ସମକକ୍ଷ ଏକ ସଭ୍ୟତା । ଭାରତଖଣ୍ଡରେ ଏ ସଭ୍ୟତା ଥିଲା ପ୍ରଥମେ ଆର୍ଯ୍ୟ ସଭ୍ୟତାର ସମକକ୍ଷ, ପ୍ରତିଦ୍ୱନ୍ଦୀ ଶକ୍ତି ସଭ୍ୟତା ଏବଂ ପରେ ପରେ ହେଲା ଆର୍ଯ୍ୟ-ଦ୍ରାବିଡ଼-ସମ୍ମିଳିତ ବିରାଟ ଭାରତୀୟ-ହିନ୍ଦୁ ସଭ୍ୟତାର ଏକ ବିଶିଷ୍ଟ ଅଙ୍ଗ ।

ଭାରତ ବକ୍ଷରେ ଦ୍ରାବିଡ଼ ଏବଂ ଆର୍ଯ୍ୟ ସଭ୍ୟତାର ସଂଘର୍ଷ ସେପରି ବିସ୍ମୟକର ଘଟଣା ନୁହେଁ । ଯୁଗେ ଯୁଗେ ପୃଥିବୀର ବହୁ ଦେଶରେ ଭିନ୍ନ ଭିନ୍ନ ସଭ୍ୟତା ମଧ୍ୟରେ ଏପରି ସଂଘର୍ଷ ଘଟିଛି ଏବଂ ଗୋଟିଏ ସଭ୍ୟତାର ପତନରେ ଅପର ଗୋଟିକର ଉତ୍ଥାନ ହୋଇଛି, କିମ୍ବା ଗୋଟିକର ଉତ୍ଥାନରେ ଅପରଟିର ପତନ ହୋଇଛି । କିନ୍ତୁ ଭାରତ ବକ୍ଷରେ ପ୍ରକୃତ ବିସ୍ମୟକର ଘଟଣା ହେଉଛି ଦ୍ରାବିଡ଼ ଏବଂ ଆର୍ଯ୍ୟ ସଭ୍ୟତାର ମିଳନ ଏବଂ ସେହି ମିଳିତ ସଭ୍ୟତା ମଧ୍ୟରୁ ପ୍ରକୃତ ହିନ୍ଦୁ-ଧର୍ମ ଏବଂ ଭାରତୀୟ ସଂସ୍କୃତିର ଗଠନ । ପୃଥିବୀରେ ଏପରି ମିଳନ ଖୁବ୍ ବିରଳ । ଖୁବ୍ କ୍ୱଚିତ୍ ସ୍ଥାନରେ ଦୁଇଟି ପ୍ରତିଦ୍ୱନ୍ଦୀ ସଭ୍ୟତା ପରିଶେଷରେ ପରସ୍ପରକୁ ଆଲିଙ୍ଗନ କରି ଏକ ସଭ୍ୟତାରେ ପରିଣତ ହୋଇଅଛନ୍ତି । ଆଜି ଭାରତର ଅଗଣିତ ଏହି କୋଟି କୋଟି ମନୁଷ୍ୟର ଯେଉଁ ଧର୍ମ ସେହି ହିନ୍ଦୁ ଧର୍ମ କେବଳ ବୈଦିକ ଆର୍ଯ୍ୟମାନଙ୍କର ଧର୍ମ ନୁହେଁ କିମ୍ବା ପ୍ରାଗ୍-ବୈଦିକ ଦ୍ରାବିଡ଼ମାନଙ୍କର ଧର୍ମ ନୁହେଁ, ସେ ହେଉଛି ଆର୍ଯ୍ୟ-ଦ୍ରାବିଡ଼ ଏହି ଦୁଇ ମହାଜାତିର ମିଳିତ ଧର୍ମ । କେଉଁ ଅନିର୍ଦ୍ଦିଷ୍ଟ ଅତୀତରୁ ଯୁଗ ଯୁଗ ଧରି ସୁଦୂର ପଞ୍ଚନଦତଟରୁ କୁମାରୀକା ପର୍ଯ୍ୟନ୍ତ ଆର୍ଯ୍ୟ ଏବଂ ଦ୍ରାବିଡ଼ମାନେ ପରସ୍ପର ମଧ୍ୟରେ ଯୁଦ୍ଧ କରିଥିବେ ଏବଂ ପ୍ରତ୍ୟେକ ପ୍ରତ୍ୟେକର ଧର୍ମ ଓ ସଭ୍ୟତାକୁ ଧ୍ୱଂସ କରି ଦେବାକୁ ପ୍ରାଣପଣ ଚେଷ୍ଟା କରିଥିବେ । କିନ୍ତୁ ଯୁଗ ଯୁଗର ଏହି ସଂଘର୍ଷ ମଧ୍ୟରେ ଅଲକ୍ଷିତ ଭାବରେ ଦୁଇଟି ସଭ୍ୟତା ପରସ୍ପର ପ୍ରତି ଆକୃଷ୍ଟ ହୋଇ ଶେଷରେ ପରସ୍ପରକୁ ଆଲିଙ୍ଗନ କରି ନେଇଥିଲେ । ଉପରେ ରକ୍ତପାତ, ଯୁଦ୍ଧ, କିନ୍ତୁ ଏହି ରକ୍ତପାତ ଏବଂ ଯୁଦ୍ଧ ତଳେ ସମ୍ପାଦିତ ହୋଇଥିଲା ଦୁଇଟି ସଭ୍ୟତାର ମିଳନ । ବୈଚିତ୍ର୍ୟପୂର୍ଣ୍ଣ ଭାରତୀୟ ସଭ୍ୟତାର ଏ ମଧ୍ୟ ଏକ ବୈଶିଷ୍ଟ୍ୟ ।

ଉତ୍କଳଖଣ୍ଡ ଉପରେ ଦ୍ରାବିଡ଼ ସଂସ୍କୃତିର ପ୍ରଭାବ କ'ଣ ଥିଲା ତାହା ଜାଣିବାକୁ ହେଲେ ଏଠାରେ ଉତ୍କଳର ଭୌଗଳିକ ଅବସ୍ଥିତି ପ୍ରତି ଦୃଷ୍ଟିପାତ କରିବାକୁ

ହେବ । ଉତ୍କଳ ଦେଶ ଆର୍ଯ୍ୟାବର୍ତ୍ତ ଏବଂ ଦାକ୍ଷିଣାତ୍ୟର ଦ୍ୱାର ଦେଶରେ ଅବସ୍ଥିତ । ଯେତେବେଳେ ପରାଜିତ ଦ୍ରାବିଡ଼ ଜାତି ଉତ୍ତର ଭାରତ ତ୍ୟାଗକରି ଦକ୍ଷିଣ ଦିଗକୁ ଗତି କରିଥିବେ ସେତେବେଳେ ସେମାନେ ମୁଖ୍ୟତଃ ଦୁଇଟି ରାଜ୍ୟ ମଧ୍ୟଦେଇ ଦାକ୍ଷିଣାତ୍ୟ ଖଣ୍ଡକୁ ରାସ୍ତା ପାଇଥିବେ । ଏ ଦୁଇଟି ରାଜ୍ୟ ମଧ୍ୟରୁ ଗୋଟିଏ ହେଉଛି ଗୁଜରାଟ ଏବଂ ଅପରଟି ହେଉଛି ଉତ୍କଳ । ଭାରତବର୍ଷକୁ ଦୁଇଖଣ୍ଡରେ ବିଭକ୍ତ କରି ଦଣ୍ଡାୟମାନ ହୋଇଛି ଉତ୍ତୁଙ୍ଗ ବିନ୍ଧ୍ୟାଚଳ । ଏହି ମେଘନାଦ ପର୍ବତ-ପ୍ରାଚୀର ଅତିକ୍ରମ କରି ଉତ୍ତରରୁ ଦକ୍ଷିଣକୁ ଆସିବା ଅସମ୍ଭବ । କିନ୍ତୁ ଅସମ୍ଭବ ସମ୍ଭବ ହୋଇଛି କେବଳ ବିନ୍ଧ୍ୟର ଉଭୟ ପାର୍ଶ୍ୱରେ ଦୁଇଟି ଉନ୍ମୁକ୍ତ ଦ୍ୱାରଦେଶ ଅବସ୍ଥିତ ଥିବାରୁ । ହୁଏତ ପୁରାଣର ସେହି ମହାମୁନି ଅଗସ୍ତ୍ୟଙ୍କ ଆଦେଶରେ ବିନ୍ଧ୍ୟାଚଳ ତାହାର ଉନ୍ନତ ମସ୍ତକ ନତ କରିଥିଲା କେବଳ ଏହି ଉତ୍କଳ ଏବଂ ଗୁଜରାଟ-ଖଣ୍ଡରେ । ଯେତେବେଳେ ଆର୍ଯ୍ୟମାନେ ଭାରତର ଉତ୍ତର-ପଶ୍ଚିମ ସୀମାନ୍ତରେ ଉପନୀତ ହୋଇଥିବେ ସେତେବେଳେ ଦ୍ରାବିଡ଼ ସଭ୍ୟତା ଉତ୍ତର ଭାରତ ତ୍ୟାଗକରି ଦାକ୍ଷିଣାତ୍ୟମୁଖେ ଯାତ୍ରା କରିବାର ପ୍ରୟାସୀ ହୋଇଥିବ । ଆର୍ଯ୍ୟମାନଙ୍କ ଆସିବା ପୂର୍ବରୁ ମଧ୍ୟ ଦ୍ରାବିଡ଼ମାନେ ଦାକ୍ଷିଣାତ୍ୟକୁ ନିଜର ଗୃହରେ ପରିଣତ କରିସାରିଥିବେ । କିନ୍ତୁ ଦ୍ରାବିଡ଼ ଜାତି କେଉଁ ପଥରେ ଉତ୍ତର ଭାରତରୁ ଦାକ୍ଷିଣାତ୍ୟରେ ପ୍ରବେଶ କଲେ ସେ କଥା ନିଶ୍ଚିତଭାବେ ଜାଣିହେବ କେବଳ ଭାରତର ଭୂଗୋଳ ପ୍ରତି ଦୃଷ୍ଟିପାତ କଲେ । ଅର୍ଥାତ୍, ଦ୍ରାବିଡ଼ ଜନସ୍ରୋତ ନିଶ୍ଚୟ ପଶ୍ଚିମରେ ଗୁଜରାଟ ଏବଂ ପୂର୍ବରେ ଉତ୍କଳ, ଏହି ଦୁଇ ପ୍ରାକୃତିକ ଦ୍ୱାରପଥ ଦେଇ ଉତ୍ତରରୁ ଦକ୍ଷିଣକୁ ଗତି କରିଥିଲେ । ଗୁଜରାଟ ମଧ୍ୟଦେଇ ଗୋଟିଏ ସ୍ରୋତ ସିନ୍ଧୁ ଉପତ୍ୟକାରୁ ଦାକ୍ଷିଣାତ୍ୟକୁ ଗତି କରିଥିବ ଏବଂ ଅପର ଏକ ସ୍ରୋତ ସିନ୍ଧୁ ଉପତ୍ୟକାରୁ କ୍ରମେ ଗାଙ୍ଗେୟ ଉପତ୍ୟକା ଉପରେ ଗତିକରି ତା'ପରେ ଉତ୍କଳ ପଥରେ ଦକ୍ଷିଣକୁ ଯାତ୍ରା କରିଥିବ । ଆର୍ଯ୍ୟମାନେ ଆସିବା ପୂର୍ବରୁ ଦ୍ରାବିଡ଼ମାନେ ଗାଙ୍ଗେୟ ଉପତ୍ୟକାର ଉର୍ବର ସମତଳ ଭୂଖଣ୍ଡକୁ ନିଜର କରି ନେଇଥିଲେ । ସେହି ସମୟରେ ସେମାନେ ଉତ୍କଳଖଣ୍ଡ ଦେଇ ଦକ୍ଷିଣକୁ ଗତି କରିଥିବେ ଏବଂ କ୍ରମେ ଦାକ୍ଷିଣାତ୍ୟର ପ୍ରଶସ୍ତ ଭୂଖଣ୍ଡ ପ୍ରତି ଆକୃଷ୍ଟ ହୋଇ ପଡ଼ିଥିବେ । ଯେତେବେଳେ ଆର୍ଯ୍ୟମାନେ ଉତ୍ତର-ପଶ୍ଚିମରୁ ଆସି ପଞ୍ଜାବ ଅଧିକାର କଲେ ଏବଂ ସେମାନଙ୍କର ପ୍ରଚଣ୍ଡ ଆକ୍ରମଣ ଫଳରେ ଦ୍ରାବିଡ଼ ଜାତିକୁ ସିନ୍ଧୁ ତଥା ସମଗ୍ର ଗାଙ୍ଗେୟ ଉପତ୍ୟକା ପରିତ୍ୟାଗ କରି ଦକ୍ଷିଣାଭିମୁଖୀ ହେବାକୁ ପଡ଼ିଥିଲା ସେତେବେଳେ ଉତ୍କଳ ମଧ୍ୟଦେଇ ନିଶ୍ଚୟ ଏହି ଦକ୍ଷିଣଗାମୀ ଦ୍ରାବିଡ଼ ଜନସ୍ରୋତ ଗତି କରିଥିବ । ସୁତରାଂ ସୁଦୂର ପ୍ରାଗ୍‌ ଐତିହାସିକ ଅତୀତରେହିଁ ଉତ୍କଳ ଦ୍ରାବିଡ଼ ସଭ୍ୟତାଦ୍ୱାରା ପ୍ଲାବିତ ହୋଇଥିଲା । କ୍ରମେ ସମଗ୍ର ଉତ୍ତର ଭାରତରୁ ଦ୍ରାବିଡ଼ ଜାତି ଅପସରି ଆସି ଦାକ୍ଷିଣାତ୍ୟଖଣ୍ଡକୁ ନିଜରାଜ୍ୟ ଏବଂ ସଭ୍ୟତାର କେନ୍ଦ୍ରସ୍ଥଳରେ ପରିଣତ କରିଥିଲେ । ଉତ୍ତର ଭାରତରୁ ଧୀରେ ଧୀରେ ଦ୍ରାବିଡ଼ୀୟ ସଭ୍ୟତା ବିଦାୟ ନେଇଥିବ ଏବଂ ସେଠାରେ ଆର୍ଯ୍ୟ ସଭ୍ୟତା ବିସ୍ତାର

ଲାଭ କରିଥିବ । କ୍ରମେ ଦାକ୍ଷିଣାତ୍ୟରେ ମଧ୍ୟ ଦ୍ରାବିଡ଼ ସଭ୍ୟତାର ସୁଦୃଢ଼ ଦୁର୍ଗ ଗଠିତ ହୋଇଥିବ । ଏହିପରି ଏକ ସଭ୍ୟତାଗତ ପାର୍ଥକ୍ୟ ଏବଂ ଭେଦାଭେଦ-ବେଳେ ଉତ୍ତରାପଥ ଏବଂ ଦାକ୍ଷିଣାତ୍ୟର ମିଳନପଥ ଏହି ଉତ୍କଳ ଦେଶ ଦୁଇଟି ସଭ୍ୟତା ଏବଂ ଦୁଇଟି ଜାତି ମଧ୍ୟରେ ଯୋଗସୂତ୍ର ଲଗାଇ ରଖିବାକୁ ଯଥେଷ୍ଟ ଚେଷ୍ଟା କରିଥିବ । ଉତ୍ତରରେ ଆର୍ଯ୍ୟ ପ୍ରତିପତ୍ତି ବିସ୍ତାର ହୋଇ ସାରିଲା ପରେ ଆର୍ଯ୍ୟ-ବାହିନୀ ଦକ୍ଷିଣକୁ ରାସ୍ତା ଖୋଜିଥିବେ ଏବଂ ଏହି ରାସ୍ତା ଉତ୍କଳ ଦେଶରେ ଆବିଷ୍କାର କରିଥିବେ । ଆର୍ଯ୍ୟନେତା ରାମଚନ୍ଦ୍ର ତାହାଙ୍କର ଆର୍ଯ୍ୟସେନାସହ ଅଯୋଧ୍ୟା ଦେଶରୁ ଉତ୍କଳ ପଥରେ ଦାକ୍ଷିଣାତ୍ୟ ଯାତ୍ରା କରିଥିବେ । କାଳକ୍ରମେ ଏହି ଉତ୍କଳ ଭୂମିରେ ଆର୍ଯ୍ୟ-ଦ୍ରାବିଡ଼ ସଂଘର୍ଷର ଚୂଡ଼ାନ୍ତ ଲାଭ ହୁଏ । ଚିରଦିନ ପାଇଁ ଉତ୍ତରାପଥକୁ ଆର୍ଯ୍ୟଦେଶ ଏବଂ ଦାକ୍ଷିଣାତ୍ୟକୁ ଦ୍ରାବିଡ଼ଦେଶ ନାମରେ ପରିଚିତ ରହିବାକୁ ହୁଏ । କିନ୍ତୁ ଆର୍ଯ୍ୟଦେଶ ଏବଂ ଦ୍ରାବିଡ଼ଦେଶର ସଙ୍ଗମଭୂମି ଉତ୍କଳଖଣ୍ଡକୁ ଚିରଦିନ ଦୁଇ ଜାତିର ମିଳନଭୂମିରୂପେ ରହିବାକୁ ହୋଇଛି । ଆର୍ଯ୍ୟ-ଦ୍ରାବିଡ଼ ସଂଘର୍ଷ ଶେଷରେ ଯେତେବେଳେ ପ୍ରତ୍ୟକ୍ଷ ଏବଂ ପରୋକ୍ଷ ଭାବରେ ଆର୍ଯ୍ୟ, ଦ୍ରାବିଡ଼ ଏ ଦୁଇ ସଭ୍ୟତା ଏବଂ ଦୁଇ ଜାତିର ମିଳନ ଆରମ୍ଭ ହୁଏ ସେତେବେଳେ ଉତ୍କଳ ଦେଶ ଏ ମିଳନ ପଥରେ ପ୍ରଭୂତ ସାହାଯ୍ୟ କରିଥିବ । ଆଜି ସାରା ଭାରତବର୍ଷରେ ଏକ ଭାରତୀୟ ସଭ୍ୟତା ଏବଂ ସାରା ଭାରତର ମୁଖ୍ୟ ଧର୍ମ ହିନ୍ଦୁଧର୍ମ । ତଥାପି ଭାରତର ଦକ୍ଷିଣଖଣ୍ଡରେ ଦ୍ରାବିଡ଼ୀୟ ସଂସ୍କୃତି ଏବଂ ଉତ୍ତରଖଣ୍ଡରେ ଆର୍ଯ୍ୟ ସଂସ୍କୃତିର ପ୍ରାଧାନ୍ୟ ପରିଲକ୍ଷିତ ହୁଏ । ଦାକ୍ଷିଣାତ୍ୟରେ ପ୍ରଚଳିତ ଭାଷା ହେଉଛି ଦ୍ରାବିଡ଼ୀ ଭାଷା ଏବଂ ଉତ୍ତରରେ ପ୍ରଚଳିତ ଭାଷା ହେଉଛି ଆର୍ଯ୍ୟ ଭାଷା । ଯଦିଓ ଭାଷାଗତ ପାର୍ଥକ୍ୟ ସତ୍ତ୍ୱେ ଆଜି ଭାରତର ବିରାଟ ଜନତା ହିମାଳୟଠାରୁ କୁମାରୀକା ପର୍ଯ୍ୟନ୍ତ କି ଉତ୍ତର କି ଦକ୍ଷିଣ ସମସ୍ତେ ସେହି ହିନ୍ଦୁ, ତଥାପି ଏହି ଏକ ଧର୍ମର ମହିମ୍ନସୂଚକ ଧ୍ୱଜା ତଳେ ଏବଂ ଏକ ସଭ୍ୟତାର ସୁବିସ୍ତୃତ ଛାୟା ତଳେ, ଉତ୍ତରର ଆର୍ଯ୍ୟ ଭାଷା ଏବଂ ଦକ୍ଷିଣର ଦ୍ରାବିଡ଼ୀ ଭାଷା ଉତ୍ତର-ଦକ୍ଷିଣ ମଧ୍ୟରେ ଏକ ଅଜଣା ଅତୀତର ଜାତିଗତ, ଧର୍ମଗତ ଓ ସଭ୍ୟତାଗତ ପାର୍ଥକ୍ୟର କ୍ଷୀଣ ପରିଚୟ ଦିଏ । ଆଜି ଉତ୍ତରରେ ଦ୍ରାବିଡ଼ୀ ଭାଷାର ପ୍ରଚଳନ ନାହିଁ କି ଦକ୍ଷିଣରେ ଆର୍ଯ୍ୟ ଭାଷାର ପ୍ରଚଳନ ନାହିଁ । ଉତ୍ତର ଭାରତୀୟ ଯେତେସବୁ ଭାଷା, ଯଥା, ବ୍ରଜଭାଷା, ମୈଥିଳୀ, ମାଗଧି, ହିନ୍ଦି ପ୍ରଭୃତି ଏ ସମସ୍ତ ଭାଷା ସଂସ୍କୃତର କନ୍ୟା ଏବଂ ଏସବୁ ସଂସ୍କୃତ କନ୍ୟାମାନଙ୍କ ମଧ୍ୟରେ ଦ୍ରାବିଡ଼ ଶବ୍ଦର ସ୍ଥାନ ନାହିଁ । ଦକ୍ଷିଣରେ ତାମିଲ, ତେଲେଗୁ, କାନାଡ଼ୀ ଓ ମାଲୟାଲମ, ଏ ଚାରିଟି ଭାଷା ପ୍ରାଚୀନ ଦ୍ରାବିଡ଼ୀ ଭାଷାର ଚାରି ପ୍ରଧାନ କନ୍ୟା । ଏମାନଙ୍କ ମଧ୍ୟରେ ସଂସ୍କୃତ ଶବ୍ଦ ବିରଳ । ଉତ୍କଳଖଣ୍ଡରେ ପ୍ରଚଳିତ ଓଡ଼ିଆ ଭାଷା ଉତ୍ତର ଭାରତର ଅନ୍ୟାନ୍ୟ ଭାଷାମାନଙ୍କ ପରି ସଂସ୍କୃତର କନ୍ୟା । କିନ୍ତୁ ଦ୍ରାବିଡ଼ୀ ତେଲେଗୁ-ତାମିଲ ଭାଷାର ଅଗଣିତ ଶବ୍ଦ ଓଡ଼ିଆ ଭାଷାର ପୁଷ୍ଟି ସାଧନ କରିଛି । ଉତ୍କଳ ଉପରେ ଦ୍ରାବିଡ଼ ଭାଷାର ପ୍ରଭାବ

ଆଦମ କାଳରୁ ଓଡ଼ିଆ ଭାଷା ପୂର୍ଣ୍ଣମାତ୍ରାରେ ପରିସ୍ଫୁଟ ହୋଇ ସାରିଲା ପର୍ଯ୍ୟନ୍ତ ପଡ଼ିଆସିଛି । ସର୍ବ ପ୍ରଥମେ ଉତ୍କଳଖଣ୍ଡରେ ପ୍ରାଗ୍-ଐତିହାସିକ ଆଦମମାନଙ୍କ ଭାଷା ବ୍ୟବହୃତ ହେଉଥିଲା, କାରଣ ସେ ସୁଦୂର ଯୁଗରେ କେବଳ ଆଦମମାନଙ୍କ ଛଡ଼ା ଦ୍ରାବିଡ଼ କମ୍ବା ଆର୍ଯ୍ୟମାନେ ଏ ଦେଶରେ ପଦାର୍ପଣ କରି ନ ଥିଲେ । ତା'ପରେ ଦ୍ରାବିଡ଼ମାନଙ୍କର ଭାଷା ଉତ୍କଳରେ ନିଶ୍ଚୟ ପ୍ରଚଳିତ ହୋଇଥିବ । ଆର୍ଯ୍ୟମାନେ ଆସିଲା ପରେ ଦ୍ରାବିଡ଼ ଭାଷା ପରିବର୍ତ୍ତେ ଆର୍ଯ୍ୟ ଭାଷାର ପ୍ରଚଳନ ହୋଇଥିବ ଏବଂ ସଂସ୍କୃତ ଓ ପ୍ରାକୃତ ଭାଷା ଜନ ସାଧାରଣଙ୍କ ମଧ୍ୟରେ ଆଦୃତ ହୋଇଥିବ । କିନ୍ତୁ ସଂସ୍କୃତ ଓ ପ୍ରାକୃତ ଭାଷା ସହ ଦ୍ରାବିଡ଼ୀ ଭାଷାର ପ୍ରଚଳନ ମଧ୍ୟ ଉଣା ଅଧିକ ଉତ୍କଳର କୌଣସି କୌଣସି ଅଞ୍ଚଳରେ ଲାଗି ରହିଥିବ । ମଧ୍ୟ ଯୁଗରେ ବା ଦଶମ ଶତାବ୍ଦୀ ପାଖରୁ ତ୍ରୟୋଦଶ ଶତାବ୍ଦୀ ମଧ୍ୟରେ ପ୍ରାକୃତ ଭାଷାରୁ ଭାରତର ବିଭିନ୍ନ ପ୍ରାଦେଶିକ ଭାଷାମାନଙ୍କର ସୃଷ୍ଟି ହୁଏ । ଏହି ସମୟରେ ଓଡ଼ିଆ ଭାଷାର ମଧ୍ୟ ସୃଷ୍ଟି ହୁଏ । ଅତି ପୁରୁଣା କାଳରୁ ଉତ୍କଳରେ ଦ୍ରାବିଡ଼ ଭାଷା ସହ ସଂସ୍କୃତ ଓ ପ୍ରାକୃତ ଭାଷାର ଶବ୍ଦ ଓ ଭାବ ବିନିମୟ ଚାଲିଥାଏ । ଯେତେବେଳେ ଓଡ଼ିଆ ଭାଷା ସୃଷ୍ଟି ହେବାକୁ ବସିଲା ସେତେବେଳେ ଭାଷାର ମେରୁଦଣ୍ଡ ସଂସ୍କୃତ-ପ୍ରାକୃତ ରହିଲେ ମଧ୍ୟ ଭାଷାର ବହିରାବରଣରେ ଅନେକ ସ୍ଥାନରେ ଦ୍ରାବିଡ଼ ଭାଷା ଲାଗି ରହିଲା । ଉତ୍କଳ ଦେଶ ଦାକ୍ଷିଣାତ୍ୟର ଉତ୍ତର-ପୂର୍ବ ଦ୍ୱାରରେ ଅବସ୍ଥିତ । ତେଣୁ, ଦାକ୍ଷିଣାତ୍ୟର ଚୋଳ-ଚାଲୁକ୍ୟ ଅଞ୍ଚଳରେ ଯେତେବେଳେ ଦ୍ରାବିଡ଼ ଶକ୍ତି ପ୍ରବଳ ହୋଇ ଉଠିଛି ସେତେବେଳେ ସେ ଶକ୍ତିର ପ୍ରଭାବ ଉତ୍କଳ ଉପରେ ପଡ଼ିଛି । ମଧ୍ୟ ଯୁଗରେ ଗଙ୍ଗା-ବଂଶର ରାଜତ୍ୱବେଳେ ଉତ୍କଳରେ ଓଡ଼ିଆ ଭାଷାର ପୂର୍ଣ୍ଣାଙ୍ଗ ଲାଭ ହୁଏ । ଏହି ସମୟରେ ଦାକ୍ଷିଣାତ୍ୟର ଚୋଳ ଏବଂ ଚାଲୁକ୍ୟମାନେ ମଧ୍ୟ ପ୍ରବଳ ହୋଇ ଉଠନ୍ତି । ଏହି ଦୁଇ ରାଜବଂଶର ପ୍ରଭାବ ଓଡ଼ିଶାର ରାଜନୀତି ଏବଂ ସଂସ୍କୃତି କ୍ଷେତ୍ରରେ ବହୁ ମାତ୍ରାରେ ପଡ଼ିଥିଲା । ଉତ୍କଳର ଗଙ୍ଗାବଂଶୀୟ ନରପତିମାନଙ୍କର ଚୋଳ ଓ ଚାଲୁକ୍ୟ ରାଜବଂଶ ସହ ବିବାହାଦି ସମ୍ପର୍କ ଲାଗି ରହିଥାଏ । ଏପରି ସମ୍ପର୍କ ଦ୍ୱାରା ତେଲେଗୁ ଓ ତାମିଲ ଭାଷାର ପ୍ରଭାବ ଓଡ଼ିଆ ଭାଷା ଉପରେ ପଡ଼ୁଥାଏ । ଦ୍ୱାଦଶ ଶତାବ୍ଦୀରେ ଚୋଡ଼ଗଙ୍ଗଦେବ ବିଶାଳ ଉତ୍କଳ ସାମ୍ରାଜ୍ୟ ଗଠନ କରିଥିଲେ । ଚୋଳ ରାଜ୍ୟ ସହିତ ତାହାଙ୍କର ସମ୍ପର୍କ ସମସ୍ତଙ୍କୁ ଜଣା । ଏହାଙ୍କ ରାଜତ୍ୱ କାଳରେ ଚୋଳ ସଂସ୍କୃତିର ପ୍ରଭୂତ ପ୍ରଭାବ ଉତ୍କଳ ଉପରେ ପଡ଼ିଥିଲା । ଚୋଡ଼ଗଙ୍ଗଦେବଙ୍କ ସମୟର ରାଜା ରାଣୀ, ରାଜ ସମ୍ପର୍କୀୟ ପାତ୍ର ମନ୍ତ୍ରୀ, ବନ୍ଧୁ ବାନ୍ଧବ ଏମାନଙ୍କ ନାମରୁ ଚୋଳ ସଂସ୍କୃତିର ଯେଉଁ ପ୍ରଭାବ ଏ ଦେଶ ଉପରେ ପଡ଼ିଥିଲା ତାହା ସହଜରେ ଅନୁମିତ ହୁଏ । ଗଙ୍ଗାବଂଶୀୟ ରାଜାମାନଙ୍କର ପ୍ରାଚୀନ ଅଭିଲେଖମାନଙ୍କରେ ତେଲେଗୁ ଭାଷାର ପ୍ରଚଳନ ଯଥେଷ୍ଟ ମାତ୍ରାରେ ଦେଖାଯାଏ । ଉତ୍କଳ-କଳିଙ୍ଗର ବହୁ ସ୍ଥାନର ନାମ ଏବେ ମଧ୍ୟ ତେଲେଗୁ । ମୋଟ ଉପରେ, ବହୁକାଳ ଯାବତ୍ ଦାକ୍ଷିଣାତ୍ୟର ଦ୍ରାବିଡ଼ ସଂସ୍କୃତି ଏବଂ ଦ୍ରାବିଡ଼ ଭାଷା ସହ ସମ୍ପର୍କରେ ରହି ଉତ୍କଳ ଦେଶ ନିଜର

ଭାଷା ଏବଂ ସଂସ୍କୃତି ଉପରେ ଦ୍ରାବଡ଼ୀୟ ପ୍ରଭାବ ସାଦରେ ଗ୍ରହଣ କରି ନେଇଛି । ଏଲ୍. ଡି. ବାର୍ନେଟ୍ କହନ୍ତି, "ଏ ଯୁଗରେ ଉତ୍ତର ସରକାର ଏବଂ ଦକ୍ଷିଣ ଗଞ୍ଜାମର ମୁଖ୍ୟ ଭାଷା ହେଉଛି ତେଲେଗୁ । ଏବଂ ଏ ଦୁଇ ଅଞ୍ଚଳ ଓ ଓଡ଼ିଶାର ଲୋକମାନଙ୍କ ମଧ୍ୟରେ ଦ୍ରାବଡ଼-ଜାତୀୟ ଶାରୀରିକ ଗଠନ ଦେଖିବାକୁ ମିଳେ ।"[1] ଅପର ଏକ ସ୍ଥାନରେ ବାର୍ନେଟ୍ କହିଛନ୍ତି, "ଗୁଜରାଟ ମଧ୍ୟକୁ ଆର୍ଯ୍ୟମାନଙ୍କର କ୍ରମାଗତ ଜନସ୍ରୋତ ସେଠାକାର ଦ୍ରାବଡ଼ ରକ୍ତ ଏବଂ ଦ୍ରାବଡ଼ ଭାଷାକୁ କ୍ରମେ ଅନ୍ତଃସାତ୍ କରିଦେଲା ; ମହାରାଷ୍ଟ୍ର ଖଣ୍ଡରେ ମଧ୍ୟ ସେହି ଆର୍ଯ୍ୟ ପ୍ରଭାବ ଦ୍ରାବଡ଼ ଭାଷାକୁ ଗ୍ରାସ କରିଦେଲା, ଏବଂ ଠିକ୍ ତାହାହିଁ କଳିଙ୍ଗ ଦେଶରେ ମଧ୍ୟ ଘଟିଛି, ଯଦିଚ କଳିଙ୍ଗର କେବଳ ଦକ୍ଷିଣ ଜିଲ୍ଲାମାନଙ୍କରେ ଆଜି ପର୍ଯ୍ୟନ୍ତ ଗୋଟିଏ ଦ୍ରାବଡ଼ ଭାଷା, ତେଲେଗୁ, ବଞ୍ଚି ରହିଛି ।"[2] ଅତୀତରେ ଦିନେ ଉତ୍କଳରେ ଦ୍ରାବଡ଼ ଭାଷା ପ୍ରଚଳିତ ଥିଲା ; ତାପରେ ଆର୍ଯ୍ୟ ଭାଷା ସେହି ଦ୍ରାବଡ଼ ଭାଷାର ବିଲୟ ସାଧନ କରି ନିଜେ ପ୍ରଚଳିତ ହୋଇଥିଲା ; ତଥାପି ଉତ୍କଳର ଦକ୍ଷିଣାଞ୍ଚଳରେ ଯେଉଁଠାରେ ଦ୍ରାବଡ଼ ଦେଶ ଉତ୍କଳର ସୀମା ସ୍ପର୍ଶ କରିଛି ସେହି ଅଞ୍ଚଳରେ ଦ୍ରାବଡ଼ ଭାଷା ବଞ୍ଚି ରହି ପାରିଲା ଏବଂ ଦକ୍ଷିଣର ଦ୍ରାବଡ଼ ସଂସ୍କୃତି ଉତ୍କଳର ଭାଷା ମଧ୍ୟରେ ମଧ୍ୟ ନିଜର ପ୍ରଭାବ ଟିକିଏ ରଖି ପାରିଲା । ଉତ୍କଳ-ଖଣ୍ଡରେ ଯେପରି ଆର୍ଯ୍ୟଭାଷୀ ଏବଂ ଦ୍ରାବଡ଼ଭାଷୀ ଉଭୟେ ଏକତ୍ର ବସବାସ କରୁଛନ୍ତି ଏବଂ ଉଭୟେ ପରସ୍ପରର ଭାଷା ହୃଦୟଙ୍ଗମ କରି ପାରୁଛନ୍ତି ଭାରତର ଅନ୍ୟ କୌଣସି ପ୍ରଦେଶରେ ସେପରି ବିଚିତ୍ର ସମାବେଶ ଦେଖିବାକୁ ମିଳେ ନାହିଁ । ଓଡ଼ିଆ ଭାଷାରେ ଯେପରି ଦ୍ରାବଡ଼ ପ୍ରଭାବ ପଡ଼ିଛି ଉତ୍ତର ଭାରତୀୟ ଅନ୍ୟ କୌଣସି ଭାଷାରେ ସେପରି ପ୍ରଭାବ ପଡ଼ି ନାହିଁ । ଏପରିକି କେତେକଙ୍କ ମତରେ 'ଉତ୍କଳ' ଶବ୍ଦ ଦ୍ରାବଡ଼ ଭାଷାରୁ ଉତ୍ପନ୍ନ ହୋଇଛି । କୃଷକମାନଙ୍କୁ ଦ୍ରାବଡ଼ ଭାଷାରେ 'ଓକ୍କଲ' ବୋଲି କୁହାଯାଏ । ଏହି 'ଓକ୍କଲ' ଶବ୍ଦକୁ ଆର୍ଯ୍ୟମାନେ ଅତି ଅତୀତ କାଳରେ ସଂସ୍କୃତ ଶବ୍ଦ 'ଉତ୍କଳ'ରେ ପରିଣତ କରିଦେଲେ ଏବଂ ଏହି ସଂସ୍କୃତ 'ଉତ୍କଳ' ଶବ୍ଦର ଅର୍ଥ ହେଲା 'ଉତ୍କୃଷ୍ଟ ଯେଉଁ ଦେଶର କଳା' ସେ ଉତ୍କଳ । ଆର୍ଯ୍ୟମାନେ ଏ ଦେଶର ନାମ ଏବଂ ସେ ନାମର ଅର୍ଥ ନିଜ ମତରେ ଦେଇଗଲେ ସତ, କିନ୍ତୁ ସେ ଶବ୍ଦର ଜନ୍ମ ଦ୍ରାବଡ଼ ଭାଷାରୁ । ସେହିପରି 'ଓଡ଼ିଶା' ଶବ୍ଦର ଉତ୍ପତ୍ତି ମଧ୍ୟ ଦ୍ରାବଡ଼ 'ଓଡ୍ଡସ' ଶବ୍ଦରୁ । ଦ୍ରାବଡ଼ ଭାଷାରେ 'ଓଡ୍ଡସ' ଶବ୍ଦର ଅର୍ଥ ମଧ୍ୟ ସେହି 'କୃଷକ' ଏବଂ ଏହି ଦ୍ରାବଡ଼ ଭାଷାର ପରିବର୍ତ୍ତନ କରି ଆର୍ଯ୍ୟମାନେ ଏଦେଶର ନାମ ରଖିଲେ 'ଓଡ୍ର' ଏବଂ ଏହି 'ଓଡ୍ର' ଶବ୍ଦରୁ ଉତ୍ପତ୍ତି ହୋଇଛି 'ଓଡ଼ିଶା' । ଏହାପରି ଆଧୁନିକ ଓଡ଼ିଆ ଭାଷାରେ ବହୁଶବ୍ଦ ଦେଖିବାକୁ ମିଳେ ଯାହାର ଉତ୍ପତ୍ତି

1. L. D. Barnett --- 'The Early History of Southern India' (Camb. Hist.) P. 602.
2. L. D. Barnett --- 'The Early History of Southern India' (Camb. Hist.) P. 5¢4.

ଦ୍ରାବିଡ଼ ଭାଷାରୁ ଏବଂ ବହୁ ଦ୍ରାବିଡ଼ ଶବ୍ଦ ଅପରିବର୍ତ୍ତିତ ରୂପେ ମଧ୍ୟ ଓଡ଼ିଆ ଭାଷା ମଧ୍ୟରେ ଏ ପର୍ଯ୍ୟନ୍ତ ବ୍ୟବହୃତ ହୋଇ ଆସୁଛି । ଏହା ପ୍ରାଚୀନ ଏବଂ ମଧ୍ୟ ଯୁଗରେ ଉତ୍କଳଖଣ୍ଡରେ ଦ୍ରାବିଡ଼ ପ୍ରଭାବର ଫଳ ।

ଉତ୍କଳର ଭାଷା ଉପରେ ଦ୍ରାବିଡ଼ ଭାଷା ଯେପରି ପ୍ରଭାବ ବିସ୍ତାର କରିଛି ଉତ୍କଳର କଳା ଏବଂ ସ୍ଥାପତ୍ୟ ଉପରେ ମଧ୍ୟ ସେହିପରି ପ୍ରଭାବ ବିସ୍ତାର କରିଛି । ଦ୍ରାବିଡ଼ମାନଙ୍କର ନିର୍ମାଣ ଶକ୍ତି ଉତ୍କୃଷ୍ଟ । ଭାରତୀୟ ସ୍ଥାପତ୍ୟ ବିଦ୍ୟାରେ ମୁଖ୍ୟତଃ ଚାରିପ୍ରକାରର ଶିଳ୍ପ ପ୍ରଣାଳୀ ଦେଖାଯାଏ, ଯଥା, ନାଗର, ଦ୍ରାବିଡ଼, ବେଶର ଏବଂ କାଳିଙ୍ଗ । ନାଗର ଢଙ୍ଗର ମନ୍ଦିର ଉତ୍ତର ଭାରତର ପାଟଳିପୁତ୍ର ଅଞ୍ଚଳରେ ନିର୍ମିତ ହେଉଥିଲା । ଦ୍ରାବିଡ଼ ଢଙ୍ଗର ମନ୍ଦିର ଦାକ୍ଷିଣାତ୍ୟର ତାମିଲ ଖଣ୍ଡରେ ନିର୍ମିତ ହେଉଥିଲା । ବେଶର ଢଙ୍ଗର ମନ୍ଦିର ଦକ୍ଷିଣ-ପଶ୍ଚିମ ଭାରତରେ ଦେଖିବାକୁ ମିଳେ ଏବଂ କାଳିଙ୍ଗ ଢଙ୍ଗର ସ୍ଥାପତ୍ୟ ବିଶେଷତଃ ଓଡ଼ିଶାର ମନ୍ଦିରମାନଙ୍କରେ କେନ୍ଦ୍ରୀଭୂତ । ଉତ୍କଳୀୟ ଶିଳ୍ପୀମାନେ କେବଳ ଯେ କାଳିଙ୍ଗ ସ୍ଥାପତ୍ୟରେ ନିପୁଣତା ଲାଭ କରିଥିଲେ ତାହା ନୁହେଁ । ଦକ୍ଷିଣରେ ଦ୍ରାବିଡ଼ମାନଙ୍କ ଶିଳ୍ପ କଳା ଏବଂ ସ୍ଥାପତ୍ୟ ବିଦ୍ୟାସହ ସେମାନଙ୍କର ଯଥେଷ୍ଟ ସମ୍ପର୍କ ଥିଲା । ଦକ୍ଷିଣ ଉପକୂଳର ବହୁ ମନ୍ଦିର ଚୋଳ କାରିଗରୀରେ ନିର୍ମିତ ବୋଲି ଅନେକଙ୍କର ମତ । ଉତ୍କଳ ଦେଶରେ ଗଙ୍ଗଯୁଗ ପୂର୍ବରୁ ଚୋଳ ବା ଦ୍ରାବିଡ଼ ସ୍ଥାପତ୍ୟର ଯଥେଷ୍ଟ ପ୍ରତିପତ୍ତି ଥାଏ । ଅଷ୍ଟମ ଶତାବ୍ଦୀର ମଧ୍ୟଭାଗରେ ନିର୍ମିତ ହୋଇଥିବା ଭୁବନେଶ୍ୱରର ବିଖ୍ୟାତ 'ବୈତାଳ' ମନ୍ଦିର ଉତ୍କଳଖଣ୍ଡରେ ଦ୍ରାବିଡ଼ ସ୍ଥାପତ୍ୟର ଯେଉଁ ପ୍ରଭାବ ଥିଲା ତା'ର ଅକାଟ୍ୟ ପ୍ରମାଣ ଦିଏ । 'ବୈତାଳ' ମନ୍ଦିର ଦ୍ରାବିଡ଼-ସ୍ଥାପତ୍ୟ ପ୍ରଣାଳୀରେ ଗଠିତ ଏବଂ ଏ ମନ୍ଦିରର ପ୍ରତିକୃତିଗୁଡ଼ିକ ଦାକ୍ଷିଣାତ୍ୟର ରାମେଶ୍ୱର, ମଦୁରା ପ୍ରଭୃତି ସ୍ଥାନରେ ଦେଖାଯାଏ । ଉତ୍କଳୀୟ ଶିଳ୍ପୀମାନେ ଯେ ଦ୍ରାବିଡ଼ କାରିଗରୀ ଦ୍ୱାରା ପ୍ରଭାବିତ ହୋଇଥିଲେ ଏବଂ ଦ୍ରାବିଡ଼ ଢଙ୍ଗର ମନ୍ଦିର ନିର୍ମାଣ କରିବାକୁ ସକ୍ଷମ ହୋଇଥିଲେ ଏହା ଉତ୍କଳୀୟ ଏବଂ ଦ୍ରାବିଡ଼ୀୟ ସଂସ୍କୃତି ମଧ୍ୟରେ ଭାବ ଆଦାନ ପ୍ରଦାନର ଫଳ, ହୁଏତ କାଳିଙ୍ଗ ସ୍ଥାପତ୍ୟ ଉତ୍ତର ଭାରତ ଓ ଦକ୍ଷିଣ ଭାରତର ପୃଥକ୍ ସ୍ଥାପତ୍ୟଦ୍ୱୟର ମିଶ୍ରିତ ରୂପ ।

କଳିଙ୍ଗ ଜାତିର ଗରୀୟସୀ ପ୍ରାଚୀନ ଇତିହାସରେ ଏକ ମହାନ୍ ଗୌରବର ବିଷୟ ହେଉଛି ସେ ଜାତିର ସୁଦୂର ଦେଶ ବିଦେଶକୁ ନୌ ଯାତ୍ରା ଏବଂ ସାଗର ସେପାରିର ଦ୍ୱୀପପୁଞ୍ଜମାନଙ୍କରେ ଉପନିବେଶ ସ୍ଥାପନ । ସମଗ୍ର ଭାରତବର୍ଷ ମଧ୍ୟରେ କଳିଙ୍ଗ ଜାତି ପରି ଅନ୍ୟ କୌଣସି ଜାତି ମହାସାଗରର ଉତ୍ତାଳ ତରଙ୍ଗମାଳା ଏବଂ ଅସରନ୍ତି ଜଳରାଶି ମଧ୍ୟ ଦେଇ ଏତେଦୂର ନିର୍ଭୀକତା ଦେଖାଇ ପାରି ନାହାନ୍ତି । ପ୍ରାଚ୍ୟ ଏବଂ ପାଶ୍ଚାତ୍ୟର ବିଭିନ୍ନ ସ୍ଥାନକୁ କଳିଙ୍ଗ ଦେଶର ନାବିକ ଏବଂ

ଔପନିବେଶିକମାନେ ଭାରତୀୟ ସଂସ୍କୃତି, ଭାରତୀୟ ରକ୍ତ ଏବଂ ଭାରତୀୟ ଧର୍ମ ବହନ କରି ନେଇ ଯାଇ ଅଛନ୍ତି । ପ୍ରାଚୀନ କଳିଙ୍ଗ ଜାତିର ଏହି ସାମୁଦ୍ରିକ ଅଭିଯାନ ବାସ୍ତବରେ ଭାରତ ଇତିହାସର ଏକ ଗୌରବମୟ କାହାଣୀ । କଳିଙ୍ଗ ଜାତିର ସାଗରପାରି କୀର୍ତ୍ତି ଆଜିସୁଦ୍ଧା ଭାରତ ବାହାରେ ବହୁରାଜ୍ୟ ଐତିହାସିକ ପ୍ରମାଣସହ ଘୋଷଣା କରୁଛନ୍ତି । ଖ୍ରୀଷ୍ଟଜନ୍ମର ବହୁପୂର୍ବରୁ କଳିଙ୍ଗର ନିକଳିଙ୍ଗ ଅଞ୍ଚଳରୁ ଔପନିବେଶିକମାନେ ସୁଦୂର ବ୍ରହ୍ମଦେଶର ଦକ୍ଷିଣାଞ୍ଚଳରେ ବସତି ସ୍ଥାପନ କରି ସେଠାରେ ଭାରତୀୟ ସଭ୍ୟତା ବିସ୍ତାର କରିଥିଲେ । ଆଜିସୁଦ୍ଧା ନିମ୍ନବ୍ରହ୍ମର ଅଧିବାସୀମାନେ 'ତଲେଙ୍ଗ' ନାମରେ ଖ୍ୟାତ ଏବଂ ସେମାନଙ୍କର ଏହି ନାମ ଅତୀତ କାଳର କଳିଙ୍ଗ ଦେଶାଗତ ଔପନିବେଶିକମାନଙ୍କ କଥା ମନେ ପକାଇ ଦିଏ । ବ୍ରହ୍ମଦେଶର ଏହି 'ତଲେଙ୍ଗ' ଅଞ୍ଚଳର ଉତ୍ତରରେ ଅପର ଏକ ହିନ୍ଦୁ ପ୍ରଭାବିତ ରାଜ୍ୟର ରାଜଧାନୀର ନାମ ହେଉଛି 'ଶ୍ରୀକ୍ଷେତ୍ର' । ଉତ୍କଳର ନୀଳାଚଳ ଧାମର ନାମ ମଧ୍ୟ 'ଶ୍ରୀକ୍ଷେତ୍ର' । ଉତ୍କଳର ଶ୍ରୀକ୍ଷେତ୍ର ଏବଂ ବ୍ରହ୍ମଦେଶର ଶ୍ରୀକ୍ଷେତ୍ର, ଏକ ନାମ-ଧେୟ ଏହି ଦୁଇଟି ସ୍ଥାନ ମଧ୍ୟରେ ହୁଏତ କିଛି ସଂସ୍କୃତିଗତ ସମ୍ବନ୍ଧ ଥିଲା ଏହା ଅନୁମାନ କରାଯାଇ ପାରେ । ଭାରତ ମହାସାଗରର ପୂର୍ବ ଦ୍ୱୀପପୁଞ୍ଜ ଏବଂ ମାଲଏସିଆ ସହ କଳିଙ୍ଗର ଯେଉଁ ସମ୍ବନ୍ଧ ଥିଲା ତାହା ଇତିହାସ ପ୍ରସିଦ୍ଧ । ଖ୍ରୀଷ୍ଟଯୁଗର ବହୁପୂର୍ବେ କଳିଙ୍ଗ ଅଧିବାସୀମାନେ ସୁଦୂର ପ୍ରାଚ୍ୟର ଦ୍ୱୀପପୁଞ୍ଜମାନଙ୍କରେ ନିଜର ଆଧିପତ୍ୟ ବିସ୍ତାର କରିଥିଲେ । ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ, କାମ୍ବୋଜା, ଆନାମ ପ୍ରଭୃତି ସ୍ଥାନରେ ପ୍ରାଚୀନ କଳିଙ୍ଗ ଜାତିର ସ୍ମୃତି ଏବେସୁଦ୍ଧା ଧ୍ୱଂସାବଶେଷ ମଧ୍ୟରେ ଦେଖିବାକୁ ମିଳେ । ଭାରତ ମହାସାଗର ଅତିକ୍ରମ କରି ପ୍ରଶାନ୍ତ ମହାସାଗରୀୟ ଦ୍ୱୀପପୁଞ୍ଜରେ ମଧ୍ୟ କଳିଙ୍ଗ ଜାତିର ପ୍ରଭାବ ପଡ଼ିଥିଲା ବୋଲି ରାଖାଲ ଦାସ ବନ୍ଦୋପାଧ୍ୟାୟ ପ୍ରମୁଖ ବିଖ୍ୟାତ ଐତିହାସିକମାନେ ବିଶ୍ୱାସ କରନ୍ତି ।[1] ପ୍ରାଚୀନ କଳିଙ୍ଗ ଜାତି ଯେ ଭାରତୀୟ ସମୁଦ୍ରଗାମୀ ଜାତିମାନଙ୍କ ମଧ୍ୟରେ ଶ୍ରେଷ୍ଠତମ ଏହା ନିଃସନ୍ଦେହ । କିନ୍ତୁ, କଳିଙ୍ଗଦେଶର ଏହି ଗୌରବମୟ କୃତୀତ୍ୱ ଏବଂ କୀର୍ତ୍ତିପାଇଁ ଦାୟୀ କେଉଁ ଜାତି, ଦ୍ରାବିଡ଼ ନା ଆର୍ଯ୍ୟ ? ଭାରତୀୟ ସଭ୍ୟତାର ପ୍ରାରମ୍ଭିକ ମୁହୂର୍ତ୍ତରୁ ଦ୍ରାବିଡ଼ମାନେ ଜଳପଥ ଅତିକ୍ରମ କରି ଦେଶ ବିଦେଶରେ ନିଜର ପରିଚୟ ଦେଇ ପାରିଛନ୍ତି ଏହା ସର୍ବବାଦିସମ୍ମତ । ଖ୍ରୀଷ୍ଟଜନ୍ମର ଅଗଣିତ ଶତାବ୍ଦୀପୂର୍ବରୁ ଦ୍ରାବିଡ଼ମାନେ ସାଗରସେପାରି ଅଭିଯାନ ଚଳାଇ ଆସିଥିଲେ । କାଳଗର୍ଭରେ ଦ୍ରାବିଡ଼ ଜାତି ଆର୍ଯ୍ୟ ସଭ୍ୟତାଦ୍ୱାରା ପ୍ରଭାବିତ ହୋଇ ହିନ୍ଦୁ ଜାତିରେ ପରିଣତ ହୋଇଗଲା ପରେ ସୁଦ୍ଧା ଅତୀତର ସେ ଅଭ୍ୟାସ ସେମାନେ ଛାଡ଼ି ପାରି ନ ଥିଲେ ଏବଂ ପରବର୍ତ୍ତୀ କାଳରେ ଏହି ଦ୍ରାବିଡ଼-ହିନ୍ଦୁମାନେହିଁ ସୁଦୂର ପ୍ରାଚ୍ୟ ଦ୍ୱୀପପୁଞ୍ଜରେ ହିନ୍ଦୁଧର୍ମ ଓ ହିନ୍ଦୁ ସଭ୍ୟତା ପ୍ରଚାର କରିଥିଲେ । କଳିଙ୍ଗ ଅଧିବାସୀମାନେ ଖ୍ରୀଷ୍ଟଜନ୍ମର ବହୁପୂର୍ବରୁ ଖ୍ରୀଷ୍ଟଜନ୍ମର ବହୁ ଶତାବ୍ଦୀ ପରେ ପର୍ଯ୍ୟନ୍ତ ସେମାନଙ୍କର

1. R. D. Banerjeo --- History of Orissa P. P. 97, 98.

ସାଗରପାରି ଯାତ୍ରା ଅକ୍ଷୁଣ୍ଣ ରଖିଥିଲେ । କଳିଙ୍ଗର ଏହି ନୌ-ଗୃଳନା ଦ୍ରାବିଡ଼ ଜାତିର କୃତିତ୍ୱ । କଳିଙ୍ଗର ଦ୍ରାବିଡ଼ ଜାତି ଆର୍ଯ୍ୟମାନଙ୍କଦ୍ୱାରା ପ୍ରଭାବିତ ହେବାର ବହୁ ପୂର୍ବରୁ ଏବଂ ଆର୍ଯ୍ୟ ସଭ୍ୟତାଦ୍ୱାରା ପ୍ରଭାବିତ ହୋଇ ନିଜର ଅସ୍ତିତ୍ୱ ଲୋପ ପରେ ମଧ୍ୟ ନିଜର ସମୁଦ୍ରଯାତ୍ରା ତ୍ୟାଗ କରିପାରି ନାହାନ୍ତି । ସମଗ୍ର ଇଣ୍ଡୋନେସିଆ ଏବଂ ପ୍ରଶାନ୍ତ ମହାସାଗରୀୟ ଦ୍ୱୀପପୁଞ୍ଜରେ ଭାରତୀୟ ସଭ୍ୟତାର ବିସ୍ତାରଲାଭ ପାଇଁ ଦାୟୀ ହେଉଛନ୍ତି କଳିଙ୍ଗର ଦ୍ରାବିଡ଼ ଜାତି । ଆର. ଡି. ବେନାର୍ଜିଙ୍କ ମତରେ, "ଆମମାନଙ୍କୁ ଇଣ୍ଡୋନେସିଆ ଓ ପ୍ରଶାନ୍ତ ସାଗରୀୟ ଦ୍ୱୀପପୁଞ୍ଜରେ ଉପନିବେଶ ସ୍ଥାପନ ସମ୍ପର୍କରେ ଦୁଇଟି ପୃଥକ ସମୟ ଦେଖିବାକୁ ମିଳେ । ପ୍ରଥମ ସମୟଟି ହେଉଛି, ଦକ୍ଷିଣ ଭାରତର କଳିଙ୍ଗ, ଚୋଳ, ପାଣ୍ଡ୍ୟ ଏବଂ କେରଳ, ଏହି ଗୁରି ବିଖ୍ୟାତ ଦ୍ରାବିଡ଼ ଜାତି ଆର୍ଯ୍ୟ-ପ୍ରଭାବିତ ହେବାର ପୂର୍ବବର୍ତ୍ତୀ ସମୟ ଏବଂ ଦ୍ୱିତୀୟଟି ହେଉଛି ଐତିହାସିକ ସମୟ ଯେତେବେଳେ ଦ୍ରାବିଡ଼ମାନେ ଆର୍ଯ୍ୟ ଆକ୍ରମଣକାରୀମାନଙ୍କର ଧର୍ମକୁ କିଛି ପରିବର୍ତ୍ତନ ସହ ନିଜର ଧର୍ମରୂପେ ଗ୍ରହଣ କରି ନେଇଥିଲେ,"[1] ଅର୍ଥାତ୍ ପ୍ରଥମେ ଦ୍ରାବିଡ଼ମାନେ ଇଣ୍ଡୋନେସିଆ ଏବଂ ପ୍ରଶାନ୍ତ ସାଗରୀୟ ଦ୍ୱୀପପୁଞ୍ଜରେ ନିଜର ବସତି ଏବଂ ଉପନିବେଶ ସ୍ଥାପନ କରି ଦ୍ରାବିଡ଼ ସଭ୍ୟତା ବିସ୍ତାର କରିଥିଲେ । ଏହା ପ୍ରାଗ୍-ଐତିହାସିକ ଅତି ପୁରୁଣା କାଳର ଘଟଣା । ଆଜି ଇଣ୍ଡୋନେସିଆରେ ପ୍ରାଗ୍-ଐତିହାସିକ ଧ୍ୱଂସାବଶେଷ ଯାହା ବାହାରୁଛି ସେ ସବୁ ଭାରତର ପ୍ରାଚୀନ ଦ୍ରାବିଡ଼ ସଭ୍ୟତାର ଔପନିବେଶିକ ଚିହ୍ନ ବୋଲି ପ୍ରତୀୟମାନ ହେଉଛି । ମହେଞ୍ଜୋଦାରୋ ଏବଂ ହରପ୍ପାର ମାଟି ଭିତରୁ ବାହାରିଥିବା ଲିଙ୍ଗ ପୂଜାର ସଙ୍କେତଗୁଡ଼ିକ ( Phallic-emblem ) ସେଲିବାସ୍ ଦ୍ୱୀପର ପ୍ରାଗ୍ଐତିହାସିକ ଧ୍ୱଂସସ୍ତୂପରୁ ବାହାରିଥିବା ଚିହ୍ନଗୁଡ଼ିକ ସହ ସାମଞ୍ଜସ୍ୟ ରଖିଛି । ଆର୍ଯ୍ୟମାନଙ୍କ ଆସିବାର ବହୁପୂର୍ବରୁ ଯେଉଁ ଜାତି ଇଣ୍ଡୋନେସିଆ ଖଣ୍ଡରେ ଲିଙ୍ଗପୂଜାର ପ୍ରଚଳନ କରାଇଥିଲା ସେ ଜାତିର ସିନ୍ଧୁ ଉପତ୍ୟକାର ତାମ୍ରପ୍ରସ୍ତର ଯୁଗୀୟ ମନୁଷ୍ୟମାନଙ୍କ ସହ ଘନିଷ୍ଠ ସମ୍ବନ୍ଧ ଥିଲାବୋଲି ରାଖାଲ ଦାସ ବେନାର୍ଜିଙ୍କର ବିଶ୍ୱାସ । ମୋଟ ଉପରେ ଦ୍ରାବିଡ଼ମାନେହିଁ ପ୍ରଥମେ ଇଣ୍ଡୋନେସିଆରେ ସେମାନଙ୍କର ସଭ୍ୟତା ବିସ୍ତାର କରିଥିଲେ । ପରେ ସେହି ଦ୍ରାବିଡ଼ମାନେ ଯେତେବେଳେ ଆର୍ଯ୍ୟ-ପ୍ରଭାବଦ୍ୱାରା ନିଜର ଧର୍ମ ଏବଂ ବିଶ୍ୱାସରେ ଅନେକ ପରିବର୍ତ୍ତନ ଆଣିଲେ ସେତେବେଳେ ସେହିମାନେହିଁ ପୁଣି ସେମାନଙ୍କର ଉପନିବେଶମାନଙ୍କରେ ଆର୍ଯ୍ୟ ସଭ୍ୟତା ଏବଂ ଆର୍ଯ୍ୟ ଧର୍ମର ପ୍ରଚାର କଲେ । ହୁଏତ ଆର୍ଯ୍ୟମାନେ କେବଳ ପରବର୍ତ୍ତୀ ଯୁଗରେ ଭାରତ ଏବଂ ପ୍ରଶାନ୍ତ ମହାସାଗରୀୟ ଦ୍ୱୀପମାନଙ୍କ ଉପରେ ବ୍ରାହ୍ମଣ୍ୟଧର୍ମ, ବୌଦ୍ଧଧର୍ମ ଇତ୍ୟାଦି ବିସ୍ତାର ପାଇଁ ଏବଂ ଉପନିବେଶ ସ୍ଥାପନ ପାଇଁ ଯାଇଥିବେ । କିନ୍ତୁ ଭାରତର ନୌ-ଶିକ୍ଷା, ନୌ-ସାହସ, ନୌ-ବାଣିଜ୍ୟ, ଉପନିବେଶ ସ୍ଥାପନ ଏ ସବୁ ପାଇଁ ମୁଖ୍ୟତଃ ଦ୍ରାବିଡ଼ମାନେହିଁ

1. R. D. Banerjee --- History of Orissa P. 98.

ଦାୟୀ । ରାଖାଲ ଦାସ ବନ୍ଦୋପାଧ୍ୟାୟଙ୍କ କଥାରେ, "ଦ୍ରାବିଡ଼ ଜାତୀୟ ଲୋକଙ୍କର ଅସ୍ତିତ୍ୱ, ଅନ୍ତତଃ ସେମାନଙ୍କର ସଂସ୍କୃତି, ଏକାଦିକ୍ରମେ ଏକ ନିରବଚ୍ଛିନ୍ନ ରେଖାରେ ସୁଦୂର କ୍ରୀଟ୍ ଏବଂ ଲସିୟା ପାଖରୁ ସିନ୍ଧୁ ଉପତ୍ୟକା ଏବଂ ଦକ୍ଷିଣଭାରତ ପର୍ଯ୍ୟନ୍ତ ଦେଖିବାକୁ ମିଳେ । ଏହି ଜାତିର ତାମ୍ରପ୍ରସ୍ତର ସଭ୍ୟତା ସୁଦୂର ଇଷ୍ଟାର୍ ବା ପ୍ରାଚ୍ୟ ଦ୍ୱୀପପୁଞ୍ଜ ଏବଂ ସମ୍ଭବତଃ ପେରୁ ଏବଂ ମେକ୍ସିକୋ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିବା ସେପରି କିଛି ଅସ୍ୱାଭାବିକ ବିଷୟ ନୁହେଁ । ମୋ ମତରେ, ଯେଉଁ କଳିଙ୍ଗର ଲୋକେ ଭାରତ, ଇଣ୍ଡୋନେସିଆ, ଏବଂ ଓସିଆନିଆର ଅଗ୍ରଗଣ୍ୟ ଉପନିବେଶିକ ଥିଲେ ବୋଲି ପ୍ରମାଣିତ ହୋଇଅଛନ୍ତି, ହୁଏତ ଏମାନେ ସେହି ମନୁଷ୍ୟ ଯେଉଁମାନଙ୍କୁ ପ୍ରଶାନ୍ତ ଏବଂ ଭାରତ ମହାସାଗରର ବନ୍ଦର, ଅନ୍ତରୀପର ଅଧିବାସୀମାନେ କୃତଜ୍ଞତାର ଭାବେ ସମ୍ମାନ ଦେଖାନ୍ତି ଯେ ଆକାଶ ମାର୍ଗରୁ ଖସିଆସି ଏହି ମନୁଷ୍ୟମାନେହିଁ ସେମାନଙ୍କୁ ସଭ୍ୟ କରାଇଥିଲେ ଏବଂ ସେମାନଙ୍କ ମଧ୍ୟରେ କ୍ଷିପ୍ରା ସଂସ୍କୃତିର ପ୍ରଚାର କରିଥିଲେ ।"[1]

ପ୍ରାଚ୍ୟଖଣ୍ଡ ବ୍ୟତୀତ ସୁଦୂର ପାଶ୍ଚାତ୍ୟଖଣ୍ଡରେ ମଧ୍ୟ ପ୍ରାଚୀନ କଳିଙ୍ଗ ଜାତିର ପ୍ରଭାବ ପଡ଼ିଥିଲା । ଏ ପ୍ରଭାବ ମୁଖ୍ୟତଃ ବାଣିଜ୍ୟଗତ ପ୍ରଭାବ । ଏଲ୍ ଡି. ବାର୍ନେଟ୍‌ଙ୍କ ଭାଷାରେ, "ଖ୍ରୀଷ୍ଟୀୟ ଯୁଗ ଆରମ୍ଭର ବହୁପୂର୍ବରୁ ଦ୍ରାବିଡ଼-ଦାକ୍ଷିଣାତ୍ୟ ନିଜର ଏକ ସ୍ୱତନ୍ତ୍ର ସଂସ୍କୃତି ଗଠନ କରି ନେଇଥିଲା, ଏବଂ ସେଠାକାର ଅଧିବାସୀମାନେ ନିଜ ମଧ୍ୟରେ ଶକ୍ତିଶାଳୀ ରାଜ୍ୟମାନ ନିର୍ମାଣ କରି ନେଇଥିଲେ ଯେଉଁ ରାଜ୍ୟମାନଙ୍କ ମଧ୍ୟରୁ କେତେକେ ପଶ୍ଚିମ ଏସିଆ, ମିଶର ଏବଂ ପରେ ଗ୍ରୀକ୍ ଓ ରୋମୀୟ ସାମ୍ରାଜ୍ୟ ସହିତ ଉନ୍ନତ ବାଣିଜ୍ୟ ବ୍ୟବସାୟରେ ଲିପ୍ତ ଥିଲେ । ଏହି ରାଜ୍ୟମାନଙ୍କ ମଧ୍ୟରେ ପ୍ରଧାନ ଥିଲେ ତିନି ତାମିଲ୍ ରାଜ୍ୟ ଯଥା, ଅନ୍ଧ୍ର, କଳିଙ୍ଗ ଏବଂ ମହାରାଷ୍ଟ୍ର ।"[2] ବାସ୍ତବରେ, ପ୍ରାଚୀନ ଭାରତରେ କଳିଙ୍ଗ ଦେଶ ଯଦି ଏକ ଅତି ଶକ୍ତିଶାଳୀ ରାଜ୍ୟ-ରୂପେ ପରିଗଣିତ ହେଉଥିଲା ସେ ପାଇଁ ମୁଖ୍ୟତଃ ଦ୍ରାବିଡ଼ ଜାତିହିଁ ଦାୟୀ ଏବଂ ଏହି କଳିଙ୍ଗର ଜାତୀୟ ଚରିତ୍ର ଗଠନରେ ଦ୍ରାବିଡ଼ୀୟ ସଂସ୍କୃତିର ପ୍ରଭାବ ସର୍ବତୋଭାବେ ପ୍ରଶଂସନୀୟ ।

ସଗଙ୍ଗା-ଗୋଦାବରୀ-ବିସ୍ତୃତ ବିଶାଳ ସେ ପ୍ରାଚୀନ କଳିଙ୍ଗ ସାମ୍ରାଜ୍ୟର ଧ୍ୱଂସାବଶେଷ ଆଜି ଏ ଉତ୍କଳ ଦେଶ । ଆଜି କଳିଙ୍ଗ ଦେଶର ବାଣିଜ୍ୟ ତରୀ ଉତ୍କଳ ସାଗର ତଟରୁ ନୀଳ ଲହରୀ ଭେଦକରି ଦୂର ଦ୍ୱୀପାନ୍ତର ପ୍ରାଚ୍ୟ-ପାଶ୍ଚାତ୍ୟାଭି-ମୁଖେ ଯାତ୍ରା କରେ ନାହିଁ ; ଆଜି ଉତ୍କଳ ଦେଶର ଖଳୀ ବୈତାଳ ମନ୍ଦିରର

1. R. D. Banerjee --- History of Orissa p. 108.
2. L. D. Barnett --- Early History of Southern India (Camb. Hist.) p. 594.

ସ୍ଥାପତ୍ୟ ଅବଲୋକନ କରି ତାହା ସ୍ୱଜାତି-ହସ୍ତ-ନିର୍ମିତ ବୋଲି ବିଶ୍ୱାସ କରି ପାରେ ନାହିଁ । ତଥାପି, ପ୍ରାଚୀନ ଉତ୍କଳୀୟମାନଙ୍କର ସମୁଦ୍ରଯାତ୍ରା ସେ ମଧ୍ୟ ସତ୍ୟ, ଉତ୍କଳୀୟ ଶିଳ୍ପୀର ଅମର ସ୍ଥାପତ୍ୟ ସେ ମଧ୍ୟ ସତ୍ୟ । ଆଜି ମୃତ ଅତୀତର ସେ ଦ୍ରାବିଡ଼ ଜାତି ଏବଂ ସେ ଜାତିର ସୁମହାନ୍ କୀର୍ତ୍ତି ଉତ୍କଳଖଣ୍ଡରେ ବିସ୍ମୃତ ପ୍ରାୟ । ତଥାପି ଉତ୍କଳୀୟ ସଭ୍ୟତା-ସଂସ୍କୃତି ପ୍ରତି ସେ ବିସ୍ମୃତ ଜାତିର ଯେଉଁ ମହାର୍ଘ ଅବଦାନ ସେ ମଧ୍ୟ ଅମର, ସେ ମଧ୍ୟ ସତ୍ୟ ।

---

# ଆର୍ଯ୍ୟ ଜାତି, ବୈଦିକ ସଭ୍ୟତା ଓ ପୌରାଣିକ ଯୁଗ

ପୃଥିବୀର କେଉଁସ୍ଥାନରେ ଆର୍ଯ୍ୟମାନଙ୍କର ଆଦି ବାସସ୍ଥାନ ଥିଲା ସେ ବିଷୟରେ ବହୁକାଳରୁ ବହୁଦେଶର ଐତିହାସିକ ଏବଂ ପଣ୍ଡିତମାନେ ଚିନ୍ତା କରି ଆସିଛନ୍ତି । ବହୁ ଚିନ୍ତା, ବହୁ ଗବେଷଣା ପରେ ପୃଥିବୀର ସଂଖ୍ୟାଧିକ ପଣ୍ଡିତମାନଙ୍କ ମତ ଏହି ଯେ, ହିମ-ସୀମନ୍ତିନୀ ଭାରତର ଉତ୍ତର-ପଶ୍ଚିମ ଗିରିବର୍ତ୍ମ ପଥରେ ପ୍ରାଗ୍-ଐତିହାସିକ କାଳରେ ମଧ୍ୟ-ଏସିଆ ଖଣ୍ଡରୁ ଆର୍ଯ୍ୟମାନେ ଭାରତ ପ୍ରବେଶ କରିଥିଲେ । ଯଦିଚ, କେତେକେ ଏପରି ଏକ ବିଶ୍ୱାସ ଉପରେ ସନ୍ଦେହ ପ୍ରକାଶ କରନ୍ତି ତଥାପି ବହୁବାଦୀସମ୍ମତ ଏହି ବିଶ୍ୱାସ ମୂଳରେ ବହୁ ଯୁକ୍ତି ଏବଂ ବହୁ ପ୍ରମାଣ ରହିଛି । ଅଧ୍ୟାପକ ମ୍ୟାକ୍ସ ମୁଲରଙ୍କ ଯୁକ୍ତିକୁ କେନ୍ଦ୍ର କରି ଶ୍ରୀଯୁକ୍ତ ରମେଶ ଚନ୍ଦ୍ର ଦତ୍ତ ଲେଖିଛନ୍ତି, "ଆର୍ଯ୍ୟମାନଙ୍କର ପ୍ରଥମ ନିବାସସ୍ଥଳୀ କେଉଁ ସ୍ଥାନରେ ଥିଲା ସେ ସମ୍ବନ୍ଧରେ ପଣ୍ଡିତମାନଙ୍କ ମଧ୍ୟରେ ଅଶେଷ ମତାନ୍ତର ପରିଲକ୍ଷିତ ହୁଏ । ଉତ୍ସାହୀ ଏବଂ ସ୍ୱଦେଶପ୍ରିୟ ହିନ୍ଦୁ ପଣ୍ଡିତମାନେ ଆର୍ଯ୍ୟମାନଙ୍କର ଆଦିଗୃହ ଯେ ଭାରତବର୍ଷ ତାହାରେ ଅନ୍ୟ କୌଣସି ସ୍ଥାନରେ ଥିଲା ତାହା ସ୍ୱୀକାର କରିବେ ନାହିଁ; ଏବଂ ଠିକ୍ ସେହିପରି ସ୍ୱଦେଶପ୍ରିୟ ଇଉରୋପୀୟ ପଣ୍ଡିତମାନେ ମଧ୍ୟ ପ୍ରାଚୀନ ଆର୍ଯ୍ୟମାନଙ୍କର ଗୃହ ବାଲ୍‌ଟିକ୍ ସାଗର କୂଳରେ ଥିଲା ବୋଲି ସ୍ଥାନ ନିରୂପଣ କରିବେ । ...ଆମ୍ଭେମାନେ କେବଳ ସମସ୍ତ ନିରପେକ୍ଷ ଚିନ୍ତାଶୀଳ ପଣ୍ଡିତମାନଙ୍କର ବିଶ୍ୱାସଟିକୁ ଏଠାରେ ଆବୃତ୍ତି କରିବୁଁ ଯେ ଆର୍ଯ୍ୟମାନଙ୍କର ପ୍ରାଚୀନ ଗୃହ ମଧ୍ୟ-ଏସିଆଖଣ୍ଡରେ ଯେ କୌଣସି ସ୍ଥାନରେ ଥିଲା ।"[1]

ମଧ୍ୟ-ଏସିଆଖଣ୍ଡରୁ ପ୍ରାଚୀନ ଆର୍ଯ୍ୟମାନେ ଇଉରୋପ ଏବଂ ଏସିଆ ମହାଦେଶର ବିଭିନ୍ନ ସ୍ଥାନକୁ ଗତି କରିଥିଲେ । ଏ ସମ୍ବନ୍ଧରେ ସାର ଉଇଲିୟମ ଉଇଲସନ୍ ହାଣ୍ଟାର ବର୍ଣ୍ଣନା କରିଛନ୍ତି, "ଏହି ଉନ୍ନତତର ଜାତି ଆର୍ଯ୍ୟ ବା ଇଣ୍ଡୋ-ଜର୍ମାନ୍ ମନୁଷ୍ୟ ଗୋଷ୍ଠୀର ଅନ୍ତର୍ଗତ ଯେଉଁଥିରୁ ବ୍ରାହ୍ମଣ, ରାଜପୁତ, ଏବଂ ଇଂରାଜ ସମଭାବେ ଜନ୍ମ । ଇତିହାସ ଚକ୍ଷୁରେ ଯେତେ ଦୂର ଦିଶୁଛି ଏ ଜାତିର ପ୍ରାଚୀନତମ ଗୃହ ମଧ୍ୟ-ଏସିଆରେ ଥିଲା । ସେହି ଏକ ନିବାସ ସ୍ଥଳୀରୁ ଏ ଜାତିର

1. R. C. Dutt --- A History of Civilisation in Ancient India ch. 1

କେତେକ ଶାଖା ପୂର୍ବାଭିମୁଖେ ଏବଂ ଅପର କେତେକ ପଶ୍ଚିମାଭିମୁଖେ ଯାତ୍ରା କରିଥିଲେ । ପଶ୍ଚିମଗାମୀ ଏହି ଶାଖାମାନଙ୍କ ମଧ୍ୟରୁ ଗୋଟିଏ ହେଉଛି ପାରସ୍ୟ ସାମ୍ରାଜ୍ୟର ସ୍ଥାପୟିତା ; ଅପର ଗୋଟିଏ ଶାଖା ଏଥେନ୍ସ ଏବଂ ଲସିଡେମନ୍ ନିର୍ମାଣକାରୀ ହେଲେନିକ୍ ଜାତି ; ତୃତୀୟ ଶାଖା ଇଟାଲି ପ୍ରବେଶପୂର୍ବକ ନିର୍ମାଣ କରିଥିଲା ସପ୍ତ-ପାହାଡ଼ ଉପରେ ସେହି ନଗରୀ ଯାହାର ପରିଣତ ହେଉଛି ରାଜ-ନଗରୀ ରୋମ । ସେହି ଆର୍ଯ୍ୟ ଜାତିର ଅପର ଏକ ଦୂର ସମ୍ପ୍ରଦାୟ ପ୍ରାଗ୍-ଐତିହାସିକ ସ୍ପେନ୍ ଦେଶର ରୌପ୍ୟ ଖଣି ଖନନ କରିଥିଲେ; ଏବଂ ଯେତେବେଳେ ଆମ୍ଭେମାନେ ପ୍ରାଚୀନ ଇଂଲଣ୍ଡ ଉପରେ ପ୍ରଥମ ଦୃଷ୍ଟିପାତ କରୁଁ ସେତେବେଳେ କ୍ଷୁଦ୍ର କ୍ଷୁଦ୍ର ତରୀ ସାହାଯ୍ୟରେ ସମୁଦ୍ର ଧାରଣ ଏବଂ କର୍ଣ୍ଣୱାଲର ଟିଣ ଖଣିରେ କର୍ମବ୍ୟସ୍ତଥିବା ଏକ ଆର୍ଯ୍ୟ ବସତି ଦେଖିବାକୁ ପାଉଁ । ଇତ୍ୟବସରେ, ସେହି ଆର୍ଯ୍ୟ ଜାତିର ଅପର ଶାଖାଗୁଡ଼ିକ ମଧ୍ୟ-ଏସିଆରେ ସେମାନଙ୍କର ଅଧିଷ୍ଠାନ ତ୍ୟାଗ କରି ପ୍ରାଚ୍ୟ ଖଣ୍ଡ ମଧ୍ୟକୁ ଗୃଲି ଯାଇଥିଲେ । ଏହି ଶାଖାମାନଙ୍କ ମଧ୍ୟରୁ ଶକ୍ତିଶାଳୀ ସଂଘବଦ୍ଧ ଆର୍ଯ୍ୟମାନେ ହିମାଳୟର ଗିରିବର୍ତ୍ମ ମଧ୍ୟ ଦେଇ ପଞ୍ଜାବ ଭିତରେ ପ୍ରବେଶ କରିଥିଲେ ଏବଂ ମୁଖ୍ୟତଃ ବ୍ରାହ୍ମଣ ଏବଂ ରାଜପୁତ୍ ନାମରେ ସାରି ଭାରତ ବକ୍ଷରେ ବିସ୍ତାର ଲାଭ କରିଥିଲେ ।”[1]

ସୁଦୂର ଅତୀତର ଏକ ପୂର୍ବପୁରୁଷ ପାଖରୁ ଆଜିକାର ଗଙ୍ଗାକୂଳର ବ୍ରାହ୍ମଣ, ରାଇନ କୂଳର ଜାର୍ମାନ୍, ଭୂମଧ୍ୟ ସାଗର କୂଳର ଗ୍ରୀକ୍ ଏବଂ ରୋମାନ୍, ପାରସ୍ୟର ମୁସଲମାନ ଏବଂ ଶ୍ୱେତଦ୍ୱୀପର ଇଂରେଜ ଏସମସ୍ତଙ୍କର ଯେ ଜନ୍ମ ହୋଇଛି ଏହା ପ୍ରାୟ ବିଶ୍ୱାସ କରି ହୁଏ ନା । ଆଜି ଭାରତୀୟ ବ୍ରାହ୍ମଣର ଦେହର ବର୍ଣ୍ଣ, ଭାଷା, ସଂସ୍କୃତି ଏବଂ ଧର୍ମ ସହିତ ସୁଦୂର ଇଂଲଣ୍ଡ ଅଧିବାସୀର ବର୍ଣ୍ଣ, ଭାଷା, ସଂସ୍କୃତି ଏବଂ ଧର୍ମର କୌଣସି ସମ୍ପର୍କ ନାହିଁ କହିଲେ ଚଳେ । ଆଜି ବ୍ରାହ୍ମଣ, ମୁସଲମାନ, ଇଂରେଜ, ଜାର୍ମାନ, ଗ୍ରୀକ୍, ରୋମାନ୍, ଏମାନେ ପରସ୍ପରଠାରୁ ଏତେ ପୃଥକ୍ ଯେ ଏମାନଙ୍କ ମଧ୍ୟରେ କୌଣସି କାଳେ ବନେ କୌଣସି ପ୍ରକାର ସମ୍ବନ୍ଧ ଥିଲା ତାହା ବାହାରୁ ପ୍ରତୀୟମାନ ହେବା ଅସମ୍ଭବ । ତଥାପି, ବର୍ଣ୍ଣଗତ, ଭାଷାଗତ, ଧର୍ମ ଏବଂ ସଂସ୍କୃତିଗତ ପାର୍ଥକ୍ୟ ଏବଂ ବ୍ୟବଧାନର ଅନ୍ତରାଳରେ ଯେ ଏ ସମସ୍ତ ଜାତି ମଧ୍ୟରେ ଥରେ ଏକ ମୌଳିକ ସମ୍ପର୍କ ଥିଲା ତାହା ପ୍ରମାଣିତ ହୋଇ ସାରିଛି । ଯେତେବେଳେ ଏ ସମସ୍ତ ଜାତି ଏକ ପରିବାରର ସନ୍ତାନରୂପେ ଏକ ଗୃହରେ ବାସ କରୁଥିଲେ, ଏକ ଭାଷାରେ କଥୋପକଥନ କରୁଥିଲେ, ଏକ ବ୍ୟବସାୟରେ ଲିପ୍ତ ଥିଲେ ଏବଂ ଏକ ଦେବ ଦେବୀର ଆରାଧନା କରୁଥିଲେ, ସୁଦୂର ସେ ଦିନ ଏବଂ ଆଜିକାର ଏ ଦିନ ମଧ୍ୟରେ ସହସ୍ର ସହସ୍ର ବର୍ଷ ବିତି ଯାଇଛି ; ଏବଂ ସହସ୍ର ସହସ୍ର ବର୍ଷର ଏହି ସମୟ ସ୍ରୋତ ମଧ୍ୟରେ ଏକ ପରିବାରର ସନ୍ତାନମାନେ ପରସ୍ପରଠାରୁ ପୃଥକ୍ ହୋଇ

1. Sir W. W. Hunter --- The Indian Empire ch. iv.

ଦେଶ ଦେଶାନ୍ତରର ପରସ୍ପର ଅତିକ୍ରମ କରି ବିଭିନ୍ନ ସ୍ଥାନର ବିଭିନ୍ନ ଜଳବାୟୁରେ ନିଜ ନିଜର ନୂତନ ପରିବାର, ନୂତନ ଗୃହ ସୃଷ୍ଟି କରି ନେଇଛନ୍ତି ; ଏବଂ ଭିନ୍ନ ଭିନ୍ନ ଦେଶର ଭିନ୍ନ ଜଳବାୟୁଦ୍ୱାରା ପ୍ରଭାବିତ ହୋଇ ଏମାନେ ପୃଥକ୍ ବ୍ୟବସାୟ, ପୃଥକ ଖାଦ୍ୟ, ପୃଥକ୍ ପରିଧାନ ଏବଂ ପୃଥକ୍ ଆଚାର ବ୍ୟବହାର ଗ୍ରହଣ କରି-ଯାଇଛନ୍ତି ; ଏବଂ ପରିଶେଷରେ ପରିବର୍ତ୍ତନଶୀଳ ଜଗତରେ ଏକ ଦୀର୍ଘକାଳବ୍ୟାପୀ ପରିବର୍ତ୍ତନ ମଧ୍ୟଦେଇ ଗତିକରି କ୍ରମେ କ୍ରମେ ସୁଦୂର ଅତୀତର ଏକ ଧର୍ମ, ଏକ ଭାଷା ଏବଂ ଏକ ସଂସ୍କୃତି ପରିବର୍ତ୍ତେ ପରିବର୍ତ୍ତିତ ପାରିପାର୍ଶ୍ୱିକ ଅବସ୍ଥାନୁଯାୟୀ ନିଜ ନିଜର ପୃଥକ୍ ଧର୍ମ, ପୃଥକ ଭାଷା ଏବଂ ପୃଥକ ସଂସ୍କୃତି ଗଠନ କରି ପାରିଛନ୍ତି । ସେ ଦିନର ମଧ୍ୟ-ଏସିଆର ସେହି ମହାଜାତି ଆର୍ଯ୍ୟ ଆଜି ବିସ୍ତୃତ ଇଉରୋପ-ଏସିଆର ବିଚ୍ଛିନ୍ନ ଜାତିମାଳାରେ ପରିଣତ । ପ୍ରାଚୀନ ଆର୍ଯ୍ୟର ସେ ଅଙ୍ଗ ଗଠନ ଏବଂ ଅଙ୍ଗ ବର୍ଣ୍ଣ ଆଜିକାର କୌଣସି ଆର୍ଯ୍ୟ-ବଂଶଧର ପାଖରେ ଦେଖିବାକୁ ମିଳିବା ଅସମ୍ଭବ । କାରଣ ବିଭିନ୍ନ ଦେଶୀୟ ଜଳବାୟୁ ତାହା ପରିବର୍ତ୍ତନ କରି ଦେଇଛି । ପ୍ରକୃତ ଆର୍ଯ୍ୟରକ୍ତ ଆଜି ବିଭିନ୍ନ ଜାତିର ମିଶ୍ରିତ ରକ୍ତରେ ପରିଣତ । ଆଜି କି ବ୍ରାହ୍ମଣ, କି ଜର୍ମାନ୍, କି ଇଂରାଜ, କି ମୁସଲମାନ, କେହି ଗର୍ବ ସହକାରେ କହି ପାରିବେ ନାହିଁ ଯେ ସେମାନେ ପ୍ରକୃତ ଆର୍ଯ୍ୟ । ସମୟ ଏବଂ ଘଟଣା ଚକ୍ରରେ ପୃଥିବୀର ପ୍ରତ୍ୟେକ ଜାତିର ମନୁଷ୍ୟ ଆଜି ଜାରଜ ସନ୍ତାନ । କାରଣ ଯୁଗ ଯୁଗ ଧରି ଅନ୍ୟ ଜାତିମାନଙ୍କର ସଂସର୍ଗରେ ଆସି ପ୍ରତ୍ୟେକ ଜାତିର ରକ୍ତ ଅପର ଜାତିର ରକ୍ତ ଗ୍ରହଣ କରି ନେଇଛି । ପ୍ରତ୍ୟକ୍ଷ ଏବଂ ପରୋକ୍ଷଭାବେ ବିଭିନ୍ନ ରକ୍ତର ମିଶ୍ରଣ ପ୍ରତ୍ୟେକ ଜାତିର ସନ୍ତାନମାନଙ୍କୁ ଜାରଜ ସନ୍ତାନରୂପେ ପରିଣତ କରି ଦେଇଛି । ସଭ୍ୟ ଜାତିଙ୍କ ମଧ୍ୟରେ ଏପରି ମିଶ୍ରଣ ମନୁଷ୍ୟ ସଭ୍ୟତାର ଏକ ଅଙ୍ଗ ହୋଇ ପଡ଼ିଛି । ଅବଶ୍ୟ ଏହା କଳଙ୍କର ବିଷୟ ନୁହେଁ, ବରଂ ଗର୍ବର ଏବଂ ଗୌରବର ବିଷୟ । ବଣ ପର୍ବତ ଲୁକ୍କାୟିତ ଆଦିମମାନଙ୍କର ରକ୍ତ ଅବଶ୍ୟ ଅନେକ ମାତ୍ରାରେ ଏପର୍ଯ୍ୟନ୍ତ ଠିକ୍ ରହିଛି, କାରଣ ସେମାନଙ୍କ ସହ ବହିର୍ଜାତିମାନଙ୍କର ଭାବ ଆଦାନ ପ୍ରଦାନ ସେପରି ଭାବରେ ହୋଇ ପାରି ନାହିଁ । କିନ୍ତୁ ଏହି ଆଦିମ-ମାନଙ୍କ ଛଡ଼ା ଅନ୍ୟ ଜାତିମାନଙ୍କର ରକ୍ତ ପ୍ରାୟ ମିଶ୍ରିତ ରକ୍ତ । ସୁତରାଂ ଆଦିମ-ମାନଙ୍କ ଛଡ଼ା ଅନ୍ୟ କୌଣସି ଜାତିର ରକ୍ତ ଯେତେବେଳେ ପବିତ୍ର ନାହିଁ ସେତେବେଳେ ପ୍ରତ୍ୟେକ ଜାତିର ମନୁଷ୍ୟକୁ ଜାରଜ ସନ୍ତାନରୂପେ ପରିଚିତ କରିବାଦ୍ୱାରା କିଛି ସତ୍ୟ ବିରୁଦ୍ଧ ଉକ୍ତି କରାଯାଉ ନାହିଁ । ଭାରତୀୟ ଆର୍ଯ୍ୟମାନଙ୍କ ରକ୍ତରେ ଦ୍ରାବିଡ଼ ଏବଂ ମଙ୍ଗୋଲୀୟମାନଙ୍କ ରକ୍ତ ମିଶିଛି ; ପୃଥିବୀର ଅନ୍ୟସ୍ଥାନରେ ବାସ କରୁଥିବା ଆର୍ଯ୍ୟ ବଂଶଧରମାନଙ୍କ ରକ୍ତ ମଧ୍ୟ ଠିକ୍ ସେହିପରି ଅନ୍ୟ ଜାତିର ରକ୍ତଦ୍ୱାରା ବିକୃତ ହୋଇଛି । ଏସବୁ ଇତିହାସର ମହାତ୍ମ୍ୟ ଏବଂ ସମୟର ଲୀଳା । ମୋଟ ଉପରେ ମଧ୍ୟ-ଏସିଆବାସୀ ପ୍ରାଚୀନ ସେ ଆର୍ଯ୍ୟଜାତିର ଓ ଥାଉଥିଲ ବଂଶଧରମାନେ ଆଜି ବିକୃତ ରକ୍ତ ଏବଂ ବିକୃତ ବର୍ଣ୍ଣ ହୋଇଯାଇଛନ୍ତି । ପ୍ରାଚୀନ

ଆର୍ଯ୍ୟ ଭାଷା, ଆର୍ଯ୍ୟ ଧର୍ମ ଏବଂ ଆର୍ଯ୍ୟ ସଂସ୍କୃତି, ଏ ସବୁ ମଧ୍ୟ ପରିବର୍ତ୍ତିତ ହୋଇ-ଯାଇଛି । ଆଜି ଇଉରୋପର ଆର୍ଯ୍ୟପୁତ୍ର ଏବଂ ଭାରତର ଆର୍ଯ୍ୟପୁତ୍ର ମଧ୍ୟରେ କୌଣସି ପ୍ରକାର କିଛି ସମ୍ବନ୍ଧ ନାହିଁ । କିନ୍ତୁ ଏ ସମସ୍ତ ସତ୍ତ୍ୱେ, ଶତ ଯୁଗର ଗତି ଏବଂ ସହସ୍ର ପରିବର୍ତ୍ତନ ସତ୍ତ୍ୱେ ଆଜି ଇଉରୋପ-ଏସିଆର ବିଭିନ୍ନ ସ୍ଥାନରେ ତଥାକଥିତ ଆର୍ଯ୍ୟ-ପରିଚିତ ମନୁଷ୍ୟମାନଙ୍କ ମଧ୍ୟରେ ଯେ ଅତି ସୁଦୂର ଅତୀତରେ ଏକ ଘନିଷ୍ଠ ସମ୍ବନ୍ଧ ଥିଲା ତା'ର କ୍ଷୀଣ ଆଭାସ ଟିକିଏ ଏହିସବୁ ମନୁଷ୍ୟମାନଙ୍କର ମୌଳିକ କୃଷ୍ଟି ଏବଂ ସଭ୍ୟତା ପଛରେ ଦେଖିବାକୁ ମିଳେ । ପରିବର୍ତ୍ତନଶୀଳ ଜଗତରେ ପରିବର୍ତ୍ତନହିଁ ସତ୍ୟ ଏବଂ ନିତ୍ୟ । ଆର୍ଯ୍ୟମାନଙ୍କର ରୂପ ପରିବର୍ତ୍ତନ ଏବଂ ଆର୍ଯ୍ୟ ଜାତିର ଶାଖାମାନଙ୍କର ପ୍ରତ୍ୟେକେ ପ୍ରତ୍ୟେକଠାରୁ ସମ୍ପୂର୍ଣ୍ଣ ପୃଥକ୍ ଧରଣର ରୂପ ଧାରଣ, ଏ ସମସ୍ତ ଏହି ପରିବର୍ତ୍ତନଶୀଳ ଜଗତର ସ୍ୱାଭାବିକ ଘଟଣା । ତଥାପି ପରିବର୍ତ୍ତିତ ଜଗତର ଗଣ୍ଡି ଭେଦ କରି ଅତୀତ-ସତ୍ୟର ରୂପ ନିର୍ଣ୍ଣୟ କରିବାକୁ ହୁଏ । ଆର୍ଯ୍ୟମାନଙ୍କ ସମ୍ବନ୍ଧରେ ମଧ୍ୟ ସେହି ସତ୍ୟ ନିରୂପିତ ହୋଇଛି । ଅର୍ଥାତ୍ ଏ ଯୁଗର ବ୍ରାହ୍ମଣ, ଗ୍ରୀକ୍, ରୋମାନ୍, ସ୍କେନ୍‌ଡିନେଭିଆନ୍, ଫରାସୀ, ଜାର୍ମାନ୍, ଇଂରେଜ, ମୁସଲମାନ, ଏ ସମସ୍ତଙ୍କର ପୂର୍ବପୁରୁଷମାନେ ଖ୍ରୀଷ୍ଟଜନ୍ମର ବହୁ ଶତାବ୍ଦୀ ପୂର୍ବେ ଦିନେ ଏକ ଜନକ-ଜନନୀ କୋଳରେ ଏକ ଗୃହରେ କ୍ରୀଡ଼ା କରୁଥିଲେ । ଆଜି ଏହି ସବୁ ଜାତିମାନଙ୍କର ଧର୍ମ ପ୍ରତ୍ୟେକର ପ୍ରତ୍ୟେକଠାରୁ ପୃଥକ୍ । କିନ୍ତୁ ଦିନେ ଏମାନଙ୍କର ପୂର୍ବପୁରୁଷମାନେ ଏକ ଧର୍ମାବଲମ୍ବୀ ଥିଲେ ଏବଂ ଏକ ପ୍ରକାର ଦେବତାମାନଙ୍କୁ ଆରାଧନା କରୁଥିଲେ, ଏବଂ ଆଜି ଏହି ବିଭିନ୍ନ ଜାତିମାନଙ୍କର ଦେବତାମାନଙ୍କର ନାମ ବିଶ୍ଳେଷଣ କଲେ ସେହି ଅତୀତର ଆଦି ଦେବତାମାନଙ୍କର ନାମ ଦେଖିବାକୁ ମିଳେ । ନିମ୍ନରେ ଅଳ୍ପ କେତୋଟି ମାତ୍ର ଉଦାହରଣ ଦିଆ ଗଲା ।

ଆଦି ଆର୍ଯ୍ୟଭାଷାର ମୂଳ 'ଦ୍ୟୁତ୍' (Dyu) ଶବ୍ଦରୁ ଭାରତୀୟ ଆର୍ଯ୍ୟମାନଙ୍କର 'ଦେବ' (Deva) ଶବ୍ଦ, ଲାଟିନ୍ ଇତାଲୀୟମାନଙ୍କର 'ଡେଉ' (Deus) ଶବ୍ଦ, ଗ୍ରୀକ୍‌ମାନଙ୍କର 'ଜିଉ' (Zeus) ଶବ୍ଦ, ସ୍ୟାକ୍‌ସନମାନଙ୍କର 'ଟିଉ' (Tiu) ଶବ୍ଦ ଏବଂ ଜାର୍ମାନମାନଙ୍କର 'ଜିଓ' (Zio) ଶବ୍ଦର ଉତ୍ପତ୍ତି । 'ଦ୍ୟୁତ୍' ଶବ୍ଦର ଅର୍ଥ ଦ୍ୟୁତି, ଯେ ଉଜ୍ଜ୍ୱଳ, ତେଜସ୍ୱୀ, ଯେ ଆଲୋକ ଦାନ କରେ । ଏହି ଆଦି ଆର୍ଯ୍ୟ ଶବ୍ଦରୁ ବିଭିନ୍ନ ଜାତିର ଦେବତା ଶବ୍ଦର ଉତ୍ପତ୍ତି ଏବଂ ପ୍ରତ୍ୟେକ ସ୍ଥାନରେ ଦେବତାଙ୍କୁ ଏକ ଉଜ୍ଜ୍ୱଳ ଏବଂ ତେଜସ୍ୱୀ ପୁରୁଷ ରୂପେହିଁ ବିଶ୍ୱାସ କରାଯାଇଛି । ମଧ୍ୟ-ଏସିଆ-ନିବାସୀ ପ୍ରାଚୀନ ଆର୍ଯ୍ୟମାନେ ପ୍ରଥମେ ବ୍ୟୋମ୍ ବା ଆକାଶକୁ ସେମାନଙ୍କର ଉଜ୍ଜ୍ୱଳ ଆଦି ଦେବତାରୂପେ ଆରାଧନା କରୁଥିଲେ ବୋଲି ବିଶେଷଜ୍ଞମାନଙ୍କର ମତ । ଆକାଶର ବିଭିନ୍ନ ରୂପରୁ କ୍ରମେ ବରୁଣ, ଇନ୍ଦ୍ର, ମରୁତ୍ ପ୍ରଭୃତି ଦେବତା-ମାନଙ୍କର କଳ୍ପନା କରାଯାଇଛି । ଆର୍ଯ୍ୟମାନେ ସେମାନଙ୍କର କେନ୍ଦ୍ରସ୍ଥଳୀରୁ ବିଭିନ୍ନ

ଦିଗକୁ ବିସ୍ତାରିତ ହୋଇଗଲା ପରେ ସେମାନଙ୍କର ଗୋଟିଏ ଗୋଟିଏ ଶାଖା ପୃଥକ ସ୍ଥାନରେ ଆକାଶର ବିଭିନ୍ନ ରୂପ ପ୍ରତି ଅଧିକ ଅନୁରକ୍ତ ହୋଇପଡ଼ିଲେ ଏବଂ ସେଥିପାଇଁ କେଉଁ ସ୍ଥାନରେ ବରୁଣ, କେଉଁ ସ୍ଥାନରେ ଇନ୍ଦ୍ର, କେଉଁ ସ୍ଥାନରେ ବା ବ୍ୟୋମ୍ ଶ୍ରେଷ୍ଠ ଦେବତାରୂପେ ପୂଜିତ ହୋଇଥିଲେ । ଉଦାହରଣ ସ୍ୱରୂପ, ଯେତେବେଳେ ଆର୍ଯ୍ୟମାନେ ଏସିଆଖଣ୍ଡରୁ ଚାଲିଯାଇ ଗ୍ରୀସ୍ ଦେଶରେ ପୂର୍ବପରି ଉଜ୍ଜ୍ୱଳ, ଜ୍ୟୋତିର୍ମୟ ଆକାଶକୁ ମୁଖ୍ୟ ଦେବତାରୂପେ ଆରାଧନା କରୁଥିଲେ ସେତେବେଳେ ଭାରତ ଖଣ୍ଡରେ ପ୍ରବେଶ କରିଥିବା ଆର୍ଯ୍ୟମାନେ ଆକାଶର ମେଘବାହୀ ରୂପକୁ ଇନ୍ଦ୍ର ରୂପେ କଳ୍ପନା କରି ସେହି ଇନ୍ଦ୍ରକୁ ସେମାନଙ୍କର ମୁଖ୍ୟ ଦେବତା ବୋଲି ବିଶ୍ୱାସ କରୁଥିଲେ । କାରଣ, ନଦନଦୀ ଖଣ୍ଡିତ ଭାରତବର୍ଷର ଶସ୍ୟ ଶ୍ୟାମଳା ବକ୍ଷ ଉପରେ ସେମାନେ ବୃଷ୍ଟିର ଆବଶ୍ୟକତା ଏବଂ ଉପକାରିତା ଉପଲବ୍ଧି କରି ଆକାଶର ଯେଉଁ ରୂପରୁ ବୃଷ୍ଟିପାତ ହୁଏ ସେହି ରୂପକୁ ଇନ୍ଦ୍ରରୂପେ ପରିକଳ୍ପନା କରି ଇନ୍ଦ୍ରକୁ ଦେବରାଜରୂପେ ବିଶ୍ୱାସ କରିଥିଲେ । ଇନ୍ଦ୍ର ହିଁ ବୈଦିକ ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠ, ତେଣୁ ଦେବରାଜ । ଉଜ୍ଜ୍ୱଳ ବ୍ୟୋମଦେବ ଅପେକ୍ଷା ବୃଷ୍ଟିଦାତା ଇନ୍ଦ୍ରଙ୍କ ନିକଟରୁ ଭାରତୀୟ ଆର୍ଯ୍ୟମାନେ ଅଧିକ ଉପକାର ପାଇଥିଲେ, ତେଣୁ ଭାରତରେ ଇନ୍ଦ୍ରଙ୍କ ପ୍ରାଧାନ୍ୟ ବଢ଼ି ଉଠିଥିଲା । ମଧ୍ୟ-ଏସିଆରେ ଥିଲାବେଳେ ଆର୍ଯ୍ୟମାନେ ଆକାଶର ଅନ୍ୟ ଏକ ରୂପର ନାମ ଦେଇଥିଲେ ଯେଉଁ ନାମର ସଂସ୍କୃତ ଶବ୍ଦ ହେଉଛି ବରୁଣ (Varuna), ଲାଟିନ ଶବ୍ଦ ହେଉଛି ଉରନ (Uranus) ଏବଂ ଯାହା ଗ୍ରୀକ୍ ଆର୍ଯ୍ୟମାନଙ୍କର ଶବ୍ଦରେ ହେଉଛି ଔରାନୋ (Ouranos) । ଭାରତୀୟ ଆର୍ଯ୍ୟ-ମାନଙ୍କର ବରୁଣ, ଲାଟିନ୍ ଆର୍ଯ୍ୟମାନଙ୍କର ଉରନ ଏବଂ ଗ୍ରୀକ୍ ଆର୍ଯ୍ୟମାନଙ୍କର ଔରାନୋ, ଏହା ଏକ ଆଦି-ଆର୍ଯ୍ୟ-ଆକାଶ ଦେବତାର ବିଭିନ୍ନ ସ୍ଥାନରେ ଏକ ଆଦି ନାମର ବିଭିନ୍ନ ଅପଭ୍ରଂଶ ମାତ୍ର । ଏସିଆର ଆର୍ଯ୍ୟମାନେ ଉଜ୍ଜ୍ୱଳ ଦିବାକାଶକୁ ଅପର ଏକ ଦେବତାରୂପେ କଳ୍ପନା କରିଥିଲେ । ଏହି ଦେବତା ଭାରତୀୟ ଆର୍ଯ୍ୟମାନଙ୍କ ନିକଟରେ 'ମିତ୍ର' ନାମେ ପରିଚିତ ଏବଂ ଏହି ଦେବତାର ନାମ ପାରସ୍ୟ ଆର୍ଯ୍ୟମାନଙ୍କର ଆଦି ଗ୍ରନ୍ଥ 'ଜେନ୍ଦା ଭେସ୍ତା'ରେ 'ମିଥ୍ର' ବୋଲି ବର୍ଣ୍ଣିତ ହୋଇଛି । ଭାରତୀୟ ଆର୍ଯ୍ୟମାନେ ବୃଷ୍ଟିଦାତା ଇନ୍ଦ୍ରଙ୍କ ପ୍ରତି ଅଧିକ ଅନୁରକ୍ତ ହୋଇ ପଡ଼ିଥିଲେ ଏବଂ ତାହାଙ୍କ ପ୍ରତି ବେଦରେ ଅଧିକ ସମ୍ମାନ ଦେଖାଇଥିଲେ । କିନ୍ତୁ ଏହି ଇନ୍ଦ୍ର ଏସିଆବାସୀ ଆର୍ଯ୍ୟମାନଙ୍କ ମଧ୍ୟରେ ଇନ୍ଦ୍ର ନାମ ପରିବର୍ତ୍ତେ 'ବୃତ୍ରଘ୍ନ' ନାମରେ ବିଖ୍ୟାତ ଥିଲେ । ଆର୍ଯ୍ୟମାନଙ୍କ ମଧ୍ୟରେ 'ବୃତ୍ର' ନାମକ ଏକ ଦାନବର କଳ୍ପନା ଅତି ଅତୀତ କାଳରୁ ଗଢ଼ି ଉଠିଥିଲା । ଅନେକ ସମୟରେ ଘନକୃଷ୍ଣ ବାରିଦମାଳାରୁ ମଧ୍ୟ ବୃଷ୍ଟି ନ ପାଇ ଆର୍ଯ୍ୟମାନେ ବିଶ୍ୱାସ କରିଥିଲେ ଯେ କିଏ କେହି ଦୈତ୍ୟ ଆକାଶରେ ବାରିପୂର୍ଣ୍ଣ ମେଘଖଣ୍ଡମାନଙ୍କୁ ବନ୍ଦ କରି ରଖିଛି । ଏହି ଶତ୍ରୁର ଧ୍ୱଂସ ସାଧନ କରିବା ପାଇଁ ଆଦି ଆର୍ଯ୍ୟମାନେ ବୃଷ୍ଟି ଦେବତା

ବୃଷ୍ଟିରେ ବଜ୍ରର କଳ୍ପନା କରୁଥିଲେ । ଅର୍ଥାତ୍, ବୃଷ୍ଟି ଦେବତାଙ୍କର ବଜ୍ରାଘାତରେ ବୃତ୍ର ଦାନବର ଧ୍ୱଂସ ସାଧନ ହୋଇ ସାରିଲା ପରେ ଆକାଶଖଣ୍ଡରୁ ଧରା ପୃଷ୍ଠରେ ଅବାରିତ ବାରି ବୃଷ୍ଟି ହୁଏ । ଆକାଶ ଖଣ୍ଡରେ ବୃତ୍ର ଏବଂ ବଜ୍ରଧାରୀ ଦେବେନ୍ଦ୍ରଙ୍କର ତୁମୁଳ ସଂଗ୍ରାମ ଋଗ୍ ବେଦରେ ବୈଦିକ ମନୀଷୀମାନେ ଅତି ଆନନ୍ଦ ଉତ୍ସାହରେ ବର୍ଣ୍ଣନା କରି ଯାଇଛନ୍ତି । ଏହାପରେ ଏକ ଶତ୍ରୁର ଅସ୍ତିତ୍ୱ ଏବଂ ସେ ଶତ୍ରୁ ସହିତ ଆକାଶ ମାର୍ଗରେ ଦେବତାର ଯୁଦ୍ଧ ଏହା ଆର୍ଯ୍ୟମାନଙ୍କୁ ଭାରତ ପ୍ରବେଶର ଅନେକ ପୂର୍ବରୁ ସଚେତ କରିଦେଇଥିଲା । ସେଥିପାଇଁ ଏ ଘଟଣାର ଉଲ୍ଲେଖ ଭାରତ ବ୍ୟତୀତ ଅନ୍ୟାନ୍ୟ ସ୍ଥାନର ଆର୍ଯ୍ୟମାନଙ୍କ ମଧ୍ୟରେ ମଧ୍ୟ ଦେଖିବାକୁ ମିଳେ । ଇନ୍ଦ୍ର ନାମ ଭାରତୀୟ ଆର୍ଯ୍ୟମାନଙ୍କ ମଧ୍ୟରେ ପ୍ରସିଦ୍ଧ ; କିନ୍ତୁ ସେହି ବାରି-ଦାତା ଦେବତାଙ୍କର ଅପର ନାମ ଥିଲା ବୃତ୍ରଘ୍ନ ଏବଂ ଏହି ନାମରେ ସେ ଭାରତ ଓ ଅନ୍ୟ ସ୍ଥାନର ଆର୍ଯ୍ୟମାନଙ୍କ ମଧ୍ୟରେ ପୂଜିତ ଏବଂ ଖ୍ୟାତ । ଇରାନ୍ ବା ପାରସ୍ୟ ଦେଶରେ ଯେଉଁ ଆର୍ଯ୍ୟମାନେ ରହି ଯାଇଥିଲେ ସେମାନଙ୍କର ଆଦ୍ୟ ଧର୍ମ-ଗ୍ରନ୍ଥ ଜେନ୍ଦାବେସ୍ତାରେ ବୃତ୍ରଘ୍ନଙ୍କୁ ବେରେଥ୍ରାଘ୍ନ ନାମରେ ଉଲ୍ଲେଖ କରାଯାଇଛି । ବୃତ୍ରକୁ ଯେ ହତ୍ୟା କରିଥିଲେ ସେ ବୃତ୍ରଘ୍ନ ଏବଂ ଏହି ନାମ ଏକ ଆର୍ଯ୍ୟ ମୂଳଅର୍ଥ ଏବଂ ମୂଳଶବ୍ଦରୁ ଜାତ ହୋଇ ବିଭିନ୍ନ ଆର୍ଯ୍ୟ ଶାଖାମାନଙ୍କ ମଧ୍ୟରେ ନାନା ଅପଭ୍ରଂଶରେ ପରିଣତ ହୋଇ ରହି ଯାଇଛି । ବ୍ୟୋମ, ବରୁଣ, ମରୁତ୍, ମିତ୍ର ଇତ୍ୟାଦି ଦେବତାମାନଙ୍କ ପରି ଅଗ୍ନି ଦେବତାଙ୍କର ଆରାଧନା ମଧ୍ୟ ଆଦ୍ୟ ଆର୍ଯ୍ୟ-ମାନଙ୍କ ମଧ୍ୟରେ ଯଥେଷ୍ଟଭାବେ ପ୍ରଚଳିତ ଥିଲା । ପୃଥିବୀର ସମସ୍ତ ପ୍ରାଚୀନ ମନୁଷ୍ୟ ଅଗ୍ନିଙ୍କୁ ଯଥେଷ୍ଟ ସମ୍ମାନ ଦେଇଛନ୍ତି କାରଣ ଅଗ୍ନି ବିନା ମନୁଷ୍ୟର ଜୀବନ-ଯାତ୍ରା ଅସମ୍ଭବ । ଆଦ୍ୟ ଆର୍ଯ୍ୟମାନେ ମଧ୍ୟ ଅଗ୍ନି ଆରାଧନା ଉତ୍ତମରୂପେ କ୍ରିୟା କରୁଥିଲେ । ଆଦ୍ୟ ଆର୍ଯ୍ୟମାନଙ୍କର ସେହି ଅଗ୍ନି ଦେବତା ଭାରତୀୟ ଆର୍ଯ୍ୟ-ମାନଙ୍କ ଭାଷାରେ 'ଅଗ୍ନି' (Agni), ଲାଟିନ୍ ଆର୍ଯ୍ୟମାନଙ୍କ ଭାଷାରେ 'ଇଗ୍ନି' (Igni-s) ଏବଂ ପୂର୍ବ-ଇଉରୋପୀୟ ଆର୍ଯ୍ୟମାନଙ୍କ ଭାଷାରେ 'ଓଗ୍ନି' (Ogni) ନାମରେ ଖ୍ୟାତ । ପ୍ରାଚୀନ ଆର୍ଯ୍ୟମାନେ ଆକାଶ କନ୍ୟା ଉଷାଙ୍କୁ ମଧ୍ୟ ଆରାଧନା କରୁଥିଲେ । ଭାରତୀୟ ଭାଷାରେ ଯେ 'ଉଷା' (Usha), ଗ୍ରୀକ୍ ଭାଷାରେ ସେ 'ଏଓସ୍' (Eos) ଏବଂ ଲାଟିନ୍ ଭାଷାରେ ସେ 'ଅରୋରା' (Auroa) । ମଧ୍ୟ-ଏସିଆ ଖଣ୍ଡରେ ଏକ ଗୃହରେ ବାସ କରୁଥିଲାବେଳେ ଆର୍ଯ୍ୟମାନେ ଯେଉଁସବୁ ଦେବ-ଦେବୀଙ୍କର କଳ୍ପନା କରି ସେମାନଙ୍କୁ ପୂଜା କରୁଥିଲେ, ମଧ୍ୟ-ଏସିଆରୁ ଅପସରି ଯାଇ ଇଉରୋପ-ଏସିଆର ଅନ୍ୟାନ୍ୟ ସ୍ଥାନମାନଙ୍କରେ ପୃଥକଭାବେ ବସବାସ କଲାବେଳେ ମଧ୍ୟ ଆର୍ଯ୍ୟ ସନ୍ତାନମାନେ ସେମାନଙ୍କର ସେହି ପ୍ରାଚୀନ ବା ଆଦ୍ୟ ଦେବଦେବୀଙ୍କୁ ଭୁଲି ଯାଇ ନ ଥିଲେ ! ଆକାଶ, ବରୁଣ, ମରୁତ୍, ସୂର୍ଯ୍ୟ, ଇନ୍ଦ୍ର, ଅଗ୍ନି, ଉଷା, ମିତ୍ର ପ୍ରଭୃତି ଦେବଦେବୀମାନଙ୍କୁ ମଧ୍ୟ-ଏସିଆର ଆର୍ଯ୍ୟମାନେ ଆରାଧନା କରୁଥିଲେ ଏବଂ ଏହି ଦେବଦେବୀମାନଙ୍କୁ ସେମାନଙ୍କର ବଂଶଧରମାନେ ମଧ୍ୟ ପୂଜା

କରିଥିଲେ । କି ଭାରତ, କି ଗ୍ରୀସ୍, କି ଇଟାଲି, କି ଫ୍ରାନ୍ସ, କି ଜାର୍ମାନୀ, କି ଇଂଲଣ୍ଡ, କି ପାରସ୍ୟ, ଏ ସମସ୍ତ ସ୍ଥାନରେ ଆର୍ଯ୍ୟ ପୂର୍ବପୁରୁଷମାନଙ୍କର ପ୍ରଥମ ଆରାଧ୍ୟ ଦେବଦେବୀ ଥିଲେ ସେହି ମଧ୍ୟ-ଏସିଆର ଆର୍ଯ୍ୟମାନଙ୍କର ଦେବଦେବୀମାନେ । କାଳକ୍ରମେ ନୂତନ ଦେବଦେବୀମାନଙ୍କ କଳ୍ପନା କରାଯାଇଥିଲା ଏବଂ ପୁରାତନ ଦେବଦେବୀଙ୍କର ନାମ ମଧ୍ୟ ମୂଳଶବ୍ଦରୁ ପରିବର୍ତ୍ତିତ କରି ଦିଆ ଯାଇଥିଲା । କାରଣ ବିଭିନ୍ନ ଜଳବାୟୁରେ ବସବାସ କରିବାଦ୍ୱାରା ବିଭିନ୍ନ ସ୍ଥାନର ଆର୍ଯ୍ୟମାନଙ୍କର ଉଚ୍ଚାରଣ ଶକ୍ତି ମଧ୍ୟ ପରିବର୍ତ୍ତିତ ହୋଇଯାଇଥିଲା । ତେଣୁ ଆର୍ଯ୍ୟ ମୂଳଶବ୍ଦମାନଙ୍କର ରୂପ ପରିବର୍ତ୍ତିତ ହୋଇଥିଲା । କିନ୍ତୁ ପରିବର୍ତ୍ତନ ସତ୍ତ୍ୱେ ବିଭିନ୍ନ ଆର୍ଯ୍ୟ ସମ୍ପ୍ରଦାୟ-ମାନଙ୍କର ପ୍ରାଚୀନ ଦେବଦେବୀମାନଙ୍କର ନାମ ମଧ୍ୟରେ ଯେଉଁ ମୌଳିକ ସମ୍ପର୍କ ରହିଛି ତାହା ଅତୀତ ସମ୍ବନ୍ଧର ପରିଚୟ ଦିଏ । ଦେବଦେବୀମାନଙ୍କର ନାମ ବ୍ୟତୀତ ମଧ୍ୟ-ଏସିଆବାସୀ ଆଦି ଆର୍ଯ୍ୟମାନଙ୍କ ମଧ୍ୟରେ ଯେଉଁସବୁ ଧର୍ମଗତ ବିଶ୍ୱାସ ଗଢ଼ି ଉଠିଥିଲା ସେ ସମସ୍ତ ବିଶ୍ୱାସ ମଧ୍ୟ ବିଭିନ୍ନ ସ୍ଥାନର ଆର୍ଯ୍ୟମାନଙ୍କ ମଧ୍ୟରେ ଦେଖିବାକୁ ମିଳେ । ପ୍ରାଚୀନ ଭାରତୀୟ, ପ୍ରାଚୀନ ଗ୍ରୀକ୍, ପ୍ରାଚୀନ ରୋମାନ, ପ୍ରାଚୀନ ପାରସ୍ୟବାସୀ, ଏମାନଙ୍କର ପ୍ରାଚୀନ ଧର୍ମର ମୂଳ ଏକ ଏବଂ ସେଥିପାଇଁ ଏ ସବୁ ପ୍ରାଚୀନ ଧର୍ମ ମଧ୍ୟରେ ବହୁତ ସାମଞ୍ଜସ୍ୟ ଦେଖିବାକୁ ମିଳେ । ଏକା ପ୍ରକାର ବିଶ୍ୱାସ ଏବଂ ଏକା ପ୍ରକାର ଦେବଦେବୀଙ୍କୁ କେନ୍ଦ୍ର କରି ଏସବୁ ପ୍ରାଚୀନ ଜାତିମାନଙ୍କର ପ୍ରାଚୀନତମ ପୁରାଣମାନ ଲିଖିତ ହୋଇଛି । ପ୍ରାଚୀନ ଭାରତ, ଗ୍ରୀସ୍ ଏବଂ ରୋମ୍ ପ୍ରଭୃତି ଆର୍ଯ୍ୟ ଦେଶମାନଙ୍କର ଅନେକାନେକ ଶାସ୍ତ୍ରୀୟ ପ୍ରବାଦ ଏବଂ ଗଳ୍ପ ପ୍ରାୟ ଏକ ।

କେବଳ ଧର୍ମଗତ ସମ୍ବନ୍ଧ ଯେ ବିଭିନ୍ନ ସ୍ଥାନର ଆର୍ଯ୍ୟପୁରୁଷମାନଙ୍କୁ ଏକ ପ୍ରାଚୀନ ପରିବାରର ସନ୍ତାନ ବୋଲି ପରିଚୟ ଦିଏ ତାହା ନୁହେଁ । ଧର୍ମଗତ ସମ୍ବନ୍ଧ ବ୍ୟତୀତ, ଭାଷାଗତ, ସଂସ୍କୃତିଗତ, ଏବଂ ବ୍ୟବସାୟଗତ ସାମଞ୍ଜସ୍ୟ ମଧ୍ୟ ବିଭିନ୍ନ ସ୍ଥାନର ଆର୍ଯ୍ୟମାନଙ୍କ ମଧ୍ୟରେ ଦେଖିବାକୁ ମିଳେ । ଭାଷାତତ୍ତ୍ୱବିଦ୍‌ମାନଙ୍କ ମତରେ ଇଉରୋପ ଏବଂ ଭାରତର ଭାଷାଗୁଡ଼ିକ ଯଦିଓ ପରସ୍ପରଠାରୁ ସମ୍ପୂର୍ଣ୍ଣ ପୃଥକ୍ ବୋଲି ପ୍ରତୀୟମାନ ହୁଏ ତଥାପି ସେଗୁଡ଼ିକ ଏକ ଆଦି ଆର୍ଯ୍ୟଭାଷାର କେବଳ ପୃଥକ୍ ରୂପାନ୍ତର ମାତ୍ର । ଗାର୍ହସ୍ଥ୍ୟ ଜୀବନର ସାଧାରଣ ଶବ୍ଦଗୁଡ଼ିକ ପ୍ରାୟ ସବୁ ଆର୍ଯ୍ୟ ଅପଭ୍ରଂଶ ମଧ୍ୟରେ ଏକା ପ୍ରକାର । ଅବଶ୍ୟ ଜଳବାୟୁ ପ୍ରଭାବରେ ଉଚ୍ଚାରଣ-ଗୁଡ଼ିକ ଉଣା ଅଧିକ ବଦଳି ହୋଇଯାଇଛି । ସେଉଁ ଆଦି ଆର୍ଯ୍ୟଭାଷାର ମୂଳଶବ୍ଦ-ମାନଙ୍କରୁ ଭାରତୀୟ ଆର୍ଯ୍ୟଭାଷା ସଂସ୍କୃତରେ ପିତର୍, ମାତର୍, ଭ୍ରାତର୍, ପ୍ରଭୃତି ଶବ୍ଦର ଉତ୍ପତ୍ତି, ସେହି ଆଦି ଆର୍ଯ୍ୟଭାଷାର ମୂଳଶବ୍ଦରୁ ଇଂରାଜୀରେ ଫାଦାର୍, ମାଦାର୍, ବ୍ରାଦାର୍ ଶବ୍ଦର ମଧ୍ୟ ଉତ୍ପତ୍ତି । ସଂସ୍କୃତରେ କନ୍ୟାକୁ କହନ୍ତି 'ଦୁହିତୃ' ; ଇଂରାଜୀରେ ସେହି କନ୍ୟାକୁ କହନ୍ତି 'ଡଟର୍' । ପ୍ରାୟ ପ୍ରତ୍ୟେକ ଆର୍ଯ୍ୟ ଅପଭ୍ରଂଶରେ ଏହି

ଶବ୍ଦଟି ଏକା ପ୍ରକାର ଦେଖାଯାଏ । କାରଣ ଏ ଶବ୍ଦର ଉତ୍ପତ୍ତି ହେଉଛି ଆର୍ଯ୍ୟ ମୂଳ 'ଦୁହ୍' (Dugh) ଶବ୍ଦରୁ ଯେଉଁ ମୂଳଶବ୍ଦର ଅର୍ଥ ଦୁଧ ଦୁହିବା । ପ୍ରାଚୀନ ଆର୍ଯ୍ୟ କନ୍ୟାମାନଙ୍କର ପାରିବାରିକ କାର୍ଯ୍ୟ ମଧ୍ୟରେ ମୁଖ୍ୟ କାର୍ଯ୍ୟ ଥିଲା ଗାଈ ପାଖରୁ ଦୁଧ ଦୁହିବା । ପ୍ରାଚୀନ ଯୁଗର ସେହି ସ୍ମୃତି ଟିକିକ ଆର୍ଯ୍ୟ କନ୍ୟାମାନଙ୍କର ଦୁହିତୃ (Duhitri) ବା ଡଟାର୍ (Daughter) ନାମରେ ନିହିତ ରହିଛି । ସେହିପରି ସଂସ୍କୃତ ଶବ୍ଦ ବିଧବା (Vidhava) ଏବଂ ଇଂରାଜୀ ଶବ୍ଦ ଉଇଡୋ (Widow) ଏକ ମୂଳରୁ ଉଦ୍ଭବ । ଏ ସବୁ ପାରିବାରିକ ଶବ୍ଦଗୁଡ଼ିକର ସାମଞ୍ଜସ୍ୟ ଏକ ଗୃହନିବାସୀ ପ୍ରାଚୀନ ଆର୍ଯ୍ୟମାନଙ୍କର କ୍ଷୀଣ ସ୍ମୃତି ଏ ଯୁଗକୁ ବହନ କରି ଆଣେ । ବିଭିନ୍ନ ଆର୍ଯ୍ୟଭାଷୀମାନଙ୍କ ଭାଷାରେ ପ୍ରାଚୀନ ଆର୍ଯ୍ୟଭାଷାର ଅସଂଖ୍ୟ ଶବ୍ଦ ଏ ଯୁଗ ପର୍ଯ୍ୟନ୍ତ ରହି ଆସିଛି । ଆଦି ଆର୍ଯ୍ୟମାନେ ଥିଲେ କୃଷିଜୀବୀ ଏବଂ ପଶୁପାଳକ । ଏହି କୃଷି ଏବଂ ପଶୁଜଗତ ସମ୍ବନ୍ଧୀୟ ଅଧିକାଂଶ ଶବ୍ଦ ଇଉରୋପ ଏବଂ ଏସିଆବାସୀ ଆର୍ଯ୍ୟ-ମାନଙ୍କ ମଧ୍ୟରେ ପ୍ରାୟ ଏକାପ୍ରକାର ଦେଖାଯାଏ, କାରଣ ସେ ସବୁ ଶବ୍ଦର ଉତ୍ପତ୍ତି ହୋଇଛି ଏକ ମୂଳରୁ । ପ୍ରାଚୀନ ଗ୍ରୀକ୍, ପ୍ରାଚୀନ ରୋମାନ୍ ଏବଂ ପ୍ରାଚୀନ ଭାରତୀୟମାନଙ୍କର ସଭ୍ୟତାର ମେରୁଦଣ୍ଡ ପ୍ରାୟ ଏକା ଛାଞ୍ଚରେ ନିର୍ମିତ ହୋଇଥିଲା ପରି ବୋଧହୁଏ । ସେମାନଙ୍କର ଧର୍ମ, ପୁରାଣ, କଳା, ବ୍ୟବସାୟ, ସାହିତ୍ୟ ଇତ୍ୟାଦିରେ ଏକ ଗଭୀର ସାମଞ୍ଜସ୍ୟ ଦେଖାଯାଏ । ଏ ସବୁର ଏକମାତ୍ର କାରଣ ବହୁଯୁଗ ପୂର୍ବେ ଥରେ ସେମାନେ ସମସ୍ତେ ଏକ-ଜାତିର ମନୁଷ୍ୟ ଥିଲେ । ମୋଟ ଉପରେ, ମଧ୍ୟ-ଏସିଆର ସେହି ପ୍ରାଚୀନ ଆର୍ଯ୍ୟ ମହାଜାତି ଇଉରୋପ-ଏସିଆର ବିକ୍ଷିପ୍ତ ସଭ୍ୟ ମନୁଷ୍ୟମାନଙ୍କର ଆଦି ପିତାମାତା । ମହାକାଳ ଗର୍ଭରେ ସେହି ଆଦି ପିତାମାତାମାନଙ୍କର କ୍ଷୀଣ ସ୍ମୃତି ଟିକିକ ଇଉରୋପ-ଏସିଆର ଅଧିବାସୀମାନେ ଏବେସୁଦ୍ଧା ନିଜ ସଭ୍ୟତା ଅଙ୍ଗରେ ଜୀବିତ ରଖିଛନ୍ତି ।

ଅଧ୍ୟାପକ ମ୍ୟାକ୍ସ ମୁଲରଙ୍କ ମତରେ ମଧ୍ୟ-ଏସିଆର ପ୍ରାଚୀନ ଆର୍ଯ୍ୟମାନେ ସର୍ବ ପ୍ରଥମେ ଦୁଇ ଭାଗରେ ବିଭକ୍ତ ହୋଇଯାଇଥିଲେ, ଯଥା, ଉତ୍ତର-ପଶ୍ଚିମ ବା ଇଉରୋପୀୟ ଶାଖା ଏବଂ ଦକ୍ଷିଣ-ପୂର୍ବ ବା ଏସିଆଟିକ୍ ଶାଖା । ଏହି ଦୁଇଟି ଶାଖା ଥରେ ପରସ୍ପର ପାଖରୁ ପୃଥକ୍ ହୋଇଗଲା ପରେ ଆଉ ଭବିଷ୍ୟତରେ କେବେ ପରସ୍ପରକୁ ଭେଟି ନ ଥିଲେ । ଉତ୍ତର-ପଶ୍ଚିମଗାମୀ ଶାଖାଟି ଇଉରୋପ ଦିଗକୁ ଗତି କରିଥିଲା ଏବଂ କ୍ରମେ ଏ ଶାଖାଟି ପଞ୍ଚ ଭାଗରେ ବିଭକ୍ତ ହୋଇ ପାଞ୍ଚଟି ପୃଥକ୍ ଜାତିରେ ପରିଣତ ହୋଇଯାଇଥିଲା ଏବଂ ଏହି ପାଞ୍ଚଟି ଜାତି କେଉଁ ଅନିର୍ଦ୍ଦିଷ୍ଟ କାଳରେ ଇଉରୋପର ପାଞ୍ଚଟି ପୃଥକ ଅଞ୍ଚଳକୁ ଅଧିକାର କରି ବସିଥିଲେ । ଏହି ପାଞ୍ଚ ଜାତି ମଧ୍ୟରୁ 'କେଲ୍ଟ'ମାନେ ଇଉରୋପର ସୁଦୂର ପଶ୍ଚିମାଞ୍ଚଳକୁ ଅପରମାନଙ୍କଦ୍ୱାରା ବିତାଡ଼ିତ ହୋଇ ସେଠାରେ ଫ୍ରାନ୍ସ, ଆୟର୍ଲଣ୍ଡ, ଗ୍ରେଟ୍ ବ୍ରିଟେନ୍ ଏବଂ ବେଲଜିୟମ ପ୍ରଭୃତି ସ୍ଥାନରେ ବସତି ସ୍ଥାପନ କରିଥିଲେ ;

ଶକ୍ତିଶାଳୀ ଟିଉଟନ୍‌ମାନେ ମଧ୍ୟ-ଇଉରୋପ ଖଣ୍ଡରେ ବସବାସ କରିଥିଲେ ଏବଂ ପରେ ରୋମ ସାମ୍ରାଜ୍ୟର ପତନ ପରେ ଏହି ସ୍ଥାନରୁ ସାରା ଇଉରୋପ ବିଜୟ କରିବାକୁ ବାହାରିଥିଲେ ; ସ୍ଲାଭ୍‌ମାନେ ପୂର୍ବ ଇଉରୋପର ରୁସିଆ ଏବଂ ଅନ୍ୟାନ୍ୟ ସ୍ଥାନରେ ବସତି ସ୍ଥାପନ କରିଥିଲେ; ଏବଂ ଇଟାଲୀୟ ଓ ଗ୍ରୀକ୍ ଜାତି-ଦ୍ୱୟ ଇଉରୋପର ଦକ୍ଷିଣାଞ୍ଚଳରେ ବାସ କରିଥିଲେ ।

ଇତ୍ୟବସରେ ଏସିଆଗାମୀ ଶାଖାଟି ଦକ୍ଷିଣ ଦିଗକୁ ଗତି କରିଥିଲା ଏବଂ ଅବିଭକ୍ତ ଭାବରେ ଏହି ଇଣ୍ଡୋ-ଇରାନିଆନ୍‌ମାନେ ସିନ୍ଧୁ ନଦୀ କୂଳସ୍ଥ ତଦାନୀନ୍ତନ 'ସପ୍ତନଦ' ବା ପଞ୍ଜାବ ପର୍ଯ୍ୟନ୍ତ ଚାଲି ଆସିଥିଲେ । ସିନ୍ଧୁନଦୀ ଏବଂ ତା'ର ଶାଖାମାନଙ୍କ କୂଳରେ ପହଞ୍ଚିଲା ପର୍ଯ୍ୟନ୍ତ ଏହି ଅବିଭକ୍ତ ଦକ୍ଷିଣ-ପୂର୍ବଗାମୀ ଆର୍ଯ୍ୟ-ମାନେ ଯେଉଁ ଭାଷା ବ୍ୟବହାର କରୁଥିଲେ ସେ ଭାଷା ଥିଲା ଭାରତର ସଂସ୍କୃତ ଏବଂ ପାରସ୍ୟର ଜେନ୍ଦ୍ ଭାଷାଠାରୁ ପ୍ରାଚୀନତର ଏକ ଭାଷା । ତା'ପରେ ଏ ଶାଖା ଦୁଇ ଭାଗରେ ବିଭକ୍ତ ହୋଇଯାଇଥିଲା ; ଗୋଟିଏ ଭାଗର ଲୋକେ ପଞ୍ଜାବ ଖଣ୍ଡରେ ବସତି ସ୍ଥାପନ କରି ରହି ଯାଇଥିଲେ ଏବଂ ଅପର ଭାଗଟି ପାରସ୍ୟ ଦେଶକୁ ଫେରି ଯାଇଥିଲା ।[1]

ଆର୍ଯ୍ୟମାନଙ୍କର ଭାରତ ପ୍ରବେଶକାଳ ଏ ପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟରୂପେ ନିର୍ଦ୍ଧାରିତ ହୋଇ ପାରିଲା ନାହିଁ । ଏ ବିଷୟରେ ବିଶେଷଜ୍ଞମାନଙ୍କ ମଧ୍ୟରେ ଯଥେଷ୍ଟ ମତ ପାର୍ଥକ୍ୟ ରହିଛି । ଭାରତୀୟ ଆର୍ଯ୍ୟମାନଙ୍କର ଆଦିଗ୍ରନ୍ଥ ଯେଉଁ ଋକ୍‌ବେଦ ସେଥିରୁ ମଧ୍ୟ ଆର୍ଯ୍ୟମାନଙ୍କର ଭାରତ ପ୍ରବେଶକାଳ ନିରୂପିତ ହୋଇ ପାରୁ ନାହିଁ । କୋଲ୍‌ବ୍ରୁକ୍ ସାହେବ ଯିଏକି ପାଶ୍ଚାତ୍ୟବାସୀଙ୍କ ପାଇଁ ସର୍ବପ୍ରଥମେ ବେଦ ଆବିଷ୍କାର କରିଥିଲେ, ସେ ବିଶ୍ୱାସ କରନ୍ତି ଯେ ଖ୍ରୀଷ୍ଟପୂର୍ବ, ଚତୁର୍ଦ୍ଦଶ ଶତାବ୍ଦୀରେ ବେଦମାନଙ୍କର ରଚନା କାର୍ଯ୍ୟ ଶେଷ ହୋଇଥିଲା । ବେଦ ରଚନା ଶେଷ ହେବା ପୂର୍ବରୁ ଆର୍ଯ୍ୟମାନେ ନିଶ୍ଚୟ ପଞ୍ଜାବ-ଖଣ୍ଡରେ ସ୍ଥାୟୀ ଭାବରେ ବସତି ସ୍ଥାପନ କରି ସାରିଥିବେ । ଏପରି ଏକ ସ୍ଥାୟୀ ବସତି ପାଇଁ ସେମାନଙ୍କୁ ଯେ ପାଞ୍ଚ, ଛଅ ଶହ ବର୍ଷ ଲାଗି ଯାଇଥିବ ଏହା ପ୍ରାୟ ସବୁ ପଣ୍ଡିତଙ୍କ ମତ । ସୁତରାଂ ଖ୍ରୀଷ୍ଟପୂର୍ବ ବିଂଶ ଶତାବ୍ଦୀ ପାଖରୁ ଖ୍ରୀଷ୍ଟପୂର୍ବ ଚତୁର୍ଦ୍ଦଶ ଶତାବ୍ଦୀ ମଧ୍ୟରେ ଆର୍ଯ୍ୟମାନେ ପଞ୍ଜାବରେ ବିସ୍ତାର ଲାଭ କରିଥିବେ । ମ୍ୟାକ୍ସ ମୁଲର ଖ୍ରୀଷ୍ଟପୂର୍ବ ପଞ୍ଚଦଶ ଶତାବ୍ଦୀରେ ବେଦ ରଚିତ ହୋଇଥିଲା ବୋଲି ମତ ପ୍ରକାଶ କରନ୍ତି ଏବଂ ଖ୍ରୀ: ପୂ: ୧୨୦୦ରୁ ଖ୍ରୀ: ପୂ: ୧୦୦୦ ବର୍ଷ ମଧ୍ୟରେ ବେଦ ପୂର୍ଣ୍ଣାଙ୍ଗ ଲାଭ କରିଥିଲା ବୋଲି ଅନୁମାନ କରନ୍ତି । ଅଧ୍ୟାପକ ହୁଇଟ୍‌ନେ ଋକ୍‌ବେଦର ଶ୍ଳୋକମାନଙ୍କର ରଚନା କାଳ

1. Prof. Max Muller quoted in 'A History of civilisation in Ancient India' by R. C. Dutt, p.p. 32, 33.

ଖ୍ରୀ: ପୂ: ୨୦୦୦ରୁ ଖ୍ରୀ: ପୂ: ୧୫୦୦ ମଧ୍ୟରେ ବୋଲି ଅନୁମାନ କରନ୍ତି ଏବଂ ଉଇଣ୍ଟରନିଜ୍ ମାର୍ଟିନ ହଗଙ୍କ ମତ ଅନୁସାରେ ଯଦିଚ ଋକ୍‌ବେଦର ପ୍ରାଚୀନତମ ଶ୍ଳୋକଗୁଡ଼ିକ ଅନେକ ପୂର୍ବେ ରଚିତ ହୋଇଥିଲା ତଥାପି ଖ୍ରୀ: ପୂ: ୨୦୦୦ରୁ ଖ୍ରୀ: ପୂ: ୧୪୦୦ ମଧ୍ୟବର୍ତ୍ତୀ ସମୟକୁ ଋକ୍‌ବେଦ ରଚନା କାଳ ବୋଲି ଧରି ନେବାକୁ ହେବ । ଇଉରୋପୀୟ ପଣ୍ଡିତମାନଙ୍କର ଏହି ସମୟ ନିର୍ଦ୍ଧାରଣ ଅନେକ ଭାରତୀୟ ପଣ୍ଡିତ ଗ୍ରହଣ କରନ୍ତି ନାହିଁ । କାରଣ ଖ୍ରୀଷ୍ଟଜନ୍ମର ଏତେ ଅଳ୍ପ ଶତାବ୍ଦୀ ପୂର୍ବରୁ ଆର୍ଯ୍ୟମାନେ ଭାରତ ପ୍ରବେଶ କରିଥିଲେ ବୋଲି ବିଶ୍ୱାସ କରି ହୁଏ ନା । ଅବଶ୍ୟ କେହି କେହି ପାଶ୍ଚାତ୍ୟ ପଣ୍ଡିତ ଆର୍ଯ୍ୟମାନଙ୍କର ପ୍ରବେଶ କାଳ ଅତି ସୁଦୂର ଅତୀତ କାଳରେ ବୋଲି ମତ ପ୍ରକାଶ କରନ୍ତି । ଭାରତୀୟ ପଣ୍ଡିତମାନେ ସାଧାରଣତଃ ଖ୍ରୀଷ୍ଟ ଜନ୍ମର ତିନି, ଚାରି ହଜାର ବର୍ଷ ପୂର୍ବେ ଆର୍ଯ୍ୟମାନେ ପଞ୍ଜାବ-ଖଣ୍ଡରେ ଆଧିପତ୍ୟ ବିସ୍ତାର କରିଥିଲେ ବୋଲି ବିଶ୍ୱାସ କରନ୍ତି । କେହି କେହି ଏହାଠାରୁ ଅଧିକ ପ୍ରାଚୀନ କାଳକୁ ମଧ୍ୟ ଫେରି ଯାଆନ୍ତି । ଭାରତୀୟ ପଣ୍ଡିତମାନଙ୍କ ମତରେ ଋକ୍‌ବେଦ ଭାରତର ତଥା ସମଗ୍ର ପୃଥିବୀର ପ୍ରାଚୀନତମ ଧର୍ମଗ୍ରନ୍ଥ ଏବଂ ତେଣୁ ଏହାର ରଚନା କାଳ ମଧ୍ୟ ନିଶ୍ଚୟ ଏକ ଅନିର୍ଦ୍ଦିଷ୍ଟ ଅତୀତ କାଳରେ ହୋଇଥିବ । ଲୋକମାନ୍ୟ ବାଲ ଗଙ୍ଗାଧର ତିଲକଙ୍କ ବିଶ୍ୱାସରେ ଋକ୍‌ବେଦ ଖ୍ରୀଷ୍ଟଜନ୍ମର ପ୍ରାୟ ୪୫୦୦ ବର୍ଷ ପୂର୍ବେ ରଚିତ ହୋଇଥିଲା । ଏହି ସମୟର ଅନ୍ତ କେତେ ଶତାବ୍ଦୀ ପୂର୍ବରୁ ଆର୍ଯ୍ୟମାନେ ପଞ୍ଜାବ-ଖଣ୍ଡରେ ପ୍ରବେଶ କରିଥିବେ । ମୋଟ ଉପରେ, ଭାରତୀୟ ପଣ୍ଡିତ ଏବଂ ପାଶ୍ଚାତ୍ୟ ପଣ୍ଡିତମାନଙ୍କର ଏ ମତଭେଦର ମୀମାଂସା ଅସମ୍ଭବ ଏବଂ ଆର୍ଯ୍ୟମାନଙ୍କର ଭାରତ ପ୍ରବେଶ କରିବା ସମୟ ମଧ୍ୟ ନିର୍ଣ୍ଣୟ କରିବା ଏକ ପ୍ରକାର ଅସମ୍ଭବ । ଏପରି କିଛି ଐତିହାସିକ ସାମଗ୍ରୀ ଏ ପର୍ଯ୍ୟନ୍ତ ମିଳି ନାହିଁ ଯେଉଁଥିରୁ କି ଅତି ଦୂର ଅତୀତର ଅନ୍ଧକାର ମଧ୍ୟରୁ ଆର୍ଯ୍ୟମାନଙ୍କର ଭାରତ ପ୍ରବେଶର ନିର୍ଦ୍ଦିଷ୍ଟ ସମୟ ନିରୂପିତ ହୋଇ ପାରିବ । ଏ ପର୍ଯ୍ୟନ୍ତ ପଣ୍ଡିତମାନେ ଯେଉଁସବୁ ସମୟ ନିର୍ଣ୍ଣୟ କରିଛନ୍ତି ତାହା କେବଳ ଅନୁମାନ ଉପରେ ପ୍ରତିଷ୍ଠିତ ଏବଂ ଆର୍ଯ୍ୟମାନଙ୍କର ଭାରତ ପ୍ରବେଶ କାଳ ଚିରଦିନ ଧରି ଏହି ଅନୁମାନ ଏବଂ କଳ୍ପନା ମଧ୍ୟରେ ହିଁ ବୁଡ଼ି ରହିବ ।

ତମସାଚ୍ଛନ୍ନ ବିସ୍ମୃତ ପ୍ରାଗ୍-ଐତିହାସିକ ଯୁଗର କେଉଁ ସମୟରେ ଆର୍ଯ୍ୟମାନେ ପ୍ରଥମେ ଉତ୍ତର-ପଶ୍ଚିମ ଗିରିବର୍ତ୍ମ ଅତିକ୍ରମ କରି ପଞ୍ଚନଦ ଖଣ୍ଡରେ ପ୍ରବେଶ କରିଥିଲେ ତାହା ଅଜଣା ରହିପାରେ, କିନ୍ତୁ ଭାରତ ପ୍ରବେଶ ପୂର୍ବରୁ ଏ ଜାତି ଯେ ଏକ ଉନ୍ନତ ସଭ୍ୟତାର ସନ୍ତାନ ଥିଲେ ଏବଂ ଭାରତ ପ୍ରବେଶ ପରେ ଭାରତର ସିନ୍ଧୁ ତଥା ସିନ୍ଧୁଶାଖା ପ୍ରବାହିତ ସେହି ପଞ୍ଜାବ-ଖଣ୍ଡରେ ଏକ ଉନ୍ନତ ସଭ୍ୟତା ବିସ୍ତାର କରିଥିଲେ ତାହା ସର୍ବଜନ ବିଦିତ । ପ୍ରାଗ୍-ଐତିହାସିକ ଭାରତରେ ସେହି

ପ୍ରାଚୀନ ଆର୍ଯ୍ୟ ସଭ୍ୟତା ବୈଦିକ ସଭ୍ୟତା ନାମରେ ଖ୍ୟାତ । କାରଣ ପଞ୍ଚନଦୀ ଜଳ-କଲ୍ଲୋଳିତ, ସୁଜଳା, ସୁଫଳା, ଶସ୍ୟ ଶ୍ୟାମଳା ପଞ୍ଚନଦର ବିସ୍ତାରିତ ବକ୍ଷରେ ବସତି ସ୍ଥାପନ ପରେ ପରେ ଆର୍ଯ୍ୟ ମନୀଷୀମାନଙ୍କ କଣ୍ଠରୁ ପୁଣ୍ୟ ବେଦମନ୍ତ୍ର ନିଃସୃତ ହୁଏ । ବେଦର ରଚନାକାଳ ଭାରତୀୟ ସଭ୍ୟତାର ଇତିହାସରେ ବୈଦିକ ଯୁଗ ନାମରେ ପ୍ରସିଦ୍ଧ ଏବଂ ଏହି ବୈଦିକ ଯୁଗର ସଭ୍ୟତାହିଁ ବୈଦିକ ସଭ୍ୟତା । ବେଦମାନଙ୍କ ମଧ୍ୟରେ ପ୍ରାଚୀନତମ ବେଦର ନାମ ଋକ୍ ବେଦ ଏବଂ ଏହି ଆର୍ଯ୍ୟ ଆଦି ଗ୍ରନ୍ଥର ଛନ୍ଦେ ଛନ୍ଦେ ବୈଦିକ ସଭ୍ୟତାର ସୁମହାନ୍ ରୂପ ପରିସ୍ଫୁଟ ହୋଇ ଉଠିଛି । ବେଦହିଁ ବୈଦିକ ଆର୍ଯ୍ୟ ସଭ୍ୟତାର ଶ୍ରେଷ୍ଠ ସାକ୍ଷୀ ଏବଂ ଭାରତୀୟ ହିନ୍ଦୁ ସଭ୍ୟତାର ମୂଳମନ୍ତ୍ର । ଋକ୍ ସଂହିତା ୧୦୨୭ ଗୋଟି ମନ୍ତ୍ରର ସମଷ୍ଟି ଏବଂ ଏହା ଦଶଟି ମଣ୍ଡଳ ବା ସୂକ୍ତରେ ବିଭକ୍ତ । ପୌରାଣିକ ଯୁଗର ଶେଷ ବେଳକୁ ଋକ୍ ବେଦର ପ୍ରତ୍ୟେକ ଛନ୍ଦ, ପ୍ରତ୍ୟେକ ଶବ୍ଦ ପର୍ଯ୍ୟନ୍ତର ସଂଖ୍ୟା ନିର୍ଣ୍ଣିତ ହୋଇ ସାରିଥିଲା । ଏହାର ଛନ୍ଦ ସଂଖ୍ୟା ଦଶ ସହସ୍ରରୁ ଊର୍ଦ୍ଧ୍ୱ ଏବଂ ଶବ୍ଦ ସଂଖ୍ୟା ଦେଢ଼ ଲକ୍ଷରୁ ଅଧିକ । ଏହି ବିରାଟ ସଂହିତା ମୁଖ୍ୟତଃ ଦେବତାମାନଙ୍କ ଉଦ୍ଦେଶ୍ୟରେ ରଚିତ । କିନ୍ତୁ ଏହି ଦେବସ୍ତୁତି ମଧ୍ୟରେ ପ୍ରାଚୀନ ଆର୍ଯ୍ୟମାନେ ଯେଉଁ ଉଚ୍ଚାଙ୍ଗ ଦର୍ଶନ ଏବଂ ଗଭୀର ଆଧ୍ୟାତ୍ମିକ ଚିନ୍ତା ଶକ୍ତିର ପରିଚୟ ଦେଇ ଅଛନ୍ତି ତାହା ସମଗ୍ର ମନୁଷ୍ୟ ଜାତିର ଅନ୍ୟ କୌଣସି ପ୍ରାଚୀନ ଧର୍ମଗ୍ରନ୍ଥରେ ଦେଖିବାକୁ ମିଳେ ନାହିଁ । ଚିନ୍ତାଶୀଳ ଆର୍ଯ୍ୟ ମନୀଷୀମାନଙ୍କର ଉନ୍ନତ ଭାବଧାରା ସେମାନଙ୍କର ସେହି ପ୍ରାଚୀନ ସଭ୍ୟତାର ମୂଳ ଭିତ୍ତିକୁ ଧର୍ମ ଏବଂ ଦର୍ଶନ ଉପରେ ପ୍ରତିଷ୍ଠିତ କରାଇଥିଲା । ଋକ୍ ବେଦର ଧର୍ମ ମନୁଷ୍ୟର ପ୍ରକୃତ ପ୍ରାକୃତିକ ଧର୍ମ । ସେ ଧର୍ମ ହେଉଛି ଅଚିନ୍ତ୍ୟ, ଅନିତ୍ୟ ସଂସାରରେ ଚିର ନିତ୍ୟ, ଚିର ସତ୍ୟ, ଚିର ମହାନ୍ 'ପ୍ରକୃତି' ଉଦ୍ଦେଶ୍ୟରେ କ୍ଷଣ ଭଙ୍ଗୁର ମନୁଷ୍ୟର ଆଶା ଏବଂ ଭକ୍ତିପୂର୍ଣ୍ଣ ସ୍ତୁତି । ଦିଗନ୍ତ ବିସ୍ତାରୀ ପ୍ରଶାନ୍ତ ଆକାଶ, ଯାହାର ଅନାଦି, ଅନନ୍ତ, ସୁବିରାଟ ବପୁ ବିଶ୍ୱବ୍ରହ୍ମାଣ୍ଡକୁ ବକ୍ଷରେ ଧାରଣପୂର୍ବକ କ୍ଷୁଦ୍ର ମନୁଷ୍ୟର ମସ୍ତକ ଦେଶରେ ଦଣ୍ଡାୟମାନ ; ଘନକୃଷ୍ଣ ବାରିଦମାଳା, ଦିଗ ପ୍ରକମ୍ପିତ କରି ଯାହାର ଅଙ୍ଗରାଶିରୁ ଝର ଝର ନାଦରେ ବୃଷ୍ଟିଧାରା ବିଗଳିତ ହୋଇ ରୁକ୍ଷ, ଶୁଷ୍କ ଧରଣୀକୁ ସୁଶ୍ୟାମଳା କରିଦିଏ; ଜ୍ୟୋତିର୍ମୟ ସୂର୍ଯ୍ୟ, ଯାହାର ପୁଞ୍ଜିଭୂତ ରଶ୍ମିର ଅଣୁମାତ୍ର ଏ ବିରାଟ ପୃଥିବୀକୁ ଆଲୋକିତ କରେ; ସଦା ପ୍ରବାହିତ ଭୁବନ-ବିସ୍ତାରୀ ବାୟୁ, ଯାହାର ଚଳାଚଳ ଉପରେ ସ୍ଥୂଳ ଜଗତର ଜୀବନ ନିର୍ଭର କରେ ଏବଂ ଯାହାର କମ୍ପନମାତ୍ର ବିଦାୟରେ ପ୍ରାଣୀର ବିଲୟ ଘଟେ ; ସର୍ବଗ୍ରାସୀ ଅଗ୍ନି, ଯାହାର କୋପରେ କ୍ଷଣକେ ପୃଥିବୀ ଦଗ୍ଧ ହୋଇ ଯାଇ ପାରେ ଅଥଚ ସେ ମନୁଷ୍ୟର ସଦା ଉପକାରୀ ବନ୍ଧୁ; ରୁଦ୍ର ତାଣ୍ଡବ ମରୁତ୍, ଯାହାର ଭୈରବ ନୃତ୍ୟରେ ସସାଗରା ଧରା କମ୍ପିତ ହୋଇ ଉଠେ; ସୁନିର୍ମଳା ଦୀପ୍ତିମୟୀ ଆକାଶ-କନ୍ୟା ଉଷା, ଯାହାର ଆଗମନୀ ସଙ୍ଗୀତରେ ନୀରବ, ନିସ୍ପନ୍ଦ, ସୁପ୍ତ ପୃଥିବୀ ନବ ଜୀବନ ଲାଭପୂର୍ବକ ନବୀନ

ଉତ୍ସାହରେ ଜାଗ୍ରତ ହୋଇ ଉଠେ;—ଏହିମାନେ ଥିଲେ ବୈଦିକ ଆର୍ଯ୍ୟମାନଙ୍କର ଦେବ ଦେବୀ ଯେଉଁମାନଙ୍କର ସ୍ତୁତି ଗାନ ଦ୍ୱାରା ରଚିତ ହୋଇଛି ଋକ୍ ବେଦ ସଂହିତା । ଆକାଶ, ବର୍ଷା, ସୂର୍ଯ୍ୟ, ପବନ, ଅଗ୍ନି, ପ୍ରଭଞ୍ଜନ, ଉଷା ଏ ସମସ୍ତ 'ପ୍ରକୃତି'ର ଅଙ୍ଗମାତ୍ର ଏବଂ ଏହି ଅଙ୍ଗମାନେ ବିଭିନ୍ନ ନାମ ଧାରଣପୂର୍ବକ ଆର୍ଯ୍ୟ-ମାନଙ୍କର ଆରାଧ୍ୟ ଦେବତା ରୂପରେ ପୂଜିତ ହୋଇଥିଲେ । କ୍ରମେ ପ୍ରକୃତି-ପୂଜକ ଆର୍ଯ୍ୟ ଋଷିମାନେ ପ୍ରକୃତିର ବିଭିନ୍ନ ଦୁରନ୍ତ, ଶାନ୍ତ ରୂପମାନଙ୍କର ସମନ୍ୱିତ ଏକ ମହାଶକ୍ତିର କଳ୍ପନାପୂର୍ବକ ସର୍ବଦେବ ଶ୍ରେଷ୍ଠ ଏକ ଈଶ୍ୱରଙ୍କର ଅସ୍ତିତ୍ୱ ଅନୁଭବ କରିଥିଲେ । ଆର୍ଯ୍ୟ ଋଷିମାନଙ୍କୁ ଏକ ସୁବିରାଟ ଆଧ୍ୟାତ୍ମିକ ଶକ୍ତିର ଅସ୍ତିତ୍ୱ ଅବିଦିତ ରହିଲା ନାହିଁ ଏବଂ ପ୍ରକୃତିର ବିଭିନ୍ନ ଅବୟବ ଯଥା ଆକାଶ, ସୂର୍ଯ୍ୟ, ବରୁଣ, ଇନ୍ଦ୍ର, ଅଗ୍ନି, ଉଷା ଏ ସମସ୍ତେ ସେହି ସର୍ବଶକ୍ତିମାନ୍ ଶକ୍ତିର ଅଂଶ ମାତ୍ର ଏହା ମଧ୍ୟ ବିଶ୍ୱାସ କରିନେବାକୁ ବିଳମ୍ବ ଘଟିଲା ନାହିଁ । ଋକ୍ ବେଦର ଶେଷାଂଶରେ ଏହି ସର୍ବଶକ୍ତିମାନ୍ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ଆର୍ଯ୍ୟ ଋଷିମାନେ ମନ୍ତ୍ର ରଚନା କରିଥିବାର ଦେଖାଯାଏ । ପ୍ରକୃତି-ପୂଜକ ଆର୍ଯ୍ୟ ଋଷିମାନେ ପ୍ରକୃତିର ଗଣ୍ଡି ଭେଦ କରି ପ୍ରାକୃତିକ ଶକ୍ତି ବାହାରେ ଯେଉଁ ଅତିପ୍ରାକୃତ ଆଧ୍ୟାତ୍ମିକ ଏକ ମହାଶକ୍ତିର ସତ୍ତା ପରିକଳ୍ପନା କରି ପାରିଥିଲେ ଏହାହିଁ ବୈଦିକ ଧର୍ମର ଚରମ ବିଶେଷତ୍ୱ । ଋକ୍ ବେଦରେ ଇନ୍ଦ୍ର, ଅଗ୍ନି, ବାୟୁ, ସୂର୍ଯ୍ୟ, ବରୁଣ, ମିତ୍ର ପ୍ରଭୃତି ୩୩ ଜଣ ଦେବତାଙ୍କର ଉପାସନା କରାଯାଇଛି । ଏମାନେ ସମସ୍ତେ ପ୍ରକୃତିର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗ । କିନ୍ତୁ ଏହି ୩୩ ଜଣ ଦେବତାଙ୍କର ମୂଳ ଯେ ଏକ ତାହା ଋକ୍ ବେଦ ନିର୍ଭୀକଭାବେ ଘୋଷଣା କରିଛି । ଅର୍ଥାତ୍ ଏ ସମସ୍ତ ପ୍ରକୃତି-ଦେବତା ଏକ ସୃଷ୍ଟିକର୍ତ୍ତାଙ୍କର ଏକ ଏକ ଅଂଶ ମାତ୍ର । ଚିନ୍ତାଶୀଳ ଆର୍ଯ୍ୟ ଋଷି-ମାନଙ୍କର ବେଦମନ୍ତ୍ର ଅଙ୍ଗରେ ଯେଉଁ ଭାବ ପ୍ରବଣତା ପରିଲକ୍ଷିତ ହୁଏ ତାହା ସେମାନଙ୍କର ସରଳ ପ୍ରକୃତି ପୂଜାକୁ ମଧ୍ୟ ଅତି ଉଚ୍ଚ ଦର୍ଶନ ନିହିତ ଏକ ମହା-ଧର୍ମରୂପେ ପ୍ରମାଣିତ କରେ । ତଥାପି ଏହି ବୈଦିକ ମହାଧର୍ମ ଟ୍ଲାନି ବିଜଡ଼ିତ ନୁହେଁ । ଏହା ସରଳ, ସୁସ୍ପଷ୍ଟ କୁସଂସ୍କାର ବିବର୍ଜିତ ନୀତିପୂର୍ଣ୍ଣ ଏକଧର୍ମ । ବୈଦିକ ଦେବତାମାନେ ନ୍ୟାୟ ଏବଂ ନୀତି-ପରାୟଣ, ଦୟାଳୁ ଏବଂ ସଦା ଉପକାରୀ, ଏବଂ ସେମାନଙ୍କର ଯେଉଁମାନେ ଉପାସକ ସେମାନଙ୍କର ମଧ୍ୟ ସେହିପରି ଦେବୋପମ ଚରିତ୍ର ଗଠନ ଆବଶ୍ୟକ ଏହା ବୈଦିକ ଋଷିମାନଙ୍କର ବିଶ୍ୱାସ । ବାସ୍ତବିକ, ହିନ୍ଦୁ ଭାରତର ଅମର ଆଦର୍ଶ ହୋଇଛନ୍ତି ସେହି ବୈଦିକ ଋଷିମାନେ ଯେଉଁମାନେ ସେମାନଙ୍କର ଦେବତାମାନଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ସତ୍ୟ, ଧର୍ମ, ନୀତି, ଦୟା, କ୍ଷମା ପ୍ରଭୃତି ଗୁଣରେ ନିଜର ଜୀବନ ଗଠନ କରିଥିଲେ । ଋକ୍ ବେଦରେ ଦୁଷ୍ଟ ପ୍ରକୃତିର କୌଣସି ଦେବତାକୁ ଦେଖିବାକୁ ମିଳେ ନାହିଁ; କୌଣସି ଅନ୍ୟାୟ, ନୀତିହୀନ, ନୀଚ କର୍ମର ମଧ୍ୟ ଉଲ୍ଲେଖ ନାହିଁ । ହିନ୍ଦୁ ଦେବତାମାନଙ୍କ ନାମରେ ଅନେକ ସମୟରେ ଯେଉଁସବୁ କଳଙ୍କ ଶୁଣିବାକୁ

ମିଳେ ସେ ସବୁ ବୈଦିକ ଯୁଗର କଳ୍ପନା ନୁହେଁ, ପରବର୍ତ୍ତୀ ଯୁଗର କଳ୍ପନା । ଋକ୍‌ବେଦର ଇନ୍ଦ୍ର ନିଷ୍କଳଙ୍କ ଏବଂ ପବିତ୍ର, ଅଥଚ ପରବର୍ତ୍ତୀ ଯୁଗରେ ସେହି ଇନ୍ଦ୍ରଙ୍କ ନାମରେ ଅନେକ କୁତ୍ସିତ କଳଙ୍କ ଆରୋପ କରାଯାଇଛି । ହିନ୍ଦୁଧର୍ମ ଆଜି ଜଟିଳରୁ ଜଟିଳତର ହୋଇ ବହୁ ଗ୍ଲାନି ବିଜଡ଼ିତ ହୋଇପଡ଼ିଛି । କିନ୍ତୁ ଆଜିକାର ଏ ହିନ୍ଦୁଧର୍ମ ଏବଂ ଋକ୍‌ବେଦର ସେ ଆର୍ଯ୍ୟଧର୍ମ, ଏହାଙ୍କ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ପରିଲକ୍ଷିତ ହୁଏ । ଋକ୍‌ବେଦରେ ପ୍ରତିମା ପୂଜାର ନାମ ଗନ୍ଧ ସୁଦ୍ଧା ନାହିଁ କିମ୍ବା ଦେବ ଉପାସନା ପାଇଁ ମନ୍ଦିରର ଆବଶ୍ୟକତା ଥିଲି ବୋଲି ତା'ର କୌଣସି ଆଭାସ ସୁଦ୍ଧା ମିଳେ ନାହିଁ । ପରବର୍ତ୍ତୀ କାଳରେ ହିନ୍ଦୁଧର୍ମରେ ଯେଉଁ ସବୁ ବିଭିନ୍ନ ପ୍ରକାରର ପ୍ରତିମାପୂଜା ଏବଂ ଶେଷକୁ ଗଛପତ୍ର, ସର୍ପ ଇତ୍ୟାଦିର ପୂଜା ଦେଖିବାକୁ ମିଳେ ଏହାସବୁ ଦ୍ରାବିଡ଼ ଏବଂ ଆଦିମମାନଙ୍କର ପ୍ରଭାବ ଯୋଗୁଁ ହୋଇ ପାରିଛି ବୋଲି ପଣ୍ଡିତମାନେ କହନ୍ତି । ହିନ୍ଦୁଧର୍ମରେ ଯେଉଁ ଲିଙ୍ଗ ପୂଜା ଓ ଶିବ ଶକ୍ତି ଇତ୍ୟାଦିଙ୍କର କଳ୍ପନା ଦେଖିବାକୁ ମିଳେ ସେ ସବୁ ହେଉଛି ଦ୍ରାବିଡ଼ ପ୍ରଭାବର ଫଳ । କାରଣ ପ୍ରାଚୀନ ଦ୍ରାବିଡ଼ମାନଙ୍କୁ ସେ ସବୁ ପୂଜା କରୁଥିବାର ଦେଖାଯାଇଛି । ଠିକ୍ ସେହିପରି ସର୍ପ ଓ ବୃକ୍ଷ ଇତ୍ୟାଦିର ପୂଜା ଆଦିମମାନଙ୍କ ଧର୍ମରୁ ହିନ୍ଦୁଧର୍ମ ମଧ୍ୟକୁ ଚାଲି ଆସିଛି । ଅପର ଧର୍ମମାନଙ୍କର ଛାୟାପାତଦ୍ୱାରା ତଥା ସମୟର ଅଗ୍ରଗତି ସଙ୍ଗେ ସଙ୍ଗେ ଆର୍ଯ୍ୟଧର୍ମ କ୍ରମେ ଏହିପରି ବିକୃତହୋଇ ପଡ଼ିଥିଲା ।

ଠିକ୍ ସେହିପରି ଅପର କ୍ଷେତ୍ରରେ ମଧ୍ୟ ବୈଦିକ ଆର୍ଯ୍ୟସମାଜ ଓ ସଭ୍ୟତା କ୍ରମେ ଜଟିଳତା ପଥରେ ଆଗେଇ ଯାଇଥିଲା । ଯଦିଚ ବୈଦିକ ଯୁଗର କେତେଜଣ ମାତ୍ର ମହାମନିଷୀଙ୍କଦ୍ୱାରା ବେଦ ରଚିତ ହୋଇଥିଲା, ତଥାପି ସେ ଧର୍ମଗ୍ରନ୍ଥ ସମଗ୍ର ଜାତିର ଜାତୀୟ ସମ୍ପଦରୂପେ ପରିଗଣିତ ହେଉଥିଲା । ପୃଥକ୍ ଗୋଟିଏ ବ୍ରାହ୍ମଣ ବା ପୂଜକ ସମ୍ପ୍ରଦାୟ ଋକ୍‌ବେଦ କାଳର ଆର୍ଯ୍ୟମାନଙ୍କୁ ସମ୍ପୂର୍ଣ୍ଣରୂପେ ଅଜଣା ଥିଲା । ଅପର ପକ୍ଷରେ ସେ ଯୁଗର ପ୍ରତ୍ୟେକ ଗୃହପିତା ପରିବାରର ଧର୍ମଯାଜକର କାର୍ଯ୍ୟ କରୁଥିଲେ ଏବଂ ଦେବତାମାନଙ୍କୁ ସ୍ତୁତିଃ ପ୍ରାର୍ଥନାପୂର୍ବକ ପରିବାରର ମଙ୍ଗଳ ପାଇଁ ପ୍ରଚୁର ବୃଷ୍ଟି, ପ୍ରଚୁର ଶସ୍ୟ ଇତ୍ୟାଦିର କାମନା କରୁଥିଲେ । ଅବଶ୍ୟ ପ୍ରତ୍ୟେକ ଗୃହସ୍ୱାମୀ ନିଜ ହସ୍ତରେ ଦେବାରାଧନା ଇତ୍ୟାଦି ସମସ୍ତ ପ୍ରକାର ଧର୍ମ-କାର୍ଯ୍ୟ କରୁଥିଲେ ସୁଦ୍ଧା ତାହାଙ୍କୁ ସେ କାର୍ଯ୍ୟ ସଙ୍ଗେ ସଙ୍ଗେ ଯୁଦ୍ଧ ଏବଂ କୃଷିକାର୍ଯ୍ୟ ମଧ୍ୟ କରିବାକୁ ହେଉଥାଏ । ଅର୍ଥାତ୍, ଋକ୍‌ବେଦର ଆର୍ଯ୍ୟ ସେ ଥିଲେ ଏକାଧାରରେ ପୂଜକ, କୃଷକ ଏବଂ ଯୋଦ୍ଧା । ଏପରିକି ଯେଉଁ ମହର୍ଷିମାନେ ନିଜେ ବେଦ ରଚନା କରୁଥିଲେ ସେମାନେ ସମସ୍ତେ ମଧ୍ୟ ପାରିବାରିକ ଗୃହକାର୍ଯ୍ୟ, କୃଷି ଇତ୍ୟାଦିରେ ବ୍ୟସ୍ତ ରହୁଥିଲେ ଏବଂ ଦରକାରବେଳେ ହଳ ତ୍ୟାଗ କରି ଶତ୍ରୁ ବିରୁଦ୍ଧରେ ଅସ୍ତ୍ର ଧାରଣ କରିବାକୁ ମଧ୍ୟ ପ୍ରସ୍ତୁତ ହୋଇ ପଡ଼ୁଥିଲେ । ଏହାହିଁ ଥିଲା ବୈଦିକ ଆର୍ଯ୍ୟମାନଙ୍କର କାର୍ଯ୍ୟନିପୁଣତାର ପରିଚୟ । ପରବର୍ତ୍ତୀ କାଳରେ

ଦେବାରାଧନା, କୃଷି ଏବଂ ଯୁଦ୍ଧ ଏ ତିନି ମୁଖ୍ୟ କାର୍ଯ୍ୟ ସମସ୍ତ ଆର୍ଯ୍ୟଙ୍କର ସମବେତ କର୍ତ୍ତବ୍ୟ ରୂପେ ଆଉ ରହିଲା ନାହିଁ । ତାହାହିଁ ହେଲା ପ୍ରାଚୀନ ଆର୍ଯ୍ୟମାନଙ୍କ ମଧ୍ୟରେ ଜାତି ପ୍ରଥାର ସୃଷ୍ଟି । ପୂଜକ, କୃଷକ ଏବଂ ଯୋଦ୍ଧା ଏ ତିନିହେଁ ପୃଥକ୍ ଜାତିରେ ପରିଣତ ହୋଇଗଲେ । କାଳକ୍ରମେ ଏ ତିନି ଜାତି ଅଗଣିତ ଜାତିରେ ପରିଣତ ହୋଇଗଲେ । ଜାତିପ୍ରଥା ହିନ୍ଦୁଧର୍ମକୁ ଅଧଃପତନ ଦିଗକୁ ଟାଣି ନେଇଛି କିମ୍ବା ହିନ୍ଦୁର ସେହି ପ୍ରାଚୀନ ଧର୍ମକୁ ପୂଜକ ସମ୍ପ୍ରଦାୟର ଅଭେଦ୍ୟ ଦୁର୍ଗ ମଧ୍ୟରେ ନିରାପଦ ରଖି ଧର୍ମଧ୍ୱଂସୀ ବିଦେଶୀମାନଙ୍କ କବଳରୁ ତାହାକୁ ରକ୍ଷା କରିଛି ସେ ବିଷୟ ନିଶ୍ଚୟ ଚିନ୍ତାର ସାମଗ୍ରୀ । କିନ୍ତୁ ସେ ଯାହାହେଉ, ଋକ୍‌ବେଦର ଆର୍ଯ୍ୟ-ମାନଙ୍କୁ ଜାତି କ'ଣ ତାହା ସମ୍ପୂର୍ଣ୍ଣରୂପେ ଅଜଣା ଥିଲା । ଧର୍ମ ନାମରେ ଜଣକୁ ଉଚ୍ଚାସନ ଦେବା ଏବଂ ଅପର ଜଣକୁ ନିମ୍ନାସନ ଦେବା, ଧର୍ମର ତଥ୍ୟ କେତେକ ମୁଷ୍ଟିମେୟ ମନୁଷ୍ୟ ବ୍ୟତୀତ ଅନ୍ୟମାନଙ୍କୁ ଅଜଣା ରହିବା, ଏ ସମସ୍ତ ସଙ୍କୀର୍ଣ୍ଣତା ବୈଦିକ ଯୁଗର ମନୁଷ୍ୟ ମଧ୍ୟରେ ପ୍ରବେଶ କରି ନ ଥିଲା । ସଂକ୍ଷେପରେ, ପରବର୍ତ୍ତୀ ହିନ୍ଦୁଧର୍ମର ସେହି ଅସଂଖ୍ୟ ଦେବଦେବୀ, ଯେଉଁମାନଙ୍କ ମଧ୍ୟରୁ ଅନେକେ ରୋଗ, ବ୍ୟାଧି, ପଶୁ, ସରୀସୃପ, ବୃକ୍ଷାଦିର ପ୍ରତିନିଧିତ୍ୱ କରନ୍ତି ; ସଂଖ୍ୟାହୀନ ପର୍ବ ପଦ୍ଧତି ଯେଉଁମାନଙ୍କର କିଛି ମୂଲ୍ୟ ନ ଥିବାହିଁ ସମ୍ଭବପର ; ନାନାପ୍ରକାରର ମନ୍ତ୍ର, ତନ୍ତ୍ର, କୁସଂସ୍କାର, ଅନ୍ଧ ବିଶ୍ୱାସ ଯାହାସବୁ ପ୍ରକୃତ ଧର୍ମକୁ ଅନ୍ଧକାରାଚ୍ଛନ୍ନ କରି ରଖିଛି ; ଧର୍ମ ନାମରେ ନରବଳି, ପଶୁବଳି ଇତ୍ୟାଦି ହିଂସାତ୍ମକ କାର୍ଯ୍ୟ ଯାହାପାଇଁ ହିନ୍ଦୁଧର୍ମ ବାସ୍ତବରେ ଲଜ୍ଜିତ ; ଦେବଦେବୀଙ୍କୁ କେନ୍ଦ୍ରୀଭୂତ କରି ବିବିଧ ପ୍ରକାର ଗଳ୍ପ ଯେଉଁ-ସବୁ ମଧ୍ୟରେ ଅନେକାନେକ ନୀତିହୀନ, ଅବାନ୍ତର ଘଟଣାର ଉଲ୍ଲେଖ କରା-ଯାଇଛି , ଏ ସବୁ ଋକ୍‌ବେଦ ଯୁଗର ଧର୍ମ ମଧ୍ୟକୁ ପ୍ରବେଶ କରି ନ ଥିଲା । ଅପର ଦିଗରେ, ସରଳ ପ୍ରକୃତି ପୂଜାରୁ ସର୍ବଶକ୍ତିମାନ୍ ପରମପିତାଙ୍କର ଆରାଧନା, ବୈଚିତ୍ର୍ୟମୟ ସୃଷ୍ଟି ମଧ୍ୟରେ ସୃଷ୍ଟିକର୍ତ୍ତାଙ୍କର ସତ୍ତା ନିରୂପଣ ଏବଂ ସେହି ପରମେଶ୍ୱର ଏବଂ ତାହାଙ୍କ ସୃଷ୍ଟି ପ୍ରକୃତି ଉଦ୍ଦେଶ୍ୟରେ ସ୍ତୁତିଗାନ, ଏହାହିଁ ଥିଲା ଋକ୍‌ବେଦର ଧର୍ମ । ଏହି ସରଳ ଧର୍ମ ମଧ୍ୟରେ ଯେଉଁ ମହତ୍ ଭାବଧାରା ଏବଂ ଉନ୍ନତ ଚିନ୍ତାଶକ୍ତି ଦେଖିବାକୁ ମିଳେ ତାହା ଋକ୍‌ବେଦର ଧର୍ମକୁ ସନାତନ ହିନ୍ଦୁଧର୍ମର ମେରୁଦଣ୍ଡରୂପେ କାର୍ଯ୍ୟ କରିବାକୁ ସକ୍ଷମ କରି ପାରିଛି । ଋକ୍ ସଂହିତାର ଶ୍ଳୋକ ଦେହରେ ଦେବତା ଉଦ୍ଦେଶ୍ୟରେ ଯେଉଁ ପ୍ରାର୍ଥନା ଦେଖିବାକୁ ମିଳେ ତା ମୂଳରେ ରହିଛି ମନୁଷ୍ୟର ଭକ୍ତି ; ଯାଗ ଯଜ୍ଞାଦି ମୂଳରେ ଦେଖିବାକୁ ମିଳେ କର୍ମ ; ଏବଂ ପରମପିତା ପରମେଶ୍ୱରଙ୍କର ସତ୍ତା ନିରୂପଣ ମୂଳରେ ରହିଛି ଜ୍ଞାନ । ଏହି ଭକ୍ତି, କର୍ମ ଏବଂ ଜ୍ଞାନ ଋକ୍‌ବେଦ ଧର୍ମର ମୂଳମନ୍ତ୍ର ଏବଂ ଏହାହିଁ ଚିରଦିନ ବ୍ୟାପୀ ସନାତନ ହିନ୍ଦୁଧର୍ମର ମେରୁଦଣ୍ଡ । କାଳକ୍ରମେ ବୈଦିକ ଧର୍ମ ନିଜର କଳେବର ବୃଦ୍ଧି କରିବାକୁ ଯାଇ ଧୀରେ ଧୀରେ ମ୍ଳାନ ବିଜଡ଼ିତ ହୋଇ ପଡ଼ିଥିଲା । ବୈଦିକ ଯୁଗର ଶେଷ ଭାଗକୁ ଋକ୍‌ବେଦର ଧର୍ମ ଅନେକ ଦିଗରେ ପରିବର୍ତ୍ତିତ ହେବାକୁ

ବସିଥିଲା । କ୍ରମେ ଦେବ ପୂଜକମାନେ ଗୋଟିଏ ପୃଥକ ସମ୍ପ୍ରଦାୟ ଗଠନ କରି ଧର୍ମ ଉପରେ ଏକାଧିପତ୍ୟ ସ୍ଥାପନ ପାଇଁ ପ୍ରୟାସୀ ହୋଇ ଉଠିଥିଲେ । ଏହି ସମ୍ପ୍ରଦାୟର ପ୍ରଭାବରେ ମନୁଷ୍ୟର ଧର୍ମ ପ୍ରତି ଆସ୍ଥା କମି ଆସିଥିଲା ଏବଂ ମନୁଷ୍ୟର ଆତ୍ମ ବିଶ୍ୱାସ ମଧ୍ୟ ହ୍ରାସ ପାଇଥିଲା । ଏହାର ଫଳରେ କ୍ରମେ ପୂଜକ ସମ୍ପ୍ରଦାୟର ଅତ୍ୟାଚାର ଏବଂ ଅନ୍ୟମାନଙ୍କର ଅନ୍ଧବିଶ୍ୱାସ ପ୍ରଶ୍ରୟ ପାଇଥିଲା । ସେହି ଉନ୍ନତ, ସୁମହାନ୍, ଭାବପ୍ରବଣ ଋକ୍ ବୈଦିକ ଧର୍ମ ଶେଷରେ କୁସଂସ୍କାର ଏବଂ ଅନ୍ଧବିଶ୍ୱାସ ଆଡ଼କୁ ଧୀରେ ଧୀରେ ଗତି କରିଥିଲା । ବୈଦିକ ଯୁଗ ପରେ ଯେତେବେଳେ ପୌରାଣିକ ବା ରାମାୟଣ-ମହାଭାରତର ଯୁଗ ଆରମ୍ଭ ହୁଏ ସେତେବେଳକୁ ଆଦି ଆର୍ଯ୍ୟମାନଙ୍କ ପ୍ରାଚୀନ ବୈଦିକ ଧର୍ମ ବହୁମୁଖୀ ହିନ୍ଦୁ ଧର୍ମରେ ପରିଣତ ହୋଇ ସାରିଥିଲା । ତଥାପି, ଶତ କୁସଂସ୍କାର, ଶତ ଅନ୍ଧବିଶ୍ୱାସ, ଶତ ପରିବର୍ତ୍ତନ ସତ୍ତ୍ୱେ ପ୍ରାଚୀନ ଭାରତର ସେହି ବୈଦିକ ଧର୍ମ, ସେହି କର୍ମ, ଭକ୍ତି ଏବଂ ଜ୍ଞାନଯୋଗ, ସେହି ଭୂତ-ଭବିଷ୍ୟତ-ବର୍ତ୍ତମାନବ୍ୟାପୀ ଦୃଶ୍ୟମାନ ବ୍ରହ୍ମାଣ୍ଡବ୍ୟାପୀ ଏବଂ ତଦତୀତ ସର୍ବବ୍ୟାପୀ ସର୍ବଶକ୍ତିମାନ୍ ମହାପୁରୁଷଙ୍କର ସ୍ଥିତି ଉପରେ ବିଶ୍ୱାସ ଏବଂ ସେହି ସର୍ବସୃଷ୍ଟିକର୍ତ୍ତା, ବ୍ରହ୍ମାଣ୍ଡନିୟନ୍ତା ଈଶ୍ୱରଙ୍କ ଆରାଧନା, ଏବଂ ଏହି ଜ୍ଞାନ ଓ ଭକ୍ତି ସହ ମନୁଷ୍ୟର ନୀତିପୂର୍ଣ୍ଣ, ଧର୍ମପୂର୍ଣ୍ଣ ନିରନ୍ତର କର୍ମ,— ଏ ସମସ୍ତ ଭାରତୀୟ ଧର୍ମ ଏବଂ ଦର୍ଶନ ଧାରାର ଯୁଗ ଯୁଗ ବ୍ୟାପୀ ବିଗ ନିର୍ଣ୍ଣୟକାରୀ । ଋକ୍‌ବେଦର ଆଦର୍ଶ ଧର୍ମ ଭାରତୀୟ ବୈଦିକ ସଭ୍ୟତାର ଏକ ବିଶିଷ୍ଟ ଅଙ୍ଗ ।

ଧର୍ମ ବ୍ୟତୀତ ଉନ୍ନତ ବୈଦିକ ସଭ୍ୟତାର ଅପର ଅଙ୍ଗ ହେଉଛି ସେ ଯୁଗର ସାମାଜିକ ଅବସ୍ଥା । ବୈଦିକ ସାମାଜିକ ଅବସ୍ଥାର ପରିଚୟ ସେହି ବେଦରୁ ହିଁ ମିଳେ । ଅନେକ କହନ୍ତି ସେ ବୈଦିକ ସମାଜରେ ଜାତିପ୍ରଥାର ପ୍ରଚଳନ ନ ଥିଲା । ମନୁଷ୍ୟ ମନୁଷ୍ୟ ମଧ୍ୟରେ ଭେଦାଭେଦ ଉଚ୍ଚ ନୀଚ ଭାବ ଏବଂ ଶ୍ରେଣୀ ବିଭାଗ ଯେଉଁସବୁ କି ପରବର୍ତ୍ତୀ ହିନ୍ଦୁ ସମାଜକୁ ଅବଶ କରିପକାଇଥିଲା ସେ ସବୁ ବୈଦିକ ସମାଜ ମଧ୍ୟରେ ପ୍ରବେଶ କରି ନ ଥିଲା । ଋକ୍‌ବେଦରେ 'ବର୍ଣ୍ଣ' ଶବ୍ଦର ଉଲ୍ଲେଖ ଅଛି । ଏହି 'ବର୍ଣ୍ଣ' ହିଁ ପରବର୍ତ୍ତୀ ଯୁଗର ସଂସ୍କୃତ ଭାଷାରେ 'ଜାତି' ଅର୍ଥରେ ପ୍ରସିଦ୍ଧ । କିନ୍ତୁ ଋକ୍‌ବେଦରେ 'ବର୍ଣ୍ଣ' ଶବ୍ଦର ଅର୍ଥ 'ଜାତି' ନୁହେଁ । ଋକ୍‌ବେଦରେ କେବଳ ଆର୍ଯ୍ୟମାନଙ୍କୁ ଭାରତର ଆଦିମମାନଙ୍କ ପାଖରୁ ପୃଥକ୍ ବୋଲି ପରିଚୟ ଦେବାପାଇଁ 'ବର୍ଣ୍ଣ' ଶବ୍ଦର ବ୍ୟବହାର କରାଯାଇଛି, କିନ୍ତୁ ଆର୍ଯ୍ୟ-ମାନଙ୍କ ମଧ୍ୟରେ ଜାତିଗତ ପାର୍ଥକ୍ୟ ଦେଖାଇବାକୁ ସେ ଶବ୍ଦର ବ୍ୟବହାର କରାଯାଇ ନାହିଁ । ବେଦରେ 'କ୍ଷତ୍ରିୟ' ଶବ୍ଦର ବ୍ୟବହାର ମଧ୍ୟ ଦେଖିବାକୁ ମିଳେ । କିନ୍ତୁ ସେଠାରେ 'କ୍ଷତ୍ରିୟ' ଶବ୍ଦର ଅର୍ଥ ହେଉଛି ବଳବାନ୍ ଏବଂ ଏ ଶବ୍ଦ ଦେବତା-ମାନଙ୍କର ଏକ ବିଶେଷଣ ରୂପେ ବ୍ୟବହୃତ ହୋଇଛି । ଅଥଚ ପରବର୍ତ୍ତୀ ସମୟରେ ଏହି 'କ୍ଷତ୍ରିୟ' ଶବ୍ଦର ଅର୍ଥ ହେଉଛି ଏକ ଜାତି ବିଶେଷ । ସେହିପରି

ଋଗ୍‌ବେଦରେ ଯେଉଁ 'ବିପ୍ର' ଶବ୍ଦ ଦେଖିବାକୁ ମିଳେ ତାହାର ଅର୍ଥ ହେଉଛି 'ଜ୍ଞାନୀ' ଏବଂ ଏହି ବିଶେଷଣଟି ମୁଖ୍ୟତଃ ଦେବତାମାନଙ୍କର ଗୁଣବାଚକ ଏକ ଶବ୍ଦ । କିନ୍ତୁ ପରବର୍ତ୍ତୀ ସଂସ୍କୃତରେ ଏହି 'ବିପ୍ର' ଶବ୍ଦର ଅର୍ଥ ହୋଇଥିଲା 'ପୂଜକ ସମ୍ପ୍ରଦାୟ' । ସେହିପରି 'ବ୍ରାହ୍ମଣ' ଶବ୍ଦ ଯାହାକି ଋଗ୍‌ବେଦରେ ବହୁ ସ୍ଥାନରେ ବ୍ୟବହୃତ ହୋଇଛି ତାହାର ପ୍ରକୃତ ଅର୍ଥ ହେଉଛି ଯେଉଁମାନେ ମନ୍ତ୍ର ରଚନା କରନ୍ତି । ଏହି ଶ୍ଳୋକ ରଚନାକାରୀମାନଙ୍କୁହିଁ ବ୍ରାହ୍ମଣ ବୋଲି ଶବ୍ଦଦ୍ୱାରା ଆଖ୍ୟାତ କରାଯାଉଥିଲା ଏବଂ ଯେ କୌଣସି ବୈଦିକଆର୍ଯ୍ୟ ଶ୍ଳୋକ ରଚନା-ପୂର୍ବକ ଏପରି ଏକ ବିଶେଷଣ ପାଇ ପାରୁଥିଲେ । କିନ୍ତୁ ପରବର୍ତ୍ତୀ କାଳରେ ଶ୍ଳୋକ ରଚନା ଇତ୍ୟାଦି କିଛି ନ କରି ମଧ୍ୟ ଥୋକାଏ ନିଜକୁ ବ୍ରାହ୍ମଣ ନାମରେ ପରିଚିତ କରାଇ ଏକ ପୃଥକ ଜାତି ଗଠନ କରିଥିଲେ । ଅନେକ ଆଧୁନିକ ଧର୍ମ-ଧ୍ୱଜୀ ପଣ୍ଡିତ ବେଦରେ 'ବର୍ଣ୍ଣ', 'କ୍ଷତ୍ରିୟ', 'ବିପ୍ର', 'ବ୍ରାହ୍ମଣ' ପ୍ରଭୃତି ଶବ୍ଦର ବ୍ୟବହାର ଦେଖି ସେହି ପ୍ରାଚୀନ ବୈଦିକ ଯୁଗରେ ଜାତି ପ୍ରଥାର ପ୍ରଚଳନ ଥିଲା ବୋଲି ପ୍ରମାଣ କରିବାକୁ ଚେଷ୍ଟା କରନ୍ତି । କିନ୍ତୁ ଜାତିପ୍ରଥା ଏକ ପରବର୍ତ୍ତୀ ଯୁଗର ଅନୁଷ୍ଠାନ । ବୈଦିକ ଯୁଗରେ ଏହାର ସତ୍ତା ମଧ୍ୟ ନ ଥିଲା ଏବଂ ଉପରଲିଖିତ ଶବ୍ଦଗୁଡ଼ିକ କୌଣସି ପ୍ରକାର ଜାତିବାଚକ ଅର୍ଥ ନ ବୁଝାଇ ସମ୍ପୂର୍ଣ୍ଣ ଭିନ୍ନାର୍ଥରେ ବ୍ୟବହୃତ ହେଉଥିଲା ।

ବୈଦିକ ସମାଜରେ ନାରୀର ସ୍ଥାନ ବୈଦିକ ସଭ୍ୟତାର ଅପର ଏକ ବୈଶିଷ୍ଟ୍ୟ । ସେକାଳର ନାରୀମାନଙ୍କୁ ସଂକୀର୍ଣ୍ଣ ପରିସର ମଧ୍ୟରେ ଆବଦ୍ଧ ରଖିବା ପାଇଁ କୌଣସି ଚେଷ୍ଟା କରାଯାଇ ନ ଥିଲା । ସେମାନଙ୍କର ସ୍ୱାଧୀନ ଶିକ୍ଷା ଓ ସ୍ୱାଧୀନ ଜୀବନ ଯାପନ ବିରୁଦ୍ଧରେ ତଥାକଥିତ ସାମାଜିକ ଆଇନକାନୁନ ବୈଦିକ ଋଷିମାନେ ତିଆରି କରି ନ ଥିଲେ । ବେଦରେ ଅବଗୁଣ୍ଠିତା ନାରୀ ଏବଂ କନ୍ୟାମାନଙ୍କର ଉଲ୍ଲେଖ ଅଛି, କିନ୍ତୁ ସେହି ଅବଗୁଣ୍ଠନ ତଳେ ସେମାନଙ୍କୁ ଅନ୍ଧ କରି ଦେବାର କୌଣସି ଚେଷ୍ଟା ଦେଖିବାକୁ ମିଳେ ନାହିଁ । ବୈଦିକ ରମଣୀମାନେ ସମାଜରେ ଯଥେଷ୍ଟ ପ୍ରତିପତ୍ତି ଲାଭ କରିଥିଲେ । ପୂଜା, ଆରାଧନା, ଯାଗ, ଯଜ୍ଞ ପ୍ରଭୃତି ଧର୍ମକାର୍ଯ୍ୟମାନଙ୍କରେ ପୁରୁଷମାନଙ୍କ ସହ ସେମାନଙ୍କର ସମାନ ସ୍ଥାନ ଥିଲା । ଅଧିକନ୍ତୁ, ବୈଦିକ ନାରୀମାନଙ୍କର ଶିକ୍ଷା ଏବଂ ସଂସ୍କୃତି ଏତେଦୂର ଉନ୍ନତ ଥିଲା ଯେ ସେମାନଙ୍କ ମଧ୍ୟରୁ କେହି କେହି ଋଷିପ୍ରାଣା ନାରୀଙ୍କୁ ଋଷିମାନଙ୍କ ପରି ମନ୍ତ୍ର ରଚନା କରୁଥିବାର ମଧ୍ୟ ଦେଖାଯାଏ । ବୈଦିକ ଯୁଗର ବିଦୁଷୀ ନାରୀ ବିଶ୍ୱବାରାଙ୍କ ନାମ ଭାରତୀୟ ରମଣୀମାନଙ୍କର ଚିର ସ୍ମରଣୀୟ ରହିବା ଉଚିତ । ମନ୍ତ୍ର ରଚନାରତା ଏହି ପରମ ଧାର୍ମିକା ନାରୀ ବିବାହିତ ନର ନାରୀ-ମାନଙ୍କ ମଧ୍ୟରେ ଚିରକାଳ ଯାବତ୍ ଯେପରି ଧର୍ମ, ଶାନ୍ତି ଏବଂ ଚରିତ୍ରଗତ ସଦ୍ଭାବ ଅକ୍ଷୁଣ୍ଣ ରହେ ସେ ଥାଇଁ ଅଗ୍ନି ଦେବତାଙ୍କ ଉଦ୍ଦେଶ୍ୟରେ ସକରୁଣ ସ୍ତୁତିଗାନ

କରିଥିଲେ । ବଶିଷ୍ଠଙ୍କ ପରି ଅପର ବୈଦିକ ନାରୀଋଷିମାନଙ୍କର ନାମ ବେଦରେ ଉଲ୍ଲିଖିତ ଅଛି ଏବଂ ସେହି ନାରୀଋଷିମାନଙ୍କର ପୁଣ୍ୟକର୍ମ ବୈଦିକ ନାରୀ ସଭ୍ୟତାର ପରିଚୟ ଦିଏ । ବୈଦିକ ସମାଜରେ ବିବାହ ଏକ ବାଧ୍ୟତା-ମୂଳକ ଅନୁଷ୍ଠାନ ନ ଥିଲା । କାରଣ ଅବିବାହିତା ରମଣୀମାନଙ୍କୁ ପିତୃ ଗୃହରେ ଅବସ୍ଥାନପୂର୍ବକ ପୈତୃକ ସମ୍ପତ୍ତି ଭୋଗ କରୁଥିବାର ଉଦାହରଣ ବେଦରେ ଦେଖିବାକୁ ମିଳେ । ସେ ଯୁଗରେ ବିବାହ ସମ୍ବନ୍ଧରେ କନ୍ୟାମାନଙ୍କର ଗୋଟିଏ ମତାମତ କିଛି ଥିଲା ବୋଲି ଅନୁମାନ କରିବା ଭୁଲ ନୁହେଁ । ପରବର୍ତ୍ତୀ ଯୁଗରେ କନ୍ୟାମାନେ ସ୍ୱୟମ୍ବର ସଭାରେ ନିଜର ପତିମାନଙ୍କୁ ବରଣ କରି ନେଉଥିଲେ । ବୈଦିକ ଯୁଗରେ ଏପରି ସ୍ୱୟମ୍ବର ପ୍ରଥା ନ ଥିଲେ ମଧ୍ୟ ବିବାହ ପୂର୍ବରୁ ବର ସମ୍ବନ୍ଧରେ କନ୍ୟାର ମତ ନିଆ ଯାଉଥିଲା । ଅବଶ୍ୟ ପ୍ରବୀଣ ଗୃହ-ସ୍ୱାମୀର ମତ ଯେ ଶେଷ ସିଦ୍ଧାନ୍ତ ଥିଲା ଏଥିରେ ସନ୍ଦେହ କରାଯାଇ ନ ପାରେ । ବୈଦିକ ଯୁଗରେ ବାଲ୍ୟବିବାହ ପରି ସାମାଜିକ କୁସଂସ୍କାର ନ ଥିଲା । ଋକ୍‌ବେଦର ପ୍ରଥମ ଭାଗରେ ବହୁ ବିବାହ ପ୍ରଥା ଦେଖିବାକୁ ମିଳେ ନାହିଁ । କିନ୍ତୁ ପରେ ରାଜା ଓ ଧନିକମାନଙ୍କ ମଧ୍ୟରେ ଏକାଧିକ ପତ୍ନୀ ଗ୍ରହଣ ବ୍ୟବସ୍ଥା ପ୍ରଚଳନ ହୋଇ ପଡ଼ିଥିଲା । ଏହି ବହୁ ବିବାହ ପ୍ରଥା ପୃଥିବୀର ସବୁ ପ୍ରାଚୀନ ଜାତି ଏବଂ ପ୍ରାଚୀନ ଧର୍ମରେ ଦେଖାଯାଏ । ବୈଦିକ ଭାରତରେ ମଧ୍ୟ ଉଣା ଅଧିକ ଏହାର ପ୍ରଚଳନ ଥିଲା । ସେ ଯୁଗରେ ବିଧବା ବିବାହର ପ୍ରଚଳନ ଥିଲା ଏବଂ ଏହାର ଯଥେଷ୍ଟ ପ୍ରମାଣ ବୈଦିକ ଶାସ୍ତ୍ରରୁ ମିଳେ । ସତୀଦାହ ପରି ନୃଶଂସ, ଅମାନୁଷିକ କୁସଂସ୍କାର ପବିତ୍ର ବୈଦିକ ଯୁଗର ଆର୍ଯ୍ୟ ସମାଜକୁ କଳଙ୍କିତ କରି ନ ଥିଲା । କିନ୍ତୁ ପରବର୍ତ୍ତୀ କାଳରେ ଅନ୍ଧ ବିଶ୍ୱାସୀ, ସ୍ୱାର୍ଥପର କେହି କେହି ତଥାକଥିତ ପଣ୍ଡିତ ଋକ୍‌ବେଦର କୌଣସି ସ୍ଥାନରେ ଗୋଟିଏ ମାତ୍ର ଶବ୍ଦର ପରିବର୍ତ୍ତନ କରି ଦେଇ ବେଦରେ ସତୀଦାହର ଉଲ୍ଲେଖ ଅଛି ବୋଲି ପ୍ରମାଣ କରିବାକୁ ପଶ୍ଚାଦ୍‌ପଦ ହୋଇ ନ ଥିଲେ ଏବଂ ସେମାନଙ୍କର ସେହି ପାପର ପରିଣାମ ସ୍ୱରୂପ କେଉଁ ଅଜଣା କାଳରୁ କେତେ ଅଗଣିତ ନିରୀହ ବିଧବା ନାରୀଙ୍କୁ ମୃତ ସ୍ୱାମୀର ଜ୍ୱଳନ୍ତ ଚିତାରେ ଜୀବିତାବସ୍ଥାରେ ଦଗ୍ଧୀଭୂତ ହେବାକୁ ହୋଇଛି । ପବିତ୍ର ଋକ୍‌ବେଦରେ ଏପରି ଶବ୍ଦ ପରିବର୍ତ୍ତନ କରି ସେ ମହାନ୍ ଗ୍ରନ୍ଥର ସ୍ଥାନେ ସ୍ଥାନେ କଦର୍ଯ୍ୟ ଅର୍ଥର ସୃଷ୍ଟି କରିବା ବାସ୍ତବିକ ପରବର୍ତ୍ତୀ ଯୁଗର ହିନ୍ଦୁ ପଣ୍ଡିତମାନଙ୍କର ଯେ ଅତି ଜଘନ୍ୟ ନୀଚତାର ପରିଚୟ ଦିଏ ଏଥିରେ ସନ୍ଦେହ ନାହିଁ । ବିଶେଷତଃ, ବେଦର

କଦର୍ଥ କରି ସତୀଦାହର ଯେଉଁ ଅଭିନବ ସୃଷ୍ଟି ତାହା ହିନ୍ଦୁ ସମାଜର ଏକ ଅଲିଭା କଳଙ୍କ ।[1] କିନ୍ତୁ ପରବର୍ତ୍ତୀ ଯୁଗର ଏପରି ପାପ ପାଇଁ ବୈଦିକ ସଭ୍ୟତା ଦାୟୀ ନୁହେଁ କିମ୍ବା ବୈଦିକ ସଭ୍ୟତା ଜୀବନ୍ତ ନାରୀକୁ ଦଗ୍ଧୀଭୂତ କରି ବର୍ବରୋଚିତ ଅସଭ୍ୟତାର ମଧ୍ୟ ପରିଚୟ ଦେଇ ନାହିଁ । ଯେଉଁ ଯୁଗର ନାରୀକୁ ବାଲ୍ୟ ବିବାହର ବିଷମୟ ପରିଣାମ ଭୋଗ କରିବାକୁ ହୋଇ ନାହିଁ, ଯେଉଁ ଯୁଗର ବିଧବାକୁ ଅରକ୍ଷଣୀୟାରୂପେ ଦ୍ୱାରେ ଦ୍ୱାରେ ଭିକ୍ଷାପାତ୍ର ହସ୍ତରେ ଲଜ୍ଜିତ ହେବାକୁ ହୋଇ ନାହିଁ, କିମ୍ବା ଚିତାଶଯ୍ୟାରେ ଶବର ଅଙ୍କଶାୟିନୀରୂପେ ଭସ୍ମିଭୂତ ହେବାକୁ ହୋଇ ନାହିଁ, ଯେଉଁ ଯୁଗର ନାରୀକୁ ଅବଗୁଣ୍ଠନ ତଳେ ଦିନପରେ ଦିନ ସାରାଜୀବନ ବିତବାକୁ ହୋଇ ନାହିଁ, ଯେଉଁ ଯୁଗର ନାରୀ ଶିକ୍ଷାଦୀକ୍ଷାରେ ପୁରୁଷର ସମକକ୍ଷରୂପେ ସମାଜରେ ସମ୍ମାନ ଦାବୀ କରିଛି, ଯେଉଁ ଯୁଗର ନାରୀର କଣ୍ଠରୁ ବେଦମନ୍ତ୍ର ନିସୃତ ହୋଇଛି, ଯେଉଁ ଯୁଗର ନାରୀ ଅବିବାହିତା ରହିସୁଦ୍ଧା ପିତୃଗୃହରେ ପୁରୁଷୋଚିତ କର୍ମକୁଶଳ ଦେଖାଇ ପାରିଛି ଏବଂ ଯେଉଁ ଯୁଗର ନାରୀ ଯାଗ ଯଜ୍ଞ ତଥା ଗାର୍ହସ୍ଥ୍ୟ ଧର୍ମ ଇତ୍ୟାଦିରେ ସ୍ୱନିପୁଣତାର ପରିଚୟ ଦେଇଛି, ସେ ଯୁଗର ସଭ୍ୟତା, ସେ ଯୁଗର ସମାଜ ଏବଂ ସେ ଯୁଗର ନାରୀ ଏ ତିନି ସବୁ ଯୁଗର ଆଦର୍ଶ ।

ବୈଦିକ ଆର୍ଯ୍ୟମାନଙ୍କର ସର୍ବପ୍ରଧାନ ବ୍ୟବସାୟ ଥିଲା କୃଷି । ଋକ୍‌ବେଦରେ ବାରମ୍ବାର ଏ ବିଷୟ ଉଲ୍ଲେଖ କରାଯାଇଛି । ବିଶେଷଜ୍ଞମାନଙ୍କ ମତରେ 'ଆର୍ଯ୍ୟ' ଶବ୍ଦର ବ୍ୟୁତ୍ପତ୍ତି ମୂଳରେ ଯେଉଁ ଅର୍ଥ ରହିଛି ତାହା ହେଉଛି 'କୃଷିକାର୍ଯ୍ୟ' । ମଧ୍ୟ-ଏସିଆରେ ବସବାସ କରୁଥିଲାବେଳେ 'ଆର୍ଯ୍ୟ' ଶବ୍ଦର ଉଦ୍ଭାବନ କରାଯାଇଥିଲା ବୋଲି ବିଶ୍ୱାସ । ସେହି ପ୍ରାଚୀନ ଗୃହରେ ମଧ୍ୟ ଆର୍ଯ୍ୟମାନେ କୃଷିକୁ ପ୍ରଧାନ ବ୍ୟବସାୟ ରୂପେ ଦେଖି ଆସୁଥିଲେ ଏବଂ ସେଠାରୁ ଆସି ଉତ୍ତର ପଞ୍ଚନଦ ଖଣ୍ଡରେ ସେହି କୃଷି ବିଦ୍ୟାର ଉନ୍ନତି ସାଧନ କରିଥିଲେ । ପ୍ରାଚୀନ ଆର୍ଯ୍ୟମାନଙ୍କର ଏହି କୃଷି ଜୀବିକା ଭାରତର ତଥା ପୃଥିବୀର ଏକ ଉନ୍ନତ ସଭ୍ୟତାର ପରିଚାୟକ । ଗୋଚାରଣ, ପଶୁପାଳନ ଏବଂ କୃଷି ଏହା ପ୍ରାଚୀନ ଆର୍ଯ୍ୟ ପଲ୍ଲୀବାସୀଙ୍କର ନିତ୍ୟ

---

1. ଋକ୍‌ବେଦର 'ଅଗ୍ରେ' (**Agre**) ଶବ୍ଦକୁ 'ଅଗ୍ନି' (**Agni**) ଶବ୍ଦରେ ପରିବର୍ତ୍ତନ କରି ପରବର୍ତ୍ତୀ ଯୁଗରେ ଏହି କଦର୍ଥର ସୃଷ୍ଟି କରାଯାଇଥିଲା ଯାହାର ବାଣୀରେ ବେଦରେ ସତୀଦାହ ଥିଲା ବୋଲି କଥିତ ହେଲା । କିନ୍ତୁ ଏ ଯୁଗର ପଣ୍ଡିତମାନେ ଏ ଗ୍ଲାନ ବାହାର କରିଛନ୍ତି । ଏହି ଶବ୍ଦ ପରିବର୍ତ୍ତନ ରୂପ ବ୍ୟଭିଚାର ବିରୁଦ୍ଧରେ **Prof. Max Muller** କହିଛନ୍ତି, **"This is perhaps the most flagrant instance of what can be done by an unscrupulous priesthood. Here have thousands of lives been sacrificed and a fanatical rebellion been threatened on the authority of a passage which was mangled, mistranslated and misapplied."**

ନୈମିତ୍ତିକ କର୍ମ ଥିଲା। ଏ ଯୁଗର ଭାରତବର୍ଷରେ ଯେତେପ୍ରକାର ଗୃହପାଳିତ ପଶୁ ଦେଖିବାକୁ ମିଳେ ସେହି ସୁଦୂର ବୈଦିକ ଯୁଗରେ ମଧ୍ୟ ସେହି ପଶୁମାନେ ଆର୍ଯ୍ୟମାନଙ୍କଦ୍ୱାରା ଗୃହପାଳିତ ପଶୁ ରୂପେ ବ୍ୟବହୃତ ହେଉଥିଲେ। ଆର୍ଯ୍ୟ ସଭ୍ୟତା ମୁଖ୍ୟତଃ ଗ୍ରାମ୍ୟ ସଭ୍ୟତା ଥିଲା। ନଦନଦୀର ସବୁଜ ଉପତ୍ୟକା ଏବଂ ତଟ ଦେଶରେ ଆର୍ଯ୍ୟମାନେ ସେମାନଙ୍କର ପଲ୍ଲୀବସତି ସ୍ଥାପନ କରୁଥିବେ ଏବଂ ପଲ୍ଲୀର ସବୁଜ ପ୍ରାଙ୍ଗଣରେ ପଶୁପାଳନ ଓ କୃଷିଦ୍ୱାରା ଏକ ସରଳ ଜୀବନ ଯାପନ ପନ୍ଥା ଅନୁସରଣ କରୁଥିବେ। ପ୍ରକୃତି ଗହଣରେ ସରଳ ପଲ୍ଲୀଜୀବନ ଯାପନ ଆର୍ଯ୍ୟ-ମାନଙ୍କୁ ଏକ ଦାର୍ଶନିକ ଜାତିରେ ପରିଣତ କରୁଥିଲା। ଅବଶ୍ୟ ପଲ୍ଲୀର ସରଳତା ମଧ୍ୟରେ ଆର୍ଯ୍ୟମାନେ ଯୁଦ୍ଧବିଦ୍ୟା ଭୁଲି ପାରି ନ ଥିଲେ। କାରଣ ବୈଦିକ ଯୁଗର ଆର୍ଯ୍ୟମାନଙ୍କୁ ସଦା ସର୍ବଦା ଅନାର୍ଯ୍ୟ ଏବଂ ଦ୍ରାବିଡ଼ମାନଙ୍କସହ ଯୁଦ୍ଧରତ ରହିବାକୁ ପଡ଼ୁଥିଲା। ସେଥିପାଇଁ ଆର୍ଯ୍ୟ ଦର୍ଶନ ପଛରେ ମନୁଷ୍ୟକୁ କର୍ମବୀର ହେବାପାଇଁ ଆହ୍ୱାନ ରହିଛି ଏବଂ ସେ ଯୁଗର ଆର୍ଯ୍ୟମାନଙ୍କ କର୍ମବୀର ହେବାକୁହିଁ ହୋଇଥିଲା। ଏକାଧାରେ ଜୀବନ ଯାପନ ପାଇଁ ପଶୁପାଳନ ଏବଂ କୃଷିକାର୍ଯ୍ୟ, ଆତ୍ମାର ଉନ୍ନତି ପାଇଁ ଉନ୍ନତ ଦର୍ଶନ ଚିନ୍ତା, ଏବଂ ଜାତିର ସମ୍ମାନ ଓ ଅସ୍ତିତ୍ୱ ରକ୍ଷାପାଇଁ ଶତ୍ରୁମାନଙ୍କ ସହ ଯୁଦ୍ଧ,ଏହା କେବଳ ସେହି କର୍ମବୀର ପ୍ରାଚୀନ ଆର୍ଯ୍ୟମାନଙ୍କ ପକ୍ଷେ ସମ୍ଭବପର ଥିଲା।

ବୈଦିକ ସଭ୍ୟତାର ବିଶଦ ବର୍ଣ୍ଣନା ଏଠାରେ ଅସମ୍ଭବ। ଉତ୍କଳ ଦେଶରେ ପ୍ରାଚୀନ ଆର୍ଯ୍ୟମାନଙ୍କର ଏହି ନିଷ୍କଳଙ୍କ ସଭ୍ୟତାର ଅବିକୃତ, ଅମିଶ୍ରିତ ପ୍ରଭାବ ପଡ଼ିପାରି ନ ଥିଲା। କାରଣ ଆଦି ବୈଦିକ ସଭ୍ୟତା ବା ଋଗ୍‌ବେଦ କାଳର ସଭ୍ୟତା ସମଗ୍ର ଭାରତବର୍ଷରେ ବିସ୍ତୃତ ଲାଭ କରିବାର ବହୁ ପୂର୍ବରୁ ସେ ସଭ୍ୟତାର ପରିବର୍ତ୍ତନ ଘଟିଥିଲା। ବୈଦିକ ସଭ୍ୟତାକୁ କେନ୍ଦ୍ରକରି ବୈଦିକ ଯୁଗ ପରେ ପରେ ଭାରତରେ ବିରାଟ ହିନ୍ଦୁ ସଭ୍ୟତା ଗଢ଼ି ଉଠିଥିଲା ଏବଂ ଆର୍ଯ୍ୟମାନେ ଯେତେବେଳେ ସମଗ୍ର ଭାରତ ଅଧିକାର କଲେ ସେତେବେଳେ ସେମାନେ ବୈଦିକ ସଭ୍ୟତାର ପରିବର୍ତ୍ତିତ ରୂପ ବା ହିନ୍ଦୁ ସଭ୍ୟତାକୁହିଁ ଭାରତ ବକ୍ଷରେ ବିସ୍ତାର କରିଥିଲେ। ଋଗ୍‌ବେଦର ପ୍ରାଚୀନତମ ଗୀତମାନଙ୍କରେ ଆର୍ଯ୍ୟମାନଙ୍କୁ ଭାରତ ସୀମାନ୍ତର ଗିରି-ବର୍ତ୍ମମାନଙ୍କ ପାଖରେ ଦେଖିବାକୁ ମିଳେ ଏବଂ ଋଗ୍‌ବେଦର ଶେଷାଂଶରେ ସେମାନଙ୍କୁ ଗଙ୍ଗା-ଯମୁନା ଉପତ୍ୟକାର ସମତଳ ପ୍ରଦେଶରେ ଆର୍ଯ୍ୟ ସଭ୍ୟତା ବିସ୍ତାର କରୁଥିବାର ଦେଖାଯାଏ। ବେଦର ଆରମ୍ଭ ଏବଂ ବେଦର ଶେଷ ଏହି ଦୁଇ ସୀମା ମଧ୍ୟରେ ସ୍ତରେ ସ୍ତରେ ଆର୍ଯ୍ୟମାନଙ୍କୁ ଉତ୍ତରରୁ ପୂର୍ବକୁ ପ୍ରସାର ଲାଭ କରୁଥିବାର ଦେଖାଯାଏ। ସର୍ବ ପ୍ରଥମେ ଆର୍ଯ୍ୟମାନଙ୍କୁ ଭାରତର ସୀମାନ୍ତରେ, ତା'ପରେ ପଞ୍ଜାବ ଖଣ୍ଡରେ ଏବଂ ତା'ପରେ ଯମୁନା-ଗଙ୍ଗା କୂଳରେ ଦେଖିବାକୁ ମିଳେ। ଉତ୍ତରରେ ହିମାଦ୍ରି, ପଶ୍ଚିମରେ ସିନ୍ଧୁନଦୀ ଏବଂ ସୁଲେମାନ ପର୍ବତ ଶ୍ରେଣୀ, ଦକ୍ଷିଣରେ ସିନ୍ଧୁ ଏବଂ ସମୁଦ୍ର ଏବଂ ପୂର୍ବରେ ଯମୁନା ଓ ଗଙ୍ଗାର ଉପତ୍ୟକା, ଏହାହିଁ

ବୈଦିକ ଆର୍ଯ୍ୟମାନଙ୍କର ସୀମା । ଏହି ସୀମା ମଧ୍ୟରେ ବୈଦିକ କବିମାନଙ୍କର ସମସ୍ତ ବେଦମନ୍ତ୍ର ନିସୃତ ହୋଇଥିଲା । ସେଥିପାଇଁ ଏହି ଭୂଖଣ୍ଡକୁ ଆର୍ଯ୍ୟମାନେ 'ବ୍ରହ୍ମର୍ଷିଦେଶ' ବା ପବିତ୍ର ବେଦ ଗାୟକମାନଙ୍କ ଦେଶ ବୋଲି ବର୍ଣ୍ଣନା କରିଥିଲେ । ଭାରତର ପ୍ରାଚୀନତମ ଆର୍ଯ୍ୟମାନଙ୍କୁ ଏ ସୀମା ବାହାରେ ଭାରତର ଅନ୍ୟାନ୍ୟ ଅଞ୍ଚଳମାନଙ୍କ ଅବସ୍ଥିତି ବିଷୟ ପ୍ରାୟ ଜଣା ନ ଥିଲା । କାରଣ ବୈଦିକ କବିମାନେ ଭାରତର ଯେଉଁ ଖଣ୍ଡର ଭୂଗୋଳ ବର୍ଣ୍ଣନା କରି ଯାଇଅଛନ୍ତି ସେଥିରେ ଭାରତର ଉତ୍ତର-ପଶ୍ଚିମ ସୀମା ସେପାରିରୁ ଆରମ୍ଭ କରି ସପ୍ତ ସିନ୍ଧୁ ସହ ହିମାଳୟର ପାଦ-ଦେଶ ପଥରେ ଗାଙ୍ଗେୟ ଉପତ୍ୟକା ପର୍ଯ୍ୟନ୍ତ ଦେଶର ବର୍ଣ୍ଣନା ମିଳେ । ଏହି ଭୂଖଣ୍ଡରେ ସେମାନଙ୍କର ସଭ୍ୟତା ବିସ୍ତାର ସଙ୍ଗେ ସଙ୍ଗେ ସେମାନଙ୍କର ପ୍ରାଚୀନ ବୈଦିକ ସଭ୍ୟତାର ମଧ୍ୟ ପରିବର୍ତ୍ତନ ଘଟୁଥାଏ । ବୈଦିକ ଯୁଗର ଶେଷ ଏବଂ ପୌରାଣିକ ବା ରାମାୟଣ-ମହାଭାରତ ଯୁଗର ଆରମ୍ଭ, ଏହା ମଧ୍ୟରେ ଗୋଟିଏ ଯୁଗର ପରିବର୍ତ୍ତନ ଘଟିଯାଇଥିଲା । ବୈଦିକ ଧର୍ମର ସରଳ ଆରାଧନା କ୍ରମେ ଜଟିଳ ହୋଇ ପଡ଼ିଥିଲା । ବୈଦିକ ଦେବତାମାନଙ୍କର ସଂଖ୍ୟା ଅତିକ୍ରମ କରି ପୌରାଣିକ ଦେବତାମାନଙ୍କର ସଂଖ୍ୟା ବହୁ ଗୁଣରେ ବଢ଼ି ଯାଇଥିଲା । ବୈଦିକ ଯୁଗର ଏକ ଆର୍ଯ୍ୟ ଜାତି ପ୍ରଧାନ ଚାରି ଜାତିରେ ପରିଣତ ହୋଇ ସାରିଥିଲା ଏବଂ କ୍ରମେ ଅନ୍ୟାନ୍ୟ ଅନେକାନେକ ଜାତିରେ ପରିଣତ ହେବାକୁ ଯାଉଥିଲା । ବୈଦିକ ଯୁଗର ପବିତ୍ର ସାମାଜିକ ରୀତି ନୀତି କ୍ରମେ ଅବନତି ପଥରେ ଗତି କରୁଥିଲା । ଅପର ଦିଗରେ, ବୈଦିକ ଧର୍ମ ସମଗ୍ର ଭାରତର ଧର୍ମରୂପେ ପରିଣତ ହେବାକୁ ଯାଉଥିଲା ; କେବଳ ଆର୍ଯ୍ୟମାନଙ୍କର ଧର୍ମରୂପେ ଗୋଟିଏ ଜାତି ନିକଟରେ କେନ୍ଦ୍ରୀଭୂତ ନ ରହି ଏହା ନିଜର ଅଙ୍ଗବୃଦ୍ଧି ପୂର୍ବକ ଭାରତର ଦ୍ରାବିଡ଼ ଏବଂ ଆଦିମମାନଙ୍କ ଧର୍ମର ସାରାଂଶ ଗ୍ରହଣ କରି ବିରାଟ ହିନ୍ଦୁ ଧର୍ମରେ ପରିଣତ ହେଉଥିଲା । ବୈଦିକ ଯୁଗର ଶେଷ ଏବଂ ରାମାୟଣ-ମହାଭାରତ ଯୁଗର ଆରମ୍ଭ, ଏହି ଘଡ଼ି ସନ୍ଧିବେଳେ ଆର୍ଯ୍ୟମାନେ ସେମାନଙ୍କର ବୈଦିକ ସୀମା ଅତିକ୍ରମ କରିଥିଲେ । ଏହି ସମୟରେ ଉତ୍କଳଖଣ୍ଡରେ ଆର୍ଯ୍ୟ ପ୍ରଭାବ ବିସ୍ତାର ହେଲା । ଯେତେବେଳେ ବ୍ରହ୍ମର୍ଷି ଦେଶରେ ବେଦମନ୍ତ୍ରର ସୁଶ୍ରାବ୍ୟଧ୍ୱନି ଉଚ୍ଚାରିତ ହେଉଥିଲା ସେତେବେଳେ ଉତ୍କଳଖଣ୍ଡ ଦ୍ରାବିଡ଼ ସଭ୍ୟତାଦ୍ୱାରା ପ୍ଲାବିତ ରହିଥିଲା । କିନ୍ତୁ ବୈଦିକ ଯୁଗର ସମାପ୍ତି ସଙ୍ଗେ ସଙ୍ଗେ ଆର୍ଯ୍ୟମାନଙ୍କର ପ୍ରଭାବ ଉତ୍କଳ ଉପରେ ବ୍ୟାପୀ ଯାଇଥିଲା । ରାମାୟଣ ଯୁଗରେ ସମଗ୍ର ଦକ୍ଷିଣ ଭାରତ ଆର୍ଯ୍ୟ ପ୍ରଭାବିତ ହୋଇଥିଲା । ଏହି ସ୍ରୋତରେ ଉତ୍କଳ ମଧ୍ୟ ଭାସି ଯାଇଥିଲା । ପ୍ରାଚୀନ କଳିଙ୍ଗୋତ୍କଳର ସୀମା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏହି ବିସ୍ତୃତ ଭୂଖଣ୍ଡ ଦକ୍ଷିଣ ଭାରତର ଅନ୍ୟ ଅଞ୍ଚଳମାନଙ୍କ ଅପେକ୍ଷା ପ୍ରଥମେ ଆର୍ଯ୍ୟ-ମାନଙ୍କଦ୍ୱାରା ପ୍ରଭାବିତ ହୋଇଥିଲା । ଗୋଦାବରୀ କୂଳସ୍ଥ ଦଣ୍ଡକାରଣ୍ୟରେ ରାମଚନ୍ଦ୍ର ବନବାସ କରୁଥିଲେ ଏବଂ ଏହିସ୍ଥାନରୁ ଲଙ୍କାପତି ରାବଣଙ୍କଦ୍ୱାରା ସୀତାଙ୍କୁ ଅପହରଣ କରାହୋଇଥିଲା । ରାମଚନ୍ଦ୍ର ଗୋଦାବରୀ ତଟରୁ ଲଙ୍କା ଅଭିଯାନ ଆରମ୍ଭ

କରିଥିବେ ଏବଂ ପରିଶେଷରେ ଲଙ୍କାସହ ସମଗ୍ର ଦାକ୍ଷିଣାତ୍ୟ ଉପରେ ଆର୍ଯ୍ୟ ପ୍ରଭାବ ବିସ୍ତାର କରିଥିବେ । ମହାକାବ୍ୟ ରାମାୟଣ ମଧ୍ୟରୁ ଯେତିକ ଐତିହାସିକ ତଥ୍ୟ ମିଳେ ତାହାର ସାରାଂଶ ହେଉଛି ଆର୍ଯ୍ୟମାନଙ୍କର ଦାକ୍ଷିଣାତ୍ୟ ଏବଂ ସିଂହଳ ଅଭିଯାନ । ଏ ମହାକାବ୍ୟରୁ ଦାକ୍ଷିଣାତ୍ୟର ରାଜନୈତିକ ଅବସ୍ଥାର ବିଶେଷ ପରିଚୟ ମିଳେ ନାହିଁ ଏବଂ ଦାକ୍ଷିଣାତ୍ୟର ବିଭିନ୍ନ ଅଞ୍ଚଳମାନଙ୍କର ନାମ ଓ ସେ ସବୁ ଅଞ୍ଚଳମାନଙ୍କର ରାଜଶକ୍ତି ଇତ୍ୟାଦିର ପରିଚୟ ମଧ୍ୟ ସ୍ପଷ୍ଟଭାବରେ କିଛି ଜଣାପଡ଼େ ନାହିଁ । କାରଣ ରାମାୟଣ ଯୁଗରେ ଦାକ୍ଷିଣାତ୍ୟ ପରି ଏକ ସୁବିସ୍ତୃତ ଦେଶ ସହିତ ଆର୍ଯ୍ୟମାନଙ୍କର ପ୍ରଥମ ସଂଘର୍ଷ ଏବଂ ସଂଯୋଗ ଆରମ୍ଭ ହେଉଥିଲାବେଳେ ଦାକ୍ଷିଣାତ୍ୟର ପୁଙ୍ଖାନୁପୁଙ୍ଖ ରାଜନୈତିକ ଅବସ୍ଥା ସେମାନଙ୍କୁ ଜଣାଯାଇ ନ ଥିଲା । କିନ୍ତୁ ରାମାୟଣ ରଚନାର ଅବ୍ୟବହିତ ପରେ ଯେତେବେଳେ ମହାପୁରାଣ ମହାଭାରତ ରଚିତ ହେଲା ସେତେବେଳେ ଉତ୍ତର ଭାରତ ପରି ଦକ୍ଷିଣ ଭାରତର ଅବସ୍ଥା ମଧ୍ୟ ଆର୍ଯ୍ୟମାନଙ୍କୁ ଜଣା ସରିଥିଲା । ରାମାୟଣ ଏବଂ ମହାଭାରତ ମଧ୍ୟରୁ କେଉଁ ମହାକାବ୍ୟ ପ୍ରଥମେ ରଚିତ ହୋଇଥିଲା ଏ ବିଷୟ ନେଇ ପ୍ରଥମେ ପଣ୍ଡିତମାନଙ୍କ ମଧ୍ୟରେ ମତ ପାର୍ଥକ୍ୟ ଥିଲା । ପାଶ୍ଚାତ୍ୟ ପଣ୍ଡିତମାନେ ମହାଭାରତକୁ ରାମାୟଣଠାରୁ ପ୍ରାଚୀନତର ବୋଲି ବିଶ୍ୱାସ କରୁ ଥାଆନ୍ତି । କିନ୍ତୁ ବର୍ତ୍ତମାନ ସେ ଧାରଣା ଭୁଲ ବୋଲି ପ୍ରମାଣିତ ହୋଇଛି । ଅନେକ କାରଣ ରହିଛି ଯେପାଇଁ ରାମାୟଣ ପ୍ରଥମେ ରଚିତ ହୋଇଥିଲା ବୋଲି ବର୍ତ୍ତମାନ ଯୁଗର ଭାରତୀୟ ପଣ୍ଡିତମାନେ ସିଦ୍ଧାନ୍ତ କରିଛନ୍ତି । ସେସବୁ କାରଣମାନଙ୍କ ମଧ୍ୟରୁ କେବଳ ଗୋଟିକର ଦୃଷ୍ଟାନ୍ତ ଦେଲେ ଯଥେଷ୍ଟ ହେବ ଯେ ରାମାୟଣର କୌଣସି ଅଂଶରେ ମହାଭାରତର କୌଣସି ଚରିତ୍ରର ଉଲ୍ଲେଖ ନାହିଁ । ଅଥଚ ମହାଭାରତର ଅନେକ ସ୍ଥାନରେ ରାମାୟଣ ବର୍ଣ୍ଣିତ ଚରିତ୍ରମାନଙ୍କର ଉଲ୍ଲେଖ ରହିଛି ।[1] ସୁତରାଂ ମହାଭାରତ ରଚିତ ହେବା ଆଗରୁ ରାମାୟଣ ରଚିତ ହୋଇ ସାରିଥିଲା । ରାମାୟଣ ଯୁଗରେ ଆର୍ଯ୍ୟମାନଙ୍କୁ ଆର୍ଯ୍ୟାବର୍ତ୍ତରୁ ଦାକ୍ଷିଣାତ୍ୟ ଦିଗକୁ ଗତି କରୁଥିବାର ଦେଖିବାକୁ ମିଳେ । କିନ୍ତୁ ମହାଭାରତ ଯୁଗରେ ଆର୍ଯ୍ୟମାନେ ସମଗ୍ର ଭାରତବର୍ଷ ଉପରେ ନିଜର ସାଂସ୍କୃତିକ ପ୍ରଭାବ ବିସ୍ତାର କରିଥିଲେ ଏବଂ ସମଗ୍ର ଭାରତବର୍ଷର ରାଜନୈତିକ ଅବସ୍ଥା ବିଷୟରେ ଜ୍ଞାନ ଅର୍ଜନ କରିପାରିଥିଲେ । ସେଥିପାଇଁ ମହାଭାରତରେ ଭାରତର ତତ୍କାଳୀନ ରାଜନୈତିକ ଅବସ୍ଥାର ବିଶଦ ବର୍ଣ୍ଣନା ଦେଖିବାକୁ ମିଳେ । ରାମାୟଣରେ ଏପରି ବିଶଦ ବର୍ଣ୍ଣନା ଦେଖିବାକୁ ମିଳେ ନାହିଁ । ଭାରତର ବିଭିନ୍ନ ଜାତି, ବିଭିନ୍ନ ରାଜ୍ୟ ଏବଂ ବିଭିନ୍ନ ରାଜାମାନଙ୍କର ସବିଶେଷ ବିବରଣ ମହାଭାରତରେ ଆର୍ଯ୍ୟ ଋଷିମାନେ ବର୍ଣ୍ଣନା କରି ଯାଇଛନ୍ତି । ମହାଭାରତ ବର୍ଣ୍ଣିତ ଅନେକ ରାଜ୍ୟ ଏବଂ ଅନେକ ଜାତିର ନାମ ଇତିହାସ ଯୁଗର ଭାରତରେ ଦେଖିବାକୁ ମିଳେ । ଅବଶ୍ୟ ମହାଭାରତ ବର୍ଣ୍ଣିତ ଘଟଣା ସବୁକୁ ବାସ୍ତବ ଇତିହାସ ବୋଲି କହିବାକୁ କୌଣସି ଐତିହାସିକ ସାହସ କରି ପାରିବେ

1. ଏପରିକି ମାର୍କଣ୍ଡେୟ ମୁନି ଯୁଧିଷ୍ଠିରଙ୍କୁ ରାମାୟଣର ସଂକ୍ଷିପ୍ତ ବିବରଣୀ ଶୁଣାଇଥିଲେ ।

ନାହିଁ । କାରଣ କାବ୍ୟ ଏବଂ ପୁରାଣ ଐତିହାସିକ ଦୃଷ୍ଟିକୋଣରୁ ଲେଖା ଯାଇ ନ ଥାଏ । ତଥାପି କାବ୍ୟ, ପୁରାଣ ଏବଂ ସାହିତ୍ୟ ମଧ୍ୟରୁ ଗୋଟିଏ ଯୁଗର ତଦାନୀନ୍ତନ ଇତିହାସର କ୍ଷୀଣ ସତ୍ତା ଚିହ୍ନକୁ ଆବିଷ୍କାର କରିବା କଷ୍ଟସାଧ୍ୟ ହେଲେ ସୁଦ୍ଧା ଅସମ୍ଭବ ନୁହେଁ । ମହାଭାରତ ଯୁଗର ଭାରତ ଇତିହାସ ଆବିଷ୍କାର କରିବା ଏଠାରେ ଉଦ୍ଦେଶ୍ୟ ନୁହେଁ । କେବଳ ଏତିକ ଜାଣି ରଖିଲେ ଯଥେଷ୍ଟ ହେବ ଯେ ସେ ଯୁଗରେ ଆର୍ଯ୍ୟ ପ୍ରଭାବ ଉତ୍ତର ଭାରତରୁ ଭାରତର ଅନ୍ୟାନ୍ୟ ଦିଗକୁ ପ୍ରସାର ଲାଭ କରି ଯାଇଥିଲା ।

ଉତ୍କଳ ଖଣ୍ଡରେ ମଧ୍ୟ ଏ ପ୍ରଭାବ ଯଥେଷ୍ଟ ପରିମାଣରେ ପଡ଼ିଥିଲା । କେବଳ ସେତିକି ନୁହେଁ । ମହାଭାରତ ଯୁଗରେ ଉତ୍କଳ ଏବଂ କଳିଙ୍ଗ ଶକ୍ତିଶାଳୀ ହିନ୍ଦୁ-ରାଷ୍ଟ୍ରରେ ପରିଣତ ହୋଇ ଯାଇଥିଲେ ଏବଂ ମହାକାବ୍ୟ ଯୁଗର କବିମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ମହାଭାରତର ଅନେକ ସ୍ଥାନରେ ସେ ଯୁଗର କବିମାନେ କଳିଙ୍ଗ ଏବଂ ଉତ୍କଳ ବିଷୟ ବର୍ଣ୍ଣନା କରିଛନ୍ତି । କଳିଙ୍ଗ ଏବଂ ଉତ୍କଳର ନରପତି-ମାନେ ମହାଭାରତ ଯୁଗରେ ଏବଂ ଭାରତ ଯୁଦ୍ଧରେ ନିଜ ନିଜ ଶକ୍ତିର ଯଥେଷ୍ଟ ପରିଚୟ ଦେଇଥିଲେ । "ଦ୍ରୌପଦୀଙ୍କ ସ୍ୱୟମ୍ବରବେଳେ ଦୁର୍ଯ୍ୟୋଧନଙ୍କ ସହ କଳିଙ୍ଗରାଜ ସେ ସ୍ୱୟମ୍ବର ସଭାରେ ଉପସ୍ଥିତ ଥିଲେ । କୁରୁକ୍ଷେତ୍ର ମହାସମର ବେଳେ ଦ୍ରୋଣାଚାର୍ଯ୍ୟଙ୍କ ସୈନ୍ୟବାହିନୀର ଦକ୍ଷିଣ ଭାଗରେ ଶ୍ରୁତାୟୁ ନାମଧେୟ କଳିଙ୍ଗର ଅନେକ ରାଜା ଯୁଦ୍ଧ କରିଥିଲେ । ଏହି ଶ୍ରୁତାୟୁ କୌରବ ପକ୍ଷର ଜୟଦ୍ରଥଙ୍କ ନିରାପଦ ରକ୍ଷାପାଇଁ ପାଣ୍ଡବ ପକ୍ଷର ଭୀମ ଏବଂ ଅର୍ଜୁନଙ୍କୁ ଆକ୍ରମଣ କରିଥିଲେ । ଅର୍ଜୁନ କଳିଙ୍ଗର ଧର୍ମକ୍ଷେତ୍ରମାନଙ୍କୁ ତୀର୍ଥଯାତ୍ରା କରିଥିଲେ । ଦିଗ୍‌ବିଜୟ ଯାତ୍ରାବେଳେ ସହଦେବ କଳିଙ୍ଗ ନରପତିଙ୍କୁ ପରାଜିତ କରିଥିଲେ ଏବଂ ପରାଜିତ କଳିଙ୍ଗ ନରପତି ଧର୍ମରାଜ ଯୁଧିଷ୍ଠିରଙ୍କ ନିକଟରେ ବଶ୍ୟତା ସ୍ୱୀକାର କରିଥିଲେ । କୌଣସି ଏକ ସମୟରେ କର୍ଣ୍ଣଙ୍କଦ୍ୱାରା ମଧ୍ୟ କଳିଙ୍ଗର ରାଜାଙ୍କୁ ପରାଜିତ ହେବାକୁ ହୋଇଥିଲା । ଯୁଧିଷ୍ଠିର ତୀର୍ଥଯାତ୍ରା ପଥରେ କଳିଙ୍ଗ ପରିଦର୍ଶନ କରିଥିଲେ । ଦନ୍ତକୂରଠାରେ ସହଦେବ ଏବଂ ସ୍ୱୟଂ ଶ୍ରୀକୃଷ୍ଣ କଳିଙ୍ଗ ରାଷ୍ଟ୍ରର ଧ୍ୱଂସ ସାଧନ କରିଥିଲେ । କୁରୁକ୍ଷେତ୍ର ଯୁଦ୍ଧରେ କାମରୂପ ଅଧିପତି ଭଗଦତ୍ତଙ୍କ ଅଧି-ନାୟକତ୍ୱରେ କଳିଙ୍ଗ ସେନା ଯୁଦ୍ଧ କରିଥିଲେ । ଦ୍ରୋଣଙ୍କ ଗରୁଡ଼ ବ୍ୟୂହର କଣ୍ଠ-ଦେଶରେ କଳିଙ୍ଗ ବାହିନୀକୁ ସ୍ଥାନ ଦିଆଯାଇଥିଲା । କଳିଙ୍ଗ ଅଧିପତି ରାମ ଯାମଦଗ୍ନ୍ୟଙ୍କ ଦ୍ୱାରା ପରାଜିତ ହୋଇଥିଲେ ଏବଂ ଅପର ସ୍ଥାନରେ ସାତ୍ୟକିଙ୍କସହ ଯୁଦ୍ଧ କରିଥିଲେ । କୁରୁକ୍ଷେତ୍ର ଯୁଦ୍ଧରେ କଳିଙ୍ଗ ରାଜାଙ୍କ ପତନ ପରେ କଳିଙ୍ଗ ସେନା ନିହତ ରାଜାଙ୍କ ପୁତ୍ରଙ୍କଦ୍ୱାରା ଚାଳିତ ହୋଇ ଯୁଦ୍ଧ କରିଥିଲେ ଏବଂ ଏହି କଳିଙ୍ଗକୁମାର ଶେଷରେ ଭୀମଙ୍କ ହସ୍ତରେ ନିହତ ହୋଇଥିଲେ । କଳିଙ୍ଗରାଜ ଯୁଦ୍ଧରେ ଶକୁନିଙ୍କୁ ସାହାଯ୍ୟ କରିଥିଲେ ଏବଂ ଶିଖଣ୍ଡୀଙ୍କଦ୍ୱାରା ପରାଜିତ ହୋଇଥିଲେ । କଳିଙ୍ଗ ନରପତିଙ୍କ

କନ୍ୟାମାନଙ୍କର ବିବାହ ଅକ୍ରୋଧନ ଏବଂ ତଂଶୁଙ୍କ ସହ ହୋଇଥିଲା । ଉତ୍କଳୀୟ-ମାନେ ପୂର୍ବେ କେବେ ଦୁର୍ଯ୍ୟୋଧନଙ୍କ ପ୍ରତିନିଧି କର୍ଣ୍ଣଙ୍କଦ୍ୱାରା ପରାଜିତ ହୋଇଥିଲେ । ସେମାନେ ମେକଳ ଏବଂ କଳିଙ୍ଗମାନଙ୍କ ସହ ଯୋଗଦାନ ମଧ୍ୟ କରିଥିଲେ । ଓଡ୍ରମାନେ ଯୁଧିଷ୍ଠିରଙ୍କର ଦର୍ଶନପ୍ରାର୍ଥୀ ହୋଇଥିଲେ । ସେମାନେ କେରଳ-ମାନଙ୍କ ସହ ସହଦେବଙ୍କଦ୍ୱାରା ପରାଜିତ ହୋଇଥିଲେ ଏବଂ ପୌଣ୍ଡ୍ରମାନଙ୍କସହ ଯୁଧିଷ୍ଠିରଙ୍କର ରାଜସୂୟ ଯଜ୍ଞରେ ଉପସ୍ଥିତ ଥିଲେ । କୁରୁକ୍ଷେତ୍ର ସମରବେଳେ ସେମାନେ ପାଣ୍ଡବମାନଙ୍କର ପକ୍ଷ ଗ୍ରହଣ କରିଥିଲେ ।"[1] ଏତଦ୍‌ବ୍ୟତୀତ ଆହୁରି ଅନେକ ସ୍ଥଳରେ କଳିଙ୍ଗ-ଉତ୍କଳ ବିଷୟ ମହାଭାରତରେ ଦେଖିବାକୁ ମିଳେ । ଏସବୁ ଦୃଷ୍ଟାନ୍ତ ଦେବାର ଉଦ୍ଦେଶ୍ୟ ହେଉଛି ଯେ ଆଦ-ପୌରାଣିକ ଯୁଗ ବା ରାମାୟଣ-ମହାଭାରତ ଯୁଗରେ ଉତ୍କଳଖଣ୍ଡରେ ଆର୍ଯ୍ୟ ପ୍ରଭାବ ସମ୍ୟକଭାବେ ପ୍ରତିଷ୍ଠିତ ହୋଇ ସାରିଥିଲା । ମହାକାବ୍ୟ ଯୁଗର ଧର୍ମ ଓ ସେ କାଳର ସଭ୍ୟତା ଉତ୍କଳର ଧର୍ମ ଓ ସଭ୍ୟତାରେ ପରିଣତ ହୋଇଥିଲା । ସେହି ଯୁଗରେ ଉତ୍କଳ ଭୂମିରେ ଆର୍ଯ୍ୟ ଏବଂ ଦ୍ରାବିଡ଼ ସଭ୍ୟତାର ମିଳନ ହୋଇଥିଲା । ସେହି ଯୁଗରେ ଭାରତରେ ହିନ୍ଦୁ-ଧର୍ମର ସୃଷ୍ଟି ହୋଇଥିଲା ।

ରାମାୟଣ-ମହାଭାରତ ଯୁଗର ସଭ୍ୟତା ହିନ୍ଦୁ ଭାରତର ଚିର ଆଦର୍ଶ । ବୈଦିକ ଧର୍ମ ଥିଲା କେବଳ ଆର୍ଯ୍ୟମାନଙ୍କର ଧର୍ମ ଏବଂ ବୈଦିକ ସଭ୍ୟତା ଥିଲା ଭାରତର ଗୋଟିଏ ଅଞ୍ଚଳର ସଭ୍ୟତା । କିନ୍ତୁ ମହାକାବ୍ୟ ଯୁଗର ଧର୍ମ ସେ ଥିଲା କି ଆର୍ଯ୍ୟ, କି ଦ୍ରାବିଡ଼, କି ଆଦିମ ସମସ୍ତଙ୍କର ସମ୍ମିଳିତ ଧର୍ମ ଏବଂ ସେ ଯୁଗର ସଭ୍ୟତା ଥିଲା ହିମାଦ୍ରିଠାରୁ କୁମାରୀକା ପର୍ଯ୍ୟନ୍ତ ଏହି ସୁବିସ୍ତୃତ ମହାଦେଶର ସଭ୍ୟତା । ବୈଦିକ ଯୁଗ ଏବଂ ମହାକାବ୍ୟର ଯୁଗ ମଧ୍ୟରେ ଏହି ଯେଉଁ ସୁଦୀର୍ଘ ପାର୍ଥକ୍ୟ ଏହା ଫଳରେ ସରଳ ବୈଦିକ ସଭ୍ୟତା ବିରାଟ ହିନ୍ଦୁ ସଭ୍ୟତାରେ ପରିଣତ ହୋଇ-ଯାଇଥିଲା । ଋଗ୍‌ବେଦର ସଭ୍ୟତାକୁ ପ୍ରକୃତ ହିନ୍ଦୁ ସଭ୍ୟତା ନାମରେ ଆଖ୍ୟାତ କରାଯାଇ ପାରିବ ନାହିଁ । କାରଣ ସେ ଥିଲା ଏକ ଋଷି ସଭ୍ୟତା । କିନ୍ତୁ ରାମାୟଣ-ମହାଭାରତ ବା ମହାକାବ୍ୟ ଯୁଗର ସଭ୍ୟତା ଥିଲା ପ୍ରକୃତ ହିନ୍ଦୁ ସଭ୍ୟତା । ବୈଦିକ ସଭ୍ୟତା ହେଉଛି ହିନ୍ଦୁ ସଭ୍ୟତାର ମେରୁଦଣ୍ଡ । କିନ୍ତୁ ହିନ୍ଦୁ ସଭ୍ୟତାର ଅଙ୍ଗ ପ୍ରତ୍ୟଙ୍ଗ, ରକ୍ତ ମାଂସ ଏସମସ୍ତ ଗଠନ ଏବଂ ପୂରଣ କରିଛି ମହାକାବ୍ୟ ଯୁଗର ସଭ୍ୟତା । ରାମାୟଣ-ମହାଭାରତ ବର୍ଣ୍ଣିତ ଧର୍ମନୀତି, ସମାଜନୀତି, ରାଷ୍ଟ୍ରନୀତି, ଶିକ୍ଷା-ନୀତି, ଏସମସ୍ତ ଚିରଦିନ ଯାଏଁ ହିନ୍ଦୁ ସଭ୍ୟତାର ଆଦର୍ଶ ହୋଇ ଆସିଛି । ଯୁଗେ ଯୁଗେ ଭାରତୀୟ ନରପତିମାନେ ରାମାୟଣ-ମହାଭାରତର ନରପତିମାନଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଦେଶ ଶାସନ କରିଛନ୍ତି । ଯୁଗେ ଯୁଗେ ସେ ଯୁଗର ଆଦର୍ଶରେ

1. ମହାଭାରତରେ କଳିଙ୍ଗ, ଉତ୍କଳ ଏବଂ ଓଡ୍ର ଦେଶ ସମ୍ବନ୍ଧରେ ଏ ସବୁ ଉଲ୍ଲିଖିତ କଥା ଆର. ଡି. ବ୍ୟାନାର୍ଜିଙ୍କ History of Orissa ରୁ ଉଦ୍ଧୃତ କରାଯାଇଛି ।

ହିନ୍ଦୁ ଗାର୍ହସ୍ଥ୍ୟ ଜୀବନ ନିୟନ୍ତ୍ରିତ ହୋଇ ଆସିଛି । ସେ ଯୁଗର ଦଶରଥ, ରାମଚନ୍ଦ୍ର, ଜନକ, ଯୁଧିଷ୍ଠିର ଏମାନେ ଆଦର୍ଶ ନରପତି ଏବଂ ସେମାନଙ୍କର ପ୍ରଜାବାତ୍ସଲ୍ୟ, ଦାନ, ଦୟା, ଧର୍ମ ଏବଂ ନୀତିପରାୟଣତା ଅତି ମହାନ୍, ଅତି ଉଜ୍ଜ୍ୱଳ ; ମହାକାବ୍ୟ ଯୁଗର ମନ୍ଦୋଦରୀ, ସୀତା, ସାବିତ୍ରୀ, ଦମୟନ୍ତୀ, ଏମାନଙ୍କର ସତୀତ୍ୱ, ତ୍ୟାଗ, ସେବା ଏବଂ ସହନଶୀଳତା ବାସ୍ତବରେ ମହୀୟସୀ ; ସେ କାଳର ଭରତ, ଲକ୍ଷ୍ମଣ, ଅର୍ଜୁନ ଏମାନେ ଆଦର୍ଶ ଭ୍ରାତା ଯେଉଁମାନଙ୍କର ଭକ୍ତି ଏବଂ କର୍ତ୍ତବ୍ୟ-ପରାୟଣତା ଆଦର୍ଶ-ସ୍ଥାନୀୟ ; ସେଯୁଗର ରାବଣ, କର୍ଣ୍ଣ, ଭୀଷ୍ମ, ଦ୍ରୋଣ, ଏମାନେ ନୀତିପରାୟଣ ଯୋଦ୍ଧା ଏବଂ ବୀର ଯେଉଁମାନଙ୍କର ବୀରତ୍ୱ, ସାହସ ଏବଂ କର୍ମକୁଶଳତା ପ୍ରକୃତରେ ପ୍ରଶଂସନୀୟ । ରାମାୟଣ-ମହାଭାରତର ପ୍ରତ୍ୟେକ ଚରିତ୍ର ଚିତ୍ରଣରେ ସେ ଯୁଗର ସଭ୍ୟତା ପରିସ୍ଫୁଟ ହୋଇ ଉଠିଛି ଏବଂ ପ୍ରତ୍ୟେକ ଘଟଣାମୂଳରେ ସେ କାଳର ଆଦର୍ଶ ରୀତି ନୀତି ଚିତ୍ରିତ ହୋଇ ରହିଛି । କି ପ୍ରାଚ୍ୟ, କି ପାଶ୍ଚାତ୍ୟ, ବହୁସ୍ଥାନର ପଣ୍ଡିତମାନେ ଏ ଦୁଇ ମହାକାବ୍ୟର ଆଦର୍ଶ ଚରିତ୍ର ଚିତ୍ରଣରେ କିଂକର୍ତ୍ତବ୍ୟବିମୂଢ଼ ହୋଇ ସେ ଯୁଗର ବର୍ଣ୍ଣନା ଶକ୍ତିର ଭୂରି ଭୂରି ପ୍ରଶଂସା କରିଅଛନ୍ତି । କିନ୍ତୁ ସେ ଯୁଗର ମହାକାବ୍ୟ ଲେଖକମାନଙ୍କର ବର୍ଣ୍ଣନାମୂଳରେ ସତ୍ୟର ଯେଉଁ ସତ୍ତା ଚିକିଏ ରହିଛି ତାହାହିଁ ସେ ଯୁଗ ସଭ୍ୟତାର ପରିଚାୟକ । ରାମାୟଣ-ମହାଭାରତ ବର୍ଣ୍ଣିତ ଚରିତ୍ରମାନେ କାଳ୍ପନିକ ହୋଇ ପାରନ୍ତି । କିନ୍ତୁ ସେହି କାଳ୍ପନିକ ଚରିତ୍ରମାନଙ୍କୁ କେନ୍ଦ୍ର କରି ଯେଉଁ ସମାଜର ଚିତ୍ରାଙ୍କନ କରାଯାଇଛି ସେ ସମାଜ ପ୍ରକୃତରେ ଏକ ଆଦର୍ଶ ସମାଜ ଏବଂ ସେ ସମାଜର ସଭ୍ୟତା ମଧ୍ୟ ସେହିପରି ଆଦର୍ଶସ୍ଥାନୀୟ ।

ଋକ୍‌ବେଦର ସରଳ ଧର୍ମ ବୈଦିକ ଯୁଗର ଶେଷ ବେଳକୁ ଟିକିଏ ଜଟିଳ ଆକାର ଧାରଣ କରି ଆସୁଥିବାର ଆଭାସ ମିଳେ । ଏହି ଧର୍ମ ପୁଣି ରାମାୟଣ-ମହାଭାରତ ଯୁଗରେ ଅତ୍ୟନ୍ତ ଜଟିଳ ହୋଇ ଯାଇଥିଲା କାରଣ ସେତେବେଳକୁ ଧର୍ମର କଳେବର ବୃଦ୍ଧି ହେଉଥାଏ । ଧର୍ମପରି କ୍ରମେ ସମାଜରେ ମଧ୍ୟ କିଛି ପରିବର୍ତ୍ତନ ଘଟୁଥାଏ । ଏ ସମୟର କିଞ୍ଚିତ ଆଭାସ ପୂର୍ବରୁ ଦିଆଯାଇଛି । ରାମାୟଣ-ମହାଭାରତ ଯୁଗରେ ଭାରତୀୟ ଧର୍ମ ଏବଂ ସଭ୍ୟତାର ରୂପ ଯେପରି ହୋଇ ଯାଇଥିଲା ତାହା ବୈଦିକ ଧର୍ମ ଓ ସଭ୍ୟତା ପାଖରୁ ଜଟିଳତର ହେଲେବି ଜଟିଳତାର ଶେଷ ସୀମାରେ ପହଞ୍ଚି ନ ଥିଲା । ରାମାୟଣ-ମହାଭାରତ ଯୁଗରେ ହିନ୍ଦୁଧର୍ମର ସୃଷ୍ଟି ହୋଇଥିଲା, ଅର୍ଥାତ୍ ବୈଦିକ ଦେବଦେବୀଙ୍କ ବ୍ୟତୀତ ଅନ୍ୟ ଦେବଦେବୀଙ୍କର କଳ୍ପନା କରାଯାଇଥିଲା ଏବଂ ସେମାନଙ୍କ ଉପାସନାରେ ଆଡ଼ମ୍ବର ବୃଦ୍ଧି ପାଇଥିଲା । ନିରାଡ଼ମ୍ବର ବୈଦିକ ଧର୍ମର ମୁଖ୍ୟ ପ୍ରଣାଳୀ ଥିଲା ଅଗ୍ନିରେ ଆହୁତି ପ୍ରଦାନ ଏବଂ ସ୍ତବ ସ୍ତୁତି ପାଠ । କିନ୍ତୁ ରାମାୟଣ-ମହାଭାରତ ଯୁଗରେ ଏପରି ଏକ ସହଜ ଧର୍ମପ୍ରଣାଳୀ ପରିବର୍ତ୍ତେ ବହୁବିଧ ପୂଜାପଦ୍ଧତି ଏବଂ ଯାଗ-ଯଜ୍ଞାଦିର ପ୍ରଚଳନ ଦେଖା ଦେଇଥିଲା । ଦ୍ରାବିଡ଼ମାନଙ୍କର ମୂର୍ତ୍ତିପୂଜା ଏବଂ ଆଦିମମାନଙ୍କର

ବଳିଦାନ ପ୍ରଭୃତି ଧର୍ମାନୁଷ୍ଠାନିକ ପ୍ରଥାମାନ ଆର୍ଯ୍ୟସମାଜରେ କ୍ରମେ କ୍ରମେ ପ୍ରବେଶ କରିବାର ସୁଯୋଗ ପାଇଥିଲା । ମୋଟ ଉପରେ ଭାରତୀୟ ଧର୍ମ ଜଗତରେ ଏକ ଧୀର ବିପ୍ଳବର ସୂତ୍ରପାତ ହୋଇଥିଲା । ସେହିପରି ବୈଦିକ ସମାଜର ମଧ୍ୟ ପରିବର୍ତ୍ତନ ଘଟିଥିଲା ଏବଂ ବୈଦିକ ସମାଜ ହିନ୍ଦୁ ସମାଜରେ ପରିଣତ ହୋଇଥିଲା । ବୈଦିକ ଋଷି ଏକାଧାରେ ଦେବାରାଧନା, ଯୁଦ୍ଧ ଏବଂ କୃଷିକାର୍ଯ୍ୟ କରୁଥିଲେ । କିନ୍ତୁ ଏହି ତିନି କାର୍ଯ୍ୟକୁ ମହାକାବ୍ୟ ଯୁଗରେ ପରସ୍ପର ପାଖରୁ ପୃଥକ୍ କରି ଦିଆଯାଇଥିଲା । ଏହି କର୍ମ ବିଭାଗ ମୂଳରୁ ଜାତିବିଭାଗର ସୃଷ୍ଟି ହୋଇଥିଲା । ରାମାୟଣ-ମହାଭାରତ ଯୁଗର ଭାରତରେ ଜାତିପ୍ରଥା ପ୍ରଚଳିତ ହୋଇ ସାରିଥିଲା । ବ୍ରାହ୍ମଣମାନଙ୍କୁ ଦେବପୂଜା, କ୍ଷତ୍ରିୟମାନଙ୍କୁ ଯୁଦ୍ଧ ଏବଂ ବୈଶ୍ୟମାନଙ୍କୁ କୃଷାଦି ବ୍ୟବସାୟମୂଳକ କାର୍ଯ୍ୟ କରୁଥିବାର ଦେଖା ଯାଇଥିଲା । ଦ୍ରାବିଡ଼ ଏବଂ ଆଦିମମାନଙ୍କ ମଧ୍ୟରୁ କେତେକ ମନୁଷ୍ୟଙ୍କୁ ନେଇ ଏବଂ ଆର୍ଯ୍ୟମାନଙ୍କ ମଧ୍ୟରୁ କେତେକଙ୍କୁ ନେଇ ଶୂଦ୍ର ନାମକ ଏକ ଜାତିର ମଧ୍ୟ ସୃଷ୍ଟି ହେଉଥିଲା । ଏହିପରି ମହାକାବ୍ୟ ଯୁଗରେ ବୈଦିକ ଯୁଗର ଏକ ଆର୍ଯ୍ୟ ସମ୍ପ୍ରଦାୟକୁ ବିଭିନ୍ନ ଜାତିରେ ପରିଣତ ହେବାକୁ ହୋଇଥିଲା । ଅବଶ୍ୟ ଯେତେବେଳେ ଏହି ଜାତିପ୍ରଥାର ସୃଷ୍ଟି ହୁଏ ସେତେବେଳେ ସେ ପ୍ରଥାର ଆବଶ୍ୟକତା ଏକାନ୍ତରୂପେ ଅନୁଭୂତ ହୋଇଥିଲା । ଦ୍ରାବିଡ଼ମାନଙ୍କ ସହି ଯୁଦ୍ଧ କରିବା ପାଇଁ ଏକ ପୃଥକ୍ ଯୋଦ୍ଧୃ ସମ୍ପ୍ରଦାୟ ଏକାନ୍ତ ଆବଶ୍ୟକ ହୋଇ ପଡ଼ିଥିଲା । ଠିକ୍ ସେହିପରି କୃଷିର ଉନ୍ନତି ଏବଂ ପ୍ରସାର ପାଇଁ ଏକ ପୃଥକ୍ କୃଷକ ସମ୍ପ୍ରଦାୟକୁ ସଦାସର୍ବଦା ବ୍ୟସ୍ତ ରହିବାକୁ ହୋଇଥିଲା । ଯେତେବେଳେ ଥୋକାଏ ଯୁଦ୍ଧ ଏବଂ ଥୋକାଏ କୃଷିରେ ବ୍ୟସ୍ତ ରହିଲେ ସେତେବେଳେ ଧର୍ମ-ପରାୟଣ ଆର୍ଯ୍ୟମାନେ ସେମାନଙ୍କର ଧର୍ମକୁ ନିରାପଦ ଏବଂ ସଦା ପ୍ରଚଳିତ ରଖିବା ପାଇଁ ଏକ ଧର୍ମ-ସଂରକ୍ଷକ ସମ୍ପ୍ରଦାୟ ମଧ୍ୟ ସୃଷ୍ଟି କରିନେଇଥିଲେ । ଏହିପରି ଭାବରେ ଆର୍ଯ୍ୟସମାଜ ମଧ୍ୟରେ ଜାତି ବିଭାଗ ସୃଷ୍ଟି ହୋଇଥିଲା, କାରଣ ଏପରି ଏକ ବିଭାଗର ଆବଶ୍ୟକତା ସମସ୍ତେ ଉପଲବ୍ଧି କରିପାରିଥିଲେ । କିନ୍ତୁ ଏ ବିଭାଗ ଜନ୍ମଗତ ନ ହୋଇ ପ୍ରଥମେ କର୍ମଗତ ଥିଲା । ଅର୍ଥାତ୍ ବ୍ରାହ୍ମଣପୁତ୍ର ପାଇଁ କୃଷି ଏବଂ ଯୁଦ୍ଧ ବ୍ୟବସାୟ ଉନ୍ମୁକ୍ତ ଥିଲା ଏବଂ କୃଷକ ପୁତ୍ର ପକ୍ଷରେ ଦେବାରାଧନା ଓ ବେଦ-ପାଠରେ କିଛି ବାଧା ନ ଥିଲା ଏବଂ ବୀର ଆର୍ଯ୍ୟ ଯୋଦ୍ଧାର ପୁତ୍ର ପାଇଁ କି କୃଷି କି ପୂଜା ସମ୍ପୂର୍ଣ୍ଣ ଉନ୍ମୁକ୍ତ ଥିଲା । ଏପରି ଏକ କର୍ମଗତ ବିଭାଗ ପ୍ରତ୍ୟେକ ମନୁଷ୍ୟ ଜାତିରେ ରହିବା ସ୍ୱାଭାବିକ ; ଏବଂ ଆର୍ଯ୍ୟମାନଙ୍କ ମଧ୍ୟରେ ମଧ୍ୟ ଏହାର ପ୍ରଚଳନ ହୋଇଥିଲା । ଏହିପରି ଭାବରେ ବୈଦିକ ସମାଜ ଏକ ପରିବର୍ତ୍ତିତ ସମାଜ ରୂପେ ରାମାୟଣ-ମହାଭାରତ ଯୁଗରେ ଦେଖା ଦେଇଥିଲା ।

କିନ୍ତୁ ଶତ ପରିବର୍ତ୍ତନ ସତ୍ତ୍ୱେ ରାମାୟଣ-ମହାଭାରତ ଯୁଗର ଧର୍ମ ଓ ସମାଜ ପବିତ୍ର ଓ ଉନ୍ନତ ଥିଲା । ଅବଶ୍ୟ ପରବର୍ତ୍ତୀ ଯୁଗରେ ପ୍ରକୃତ ରାମାୟଣ ଓ ପ୍ରକୃତ

ମହାଭାରତର ଆଦି ରୂପ ଅନେକ ସ୍ଥାନରେ ପରିବର୍ତ୍ତିତ କରି ଦିଆଯାଇଛି । ବିଭିନ୍ନ କାଳରେ ସେ ଦୁଇ ମହାଗ୍ରନ୍ଥର ଆୟତନ ବୃଦ୍ଧି କରାଯାଇଛି ଏବଂ ପରବର୍ତ୍ତୀ କାଳର ହିନ୍ଦୁଧର୍ମ ଓ ସମାଜର ଗ୍ଲାନି ସବୁକୁ ସେଥିରେ ଭର୍ତ୍ତି କରାଯାଇଛି । ଏ ସବୁ ପରିବର୍ତ୍ତନ ଏବଂ ଗ୍ଲାନିମୁକ୍ତ ଯେଉଁ ଆଦି ରାମାୟଣ ଏବଂ ଆଦି ମହାଭାରତ ସେଥିରୁ ପ୍ରାଚୀନ ହିନ୍ଦୁ ସଭ୍ୟତାର ଯେଉଁ ଚିତ୍ର ମିଳେ ତାହା ବୈଦିକ ସଭ୍ୟତା ପରି ସରଳ ନ ହେଲେ ମଧ୍ୟ କଳଙ୍କିତ ନୁହେଁ । ରାମାୟଣ-ମହାଭାରତ ଯୁଗରେ ଧର୍ମର ଆଡ଼ମ୍ବର ବୃଦ୍ଧି ପ୍ରାପ୍ତ ହୋଇଥିଲା, କିନ୍ତୁ ସେ ଆଡ଼ମ୍ବର ତନ୍ତ୍ର ମନ୍ତ୍ର ବିଜଡ଼ିତ ହୋଇ କଦର୍ଯ୍ୟ ହୋଇ ପଡ଼ି ନ ଥିଲା । ସେ ଯୁଗରେ ଜାତିପ୍ରଥାର ସୃଷ୍ଟି ହୋଇଥିଲା, କିନ୍ତୁ ସେ ଜାତି ବିଭାଗ କେବଳ କର୍ମଗତ ଥିଲା ଏବଂ ମନୁଷ୍ୟକୁ ମନୁଷ୍ୟ ପାଖରୁ ସମ୍ପୂର୍ଣ୍ଣଭାବେ ପୃଥକ୍ କରିଦେବାର କଳ୍ପନା କରି ନ ଥିଲା । ମହାକାବ୍ୟ ଯୁଗର କ୍ଷତ୍ରିୟ ସମ୍ରାଟ ଶୁଦ୍ର ଧୀବର ପରିବାରରୁ କନ୍ୟା ବିବାହ କରିସୁଦ୍ଧା ସମାଜଚ୍ୟୁତ ହୋଇ ନାହାନ୍ତି ; ସେ ଯୁଗର ଯୋଦ୍ଧା ଅସୁର ବା ଦ୍ରାବିଡ଼ କନ୍ୟାର ପାଣି ଗ୍ରହଣ କରିସୁଦ୍ଧା କଳଙ୍କିତ ହୋଇ ନାହାନ୍ତି ; ଏବଂ ସେ କାଳର ବ୍ରାହ୍ମଣ କ୍ଷତ୍ରିୟ ସନ୍ତାନ-ମାନଙ୍କୁ ଅସ୍ତ୍ର ଶିକ୍ଷା ଦେଇ ମଧ୍ୟ ବ୍ରାହ୍ମଣରୂପେ ସମାଜରେ ପୂଜା ପାଇଛନ୍ତି । ମହାକାବ୍ୟ ଯୁଗର ସମାଜ ବୈଦିକ ରୀତି, ନୀତି, ଧର୍ମ ପ୍ରଭୃତିକୁ ଯେତେଦୂର ସମ୍ଭବ ନିଜସ୍ୱରୂପେ ଆୟତ୍ତ ରଖି ଧୀରେ ଧୀରେ ପରିବର୍ତ୍ତନ ପଥରେ ଗତି କରୁଥିଲା ।

କିନ୍ତୁ ଏ ଯୁଗ ପରେ ପରିବର୍ତ୍ତନ ଅତି ତଡ଼ିତ୍ ଗତିରେ ଆସିଥିଲା । ମହାକାବ୍ୟ-ଯୁଗର ଆଦର୍ଶ ଅବନତି ଦିଗରେ ଆଗେଇ ଯାଇଥିଲା । ରାମାୟଣ-ମହାଭାରତ ଯୁଗର ଶେଷ ଏବଂ ଇତିହାସ ଯୁଗର ଆରମ୍ଭ, ଏହା ମଧ୍ୟରେ କେତେକ ଶତାବ୍ଦୀ ବିତି ଯାଇଥିଲା । ଏହି କେତେକ ଶତାବ୍ଦୀ ମଧ୍ୟରେ ହିନ୍ଦୁଧର୍ମ ଅତି ଦ୍ରୁତ ଗତିରେ ଗ୍ଲାନି ବିଜଡ଼ିତ ହୋଇ ପଡ଼ିଥିଲା ଏବଂ ହିନ୍ଦୁ ସମାଜ ମଳିନ ଓ ନିଷ୍ପ୍ରଭ ହୋଇ ପଡ଼ିଥିଲା । ହିନ୍ଦୁମାନଙ୍କ ବିଶ୍ୱାସରେ ଏହାହିଁ ଥିଲା କଳିଯୁଗର ଆରମ୍ଭ । ପବିତ୍ର ବୈଦିକ ଯୁଗକୁ ହିନ୍ଦୁମାନେ ସତ୍ୟଯୁଗରୂପେ କଳ୍ପନା କରିଥିଲେ ; ରାମାୟଣ ଯୁଗକୁ ତ୍ରେତା ଯୁଗରୂପେ ଅଖ୍ୟାତ କରିଥିଲେ ; ମହାଭାରତ କାଳକୁ ଦ୍ୱାପର ଯୁଗବୋଲି ନାମ ଦେଇଥିଲେ ; ଏବଂ ମହାଭାରତ ଯୁଗ ପରେ ଯେଉଁ ଯୁଗ ଆସିଲା ତାହାକୁ କଳିଯୁଗ ନାମରେ ବିଦିତ କରିଥିଲେ । ସତ୍ୟ, ତ୍ରେତା, ଦ୍ୱାପର ଏବଂ କଳି, ଏ ଚାରିଯୁଗ ମଧ୍ୟରେ ବାସ୍ତବରେ କଳିଯୁଗହିଁ ନିକୃଷ୍ଟ । କଳିଯୁଗ ହିନ୍ଦୁ ସଭ୍ୟତାର କଳଙ୍କିତ ଯୁଗ । ସେ ଯାହାହେଉ, ରାମାୟଣ-ମହାଭାରତ ଯୁଗ ପରେ ପରେ ହିନ୍ଦୁ ଧର୍ମ ଓ ହିନ୍ଦୁ ସମାଜ ନୀତି ଅବଶ ହୋଇ ପଡ଼ିଥିଲା । ଜାତିପ୍ରଥା ସମାଜର ଏକ ନିଷ୍ଠୁର ଏବଂ କଠୋର ନିୟମରେ ପରିଣତ ହୋଇଗଲା ! ପ୍ରାଚୀନ ଚାରିଜାତି କ୍ରମେ ଅଗଣିତ ଜାତିରେ ପରିଣତ ହେଲେ ଏବଂ ଏ ସବୁ ଜାତିମାନଙ୍କ ମଧ୍ୟରେ ଆଉ କୌଣସି ପ୍ରକାର ରକ୍ତଗତ ସମ୍ପର୍କ ରହିଲା ନାହିଁ । ତଥାକଥିତ

ଉଚ୍ଚ ଜାତିମାନେ ତଥାକଥିତ ନୀଚ ଜାତିମାନଙ୍କ ପ୍ରତି ମନୁଷ୍ୟୋଚିତ ବ୍ୟବହାର ଦେଖାଇବାକୁ ନିର୍ମମଭାବେ ଭୁଲିଗଲେ । ମନୁଷ୍ୟ ମନୁଷ୍ୟ ମଧ୍ୟରେ ଏହି ଭେଦାଭେଦ ଭାବ ସମଗ୍ର ଜାତିଟିକୁ ଖଣ୍ଡ ବିଖଣ୍ଡ କରି ଜାତିର ମେରୁଦଣ୍ଡଟିକୁ ଅବଶ କରି ଦେଇଥିଲା । ଧର୍ମନାମରେ ଏକ ଶୋଷକ ଶ୍ରେଣୀ ଗଠିତ ହୋଇ ଯାଇଥିଲା । ଏବଂ ଏହି ଶ୍ରେଣୀର ଅତ୍ୟାଚାର ଫଳରେ ଧର୍ମପ୍ରତି ସମସ୍ତଙ୍କର ଏକ ଚରମ ବିତୃଷ୍ଣା ଆସି ଯାଇଥିଲା । ଏହି ଯୁଗରେ ଧର୍ମର ଏକ ମୁଖ୍ୟ ଅଙ୍ଗ ହୋଇ ପଡ଼ିଲା ପଶୁହତ୍ୟା । ନାନାପ୍ରକାର ଦେବଦେବୀ ଆଗରେ ଅସଂଖ୍ୟ ପଶୁବଳି ହିନ୍ଦୁଧର୍ମର ନିତ୍ୟ ନୈମିତ୍ତିକ ପଦ୍ଧତି ହୋଇଗଲା ଏବଂ ଏହାଦ୍ୱାରା ସନାତନ ହିନ୍ଦୁଧର୍ମ ମୁଖ୍ୟତଃ ଏକ ହିଂସାତ୍ମକ ଧର୍ମରୂପେ ପରିଗଣିତ ହେବାକୁ ବସିଲା । ବହୁବିଧ ମନ୍ତ୍ର ତନ୍ତ୍ର ରଚନା କରା-ଯାଇଥିଲା ଏବଂ ଧର୍ମ ନାମରେ ମନୁଷ୍ୟ ମନରେ ନାନାବିଧ ଭୀତି ସଞ୍ଚାର ଉଦ୍ଦେଶ୍ୟରେ ପୂଜକ ସମ୍ପ୍ରଦାୟ ଧର୍ମକୁ ଏକପ୍ରକାର ଯାଦୁବିଦ୍ୟାରେ ପରିଣତ କରିବାକୁ ଚେଷ୍ଟିତ ହୋଇଥିଲେ । କୁସଂସ୍କାର ଏବଂ ଅନ୍ଧବିଶ୍ୱାସରେ ସମାଜ ଅନ୍ଧକାରାଚ୍ଛନ୍ନ ହୋଇ ଯାଇଥିଲା । ଧର୍ମ ଏବଂ ସମାଜର ଏହିପରି ଏକ ଅବନତି ଫଳରେ ସମଗ୍ର ହିନ୍ଦୁ ସଭ୍ୟତା ନଷ୍ଟ ଭ ହୋଇ ଆସିଲା । ଠିକ୍ ଏହିପରି ସମୟରେ ଇତିହାସ ଯୁଗର ଆରମ୍ଭ ।

ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ଯେ ଠିକ୍ ଇତିହାସ ଯୁଗର ଆରମ୍ଭରେ ବିପଥଗାମୀ ଏହି ହିନ୍ଦୁ ସଭ୍ୟତା ବିରୁଦ୍ଧରେ ଦେଖିବାକୁ ମିଳେ ଜୈନ ଏବଂ ବୌଦ୍ଧ ବିପ୍ଳବ ।

# ଉତ୍କଳଖଣ୍ଡରେ ଜୈନ ଓ ବୌଦ୍ଧଧର୍ମ

ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀ ଭାରତବର୍ଷର ଇତିହାସରେ ଏକ ସ୍ମରଣୀୟ ଯୁଗ। ଏହି ଶତାବ୍ଦୀରେ ଭାରତରେ ଇତିହାସ ଯୁଗର ଆରମ୍ଭ। ଏକ ଅନିର୍ଣ୍ଣିତ ଅତୀତ କାଳରେ ଆର୍ଯ୍ୟମାନେ ଭାରତ ମଧ୍ୟକୁ ପ୍ରବେଶ କରିଥିଲେ। ସେମାନଙ୍କ ଭାରତ ପ୍ରବେଶ ପରେ ବୈଦିକ ଯୁଗ, ରାମାୟଣ-ମହାଭାରତ ଯୁଗ ପ୍ରଭୃତି କେତେ ସହସ୍ର ବର୍ଷର ଏକ ସମୟ ସ୍ରୋତ ବହିଯାଇଥିଲା। କିନ୍ତୁ ଏହି ସୁଦୀର୍ଘ ସମୟ ମଧ୍ୟରେ ଭାରତର ବିସ୍ତୃତ ବକ୍ଷରେ ଯେତେସବୁ ଘଟଣା ଘଟି ଯାଇଥିଲା, ଯେତେସବୁ ରାଜ୍ୟର ଉତ୍ଥାନ ପତନ ହୋଇଥିଲା କିମ୍ବା ଯେତେସବୁ ସାମାଜିକ ବିପ୍ଳବ ଘଟି-ଥିଲା ସେ ସବୁର ବିବରଣୀ ଅତୀତର ଘୋର ଅନ୍ଧକାର ଗର୍ଭରେ ବିଲୀନ ହୋଇ ଯାଇଛି। ସେହି ପ୍ରାଚୀନ ଯୁଗର ଯାହା କିଛି ସଂକ୍ଷିପ୍ତ ସମ୍ବାଦ ଏ ଯୁଗକୁ ଭାସି ଆସିଛି ତାହା ମଧ୍ୟ କବିର କଳ୍ପନା ଏବଂ କାବ୍ୟ ପୁରାଣର ବର୍ଣ୍ଣନାରାଶି ମଧ୍ୟ ଦେଇ ଗତି କରି ନିଜର କ୍ଷୀଣ ସତ୍ତା ଟିକକୁ କୁହେଳିକାମୟ କରିପକାଇଛି। ଏହିସବୁ ସଂକ୍ଷିପ୍ତ ସମ୍ବାଦ ମଧ୍ୟରୁ ଯେଉଁ କେତୋଟି ଘଟଣାର ଆଭାସ ମିଳେ ସେ ସବୁର ପ୍ରକୃତ କାଳ ନିର୍ଣ୍ଣୟ କରିବା ମଧ୍ୟ ଏ ଯୁଗର ମନୁଷ୍ୟ ପକ୍ଷେ ଅସମ୍ଭବ। ବେଦ ଚତୁଷ୍ଟୟର ରାଶି ରାଶି ମନ୍ତ୍ର ମଧ୍ୟରୁ, ଆରଣ୍ୟକ, ଉପନିଷଦ, ସୂତ୍ର ସାହିତ୍ୟର ଦର୍ଶନ ମଧ୍ୟରୁ, ବିରାଟ ହିନ୍ଦୁ ସ୍ମୃତିର ବିଭିନ୍ନ ଅଙ୍ଗରୁ ଏବଂ ରାମାୟଣ-ମହାଭାରତର ରାଶି ରାଶି ବର୍ଣ୍ଣନା ମଧ୍ୟରୁ ଯେତିକି ସାରାଂଶ ନିଆ ଯାଇ ପାରିଛି ସେତିକିରୁ ସେହି ପ୍ରାଗ୍-ଐତିହାସିକ ଯୁଗର ଧର୍ମ, ରାଷ୍ଟ୍ର, ସମାଜ ଓ ସଭ୍ୟତାର ଏକ ସଂକ୍ଷିପ୍ତ ବିବରଣୀ ଅନୁମାନ କରାଯାଇଛି ମାତ୍ର। ପ୍ରାଗ୍-ଐତିହାସିକ ଯୁଗର କେତେ ଅଗଣିତ ଶତାବ୍ଦୀର ଇତିବୃତ୍ତ ଏହିପରି କେବଳ ଅନୁମାନ ଉପରେହିଁ ଦଣ୍ଡାୟମାନ। କିନ୍ତୁ ପରିଶେଷରେ ଅନ୍ଧକାରାଚ୍ଛନ୍ନ ସେ ଯୁଗର ଅବସାନ ହେଲା ଖ୍ରୀ: ପୂ: ଷଷ୍ଠ ଶତାବ୍ଦୀରେ ଯେତେବେଳେ ଇତିହାସର ଉଜ୍ଜ୍ୱଳ ଦିବାଲୋକରେ ଭାରତର ଏକ ବିସ୍ତୀର୍ଣ୍ଣ ଅଙ୍ଗ ଉଦ୍ଭାସିତ ହୋଇ ଉଠିଥିଲା। ଏହି ସ୍ମରଣୀୟ ଶତାବ୍ଦୀରେ ଭାରତ ଇତିହାସର ପ୍ରଥମ ଅଧ୍ୟାୟ ଲିଖିତ ହେଲା ତଦାନୀନ୍ତନ ଭାରତର ଦୁଇ ଅଦ୍ୱିତୀୟ ମହାପୁରୁଷଙ୍କ

କେନ୍ଦ୍ର କରି । ଏ ଦୁଇ ପ୍ରଥମ ଐତିହାସିକ ମହାପୁରୁଷ ହେଉଛନ୍ତି ମହାବୀର ବର୍ଦ୍ଧମାନ ଏବଂ ଗୌତମ ବୁଦ୍ଧ । ଗୌତମ ବୁଦ୍ଧ ଭାରତ ତଥା ସମଗ୍ର ପୃଥିବୀର ଶ୍ରେଷ୍ଠତମ ଧର୍ମଗୁରୁ । ମହାବୀର ବର୍ଦ୍ଧମାନ ଯିଏ ଭାରତ ଇତିହାସରେ 'ଜୀନ' ନାମରେ ବିଖ୍ୟାତ ସେ ମଧ୍ୟ ପୃଥିବୀର ବିଖ୍ୟାତ ଧର୍ମଗୁରୁମାନଙ୍କ ମଧ୍ୟରୁ ଜଣେ ଏବଂ ତାହାଙ୍କ ପ୍ରବର୍ତ୍ତିତ ଧର୍ମ ପୃଥିବୀର ଶ୍ରେଷ୍ଠ ଧର୍ମମାନଙ୍କ ମଧ୍ୟରୁ ଗୋଟିଏ । ଏ ଦୁଇ ମହାପୁରୁଷଙ୍କୁ ଗର୍ଭରେ ଧାରଣ କରି ଷଷ୍ଠ ଶତାବ୍ଦୀ ଆଜି ସ୍ମରଣୀୟ । କେବଳ ସେତିକି ନୁହେଁ । ଏହି ଶତାବ୍ଦୀରେ ହିନ୍ଦୁର ପୁରାତନ ଧର୍ମ ଏବଂ ସମାଜ ବିରୁଦ୍ଧରେ ଏକ ତୁମୁଳ ଧର୍ମବିପ୍ଳବର ବାତ୍ୟା ସମଗ୍ର ଭାରତ ଉପରେ ବହିଯାଇଥିଲା । ଏହି ମହାବିପ୍ଳବ ଭାରତୀୟ ସଭ୍ୟତାର ଇତିହାସରେ ଯେଉଁ ପରିବର୍ତ୍ତନ ସୃଷ୍ଟି କରିଥିଲା ତାହାର ପ୍ରଭାବ ଶତ ଶତ ବର୍ଷ ଧରି ଭାରତୀୟ ସମାଜ ଓ ସଂସ୍କୃତିକୁ ପ୍ରଭାବିତ କରି ରଖିଥିଲା । ଭାରତୀୟ ରାଷ୍ଟ୍ରନୀତି କ୍ଷେତ୍ରରେ ମଧ୍ୟ ଏ ଶତାବ୍ଦୀ ସ୍ମରଣୀୟ । ଏ ପର୍ଯ୍ୟନ୍ତ ଉତ୍ତର ଭାରତ ବହୁ ସଂଖ୍ୟକ କ୍ଷୁଦ୍ର କ୍ଷୁଦ୍ର ଆର୍ଯ୍ୟ ରାଷ୍ଟ୍ରମାନଙ୍କରେ ବିଭକ୍ତ ଥିଲା । ଇତିହାସ ଯୁଗର ପୂର୍ବେ କେବେ ସେ ସମଗ୍ର ଉତ୍ତର ଭାରତ ଏକ ସାମ୍ରାଜ୍ୟରେ ପରିଣତ ହୋଇଥିଲା ସେ କଥା ବିଶ୍ୱାସ କରିବା ଅସମ୍ଭବ । କାରଣ ରାମାୟଣ-ମହାଭାରତ ଯୁଗରେ ଶତ ଶତ ଯୁଦ୍ଧ ଏବଂ ବହୁ ସଂଖ୍ୟକ ରାଜସୂୟ ଯଜ୍ଞ ପ୍ରଭୃତିର ଉଦାହରଣ ଥିଲେ ମଧ୍ୟ ସେ ସବୁ ସମଗ୍ର ଆର୍ଯ୍ୟାବର୍ତ୍ତକୁ ଏକ ରାଷ୍ଟ୍ରରେ ପରିଣତ କରିଥିବାର କିଛି ପ୍ରମାଣ ଦିଏ ତାହା ନୁହେଁ । ଅପର ଦିଗରେ, ସେହି ପୌରାଣିକ ଯୁଗରେ ଯେଉଁ ଅସଂଖ୍ୟ ରାଜ୍ୟ ଏବଂ ରାଜାମାନଙ୍କର ନାମ ଦେଖିବାକୁ ମିଳେ ସେଥିରୁ ଆର୍ଯ୍ୟାବର୍ତ୍ତ ଖଣ୍ଡ ବିଖଣ୍ଡ ଥିଲା ବୋଲି ପ୍ରମାଣିତ ହୁଏ । ପୌରାଣିକ ଯୁଗର ଅବସ୍ଥା ଯାହାଥାଉ, ଇତିହାସ ଯୁଗର ଆରମ୍ଭରେ ଆର୍ଯ୍ୟ-ଭାରତରେ ଷୋହଳଟି ସ୍ୱାଧୀନ ରାଜ୍ୟର ଅବସ୍ଥିତି ଦେଖିବାକୁ ମିଳେ । ଏହି ଷୋହଳଟି ରାଜ୍ୟ 'ଷୋଡ଼ଶ ମହାଜନପଦ' ନାମରେ ଖ୍ୟାତ । ଏମାନଙ୍କ ମଧ୍ୟରେ କେତେକ ରାଜ୍ୟ ଗଣତନ୍ତ୍ର ପ୍ରଣାଳୀରେ ଏବଂ ଅପର କେତେକ ରାଜତନ୍ତ୍ର ପ୍ରଣାଳୀରେ ଶାସିତ ହେଉଥିଲେ । କିନ୍ତୁ ଏହି ସମସ୍ତ ଖଣ୍ଡ, ବିକ୍ଷିପ୍ତ କ୍ଷୁଦ୍ର ଆର୍ଯ୍ୟ ରାଷ୍ଟ୍ରମାନଙ୍କୁ ଏକତ୍ରିତ କରି ଏକ ବିରାଟ ହିନ୍ଦୁ ସାମ୍ରାଜ୍ୟରେ ପରିଣତ କରିବାପାଇଁ ଯେଉଁ ସମ୍ୟକ ଚେଷ୍ଟା ତାହା ଏହି ଷଷ୍ଠ ଶତାବ୍ଦୀରୁ ଆରମ୍ଭ ହୁଏ । ଏହି ଶତାବ୍ଦୀରେ ମଗଧକୁ କେନ୍ଦ୍ରକରି ଏକତ୍ରିତ ଆର୍ଯ୍ୟ ସମାଜର କଳ୍ପନା କରାଯାଏ ଏବଂ ମଗଧାଧିପତି ବିମ୍ବିସାର ଏବଂ ତାହାଙ୍କ ପୁତ୍ର ଅଜାତଶତ୍ରୁ ଗାଙ୍ଗେୟ ଉପତ୍ୟକାର ଅନ୍ୟାନ୍ୟ

କ୍ଷୁଦ୍ର କ୍ଷୁଦ୍ର ରାଷ୍ଟ୍ରମାନଙ୍କର ଧ୍ୱଂସ ସାଧନ ପୂର୍ବକ ଏକ ସୁବିସ୍ତୃତ ସାମ୍ରାଜ୍ୟ ନିର୍ମାଣ କରନ୍ତି । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀ ଯେଉଁ ନିର୍ଦ୍ଦେଶ ଦେଇଥିଲା ତାହାର ପରିଣାମରେ ଶେଷରେ ଦିନେ ହିମାଦ୍ରି ପାଦରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ସମଗ୍ର ଭାରତ ଏକତ୍ରିତ ହେଲା । ବହୁବିଧ କାରଣରୁ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀ ଭାରତ ଇତିହାସରେ ଏକ ସ୍ମରଣୀୟ ଯୁଗ । କେବଳ ଭାରତ ଇତିହାସରେ ନୁହେଁ, ସମଗ୍ର ପୃଥିବୀ ଇତିହାସରେ ମଧ୍ୟ ଏ ଶତାବ୍ଦୀ ଗୋଟିଏ ଉଲ୍ଲେଖଯୋଗ୍ୟ ଯୁଗ । କାରଣ ଏହି ଶତାବ୍ଦୀରେ ଏସିଆ ଏବଂ ଇଉରୋପର ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ଅନ୍ୟ କେତେକ ମହାପୁରୁଷ ଜନ୍ମ ଗ୍ରହଣ କରିଥିଲେ । ଯେତେବେଳେ ଭାରତଖଣ୍ଡରେ ମହାବୀର ଜୀନ ଏବଂ ଗୌତମ ବୁଦ୍ଧ ପ୍ରାଚୀନ ହିନ୍ଦୁ ସମାଜରେ ସଂସ୍କାର ଆଣୁଥିଲେ, ଠିକ୍ ସେତିକିବେଳେ ବିଶାଳ ଚୀନ୍ ସାମ୍ରାଜ୍ୟରେ କନ୍‌ଫ୍ୟୁସିୟାସ୍ ଏବଂ ଲାଓସି ନାମକ ଦୁଇ ମହାପୁରୁଷ ପ୍ରାଚୀନ ଚୀନ ଅଧିବାସୀଙ୍କ ମଧ୍ୟରେ ଏକ ଆଦର୍ଶ ଦର୍ଶନ ଏବଂ ନୈତିକତା ପ୍ରଚାର କରୁଥିଲେ । ଏହି ସମୟରେ ସୁଦୂର ଗ୍ରୀସ୍ ଦେଶରେ ପାଶ୍ଚାତ୍ୟ ବିଜ୍ଞାନର ମୂଳଦୁଆ ଦେଉଥିଲେ ପିଥାଗୋରାସ୍ ପ୍ରମୁଖ ମହାପଣ୍ଡିତମାନେ । ଯେଉଁ ଶତାବ୍ଦୀରେ ଏପରି ବିଶିଷ୍ଟ ଇତିହାସ-ପ୍ରସିଦ୍ଧ ମହାପୁରୁଷମାନଙ୍କର ଜନ୍ମ ସେ ଶତାବ୍ଦୀ ବାସ୍ତବରେ ଇତିହାସର ଏକ ସ୍ମରଣୀୟ ଯୁଗ ।

ପୂର୍ବରୁ ଏକ ସଂକ୍ଷିପ୍ତ ଆଭାସ ଦିଆଯାଇଛି ଯେ ମହାଭାରତ ଯୁଗର ଶେଷ ପାଖରୁ ଇତିହାସ ଯୁଗର ଆରମ୍ଭ ପର୍ଯ୍ୟନ୍ତ ଯେଉଁ କେତେ ଶତାବ୍ଦୀ ବିତି ଯାଇଥିଲା ତାହା ମଧ୍ୟରେ ଭାରତର ପ୍ରାଚୀନ ଧର୍ମ ଓ ପ୍ରାଚୀନ ସମାଜ ଏକ ପ୍ରକାର ଅବଶ ହୋଇ ପଡ଼ିଥିଲା । କାଳ ଗର୍ଭରେ ପ୍ରତ୍ୟେକ ଧର୍ମ ଓ ପ୍ରତ୍ୟେକ ସମାଜର ଉତ୍‌ଥାନ ପତନ ହୁଏ । ହିନ୍ଦୁଧର୍ମ ଓ ହିନ୍ଦୁ ସମାଜ ମଧ୍ୟ ବହୁ ଯୁଗବ୍ୟାପୀ ପବିତ୍ର ଓ ଉନ୍ନତ ରହି ଆସିଥିଲା, କିନ୍ତୁ ତା'ପରେ ଗ୍ଲାନି ଏବଂ କୁସଂସ୍କାର ବିଜଡ଼ିତ ହୋଇ ପଡ଼ିଥିଲା । ପ୍ରତ୍ୟେକ ଧର୍ମ ଓ ସମାଜର ଏହିପରି ଅବନତି ବେଳେ ସଂସ୍କାର ଆବଶ୍ୟକ ହୋଇ ପଡ଼େ । ହିନ୍ଦୁଧର୍ମ ଓ ହିନ୍ଦୁ ସମାଜରେ ମଧ୍ୟ ସଂସ୍କାରର ଆବଶ୍ୟକତା ଉପଲବ୍ଧି କରାଯାଇଥିଲା । ଇତିହାସ ଯୁଗର ବହୁ ପୂର୍ବରୁ ଯେ ଏପରି ଏକ ସଂସ୍କାର ପାଇଁ ଭାରତ ବ୍ୟାକୁଳ ହୋଇ ଉଠିଥିଲା ତାହା ନିଶ୍ଚିତ । କାରଣ, ଧର୍ମ ସଂସ୍କାରକ ଓ ସମାଜ ବିପ୍ଳବୀ ମହାବୀର ଜୀନ ଏବଂ ଗୌତମ ବୁଦ୍ଧଙ୍କର ଆବିର୍ଭାବର ବହୁ ପୂର୍ବରୁ ହିନ୍ଦୁ ଭାରତରେ ଅନ୍ୟ କେତେ ବିପ୍ଳବୀ ଏବଂ ସଂସ୍କାରକ

ଜନ୍ମଗ୍ରହଣ କରିଥିଲେ । ଆଜି ଅବଶ୍ୟ ସେମାନଙ୍କର ନାମ ଏବଂ କୀର୍ତ୍ତି ପ୍ରାଗ୍-ଐତିହାସିକ ଯୁଗର ଅନ୍ଧକାରରାଶି ମଧ୍ୟରେ କବାଟିତ ହୋଇଯାଇଛି । ଜୈନ-ମାନଙ୍କ ବିଶ୍ୱାସରେ ମହାବୀରଙ୍କ ଜନ୍ମର ବହୁ ପୂର୍ବରୁ ଜଣକ ପରେ ଜଣେ ଏହିପରି ତେଇଶ ଜଣ 'ତୀର୍ଥଙ୍କର' ବା 'ଧର୍ମ ପ୍ରବର୍ତ୍ତକ' ଭାରତରେ ଜନ୍ମ ଗ୍ରହଣ କରିଥିଲେ ଏବଂ ମର ଜଗତରୁ ନିର୍ବାଣ ପ୍ରାପ୍ତି ନିମିତ୍ତ ଯାହା ପ୍ରକୃତ ସତ୍ୟ ଧର୍ମ ତାହାର ପ୍ରବର୍ତ୍ତନ ପାଇଁ ଚେଷ୍ଟା କରିଥିଲେ । ଏହି ତେଇଶ ଜଣ 'ତୀର୍ଥଙ୍କର'ଙ୍କ ମଧ୍ୟରେ ସର୍ବ ପ୍ରଥମ ତୀର୍ଥଙ୍କରଙ୍କ ନାମ ହେଉଛି ଋଷଭଦେବ ଏବଂ ସର୍ବଶେଷ 'ତୀର୍ଥଙ୍କର'ଙ୍କ ନାମ ପାର୍ଶ୍ୱନାଥ । ଏହି ତେଇଶ ଜଣ ତୀର୍ଥଙ୍କରଙ୍କର କାର୍ଯ୍ୟକଳାପ ଜୈନ ଧର୍ମ ଗ୍ରନ୍ଥରେ ଯେପରି ଭାବେ ବର୍ଣ୍ଣିତ ହୋଇଥାଉ ନା କାହିଁକି ସେ ସବୁର ସାରାଂଶରୁ ଏତିକି ଅନୁମାନ କରାଯାଏ ଯେ ମହାବୀର ଜୀନଙ୍କ ଜନ୍ମର ବହୁ ପୂର୍ବରୁ ହିନ୍ଦୁଧର୍ମ ବିରୁଦ୍ଧରେ ଏହି ଜୈନ ତୀର୍ଥଙ୍କରମାନେ ଏକାଦିକ୍ରମେ ଏକ ବିଦ୍ରୋହ ଘୋଷଣା କରି ଆସିଥିଲେ । ମହାବୀର ଜୀନଙ୍କର ଅବ୍ୟବହିତ ଆଗରୁ ଯେଉଁ ତୀର୍ଥଙ୍କର ତାହାଙ୍କର ଧର୍ମ ପ୍ରଚାର କରିଥିଲେ ସେହି ପାର୍ଶ୍ୱନାଥଙ୍କୁ ଅନେକେ ଜୈନ-ଧର୍ମର ପ୍ରକୃତ ପ୍ରବର୍ତ୍ତକ ବୋଲି ବିଶ୍ୱାସ କରନ୍ତି ।[1] ଏହି ପାର୍ଶ୍ୱନାଥ ମହାବୀରଙ୍କ ମୃତ୍ୟୁର ୨୫୦ ବର୍ଷ ପୂର୍ବେ ଜୀବନ ତ୍ୟାଗ କରିଥିଲେ ବୋଲି ଜୈନମାନଙ୍କର ମତ ଏବଂ ତେଣୁ ସେ ଖ୍ରୀଷ୍ଟପୂର୍ବ ଅଷ୍ଟମ ଶତାବ୍ଦୀର ମନୁଷ୍ୟ ବୋଲି କେତେକ ବିଶେଷଜ୍ଞଙ୍କ ବିଶ୍ୱାସ । ଆଦି ତୀର୍ଥଙ୍କର ଋଷଭଙ୍କ ସହି ପାର୍ଶ୍ୱନାଥଙ୍କ ପର୍ଯ୍ୟନ୍ତ ଅନ୍ୟ ଯେଉଁ ବାଇଶ ଜଣ ତୀର୍ଥଙ୍କରଙ୍କ ବିଷୟ ଜୈନଧର୍ମ ଘୋଷଣା କରେ ସେମାନଙ୍କର ପ୍ରକୃତ ବ୍ୟକ୍ତିତ୍ୱ ଉପରେ ଐତିହାସିକମାନେ ସନ୍ଦିହାନ ହୋଇ ପାରନ୍ତି, କିନ୍ତୁ ପାର୍ଶ୍ୱନାଥଙ୍କ ଅସ୍ତିତ୍ୱ ଏବଂ ବ୍ୟକ୍ତିତ୍ୱ ଉପରେ ସନ୍ଦେହ କରାଯାଇ ନ ପାରେ କାରଣ ସେ ଇତିହାସ ଯୁଗର ଅତି ନିକଟବର୍ତ୍ତୀ ଏକ ଶତାବ୍ଦୀର ମନୁଷ୍ୟ ଏବଂ ତାହାଙ୍କ ଅସ୍ତିତ୍ୱ ସମ୍ବନ୍ଧରେ ବିଶ୍ୱାସଯୋଗ୍ୟ ଅନେକ ପ୍ରମାଣ ରହିଛି । ମୋଟ ଉପରେ, ଇତିହାସ ଯୁଗର ପ୍ରଥମ ଶତାବ୍ଦୀରେ ମହାବୀର ଜୀନ ପୃଥିବୀର ଶେଷ ତୀର୍ଥଙ୍କର ରୂପେ ହିନ୍ଦୁଧର୍ମ ବିରୁଦ୍ଧରେ ବ୍ୟାପକ ଅଭିଯାନ ଆରମ୍ଭ କଲା ପୂର୍ବରୁ ଏପରି ଏକ ଅଭିଯାନ ପାଇଁ ମାର୍ଗ ପ୍ରସ୍ତୁତ ହୋଇ ସାରିଥିଲା । ମହାବୀର ଇତିହାସ ଯୁଗର ସର୍ବ ପ୍ରଥମ ସମାଜ ସଂସ୍କାରକ ସତ୍ୟ କିନ୍ତୁ ବହୁ ପୂର୍ବରୁ ଆରମ୍ଭ ହୋଇଥିବା

1. Prof. Jacobi and others.

ଜୈନ ବିପ୍ଳବ ଧାରାର ସେ ହେଉଛନ୍ତି ସର୍ବଶେଷ ବିପ୍ଳବୀ ନେତା । ଚବିଶି ଜଣ ତୀର୍ଥଙ୍କରଙ୍କ ମଧ୍ୟରେ ସେ ସର୍ବଶ୍ରେଷ୍ଠ ଏବଂ ଶେଷ ତୀର୍ଥଙ୍କର ।

ଜୈନ ବିପ୍ଳବ ପରି ବୌଦ୍ଧ ବିପ୍ଳବ ପାଇଁ ମଧ୍ୟ ଆଗରୁ ମାର୍ଗ ପ୍ରସ୍ତୁତ ହୋଇ ଯାଇଥିଲା । ବରଂ ଏହା କହିଲେ ଠିକ୍ ହେବ ଯେ ଏ ଦୁଇ ବିପ୍ଳବର କାରଣ ଏକ । ସୁତରାଂ ଯେଉଁ କାରଣ ପାଇଁ ମହାବୀରଙ୍କର ଜନ୍ମ ସେହି କାରଣ ପାଇଁ ମଧ୍ୟ ଗୌତମ ବୁଦ୍ଧଙ୍କର ଜନ୍ମ ଏବଂ ମହାବୀରଙ୍କ ପୂର୍ବରୁ ଯେପରି ତାହାଙ୍କ ଧର୍ମ ପ୍ରଚାର ପାଇଁ ମାର୍ଗ ପ୍ରସ୍ତୁତ ହୋଇ ସାରିଥିଲା ଠିକ୍ ସେହିପରି ବୁଦ୍ଧଙ୍କ ଜନ୍ମ ଆଗରୁ ମଧ୍ୟ ତାହାଙ୍କ ଆବିର୍ଭାବର ଆବଶ୍ୟକତା ଭାରତବାସୀ ଉପଲବ୍ଧି କରି ସାରିଥିଲେ । ବୌଦ୍ଧ ଧର୍ମଗ୍ରନ୍ଥମାନଙ୍କରୁ ଜଣାଯାଏ ଯେ ବୁଦ୍ଧଙ୍କ ଜନ୍ମ ପୂର୍ବରୁ ଦେବତା ଏବଂ ଋଷିମାନଙ୍କ ମଧ୍ୟରେ ଆନନ୍ଦର ସ୍ରୋତ ବହି ଯାଇଥିଲା କାରଣ ଧର୍ମ ସଂସ୍ଥାପନ ପାଇଁ ବୁଦ୍ଧଦେବଙ୍କର ପୃଥିବୀରେ ଆବିର୍ଭାବ ହେବ ବୋଲି ସେମାନେ ଦୈବଶକ୍ତି ବଳରେ ଜାଣି ପାରିଥିଲେ । ଏପରି ବୌଦ୍ଧ କିମ୍ବଦନ୍ତୀମାନଙ୍କରୁ ଏହି ଇଙ୍ଗିତ ମିଳେ ଯେ ସମାଜ-ସଂସ୍କାରକାମୀ ଭାରତୀୟମାନେ ସମାଜ ସଂସ୍କାର ପାଇଁ ବ୍ୟାକୁଳ ହୋଇ ଉଠିଥିଲେ ଏବଂ ସେ କାର୍ଯ୍ୟର ସମ୍ପାଦନ ପାଇଁ ଜଣେ ମହାପୁରୁଷର ଆବିର୍ଭାବ ହେଉ ଏ ପାଇଁ ଏକ ଘୋର କାମନା କରିଥିଲେ । ଏହି ଶତ ଶତ ସଂସ୍କାରକାମୀ ହିନ୍ଦୁ ଯେଉଁ ବିପ୍ଳବ ପାଇଁ ପ୍ରସ୍ତୁତ ହେଉଥିଲେ ସେହି ବିପ୍ଳବର ପରିଣତ ହେଲା ଜୈନ ଏବଂ ବୌଦ୍ଧଧର୍ମର ଉତ୍ଥାନରେ । ଖ୍ରୀ:ପୂ: ଷଷ୍ଠ ଶତାବ୍ଦୀର ଦୁଇ ତିନି ଶହ ବର୍ଷ ଆଗରୁ ଭାରତବର୍ଷର ବିଭିନ୍ନ ସ୍ଥାନରେ ଧର୍ମ ଓ ସମାଜ ବିରୁଦ୍ଧରେ ପ୍ରତିବାଦ ଆରମ୍ଭ ହୋଇଥିଲା । ଏହି ଆଦ ବିପ୍ଳବୀମାନେ ପ୍ରସିଦ୍ଧ ନ ହେଲେ ସୁଦ୍ଧା ଏମାନଙ୍କର ସମବେତ ବିପ୍ଳବ ବାଣୀ ଭବିଷ୍ୟତରେ ମହାବୀର ଏବଂ ବୁଦ୍ଧଙ୍କ ପରି ଦୁଇ ମହାପୁରୁଷଙ୍କର ବିପ୍ଳବ ନାଦ ପାଇଁ ଶକ୍ତି ସଞ୍ଚୟ କରି ରଖିଥିଲା । କେବଳ ତୀର୍ଥଙ୍କରମାନେ ନୁହନ୍ତି, ସେମାନଙ୍କ ବ୍ୟତୀତ ଅନେକ ଦାର୍ଶନିକ ପଣ୍ଡିତ ମଧ୍ୟ ସେମାନଙ୍କର ନିଜ ନିଜ ଉପାୟରେ ଏକ ବିପ୍ଳବବାଦ ସୃଷ୍ଟି କରୁଥାଆନ୍ତି । ଡକ୍ଟର ରିସ ଡେଭିଡ୍ସଙ୍କ ମତରେ ଏହି ଦାର୍ଶନିକମାନେ ପ୍ରତ୍ୟେକ ବର୍ଷ ଆଠ, ନଅ ମାସ କାଳ ଦେଶର ବିଭିନ୍ନ ସ୍ଥାନରେ ଧର୍ମ ଏବଂ ଦର୍ଶନ ଉପରେ ଯୁକ୍ତି ତର୍କ କରି ଭ୍ରମଣ କରୁଥାଆନ୍ତି ।[1] ଭାରତର ଏହିପରି ଏକ

1. Buddhist India p. 141.

ଅବସ୍ଥା ଦେଲେ, ଯେତେବେଳେ କେବଳ ଦାର୍ଶନିକମାନଙ୍କ ମଧ୍ୟରେ ନୁହେଁ ସମାଜର ବିଭିନ୍ନ ଶ୍ରେଣୀ ମଧ୍ୟରେ ଧର୍ମ ଏବଂ ସାମାଜିକ ଅବସ୍ଥା ସମ୍ବନ୍ଧରେ ଘୋର ସନ୍ଦେହ ଜାତ ହୋଇଥିଲା, ଠିକ୍ ସେତେବେଳେ ଦୁଇଜଣ ମହାବିପ୍ଳବୀଙ୍କର ଜନ୍ମ । ଏହି ଦୁଇ ସଂସ୍କାରକଙ୍କର ବିପ୍ଳବବାଦ ସମଗ୍ର ହିନ୍ଦୁ ଧର୍ମ ଓ ସମାଜକୁ ଆମୂଳଚୂଳ ବିକମ୍ପିତ କରିଦେଇଥିଲା । କିନ୍ତୁ ମନ ମଧ୍ୟରେ ସ୍ୱତଃ ଏକ ପ୍ରଶ୍ନ ଜାଗରିତ ହୁଏ, ଏହି ଯୁଗ ପରିବର୍ତ୍ତନକାରୀ ଜୈନ ଏବଂ ବୌଦ୍ଧ ବିପ୍ଳବ ପାଇଁ ଦାୟୀ କିଏ ? ଯେଉଁମାନେ ଏ ବିପ୍ଳବର ଅଗ୍ରଗଣ୍ୟ ନେତା ହୋଇଥିଲେ ସେହି ଜୀନ ଏବଂ ବୁଦ୍ଧ, ନା, ଯାହା ବିରୁଦ୍ଧରେ ଏ ବିପ୍ଳବର ସମସ୍ତ ଶକ୍ତି ପରିଚାଳିତ ହୋଇଥିଲା ସେହି ଜାତିଭ୍ରଷ୍ଟ ହିନ୍ଦୁ ରକ୍ଷଣଶୀଳ ସମ୍ପ୍ରଦାୟ ?

ପୃଥିବୀ ପୃଷ୍ଠରେ ବହୁ ଧର୍ମ-ବିପ୍ଳବ, ବହୁ ରାଷ୍ଟ୍ର-ବିପ୍ଳବ ଏବଂ ବହୁ ସମାଜ-ବିପ୍ଳବର ପ୍ରବଳ ଝଞ୍ଜା ବହୁବାର ବହିଯାଇଛି । କିନ୍ତୁ ଏହି ସବୁ ବିପ୍ଳବ ପାଇଁ ଦାୟୀ କିଏ ଏବଂ ଏ ସବୁ ବିପ୍ଳବର କାରଣ କଣ ? ଯେଉଁମାନେ ବିପ୍ଳବୀ ସେମାନେ କେବଳ ଉପଲକ୍ଷ ମାତ୍ର ଏବଂ ଘଟଣା ଚକ୍ରରେ ପଡ଼ି ସେମାନେ କେବଳ ବିପ୍ଳବର ନେତୃତ୍ୱ ଦେଇଛନ୍ତି, ଏତିକି । କିନ୍ତୁ, ସେମାନେ କେବେହେଲେ ବିପ୍ଳବର କାରଣ ହୋଇ ନ ପାରନ୍ତି । ମଧ୍ୟ ଯୁଗର ଇଉରୋପରେ ଯେଉଁ ତୁମୁଳ ଧର୍ମ-ବିପ୍ଳବ ସଂଘଟିତ ହୋଇଥିଲା ତାହାର ମୂଳ କାରଣ ମାର୍ଟିନ୍ ଲୁଥାର କିମ୍ବା ଉଇକ୍ଲିଫ୍ ନୁହନ୍ତି । ସେମାନେ କେବଳ ସେ ବିପ୍ଳବର ଅଗ୍ରଣୀ ହୋଇଥିଲେ ଏବଂ ବିପ୍ଳବର ଗତି ନିର୍ଣ୍ଣୟ କରିଥିଲେ । କିନ୍ତୁ ବିପ୍ଳବର ପ୍ରକୃତ କାରଣ ରହିଥିଲା ତଦାନୀନ୍ତନ ଖ୍ରୀଷ୍ଟ ଧର୍ମ ଅଙ୍ଗରେ ଯେଉଁ ରକ୍ଷଣଶୀଳତା ଏବଂ ଗ୍ଳାନି ଦେଖା ଦେଇଥିଲା ତାହାର ମୂଳରେ । ସମଗ୍ର ଖ୍ରୀଷ୍ଟଧର୍ମାବଲମ୍ବୀ ଜଗତର ଯେଉଁ ଧର୍ମଗୁରୁ ପୋପ୍ ସେ ସ୍ୱୟଂ ବିଳାସ ବ୍ୟସନରେ ନିମଜ୍ଜିତ ରହି ଇଉରୋପୀୟ ରକ୍ଷଣଶୀଳତାର ସର୍ବପ୍ରଧାନ ପ୍ରତିନିଧି ହୋଇ ପଡ଼ିଥିଲେ । ବିପଥଗାମୀ ଖ୍ରୀଷ୍ଟଧର୍ମୀ ଧର୍ମଯାଜକମାନଙ୍କର ଦୁର୍ନୀତି ଧର୍ମକୁ କଳଙ୍କିତ କରି ଦେଇଥିଲା । ଧର୍ମ ନାମରେ ସମାଜ ଉପରେ ଯେଉଁ ଅତ୍ୟାଚାର ଏବଂ ଶୋଷଣନୀତି ପ୍ରୟୋଗ କରା ଯାଇଥିଲା ତାହା ଫଳରେ ସମାଜ ବିବ୍ରତ ହୋଇ ଉଠିଥିଲା । ଏପରି ଅବସ୍ଥାରେ ଖ୍ରୀଷ୍ଟଧର୍ମର ଏକ ଆମୂଳଚୂଳ ପରିବର୍ତ୍ତନ ପାଇଁ ଚିନ୍ତାଶୀଳ ବ୍ୟକ୍ତିମାନେ ବ୍ୟାକୁଳ ହୋଇ ଉଠିଥିଲେ । ଦୁର୍ନୀତି, ଅତ୍ୟାଚାର ଏବଂ ରକ୍ଷଣଶୀଳତା ବିରୁଦ୍ଧରେ ଏକ ତୁମୁଳ ବିପ୍ଳବ ହେବ ଏପା[illegible] ଜରୁର

ବହୁ ପୂର୍ବରୁ ଇଉରୋପ ପ୍ରସ୍ତୁତ ହୋଇ ସାରିଥିଲା । ଯେତେବେଳେ କ୍ଷେତ୍ର ପ୍ରସ୍ତୁତ ହୋଇ ସାରିଥିଲା ଏବଂ ଅନ୍ୟ ବିପ୍ଳବୀମାନଙ୍କଦ୍ୱାରା ଇଉରୋପର ବିଭିନ୍ନ ସ୍ଥାନରେ ବିଦ୍ରୋହାଗ୍ନି ପାଇଁ ଘୃତ, କାଷ୍ଠ ପ୍ରଭୃତି ସଂଗୃହୀତ ହୋଇ ସାରିଥିଲା, ସେତେବେଳେ ମାର୍ଟିନ୍ ଲୁଥାର କେବଳ ନେତୃତ୍ୱ ଦେଇଥିଲେ । ଲୁଥାର ଜନ୍ମ ହୋଇ ନ ଥିଲେ ମଧ୍ୟ ରୋମାନ୍-କ୍ୟାଥୋଲିକ୍ ଗିର୍ଜା ବିରୁଦ୍ଧରେ ବିଦ୍ରୋହ ହୋଇ ଥାଆନ୍ତା ଏବଂ ଖ୍ରୀଷ୍ଟ ସମାଜ ଓ ଧର୍ମ ଦୋଷକୁ ଗ୍ଳାନି ଦୂରୀଭୂତ କରାଯାଇ ଥାଆନ୍ତା । କାରଣ ତାହା କରି ନ ଥିଲେ ଖ୍ରୀଷ୍ଟଧର୍ମ ଅଧଃପତନ ମୁଖରେ ବିଲୟ ହୋଇ ଥାଆନ୍ତା । ସୁତରାଂ ମଧ୍ୟଯୁଗରେ ସେ ଇଉରୋପୀୟ ଧର୍ମ-ବିପ୍ଳବ ପାଇଁ ଦାୟୀ ହେଉଛନ୍ତି ପୋପ୍ ଏବଂ ଧର୍ମଯାଜକମାନେ, ଲୁଥାର ନୁହନ୍ତି । ପୋପ୍ ନିଜେ ଯଦି ରକ୍ଷଣଶୀଳତାର ଶେଷ ସୀମାରେ ପହଞ୍ଚି ଧର୍ମ ଉପରେ ତାଙ୍କ ନିଜର ଏବଂ ଧର୍ମଯାଜକ ସମ୍ପ୍ରଦାୟର ଏକାଧିପତ୍ୟ ବିସ୍ତାର କରି ନ ଥାନ୍ତେ ଏବଂ କପଟତା, ଶୋଷଣ ଓ କୁସଂସ୍କାର ପ୍ରଭୃତିକୁ ପ୍ରଶ୍ରୟ ଦେଇ ନ ଥାନ୍ତେ, ତେବେ ତାହାଙ୍କ ବିରୁଦ୍ଧରେ ପ୍ରଗତିଶୀଳ ଇଉରୋପ ବିଦ୍ରୋହ ଘୋଷଣା କରି ନ ଥାନ୍ତା ଏବଂ ସେ ବିଦ୍ରୋହାଗ୍ନି ମଧ୍ୟରେ ସହସ୍ର ସହସ୍ର ନିରୀହ ଇଉରୋପବାସୀଙ୍କୁ ଭସ୍ମୀଭୂତ ହେବାକୁ ମଧ୍ୟ ହୋଇ ନ ଥାନ୍ତା । ଲୁଥାର ଯଦି ବିଦ୍ରୋହର କାରଣ ହୋଇ ଥାଆନ୍ତେ ତେବେ ତାଙ୍କ ମୃତ୍ୟୁ ପରେ ବହୁ ଯୁଗ ପର୍ଯ୍ୟନ୍ତ ସେ ବିଦ୍ରୋହର ଅଗ୍ନି ଦେଖିବାକୁ ମିଳି ନ ଥାନ୍ତା । କିନ୍ତୁ, ଯେହେତୁ ସେ ବିପ୍ଳବର କାରଣ ହେଉଛନ୍ତି ପୋପ୍ ଏବଂ ଧର୍ମର ରକ୍ଷଣଶୀଳ ସମ୍ପ୍ରଦାୟ, ସେଥିପାଇଁ ଯେ ପର୍ଯ୍ୟନ୍ତ ସେହି ପୋପ୍‌ଙ୍କର ପ୍ରାଧାନ୍ୟ ଥିବ ଏବଂ ଯେତେ ପର୍ଯ୍ୟନ୍ତ ଧର୍ମ ନାମରେ ଏକ ରକ୍ଷଣଶୀଳତାର ଦୁର୍ଗ ମଧ୍ୟରେ ସମାଜ ଉପରେ ଅତ୍ୟାଚାର ଚାଲିଥିବ, ସେତେ ପର୍ଯ୍ୟନ୍ତ ବିପ୍ଳବର ନିଆଁ ମଧ୍ୟ ଧୂ ଧୂ ହୋଇ ଜଳୁଥିବ । ମଧ୍ୟ ଯୁଗର ସେହି ଧର୍ମ-ବିପ୍ଳବର ନିଆଁ ଆଜି ସୁଦ୍ଧା ଖ୍ରୀଷ୍ଟ ସମାଜ ମଧ୍ୟରେ 'ପ୍ରୋଟେଷ୍ଟାଣ୍ଟ' ନାମରେ ଜାଗ୍ରତ ରହିଛି, କାରଣ ଏ ପର୍ଯ୍ୟନ୍ତ ଖ୍ରୀଷ୍ଟଧର୍ମରୁ ରକ୍ଷଣଶୀଳତା ନିଃଶେଷ ହୋଇ ପାରି ନାହିଁ କିମ୍ବା ଧର୍ମଯାଜକମାନଙ୍କର ଧର୍ମ ବ୍ୟବସାୟ ବନ୍ଦ ହୋଇ ନାହିଁ । ଅଥଚ, ବିପ୍ଳବୀ ଲୁଥାର କେଉଁ କାଳରୁ ଧରାପୃଷ୍ଠରୁ ବିଦାୟ ନେଇ ଗଲେଣି ।

ଠିକ୍ ସେହିପରି, ଅଷ୍ଟାଦଶ ଶତାବ୍ଦୀର ଇତିହାସ-ବିଖ୍ୟାତ ଫରାସୀ ରାଷ୍ଟ୍ର ବିପ୍ଳବ ପାଇଁ ଦାୟୀ କିଏ ? ବିପ୍ଳବପନ୍ଥୀ ରୁଷୋ, ମିରାବୁ, ମାରାଟ୍, ଡାଣ୍ଟନ୍ ଏବଂ

ରବ୍ସପିୟାରୀ ପ୍ରଭୃତି ନେତୃବୃନ୍ଦ ନା ଫ୍ରାନ୍ସ ଦେଶର ରାଜା, ରାଣୀ, ମନ୍ତ୍ରୀ ଏବଂ ଅତ୍ୟାଚାରୀ ଅଭିଜାତ ସମ୍ପ୍ରଦାୟ ? ଫରାସୀ ରାଷ୍ଟ୍ର ବିପ୍ଳବର ବହୁ ପୂର୍ବରୁ ଫରାସୀ ନରପତିମାନଙ୍କର ଅତ୍ୟାଚାର ଦେଶ ମଧ୍ୟରେ ହାହାକାର ସୃଷ୍ଟି କରିଥିଲା । ପ୍ରଜାର ସର୍ବସ୍ୱ ଅପହରଣ କରି ଅସତ୍ ଚରିତ୍ର ଫରାସୀ ଅଭିଜାତ ଶ୍ରେଣୀ ଫରାସୀ ସମ୍ରାଟ୍ ଚତୁର୍ଦ୍ଦଶ ଲୁଇଙ୍କର ଭର୍ସାଇ ପ୍ରମୋଦ ଭବନରେ ଯେଉଁ କଦର୍ଯ୍ୟ ନୀତିହୀନତାର ଆଦର୍ଶ ଦେଖାଇଥିଲେ ତାହା ପୃଥିବୀ ଇତିହାସରେ ପ୍ରାୟ ବିରଳ । ଜଣକ ପରେ ଜଣେ ଏହିପରି ତ୍ରୟୋଦଶ, ଚତୁର୍ଦ୍ଦଶ, ପଞ୍ଚଦଶ ଏବଂ ଷୋଡ଼ଶ ଲୁଇ ଫ୍ରାନ୍ସ ଦେଶ ଉପରେ ରାଜୁତି କରି ଯାଉଥାଆନ୍ତି ; କେତେ ମନ୍ତ୍ରୀ, କେତେ ରାଜ ଉପଦେଷ୍ଟା ନିଜ ନିଜ ମତରେ ରାଜ୍ୟର ଶାସନକଳ ଚାଳିତ କରୁଥାଆନ୍ତି ; ବଂଶ ପରେ ବଂଶ ଫରାସୀ ଧନିକ ସମ୍ପ୍ରଦାୟ ରାଜ୍ୟର ସମସ୍ତ ସୁଖ ସ୍ୱାଚ୍ଛନ୍ଦ ନିର୍ବିଘ୍ନରେ ଭୋଗକରି ଯାଉଥାଆନ୍ତି ; ଅଥଚ, ଦୁର୍ଭିକ୍ଷ ପ୍ରପୀଡ଼ିତ, ବୁଭୁକ୍ଷୁ ଫରାସୀ କୃଷକମାନଙ୍କର ଆର୍ତ୍ତନାଦ ସେମାନଙ୍କର କର୍ଣ୍ଣ ପ୍ରବେଶ କରୁ ନ ଥାଏ । ଦେଶର ଏହି ଅଶାନ୍ତି, ରାଜାର ଅତ୍ୟାଚାର ଓ ଅବିଚାର, ଶାସନ ଶୃଙ୍ଖଳାରେ ବ୍ୟଭିଚାର, ପାତ୍ର ମନ୍ତ୍ରୀମାନଙ୍କର ସ୍ୱାର୍ଥପରତା, ଅଭିଜାତ ଶ୍ରେଣୀର ଶୋଷଣ, ଦେଶବ୍ୟାପୀ ଅଭାବ ଅନଟନ ଏବଂ ଦୁର୍ଭିକ୍ଷ ଏବଂ ପ୍ରଜାର କରୁଣ ଆର୍ତ୍ତନାଦ— ଏହାହିଁ ଥିଲା ଫରାସୀ ରାଷ୍ଟ୍ର ବିପ୍ଳବର କାରଣ । ତଥାକଥିତ ବିପ୍ଳବୀମାନେ ଫରାସୀ ରାଷ୍ଟ୍ରରେ ଜନ୍ମଗ୍ରହଣ କରି ନ ଥିଲେ ମଧ୍ୟ ଏ ବିପ୍ଳବ ଯଥା ସମୟରେ ରାଜମୁଣ୍ଡ ବିଖଣ୍ଡିତ କରିଥାଆନ୍ତା ଏବଂ ଫରାସୀ ରାଜତନ୍ତ୍ରର ମୃତ୍ୟୁବାଣୀ ଘୋଷଣା କରିଥାଆନ୍ତା । ଫରାସୀ ରାଷ୍ଟ୍ର ବିପ୍ଳବର ଯେଉଁମାନେ ନେତୃତ୍ୱ ଦେଇଥିଲେ ସେମାନଙ୍କ ମଧ୍ୟରେ ଏପରି କେହି ପ୍ରତିଭାଶାଳୀ, ଚିନ୍ତାଶୀଳ ମନୀଷୀ ନ ଥିଲେ ଯେ ଯାହାଙ୍କ ପାଇଁ ବିପ୍ଳବ ହୋଇଥିଲା ବୋଲି କୁହାଯାଇ ପାରିବ । ବିପ୍ଳବର କାରଣଗୁଡ଼ିକ ଯେତେବେଳେ ପରିପକ୍ୱ ହୋଇ ଉଠିଥିଲା ସେତେବେଳେ ସ୍ୱତଃ ପ୍ରରୋଚିତ ହୋଇ ନିଜ ମନକୁ ଏବଂ ବିନା ନେତୃତ୍ୱରେ ବିପ୍ଳବ ମାତି ଯାଇଥିଲା । ଏହି ବିପ୍ଳବ ଆରମ୍ଭ ହେଲା ପରେ ମିରାବୁ, ମାରାଟ୍, ଡାଣ୍ଟନ୍, ରବ୍ସପିଆରୀ, ମ୍ୟାଡାମ୍ ରୋଲାଁ ପ୍ରଭୃତି ତଥାକଥିତ ବିପ୍ଳବୀ ରୂପେ ସେ ବିପ୍ଳବର ଗତି ନିର୍ଣ୍ଣୟ କରିବାକୁ ଚେଷ୍ଟା କରୁଥାଆନ୍ତି ମାତ୍ର । କିନ୍ତୁ ପରକ୍ଷଣରେ ଏମାନେ ବିପ୍ଳବର ପ୍ରବଳ ସ୍ରୋତରେ ନିଜେ ମଧ୍ୟ ଭାସିଯାଇ ସ୍ରୋତର କେଉଁ ଅତଳ ଗର୍ଭରେ ସମାଧି ଲାଭ କରୁଥାଆନ୍ତି ।

ଏ ହେଲା ଫରାସୀ ରାଷ୍ଟ୍ର ବିପ୍ଳବର କଥା । ସେହିପରି ଏହି ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକରେ ଯେଉଁ ସର୍ବଧ୍ୱଂସୀ ରୁଷ୍ ସମାଜ ବିପ୍ଳବ ପ୍ରାଚୀନ ରୁଷିଆର ରାଷ୍ଟ୍ରନୀତି, ଅର୍ଥନୀତି, ସମାଜନୀତି ଏବଂ ଧର୍ମନୀତି ପ୍ରଭୃତି ସମସ୍ତଙ୍କର ଆମୂଳଚୂଳ ପରିବର୍ତ୍ତନ କରିଦେଲା, ସେ ସମାଜ-ବିପ୍ଳବର କାରଣ ବିପ୍ଳବୀ ଲେନିନ୍ କିମ୍ବା ଟ୍ରଟ୍‌ସ୍କି ନୁହନ୍ତି, ସେମାନେ କେବଳ ଉପଲକ୍ଷ ମାତ୍ର । କିନ୍ତୁ ରୁଷ୍ ବିପ୍ଳବର ପ୍ରକୃତ କାରଣ ହେଉଛି ରୁଷ୍ ରାଷ୍ଟ୍ରନୀତିର ଚରମ ଅବନତି, ପ୍ରାଚୀନ ସାମ୍ରାଜ୍ୟବାଦର ନିର୍ଲଜ୍ଜ ପରାଜୟ, ରୁଷ୍ ସମାଜ ମଧ୍ୟରେ ଘୃଣ୍ୟ ଦାସପ୍ରଥା, ରୁଷ୍ ଶ୍ରମିକ ସମ୍ପ୍ରଦାୟର ବୁଭୁକ୍ଷୁ ଜୀବନ ଯାପନ, ଏବଂ ରୁଷ୍ ପୁଞ୍ଜିପତି ଶ୍ରେଣୀର ଅମାନୁଷିକ ଅତ୍ୟାଚାର ଏବଂ ଅର୍ଥନୈତିକ ବ୍ୟଭିଚାର । ଏହି ସବୁ କାରଣ ପାଇଁ ବିପ୍ଳବ ଜାଗି ଉଠେ, ବିନା ନେତୃତ୍ୱରେ ମଧ୍ୟ ସେ ବିପ୍ଳବ ତା'ର ସର୍ବଗ୍ରାସୀ ଶିଖା ଚତୁର୍ଦ୍ଦିଗକୁ ବିସ୍ତାର କରିଦେଇ ପାରେ । ପ୍ରତ୍ୟେକ ବିପ୍ଳବର କାରଣ ବିପ୍ଳବୀମାନେ ନୁହନ୍ତି, ଯେଉଁମାନଙ୍କ ବିରୁଦ୍ଧରେ ଏବଂ ଯେଉଁ ପାଇଁ ବିପ୍ଳବ ମାତି ଉଠେ ସେହିମାନେ ଏବଂ ତାହାହିଁ ପ୍ରକୃତ କାରଣ ।

ଠିକ୍ ସେହିପରି ଖ୍ରୀ: ପୂ: ଷଷ୍ଠ ଶତାବ୍ଦୀର ସେହି ଭାରତୀୟ ଧର୍ମ ବିପ୍ଳବ ପାଇଁ ଦାୟୀ ସେ ଯୁଗର ହିନ୍ଦୁ ସମାଜ ଓ ଧର୍ମ ଯାହାର ସଂସ୍କାର ପାଇଁ ବିପ୍ଳବ ସତେଜ ହୋଇ ଉଠିଥିଲା । ଜାତିପ୍ରଥା, ମନୁଷ୍ୟ ମନୁଷ୍ୟ ମଧ୍ୟରେ ଭେଦାଭେଦ ଏବଂ ପରସ୍ପର ପ୍ରତି ଘୃଣାଭାବ ଓ ଶ୍ରେଣୀ ସଂଘର୍ଷ, ବ୍ରାହ୍ମଣ ସମ୍ପ୍ରଦାୟର ଧର୍ମ ବ୍ୟବସାୟ ଏବଂ ଧର୍ମ ଉପରେ ଏକାଧିପତ୍ୟ ବିସ୍ତାର, ହିଂସା, ପଶୁହତ୍ୟା ଏବଂ ଅନାଚାର, ଅସଂଖ୍ୟ ଦେବଦେବୀଙ୍କର ପୂଜା ଏବଂ ମନ୍ତ୍ରତନ୍ତ୍ରର ପ୍ରଚଳନ, ଜଟିଳତାପୂର୍ଣ୍ଣ ଧର୍ମ ଏବଂ ଧର୍ମ ମଧ୍ୟରେ ଗ୍ଳାନି ଓ କୁସଂସ୍କାର, ପୂଜା ପଦ୍ଧତି ନାମରେ ପୂଜକ ଶ୍ରେଣୀର ଶୋଷଣ ଏବଂ ସେହି ଶୋଷଣନୀତି ମୂଳରେ ନାନାପ୍ରକାର ବ୍ୟଭିଚାର, ଈଶ୍ୱର ବିଶ୍ୱାସ ଏବଂ ସରଳ ନୈତିକ ଜୀବନ ଯାପନ ପରିବର୍ତ୍ତେ ମନୁଷ୍ୟର ଅନ୍ଧ ବିଶ୍ୱାସ ଏବଂ କପଟତାମୟ ଜୀବନ ଯାପନ, ଜ୍ଞାନ ଏବଂ ପ୍ରଜ୍ଞା ପରିବର୍ତ୍ତେ ସମାଜରେ ମୂର୍ଖତା ଏବଂ କୁଶିକ୍ଷାର ପ୍ରଭାବ—ଏହି ସମସ୍ତ ହେଉଛି ଜୈନ ଓ ବୌଦ୍ଧ ବିପ୍ଳବର କାରଣ । ଏହିପରି ଏକ ବିପଥଗାମୀ ସମାଜ ଏବଂ ନୀତିହୀନ ଧର୍ମ ବିରୁଦ୍ଧରେ ସେହି ସମାଜ ଏବଂ ସେହି ଧର୍ମ ମଧ୍ୟରୁହିଁ ବିଦ୍ରୋହ ଘୋଷଣା କରାଯାଇଥିଲା, କାରଣ ଆଦର୍ଶ ସ୍ଖଳିତ ହେଲେ ସୁଦ୍ଧା ହିନ୍ଦୁ ସଭ୍ୟତା ନିଜର ପୂର୍ବର ଗୌରବ ଅସ୍ତିତ୍ୱ ଉପରେ ଅତୁଟ

ବିଶ୍ୱାସ ରଖିଥିଲା ଏବଂ ପୁନର୍ବାର ନିଜର ପୂର୍ବ ଆଦର୍ଶକୁ ଫେରି ଯିବାକୁ ଚାହୁଁଥିଲା । ହିନ୍ଦୁର ବିଶ୍ୱାସ, ଯେତେବେଳେ ଧର୍ମ ଗ୍ଲାନି ବିଜଡ଼ିତ ହୋଇ ପଡ଼ିବ ସେତେବେଳେ ତା'ର ପରିବର୍ତ୍ତନ ଆବଶ୍ୟକ ଏବଂ ଅବଶ୍ୟମ୍ଭାବୀ । ସେଥିପାଇଁ ହିନ୍ଦୁ ନିଜର ଭଗବାନଙ୍କ ମୁଖରୁ ମଧ୍ୟ ଘୋଷଣା କରାଇ ନେଇଛି ଯେ, "ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ,...ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।"[1] ହିନ୍ଦୁଧର୍ମ ଓ ସମାଜ ଗ୍ଲାନି ବିଜଡ଼ିତ ହୋଇ ପଡ଼ିଥିଲା ଏବଂ ତାହାହିଁ ଥିଲା ପରିବର୍ତ୍ତନ ବା ବିପ୍ଳବର କାରଣ । କାରଣର ବିଦ୍ୟମାନରେ ସ୍ୱୟଂ ଭଗବାନ୍ ଆବିର୍ଭାବ ହେଲେ ମଧ୍ୟ ସେ କେବଳ ଉପଲକ୍ଷ ମାତ୍ର । ସୁତରାଂ ବିପ୍ଳବୀ ଜୀନ ଏବଂ ବିପ୍ଳବୀ ବୁଦ୍ଧ ସେମାନେ ବିପ୍ଳବର କାରଣ ନୁହନ୍ତି, ସେମାନେ କେବଳ ସେହି କାରଣ ପାଇଁ ବିପ୍ଳବୀ ।

ଜୈନ ଧର୍ମଗ୍ରନ୍ଥ 'କଳ୍ପସୂତ୍ର'ରୁ ମହାବୀରଙ୍କ ଜନ୍ମ ଏବଂ ଜୀବନୀ ସମ୍ବନ୍ଧରେ ବିଶଦ ବିବରଣୀ ମିଳେ । ପ୍ରାଚୀନ ଭାରତରେ ବିଦେହ ରାଜ୍ୟର ରାଜଧାନୀ ବୈଶାଳୀ ଏକ ପ୍ରସିଦ୍ଧ ନଗରୀ ଥିଲା ବୋଲି ଇତିହାସରୁ ଜଣାଯାଏ । ଏହି ବୈଶାଳୀ ନଗରୀର ଅନତିଦୂରରେ କୁଣ୍ଡଗ୍ରାମ ନାମକ ଗ୍ରାମର ଅବସ୍ଥିତି ଥିଲା । ଏହି ଗ୍ରାମର ଏକ କ୍ଷତ୍ରିୟ ସମ୍ଭ୍ରାନ୍ତ ବଂଶରେ ମହାବୀର ବର୍ଦ୍ଧମାନଙ୍କର ଜନ୍ମ । ମହାବୀରଙ୍କ ପିତା ବୈଶାଳୀ ଅଧିପତି ଚେତକଙ୍କ ଭଗ୍ନୀ ତ୍ରିଶାଳାଙ୍କୁ ବିବାହ କରିଥିଲେ ଏବଂ ସେହି ରାଜକନ୍ୟାଙ୍କ ଗର୍ଭରୁ ମହାବୀରଙ୍କର ଜନ୍ମ । ଯଥା ସମୟରେ ବର୍ଦ୍ଧମାନଙ୍କର ବିବାହ ହୋଇଥିଲା ଏବଂ ବିବାହ ପରେ ଏକ କନ୍ୟା ମଧ୍ୟ ଜାତ ହୋଇଥିଲା । କିନ୍ତୁ ବର୍ଦ୍ଧମାନଙ୍କ ପ୍ରବୃତ୍ତି ସାଂସାରିକ ଜୀବନ ଯାପନ ଦିଗକୁ ଆକୃଷ୍ଟ ହୋଇ ନ ଥିଲା । ତିରିଶ ବର୍ଷ ବୟସରେ ସେ ଗୃହତ୍ୟାଗୀ ହୋଇ ସନ୍ନ୍ୟାସ ବ୍ରତ ଗ୍ରହଣ କରିଥିଲେ ଏବଂ କଠୋର ପରିଶ୍ରମ ଦ୍ୱାରା ସର୍ବଶ୍ରେଷ୍ଠ ଆଧ୍ୟାତ୍ମିକ ଜ୍ଞାନ ଅର୍ଜ୍ଜନ କରିବାକୁ ଦୃଢ଼ ସଙ୍କଳ୍ପିତ ହୋଇଥିଲେ । କ୍ରମାଗତ ଧ୍ୟାନ ଦ୍ୱାରା ଏବଂ ପବିତ୍ର

---

1. ଯେଉଁ ମହାମନୀଷୀ ଶ୍ରୀମଦ୍ ଭଗବଦ୍ ଗୀତା ମଧ୍ୟରେ ନିଜ ଭଗବାନଙ୍କ କଣ୍ଠରୁ ଧର୍ମର ବାରମ୍ବାର ପରିବର୍ତ୍ତନ ହେବ ବୋଲି ଇଙ୍ଗିତ ଦେଇଥିଲେ, ସେ ବାସ୍ତବିକ ସେହି ସୁଦୂର ଅତୀତରେ ସ୍ୱୀୟ ଧର୍ମ ମଧ୍ୟରେ ବାରମ୍ବାର ଗ୍ଲାନି ପ୍ରବେଶ କରିବ ଏବଂ ସେଥିପାଇଁ ପରିବର୍ତ୍ତନର ମଧ୍ୟ ଆବଶ୍ୟକ ଏହା ସମ୍ୟକଭାବେ ଉପଲବ୍ଧି କରିଥିଲେ ଏବଂ ହିନ୍ଦୁ ରକ୍ଷଣଶୀଳତା ବରୁଦ୍ଧରେ ଯୁଦ୍ଧ କରିବା ପାଇଁ ଭଗବାନଙ୍କ କଣ୍ଠରୁ ମଧ୍ୟ ପ୍ରଗତି ଓ ପରିବର୍ତ୍ତନର ସନ୍ଦେଶ ଶୁଣାଇଥିଲେ । ଏହି ପ୍ରଗତି ହିନ୍ଦୁଧର୍ମର ବିଶେଷତ୍ୱ ।

ଜୀବନ ଯାପନପୂର୍ବକ କ୍ରମେ ସେ ଜୀବନର ସମସ୍ତ କାମନା ବିସର୍ଜନ କରିଥିଲେ ଏବଂ ପ୍ରବୃତ୍ତି ପଥରୁ ସମ୍ପୂର୍ଣ୍ଣରୂପେ ନିବୃତ୍ତି ଲାଭ କରିଥିଲେ । ଜୈନ ଗ୍ରନ୍ଥମାନଙ୍କରୁ ଜଣାଯାଏ ଯେ ମହାବୀର ବର୍ତ୍ତମାନ ଭାରତର ବହୁ ଅଞ୍ଚଳ ପରିଭ୍ରମଣ କରିଥିଲେ । ବହୁ କଷ୍ଟ ସ୍ୱୀକାର କରି ଭାରତର ଦୁର୍ଗମ ଅନାର୍ଯ୍ୟ ରାଜ୍ୟମାନଙ୍କ ମଧ୍ୟରେ ମଧ୍ୟ ସେ ପ୍ରବେଶ କରିଥିଲେ । ଦୀର୍ଘ ବାର ବର୍ଷକାଳ ମହାବୀର ଏହିପରି ଧ୍ୟାନ, ପରିଭ୍ରମଣ ଓ ବ୍ରତ ଗ୍ରହଣ ଦ୍ୱାରା ଜୀବନ ଯାପନ କରିଥିଲେ । ପରିଶେଷରେ ସନ୍ନ୍ୟାସ ଗ୍ରହଣର ତ୍ରୟୋଦଶ ବର୍ଷରେ ମହାବୀର ମନ ଜଗତର ସମସ୍ତ ସୁଖ ଦୁଃଖ, ଆନନ୍ଦ ନିରାନନ୍ଦର ସୀମା ଅତିକ୍ରମ କରି ମହାଜ୍ଞାନ ଲାଭ କରିଥିଲେ । ଏହି ମହାଜ୍ଞାନ ଲାଭ ପରେ ବର୍ଦ୍ଧମାନଙ୍କୁ 'ଜୀନ' ବା 'ବିଜୟୀ' ଓ 'ମହାବୀର' ଇତ୍ୟାଦି ଉପାଧିରେ ଆଖ୍ୟାତ କରାଯାଇଥିଲା । ଏହାପରେ ମହାବୀର ଏକ ଧର୍ମ ପ୍ରଚାରକ ରୂପେ ଜୀବନ ଯାପନ କରିଥିଲେ ଏବଂ ଜୀବନର ଶେଷ ତିରିଶ ବର୍ଷ କାଳ ଧର୍ମ ପ୍ରଚାର କରି ବୁଲିଥିଲେ । ଏହି ପ୍ରଚାର ଫଳରେ ସମଗ୍ର ଭାରତରେ ଏକ ଚାଞ୍ଚଲ୍ୟ ସୃଷ୍ଟି ହୋଇ ଯାଇଥିଲା ଏବଂ ଅଗଣିତ ନର ନାରୀ ମହାବୀରଙ୍କର ଭକ୍ତରେ ପରିଣତ ହୋଇଥିଲେ । ଜୀବନର ୭୨ ବର୍ଷ ବୟସରେ ମହାବୀର ଇହଧାମରୁ ନିର୍ବାଣ ଲାଭ କରିଥିଲେ ।

ମହାବୀରଙ୍କ ଭକ୍ତମାନେ ଯେଉଁ ସମ୍ପ୍ରଦାୟ ଗଠନ କରିଥିଲେ ସେ ସମ୍ପ୍ରଦାୟର ନାମ 'ନିର୍ଗ୍ରନ୍ଥ' ବା ବନ୍ଧନ ଶୂନ୍ୟ । କିନ୍ତୁ ସାଧାରଣତଃ ଜୀନଙ୍କର ଭକ୍ତ ବୋଲି ସେମାନେ 'ଜୈନ' ନାମରେ ବିଖ୍ୟାତ । ବିପ୍ଳବୀ ମହାବୀରଙ୍କର ପ୍ରବର୍ତ୍ତିତ ଧର୍ମ ମଧ୍ୟରେ ତଦାନୀନ୍ତନ ଭାରତର ବ୍ରାହ୍ମଣ୍ୟ ଧର୍ମ ଉପରେ ତାହାଙ୍କର ଯେଉଁ ଅବିଶ୍ୱାସ ଜନ୍ମିଥିଲା ତାହାର ପ୍ରତ୍ୟକ୍ଷ ପ୍ରମାଣ ମିଳେ । ଯେଉଁ 'ବେଦ' ନାମରେ ବ୍ରାହ୍ମଣମାନେ ହିନ୍ଦୁଧର୍ମର ଆଇନ କାନୁନ୍ ନିୟନ୍ତ୍ରିତ କରୁ ଥାଆନ୍ତି ଅଥଚ ଧୀରେ ଧୀରେ ମୂଳ ବା ଆଦି ବେଦର ରୂପ ପରିବର୍ତ୍ତନପୂର୍ବକ ଧର୍ମକୁ ଜଟିଳ କରି ପକାଉ ଥାଆନ୍ତି, ମହାବୀର ସେହି 'ବେଦ' ବିରୁଦ୍ଧରେ ନିଜର ମତ ଘୋଷଣା କରିଥିଲେ ଯେ ବେଦ ପ୍ରକୃତରେ ଅଭ୍ରାନ୍ତ ନୁହେଁ କିମ୍ବା ବେଦର ପ୍ରାଧାନ୍ୟରେ ବିଶ୍ୱାସ କରିବାର ମଧ୍ୟ କିଛି କାରଣ ନାହିଁ । ବେଦର ଅସ୍ତିତ୍ୱ ଉପରେ ସନ୍ଦେହ ପ୍ରକାଶ କରି ଶେଷରେ ମହାବୀର ଈଶ୍ୱରଙ୍କ ଅସ୍ତିତ୍ୱ ଉପରେ ମଧ୍ୟ ସନ୍ଦେହ ପ୍ରକାଶ କରିଥିଲେ । ଅନ୍ୟ ଦିଗରେ ସେ ବିଶ୍ୱର କ୍ଷୁଦ୍ର, ବୃହତ୍, ଜୀବ, ଜଡ଼, ସମସ୍ତ ବସ୍ତୁ ସମ୍ବନ୍ଧରେ ଯାହା

ଚିରନ୍ତନ ସତ୍ୟ ତାହା ପ୍ରକାଶ କରିଥିଲେ । ଏହି ଚିରନ୍ତନ ସତ୍ୟହିଁ ତାହାଙ୍କ ପ୍ରଚାରର ମେରୁଦଣ୍ଡ । ମହାବୀରଙ୍କ ପ୍ରଚାରାନୁଯାୟୀ, ଏ ବିଶ୍ୱ ଚିରନ୍ତନ, ଅନାଦି ଏବଂ ଅନନ୍ତ । ଏହା କେବଳ ସମସ୍ତ ବସ୍ତୁର ସମଷ୍ଟି ମାତ୍ର ଏବଂ ଏହି ବସ୍ତୁର ଆଦି ନାହିଁ କି ଅନ୍ତ ନାହିଁ । ଏ ବିଶ୍ୱ ବ୍ରହ୍ମାଣ୍ଡରେ କୌଣସି ନୂତନ ପଦାର୍ଥର ସୃଷ୍ଟି ହୁଏ ନାହିଁ କିମ୍ବା କୌଣସି ପୁରାତନର ବିଲୟ ଘଟେ ନାହିଁ । କେବଳ ପଦାର୍ଥ ବା ବସ୍ତୁର ରୂପ ପରିବର୍ତ୍ତନ ହୁଏ ମାତ୍ର । ଜୀନଙ୍କ ମତରେ ଯେତେବେଳେ ବିଶ୍ୱ ଚିରନ୍ତନ ଏବଂ ଅବିନଶ୍ୱର ଏବଂ କୌଣସି ବସ୍ତୁର ଧ୍ୱଂସ ନାହିଁ କିମ୍ବା ସୃଷ୍ଟି ନାହିଁ ସେତେବେଳେ ସୃଷ୍ଟିକର୍ତ୍ତାଙ୍କର ବା ପ୍ରୟୋଜନ କ'ଣ ? ସୃଷ୍ଟିକର୍ତ୍ତା ଈଶ୍ୱରଙ୍କର ଅସ୍ତିତ୍ୱ ଉପରେ ଅବିଶ୍ୱାସ ଜନ୍ମିବାର ଅପର ଏକ କାରଣ, ଯେ ଯଦି ଈଶ୍ୱର ଦୟାଳୁ ତେବେ ସେହି ଦୟାଳୁ ସୃଷ୍ଟିକର୍ତ୍ତାଙ୍କ ପକ୍ଷରେ ଜୀବ ଜଗତ ପାଇଁ ଦୁଃଖ କଷ୍ଟ ସୃଷ୍ଟି କରିବା କ'ଣ ସମ୍ଭବପର ? ମହାବୀର ଜଗତର ବସ୍ତୁମାନଙ୍କୁ ଦୁଇଭାଗରେ ବିଭକ୍ତ କରିଥିଲେ, ଜୀବ ଏବଂ ଅଜୀବ । ଜୀବର ଆତ୍ମା ବିଦ୍ୟମାନ, ଏବଂ ଅଜୀବ ଆତ୍ମାହୀନ ଜଡ଼ । ଆତ୍ମାର ଦୁଃଖ ଆଶା । ଏହି ଆଶାର କାରଣ ମାୟା । ମାୟାଗ୍ରସ୍ତ ଆତ୍ମା ଆଶା ବିଜଡ଼ିତ ହୋଇ ସଂସାରର ଦୁଃଖ ଜଞ୍ଜାଳରେ ବୁଡ଼ି ରହେ ଏବଂ ପରିଣାମରେ ସଂସାରରେ ବାରମ୍ବାର ଜନ୍ମଗ୍ରହଣ କରିଥାଏ । ବାରମ୍ବାର ଜନ୍ମଗ୍ରହଣ ପାଇଁ ଆତ୍ମା ବହୁତ କଷ୍ଟ ଭୋଗକରେ । କାରଣ, ମହାବୀରଙ୍କର 'ଆତ୍ମବାଦ' ଅନୁସାରେ, ଆତ୍ମା ଯଦିଓ ତା'ର ସ୍ୱାଧୀନ ଅସ୍ତିତ୍ୱରେ ସେହି ମହାଜ୍ଞାନର ରୂପାନ୍ତରମାତ୍ର, ତଥାପି ଯେହେତୁ ଆତ୍ମା ବସ୍ତୁ ସହିତ ଏକ ସଂଯୋଗରେ ଥାଏ ସେଥିପାଇଁ ଆତ୍ମାର ଏ କଷ୍ଟ । କାରଣ ଆତ୍ମା ଏବଂ ବସ୍ତୁ ଏକତ୍ରିତ ଅବସ୍ଥାରେ ମାୟାଜାଲରେ ଆବଦ୍ଧ ହୋଇ ଅପବିତ୍ର ହୋଇ ପଡ଼ନ୍ତି । ସୁତରାଂ ବସ୍ତୁ ସହ ବିଜଡ଼ିତ ହୋଇ ଆତ୍ମାକୁ ବିଭିନ୍ନ ରୂପରେ ଅନାଦି କାଳରୁ ବାରମ୍ବାର ଜନ୍ମଗ୍ରହଣ କରିବାକୁ ହେଉଛି । ଏହି ବସ୍ତୁ-ବିଜଡ଼ିତ ଆତ୍ମା ସଦାସର୍ବଦା ଆଶା ଆକାଙ୍କ୍ଷାର ଅସରନ୍ତି ତୃଷାରେ କଷ୍ଟ ପାଏ । କିନ୍ତୁ ସମୟ ଆସେ ଯେତେବେଳେ ଆତ୍ମା ନିଜର ଭୁଲ ବୁଝିପାରେ । ଯେତେବେଳେ ପ୍ରକୃତ ଭେଦ ବିଜ୍ଞାନ ବା ଭଲ ମନ୍ଦ ଜାଣିବାର ଅନ୍ତର୍ଦୃଷ୍ଟିଦ୍ୱାରା ଆତ୍ମା ସମସ୍ତ କଥା ବୁଝିପାରେ ସେତେବେଳେ ସାଂସାରିକ ମମତା, ଲୋଭ, ଆଶା ପ୍ରଭୃତି ସମସ୍ତ ମାୟାରୁ ନିସ୍ତାର ଲାଭ କରି ସେ ଆତ୍ମ ନିୟନ୍ତ୍ରଣ ଏବଂ ସାଧନାରେ ନିଜକୁ ନିୟୋଗ କରେ । ଏହି ଆତ୍ମଦର୍ଶନହିଁ କର୍ମବନ୍ଧନରୁ ପ୍ରକୃତ ମୁକ୍ତି । ଜୈନ ଦର୍ଶନର ଏକ ବିଶିଷ୍ଟ ଅଙ୍ଗ ହେଉଛି କର୍ମଫଳବାଦ ।

ଆତ୍ମାର ସୁଖ ଦୁଃଖ ପାଇଁ ଦାୟୀ କର୍ମ । ଯାହା ରୋପଣ କରାଯାଏ, ତାହାର ଫଳ ଭୋଗ ହୁଏ । ଈଶ୍ୱର ସମସ୍ତ ସୁଖଦୁଃଖ କେବଳ କର୍ମର ପ୍ରତିଫଳ ଏବଂ ଏହି କର୍ମଫଳ ନିରୋଧ କରିବା ଅସମ୍ଭବ । ଅନେକ କ୍ଷେତ୍ରରେ ଦେଖାଯାଏ ଯେ ସଂସାରରେ ପାପୀ ପାପାଚରଣ କରିସୁଦ୍ଧା ସୁଖୀ ଏବଂ ଧାର୍ମିକ ଧର୍ମାଚରଣ କରିସୁଦ୍ଧା ଦୁଃଖୀ । ଏହି ସମସ୍ୟାର ଉତ୍ତରରେ ଜୈନମାନଙ୍କର ଯୁକ୍ତି ହେଉଛି ଯେ ଏ ଜନ୍ମରେ ପାପ କରି ମଧ୍ୟ ଯେଉଁ ପାପୀ ସୁଖୀ ସେ ନିଶ୍ଚୟ ଗତ ଜନ୍ମରେ କିଛି ପୁଣ୍ୟ ସଞ୍ଚୟ କରିଥିଲା ଏବଂ ସେହି ପୂର୍ବ ଜନ୍ମର ପୁଣ୍ୟଫଳରେ ସେ ଏ ଜନ୍ମରେ ସୁଖୀ । କିନ୍ତୁ ଏ ଜନ୍ମରେ ସେ ଯେଉଁ ପାପ ଅର୍ଜନ କରୁଛି ତାହାର ଦୁଃଖମୟ ପରିଣାମ ଆଗାମୀ ଜନ୍ମରେ ତାହାକୁ କର୍ମଫଳ ରୂପରେ ନିଶ୍ଚୟ ଭୋଗ କରିବାକୁ ହେବ । ସେହିପରି ଯେ ଧର୍ମକାର୍ଯ୍ୟ କରିସୁଦ୍ଧା ଦୁଃଖୀ ସେ ପୂର୍ବ ଜନ୍ମର ପାପକାର୍ଯ୍ୟ ପାଇଁ ଏ ଜନ୍ମରେ ଦୁଃଖ ପାଉଛି ଏବଂ ତାହାର ଏ ଜନ୍ମର ଯେଉଁ ଧର୍ମ ସେ ଧର୍ମର ସୁଖମୟ କର୍ମଫଳ ଆଗାମୀ ଜନ୍ମ ପାଇଁ ସଞ୍ଚିତ ରହୁଛି । ମହାବୀର ଜୀବ କର୍ମଫଳ ସମ୍ବନ୍ଧରେ ପୁଙ୍ଖାନୁପୁଙ୍ଖ ରୂପେ ନିଜର ସାର୍ଦ୍ଧମତ ଘୋଷଣା କରି ଯାଇଥିଲେ ଏବଂ ସେ ମତ 'ଗୋମ୍ମଟସାର' ଏବଂ 'ପଞ୍ଚାସ୍ତିକାୟସାର' ପ୍ରଭୃତି ଜୈନଗ୍ରନ୍ଥମାନଙ୍କରେ ବିଶଦ ଭାବରେ ବର୍ଣ୍ଣିତ ଅଛି । ସୁକର୍ମ ଏବଂ କୁକର୍ମ ପାଇଁ ଦାୟୀ ଆତ୍ମା । କାରଣ ପ୍ରଜ୍ଞା ଏବଂ ଜ୍ଞାନବଳରେ ସୁକର୍ମ ଏବଂ କୁକର୍ମ ମଧ୍ୟରେ ପାର୍ଥକ୍ୟ ଅନୁଭବ କରିବାର ଶକ୍ତି ଆତ୍ମାର ଅଛି ଏବଂ ଆତ୍ମା ଏ ପାର୍ଥକ୍ୟ ଅନୁଭବ କରିସୁଦ୍ଧା ଯଦି କୁକର୍ମରେ ଲିପ୍ତ ରହେ ତେବେ ତାହାକୁ ଦୁଃଖମୟ କର୍ମଫଳ ଭୋଗ କରିବାକୁ ପଡ଼ିବ । କର୍ମଜନିତ ଦାରୁଣ ଦୁଃଖରୁ ଉଦ୍ଧାର ପାଇବାକୁ ଏବଂ କର୍ମଫଳ ଭୋଗ କରିବା ନିମିତ୍ତ ବାରମ୍ବାର ଜନ୍ମ ନ ହେବା ପାଇଁ ସମସ୍ତ ପ୍ରକାର ଦୁଷ୍କର୍ମ ପାଖରୁ ଦୂରରେ ରହିବା ଆବଶ୍ୟକ ଅଟେ । ସଂଯମ ଦୁଷ୍କର୍ମର ଶତ୍ରୁ । ମନ, ବାକ୍ୟ ଏବଂ ଶରୀରର ସଂଯମରେ କାମ, କ୍ରୋଧ, ଲୋଭ ପ୍ରଭୃତିର ବିନାଶ । ଏପରି ସଂଯମ ଲାଭ କରିବାର ଉପାୟ ସ୍ୱାର୍ଥତ୍ୟାଗ, ସାଧନା, ସୁଚିନ୍ତା, ଏବଂ ଆତ୍ମଦର୍ଶନ । ଯେ ସଂଯମୀ ସେ ଜିତେନ୍ଦ୍ରିୟ । ଯେ ଜିତେନ୍ଦ୍ରିୟ ସେ ମହାତ୍ମା, ସେ ବିଜୟୀ ମହାବୀର ଏବଂ ସେ ସିଦ୍ଧ । ଏହି ସିଦ୍ଧିଲାଭର ଅର୍ଥ କର୍ମରୁ ମୁକ୍ତି । ଏବଂ କର୍ମରୁ ପୂର୍ଣ୍ଣ ମୁକ୍ତିହିଁ ମୋକ୍ଷ । ମୋକ୍ଷପ୍ରାପ୍ତ ଆତ୍ମାର ସ୍ଥାନ ବନ୍ଧନରେ ନୁହେଁ କିମ୍ବା ପୁନର୍ଜନ୍ମ ମଧ୍ୟରେ ନୁହେଁ । ସେ ଆତ୍ମା ବିଶ୍ୱବ୍ରହ୍ମାଣ୍ଡର ଶୀର୍ଷତମ ସ୍ଥାନ, ପବିତ୍ର, ଶାନ୍ତିମୟ 'ସିଦ୍ଧଶିଳା'ରେ ଉପନୀତ ହୋଇ ଚିରସ୍ଥିର ଅବସ୍ଥାରେ ନିଜର ସତ୍ୟ ଏବଂ ପ୍ରକୃତ ପ୍ରକୃତି ଅର୍ଥାତ୍ ସର୍ବଜ୍ଞାନ,

ସର୍ବଜ୍ଞ, ଅନନ୍ତ ଶକ୍ତି ଏବଂ ଅନନ୍ତ ସୁଖଶାନ୍ତି ମଧ୍ୟରେ ଅନନ୍ତ କାଳ ପାଇଁ ଲୀନ ହୋଇ ରହେ। ମୋକ୍ଷଲାଭର ପ୍ରାରମ୍ଭିକ ଉପାୟ ମହାବୀର ନିର୍ଦ୍ଦେଶ କରି ଯାଇଛନ୍ତି ଏବଂ ତାହା ହେଉଛି ପ୍ରକୃତ ବିଶ୍ୱାସ, ପ୍ରକୃତ ଜ୍ଞାନ, ଏବଂ ପ୍ରକୃତ ସ୍ୱଭାବ। ଏହି ତ୍ରିମାର୍ଗ ତ୍ରିରତ୍ନ ନାମରେ ପ୍ରସିଦ୍ଧ। ଏହି ତ୍ରିମାର୍ଗ ଅତି ପ୍ରଶସ୍ତ ଏବଂ ଏ ମାର୍ଗ ଧାରାବାହିକ ଭାବରେ ଆତ୍ମାକୁ ମୋକ୍ଷ ଦିଗକୁ ନେଇଯାଏ। ଅହିଂସା, ସତ୍ୟ, ଅଚୌର୍ଯ୍ୟ, ବ୍ରହ୍ମଚର୍ଯ୍ୟ, ଅପରିଗ୍ରହ ଇତ୍ୟାଦି ସଦାଚରଣମାନ ଏହି ତ୍ରିରତ୍ନର ଅଙ୍ଗ। ଏ ସବୁ ନିୟମାବଳୀ ଯଥାଯୋଗ୍ୟ ପାଳିତ ହୋଇ ପାରିଲେ କ୍ରମେ କ୍ରମେ ଆତ୍ମା ମହାତ୍ମାରେ ପରିଣତ ହୋଇଯାଏ। ଏହି ମହାତ୍ମାହିଁ ଶ୍ରମଣ। ଶ୍ରମଣତ୍ୱଲାଭ ପରେ ଶେଷରେ ମୋକ୍ଷ ଦିଗକୁ ଗତି କରିବା ପାଇଁ ଅନେକ ଅପରାପର ନିୟମାବଳୀ ପାଳନ କରିବାକୁ ପଡ଼େ। ଶେଷରେ ଯେତେବେଳେ ପ୍ରକୃତ ଆତ୍ମଦର୍ଶନ ହୁଏ ସେତିକିବେଳେ ପ୍ରକୃତ ମୋକ୍ଷଲାଭ ହୁଏ। ମୋକ୍ଷପ୍ରାପ୍ତ ଆତ୍ମା ଜୈନମାନଙ୍କର ଅର୍ହତ। ଅନନ୍ତ ଜ୍ଞାନ, ଅନନ୍ତ ଶକ୍ତି, ଅନନ୍ତ ସୁଖଶାନ୍ତି ମଧ୍ୟରେ ଅନନ୍ତ କାଳ ପାଇଁ ଏହି ଅର୍ହନ୍ତଙ୍କର ନିବାସ। ମୋକ୍ଷପ୍ରାପ୍ତ ଆତ୍ମା ଅତି ପବିତ୍ର, ସେ ସଂସାରର ଅଷ୍ଟାଦଶ ଦୁଃଖ ଜଞ୍ଜାଳ — କ୍ଷୁଧା, ତୃଷା, ଭୟ, ହିଂସା, ମାୟା, ମୋହ, ଚିନ୍ତା, ଜରା, ବ୍ୟାଧି, ମୃତ୍ୟୁ, ଶୋକ, ଶ୍ରମ, ଗର୍ବ, ନିଦ୍ରେଜତା, ଘୃତ, ଜନ୍ମ, ନିଦ୍ରା ଏବଂ ଦୁଃଖ — ଏ ସବୁରୁ ଚିରମୁକ୍ତ। ସେ ସହସ୍ର ସୂର୍ଯ୍ୟଙ୍କ ପରି ଉଜ୍ଜ୍ୱଳ, ସେ ପବିତ୍ର ଏବଂ ନିଷ୍କଳଙ୍କ। ଏହି ଆର୍ହତ ବା ସିଦ୍ଧ ଜୈନମାନଙ୍କର ଚିରପୂଜ୍ୟ। ମର ଜଗତରେ ଏମାନଙ୍କର ଜନ୍ମ ହୁଏ ନାହିଁ ସତ୍ୟ, ତଥାପି ମର ଜଗତର ମନୁଷ୍ୟମାନଙ୍କ ପାଇଁ ଏମାନେ ଅତି ଉଜ୍ଜ୍ୱଳ ଆଦର୍ଶରୂପେ ଅବସ୍ଥାନ କରନ୍ତି।

ଜୈନ ଦର୍ଶନରେ ଅହିଂସାର ସ୍ଥାନ ଅତି ଉଚ୍ଚରେ। ମନୁଷ୍ୟ ଦେହରେ ଯେଉଁ ଆତ୍ମା, କ୍ଷୁଦ୍ରାଦପି କ୍ଷୁଦ୍ର କୀଟ ପତଙ୍ଗ ଦେହରେ ମଧ୍ୟ ସେହି ଆତ୍ମା। ଏପରିକି ଜଳ, ସ୍ଥଳ, ଅଗ୍ନି, ବୃକ୍ଷ, ଲତା ଏମାନଙ୍କର ମଧ୍ୟ ଆତ୍ମା ଅଛି, ଯଦିଚ ଏ ସବୁ ପଦାର୍ଥ ପଶୁପକ୍ଷୀ ଏବଂ ମନୁଷ୍ୟ ପରି ବିଚରଣ କରି ପାରନ୍ତି ନାହିଁ। ସମସ୍ତ ଆତ୍ମାର ପ୍ରକୃତି ଏକ ଏବଂ ଏ ସମସ୍ତ ଆତ୍ମା ମଧ୍ୟରେ କୌଣସି ପ୍ରକାର ପାର୍ଥକ୍ୟ ନାହିଁ। ଏପରି ସ୍ଥଳେ ଗୋଟିଏ ଆତ୍ମାର ଅପର ଆତ୍ମାମାନଙ୍କ ଉପରେ ଅତ୍ୟାଚାର କିମ୍ବା ଗୋଟିଏ ଆତ୍ମାଦ୍ୱାରା ଅପର ଆତ୍ମାମାନଙ୍କର ବିନାଶ ସାଧନ ଏହା ଧର୍ମ ବିରୁଦ୍ଧ।

ମହାବୀର ଜୈନମାନଙ୍କୁ ଅହିଂସା ପାଳନ ପାଇଁ ଯଥାଯୋଗ୍ୟ ନିର୍ଦ୍ଦେଶ ଦେଇଥିଲେ ଏବଂ ଜୈନମାନଙ୍କର ଏହି ଅହିଂସାପାଳନ ଅସମ୍ଭବ ରୂପେ କଠୋର ହୋଇ ପଡ଼ିଥିଲା । ପ୍ରତ୍ୟକ୍ଷଭାବେ ପଶୁହତ୍ୟା ତ ଦୂରର କଥା ପରୋକ୍ଷଭାବେ କ୍ଷୁଦ୍ରତମ ଅଣୁରୂପୀ ଜୀବ ବିରୁଦ୍ଧରେ ମଧ୍ୟ ଜୈନମାନେ ହସ୍ତ ଉତ୍ତୋଳନ କରି ନ ଥିଲେ । ଜୀବ ପ୍ରତି ଏପରି ଅସୀମ ଦୟା ପୃଥିବୀର ଅନ୍ୟ କୌଣସି ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ଦେଖିବାକୁ ମିଳେ ନାହିଁ । ଜୈନମାନଙ୍କ ବିଶ୍ୱାସରେ ମନୁଷ୍ୟ ଜଗତର ପ୍ରତ୍ୟେକ ମନୁଷ୍ୟର ଆତ୍ମା ଅପରମାନଙ୍କର ଆତ୍ମାସହ ସମାନ । ସୁତରାଂ ସମସ୍ତ ମନୁଷ୍ୟ ଯେତେବେଳେ ସମାନ, ମନୁଷ୍ୟ ମଧ୍ୟରେ କୌଣସି ଭେଦାଭେଦ ରହିବା ଅନ୍ୟାୟ । ତେଣୁ ଜାତିଭେଦ ସମ୍ପୂର୍ଣ୍ଣରୂପେ ବର୍ଜନୀୟ ।

ଅହିଂସା, ସାମ୍ୟ; ଇନ୍ଦ୍ରିୟ ଜୟ, ନିଷ୍କାମ, ନିଷ୍ପାପ, ନିଷ୍କଳଙ୍କ ଜୀବନ ଯାତ୍ରା; ଜ୍ଞାନ ଏବଂ ମୋକ୍ଷ; ଏହାହିଁ ମହାବୀର ଜୀନଙ୍କ ପ୍ରବର୍ତ୍ତିତ ଚିନ୍ତାଧାରାର ମେରୁଦଣ୍ଡ ।

ମହାବୀରଙ୍କର ସମସାମୟିକ ଭାରତରେ ଗୌତମ ବୁଦ୍ଧଙ୍କର ଜନ୍ମ । ହିମାଦ୍ରି ପାଦସ୍ଥିତ ନେପାଳ ରାଜ୍ୟର ତରାଇ ଅଞ୍ଚଳରେ କପିଳବାସ୍ତୁର ଅବସ୍ଥିତି । ଏହି କପିଳବାସ୍ତୁର କ୍ଷତ୍ରିୟ ଶାକ୍ୟ ସମ୍ପ୍ରଦାୟରେ ଗୌତମଙ୍କର ଜନ୍ମ । ପିତା ଶୁଦ୍ଧୋଦନ ଶାକ୍ୟ ଜାତିର ରାଜା ଥିଲେ । ଆଜନ୍ମ ଚିନ୍ତାଶୀଳ, ସଂସାର ବିରାଗୀ ଶିଶୁ ଗୌତମଙ୍କର ଗତି ନୀତି ଉପରେ ସନ୍ଦେହ କରି ଶୁଦ୍ଧୋଦନ ପୁତ୍ରର ମତ ପରିବର୍ତ୍ତନ ପ୍ରୟାସୀ ହୋଇଥିଲେ । ଅଷ୍ଟାଦଶ ବର୍ଷ ବୟସ ବେଳେ ଯଶୋଧାରା ନାମ୍ନୀ ଏକ ଅନିନ୍ଦ୍ୟା ସୁନ୍ଦରୀ କନ୍ୟାସହ ତାହାଙ୍କର ବିବାହ ହୋଇଥିଲା ଏବଂ ବିବାହର ଦଶ ବର୍ଷ ପରେ ରାହୁଲ ନାମକ ଏକମାତ୍ର ପୁତ୍ରର ଜନ୍ମ ହୋଇଥିଲା । କିନ୍ତୁ ଏ ସବୁ ସାଂସାରିକ ବନ୍ଧନ ଗୌତମଙ୍କ ଉପରେ ପ୍ରଭାବ ବିସ୍ତାର କରି ପାରି ନ ଥିଲା । ନଶ୍ୱର ମନୁଷ୍ୟ ଜୀବନରେ ଜରା, ବ୍ୟାଧି, ଏବଂ ମୃତ୍ୟୁ, ଏ ତିନି ଦୁଃଖ-ପୂର୍ଣ୍ଣ ବିଭୀଷିକା ଯୁବକ ଗୌତମଙ୍କ ମନରେ ଏକ ଭୁମୁଳ ଚିନ୍ତା ସୃଷ୍ଟି କରିଥିଲା । ରାଜପ୍ରାସାଦର ଆମୋଦ ପ୍ରମୋଦ, ସୁନ୍ଦରୀ ତରୁଣୀ ପତ୍ନୀ ଏବଂ କୋମଳ ଶିଶୁ ପୁତ୍ରର ମାୟାବନ୍ଧନ, ରାଜସିଂହାସନ ଏବଂ ଧନ ଐଶ୍ୱର୍ଯ୍ୟର ମୋହ, ଏ ସମସ୍ତ ଗୌତମଙ୍କ ମନରେ ତିଳେମାତ୍ର ଲୋଭ ସଞ୍ଚାର କରି ପାରି ନ ଥିଲା । କାରଣ ଅନିତ୍ୟ ଅସତ୍ୟ ସଂସାରରେ ସେ କେବଳ ଏକ ବିରାଟ ମାୟାଜାଲ ଏବଂ ତଦ୍‌ଜନିତ ଶୋକ ଦୁଃଖ ବ୍ୟତୀତ ଅପର କୌଣସି ବିଶେଷତ୍ୱ ଦେଖି ପାରି ନ ଥିଲେ ।

ଜୀବନର କୌଣସି ଏକ ଅପ୍ରତ୍ୟାଶିତ କ୍ଷଣରେ ଗୌତମ ଦିନେ ଜନୈକ ସନ୍ୟାସୀର ପ୍ରଶାନ୍ତରୂପ ଦେଖି ଜାଣି ପାରିଥିଲେ ଯେ ଜରା, ବ୍ୟାଧି, ଶୋକ, ଦୁଃଖପୂର୍ଣ୍ଣ ମନୁଷ୍ୟ ଜୀବନରେ ବୈରାଗ୍ୟହିଁ ପ୍ରକୃତ ଶାନ୍ତି । ରାଜୈଶ୍ୱର୍ଯ୍ୟ ମଧ୍ୟରେ ଗୌତମଙ୍କର ମନ ଜୀବନର ପ୍ରକୃତ ଐଶ୍ୱର୍ଯ୍ୟ ବାହାର କରିବା ପାଇଁ ବ୍ୟସ୍ତ ହୋଇ ଉଠିଥିଲା । ଜୀବନର ଅନେକ ଦିନ ଧରି ଗୌତମଙ୍କ ମନରେ ଏକମାତ୍ର ଚିନ୍ତା ବଳବତ୍ତର ହୋଇ ଉଠିଥିଲା,—ଯଦି ଦୁଃଖ କଷ୍ଟ ମନୁଷ୍ୟର ଚିର ସହଚର ଏବଂ ଜରା ଓ ମୃତ୍ୟୁ ଜୀବନର ଶେଷ ପରିଣତି ତେବେ ଧନ ସମ୍ପଦ, ରୂପ ଯୌବନ ଏ ସମସ୍ତର ମୂଲ୍ୟ କ'ଣ ? ରୂପ ଯୌବନର ଗର୍ବ, ଅର୍ଥ-ଐଶ୍ୱର୍ଯ୍ୟର ଅହମିକା, ଏ ସବୁ କ୍ଷଣିକର ବୃଥା ଆସ୍ଫାଳନ ମାତ୍ର । ବହୁ ଚିନ୍ତା ପରେ ସାଂସାରିକ ଜୀବନର ପ୍ରହେଳିକା ମଧ୍ୟରୁ ଚିର ବିଦାୟ ନେଇ ପ୍ରକୃତ ସତ୍ୟର ଅନ୍ୱେଷଣ ପାଇଁ ଗୌତମଙ୍କର ମନ ଚଞ୍ଚଳ ହୋଇ ଉଠିଥିଲା । ପରିଶେଷରେ ଗୌତମ ସଂସାର ତ୍ୟାଗପୂର୍ବକ ସନ୍ୟାସ ଗ୍ରହଣ ପାଇଁ ଦୃଢ଼ ସଂକଳ୍ପିତ ହୋଇଥିଲେ । ଏହିପରି ଏକ ସଙ୍କଟବେଳେ ଗୌତମଙ୍କର ପୁତ୍ର ଜାତ ହୁଏ । କଥିତ ଅଛି, ନବଜାତ ସନ୍ତାନ ପ୍ରତି ମମତାଗ୍ରସ୍ତ ହୋଇ କାଳେ ପରେ ସାଂସାରିକ ବନ୍ଧନ ଛିନ୍ନ କରିପାରିବେ ନାହିଁ, ସେଥିପାଇଁ ପୁତ୍ର ଜନ୍ମର ଅବ୍ୟବହିତ ପରେ ଗୌତମ ସଂସାରତ୍ୟାଗୀ ହୋଇଥିଲେ । ଯେଉଁ ରଜନୀରେ ଗୌତମ ଗୃହତ୍ୟାଗୀ ହୋଇଥିଲେ ତାହା ମହାକାଳର ଏହି ସଂଖ୍ୟାହୀନ ରଜନୀମାନଙ୍କ ମଧ୍ୟରେ ଏକ ସ୍ମରଣୀୟ ରଜନୀ । ନୀରବ, ଶାନ୍ତ ସେହି ଗଭୀର ନିଶିଥିନୀରେ କପିଳବାସ୍ତୁର ନିସ୍ତବ୍ଧ ରାଜପ୍ରାସାଦ, ସୁଖ-ସୁପ୍ତ ସ୍ତ୍ରୀ ପୁତ୍ର, ରାଜ ପରିଚ୍ଛଦ, ଭୃତ୍ୟ, ଅନୁଚର, ସମସ୍ତଙ୍କୁ ପରିତ୍ୟାଗ କରି ଗୌତମ ନଗର ସୀମାନ୍ତର ଅନ୍ଧକାରରାଶି ମଧ୍ୟରେ ଅନ୍ତର୍ହିତ ହୋଇ ଯାଇଥିଲେ ! ପଶ୍ଚାତରେ ତାହାଙ୍କର ପଡ଼ି ରହିଲା କପିଳବାସ୍ତୁର ରାଜଦଣ୍ଡ, ଅଗାଧ ଐଶ୍ୱର୍ଯ୍ୟ, ଧନରତ୍ନ, ମାନ ସମ୍ମାନ, ସ୍ତ୍ରୀ ପୁତ୍ର,—ନଶ୍ୱର ଜୀବନର ଯେତେ ସମସ୍ତ ମାୟା ମୋହ ଏବଂ ମିଥ୍ୟା ପ୍ରହେଳିକା; ଏବଂ ସମ୍ମୁଖରେ ତାହାଙ୍କର ଆରମ୍ଭ ହେଲା ଏକ ନୂତନ ଜୀବନ ଯାତ୍ରା ଏକ ଅଭିନବ ପ୍ରଚେଷ୍ଟା,—ଦୁଃଖପୂର୍ଣ୍ଣ ଜୀବନ ପାଇଁ ପ୍ରକୃତ ସୁଖର ଅନୁସନ୍ଧାନ, ଅନ୍ଧ ମନୁଷ୍ୟ ସମାଜ ପାଇଁ ଆଲୋକର ଅନୁସନ୍ଧାନ, ଏବଂ କର୍ମଦଗ୍ଧ ଆତ୍ମାପାଇଁ ପ୍ରକୃତ ନିର୍ବାଣର ଅନୁସନ୍ଧାନ । ଜୀବନର ଆନୁମାନିକ ତିରିଶ ବର୍ଷ ବୟସରେ ଗୌତମ ସଂସାରତ୍ୟାଗୀ ହୋଇଥିଲେ । ଏହାପରେ ରାଜଗୃହ ଅଭିମୁଖେ ଯାତ୍ରା-କରି ଗୌତମ ସେ ନଗରୀର ବହିର୍ଦେଶରେ ଅବସ୍ଥିତ ପାହାଡ଼ ପର୍ବତ ମଧ୍ୟରେ

ଆଶ୍ରୟ ନେଇଥିଲେ । ଏହିଠାରେ, ଜନମାନବ-ହୀନ ପର୍ବତ ଗୁହାରେ ସେ କେତେ ଜଣ ବ୍ରାହ୍ମଣ ସନ୍ନ୍ୟାସୀଙ୍କ ନିକଟରୁ ହିନ୍ଦୁ ଦର୍ଶନର କେତେକ ଅଂଶ ଶିକ୍ଷା କରିଥିଲେ । କିନ୍ତୁ ଏ ଶିକ୍ଷା ତାହାଙ୍କର ଅତୃପ୍ତ ଆତ୍ମାପାଇଁ ତୃପ୍ତି ଆଣି ପାରି ନ ଥିଲା । ସୁତରାଂ କଠୋର ସାଧନା ଦ୍ୱାରା ସତ୍ୟର ଅନୁସନ୍ଧାନବ୍ରତୀ ହୋଇ ଗୌତମ ଆଧୁନିକ ବୁଦ୍ଧଗୟାର ଅଦୂରବର୍ତ୍ତୀ ଉରୁବିଲ୍ୱ ଅରଣ୍ୟରେ ନିଜର ସାଧନା ଆରମ୍ଭ କରି-ଥିଲେ । ଦୀର୍ଘ ଛଅ ବର୍ଷକାଳ ଏହି ଅରଣ୍ୟ ମଧ୍ୟରେ ସାଧନାରତ ରହି ସେ ନିଜର ଶରୀର ଉପରେ ଯଥେଷ୍ଟ ଅତ୍ୟାଚାର କରିଥିଲେ, କିନ୍ତୁ ଏ ସମସ୍ତ କାୟିକ କଷ୍ଟ ତାହାଙ୍କୁ ସତ୍ୟର ସନ୍ଧାନ ଦେଇ ପାରି ନ ଥିଲା । ଶେଷରେ ଏପରି ସାଧନା ପରିତ୍ୟାଗ ପୂର୍ବକ ସେ ଏକ ନୂତନ ମାର୍ଗରେ ଗତି କରିଥିଲେ । ଗୌତମ ନିର୍ଭୁଲ ଭାବେ ବୁଝି ପାରିଥିଲେ ଯେ ଶାରୀରିକ ଯନ୍ତ୍ରଣା ମୁକ୍ତିହୀନ ଏବଂ ତାହା ମୂଳରେ ଆତ୍ମାର ସଦ୍‌ଗତି ଅସମ୍ଭବ । ସୁତରାଂ ପ୍ରକୃତ ଜ୍ଞାନ ଏବଂ ସତ୍ୟର ଆବିଷ୍କାର ପାଇଁ ଗୟାର ଅନତିଦୂରସ୍ଥ ବିଖ୍ୟାତ ବୋଧିଦ୍ରୁମ ତଳେ ଗୌତମ ଧ୍ୟାନମଗ୍ନ ରହିଥିଲେ । ଧ୍ୟାନମଗ୍ନ ଗୌତମଙ୍କ ମନ ମଧ୍ୟରେ ଅସରନ୍ତି ଚିନ୍ତାର ସ୍ରୋତ ବହି ଯାଇଥିଲା ଏବଂ ଶେଷରେ ବହୁ ଚିନ୍ତା ପରେ ପ୍ରକୃତ ସତ୍ୟର ଦିବ୍ୟାଲୋକରେ ତାହାଙ୍କର ଅନ୍ତର ଆଲୋକିତ ହୋଇ ଉଠିଥିଲା । ଏହି ଦିବ୍ୟଜ୍ଞାନ ଲାଭ ପରେ ଗୌତମ 'ଜ୍ଞାନୀ' ବା 'ବୁଦ୍ଧ' ନାମରେ ସର୍ବଜନବିଦିତ ହୋଇଥିଲେ । ଏହାପରେ ଆରମ୍ଭ ହେଲା ବୁଦ୍ଧଙ୍କର ପ୍ରଚାର କାର୍ଯ୍ୟ । ହିନ୍ଦୁର ବିଖ୍ୟାତ ପୁଣ୍ୟପୀଠ କାଶୀ ବାରାଣସୀ ନିକଟସ୍ଥ ସାରନାଥ ନାମକ ସ୍ଥାନରେ ପ୍ରଥମେ ବୁଦ୍ଧ ତାଙ୍କର ଧର୍ମପ୍ରଚାର ଆରମ୍ଭ କରିଥିଲେ । ତାହାଙ୍କର ପ୍ରଚାର ଜଣେ ଦୁଇଜଣ ଭକ୍ତଙ୍କ ଉଦ୍ଦେଶ୍ୟରେ ନ ହୋଇ ସର୍ବସାଧାରଣ ନରନାରୀଙ୍କ ଉଦ୍ଦେଶ୍ୟରେ ଆରମ୍ଭ ହୋଇଥିଲା । ଯେଉଁମାନେ ସର୍ବପ୍ରଥମେ ତାଙ୍କର ପ୍ରଚାର ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲେ ସେମାନେ ଥିଲେ ଦେଶର ସର୍ବସାଧାରଣ ଜନତା, ଶିକ୍ଷିତ ପଣ୍ଡିତ ସମାଜ-ମଧ୍ୟରୁ କେହି ନୁହେଁ । କାରଣ ବୁଦ୍ଧଙ୍କର ବାଣୀ ଥିଲା ସରଳ ଏବଂ ସହଜଗମ୍ୟ । କେବଳ ମାତ୍ର ତିନିମାସ ପ୍ରଚାର ମଧ୍ୟରେ ବୁଦ୍ଧ ଷାଠିଏ ଜଣ ଅନୁରକ୍ତ ଶିଷ୍ୟ ସଂଗ୍ରହ କରି ପାରିଥିଲେ ଏବଂ ସେହି ଶିଷ୍ୟମାନଙ୍କୁ ସେ ଭାରତର ବିଭିନ୍ନ ଦିଗକୁ ପ୍ରଚାରାର୍ଥ ପ୍ରେରଣ କରିଥିଲେ । ଏହି ଭିକ୍ଷୁମାନେ ବୁଦ୍ଧଙ୍କ ବାଣୀ ଭାରତର ଜନସାଧାରଣଙ୍କ ନିକଟରେ ପ୍ରଚାର କରି ବୁଲୁଥିଲେ ଏବଂ ଏଣେ ବୁଦ୍ଧଙ୍କ ନିକଟରେ ନୂତନ ନୂତନ ଭକ୍ତମାନେ ପ୍ରଚାର କାର୍ଯ୍ୟ ପାଇଁ ଦୀକ୍ଷିତ ହେଉଥିଲେ । କ୍ରମେ ବୁଦ୍ଧଙ୍କ ନିକଟରେ

ତର୍କରେ ପରାସ୍ତ ହୋଇ ଅନେକ ହିନ୍ଦୁ ପଣ୍ଡିତ ଓ ବ୍ରାହ୍ମଣ ମଧ୍ୟ ବୁଦ୍ଧଙ୍କ ପ୍ରଚାରିତ ମତ ପ୍ରତି ଆକୃଷ୍ଟ ହୋଇଥିଲେ । ଏହାପରେ ବୁଦ୍ଧ ନିଜେ ପ୍ରଚାରାର୍ଥେ ଦେଶ ଭ୍ରମଣ ପାଇଁ ବାହାରିଥିଲେ । ବାରାଣସୀଠାରୁ ସଦଳବଳେ ରାଜଗୃହ ଅଭିମୁଖେ ଯାତ୍ରାକରି ସେଠାରେ ରାଜା ଏବଂ ପ୍ରଜାମାନଙ୍କୁ ସ୍ୱଧର୍ମରେ ଦୀକ୍ଷିତ କରାଇଥିଲେ । କ୍ରମେ ବର୍ଷ ପରେ ବର୍ଷ ଅଗଣିତ ସଂଖ୍ୟାରେ ରାଜା, ପ୍ରଜା, ଧନୀ, ନିର୍ଦ୍ଧନ, ବ୍ରାହ୍ମଣ, ଶୂଦ୍ର, ସବୁ ଜାତି, ସବୁ ସମ୍ପ୍ରଦାୟର ନରନାରୀ ବୁଦ୍ଧଙ୍କ ପ୍ରବର୍ତ୍ତିତ ନୂତନ ବିଶ୍ୱାସ ଗ୍ରହଣ କରିଥିଲେ । ପ୍ରତ୍ୟେକ ବର୍ଷ ଏ ସଂଖ୍ୟା ବୃଦ୍ଧି ପାଇ ଚାଲିଥିଲା ଏବଂ ଭାରତର ପ୍ରତ୍ୟେକ ଦିଗକୁ ବୁଦ୍ଧଙ୍କର ପ୍ରଚୁର ବାଣୀ ଯାଇଥିଲା । ଅଯୋଧ୍ୟା, ଗୟା, ଶ୍ରାବସ୍ତି, ରାଜଗୃହ ପ୍ରଭୃତି ସ୍ଥାନରେ ବୁଦ୍ଧଙ୍କ ଶିଷ୍ୟମାନେ ମଠ ନିର୍ମାଣ କରିଥିଲେ ଏବଂ ସେହି ମଠମାନଙ୍କୁ କେନ୍ଦ୍ର କରି ପ୍ରଚାରକାର୍ଯ୍ୟ ଚଳାଇଥିଲେ । ନିଜର ଜନ୍ମସ୍ଥାନ ସୁଦୂର କପିଳବାସ୍ତୁ ଉଦ୍ଦେଶ୍ୟରେ ମଧ୍ୟ ସ୍ୱୟଂ ବୁଦ୍ଧ ପ୍ରଚାରାର୍ଥେ ଗମନ କରିଥିଲେ । ଯେଉଁ କପିଳବାସ୍ତୁର ରାଜପଥରେ ଦିନେ ରାଜପୁତ୍ର ଗୌତମ ରାଜପରିଚ୍ଛଦ ପରିଧାନପୂର୍ବକ ଶତ ସହସ୍ର ମଧ୍ୟରେ ସୈନ୍ୟ ସାମନ୍ତ, ବନ୍ଧୁ ଅନୁଚର ପରିବେଷ୍ଟିତ ହୋଇ ଯାନ ପରିଯାନରେ ଭ୍ରମଣ କରୁଥିଲେ ଆଜି ସେହି ନଗରୀର ସେହି ରାଜପଥରେ ଗୈରିକ ବସନପରିହିତ, ମୁଣ୍ଡିତମୁଣ୍ଡ, ଭିକ୍ଷାପାତ୍ରଧାରୀ, ଭିକ୍ଷୁବେଶୀ ବୁଦ୍ଧଙ୍କର ପଦବ୍ରଜରେ ଦ୍ୱାରେ ଦ୍ୱାରେ ଭ୍ରମଣ କାର୍ଯ୍ୟ ନଗରୀର ଆବାଳ-ବୃଦ୍ଧବନିତାଙ୍କର ହୃଦୟ ସ୍ପର୍ଶ କରିଥିଲା । ବୃଦ୍ଧ ରାଜା ଶୁଦ୍ଧୋଦନ ସେ ପର୍ଯ୍ୟନ୍ତ ଜୀବିତ ଥିଲେ ଏବଂ ପୁତ୍ରଙ୍କ ମୁଖରୁ ଆଗ୍ରହ ଚିତ୍ତରେ ସମସ୍ତ ଉପଦେଶ ଶ୍ରବଣ କରିଥିଲେ । ପତ୍ନୀ ଯଶୋଧାରା ବୁଦ୍ଧଙ୍କ ନିକଟରୁ ଦୀକ୍ଷା ନେଇଥିଲେ ଏବଂ ବୌଦ୍ଧଧର୍ମର ଏକ ଅତି ବିଶିଷ୍ଟା ପ୍ରଚାରିକାରୂପେ ପ୍ରସିଦ୍ଧି ଲାଭ କରିଥିଲେ । ପୁତ୍ର ରାହୁଲ ମଧ୍ୟ ପିତାଙ୍କ ପାଖରୁ ଦୀକ୍ଷା ଗ୍ରହଣ କରିଥିଲେ । ନିଜର ପତ୍ନୀ, ପୁତ୍ର ଏବଂ ପରିବାରର ଅନ୍ୟମାନଙ୍କୁ ସ୍ୱମତରେ ଦୀକ୍ଷିତ କରାଇ ବୁଦ୍ଧ କପିଳବାସ୍ତୁରୁ ବିଦାୟ ନେଇଥିଲେ । ଏହାପରି ଜୀବନର ଦୀର୍ଘ ୪୫ ବର୍ଷକାଳ ବୁଦ୍ଧ ତଦାନୀନ୍ତନ ଭାରତର ମଗଧ, ରାଜଗୃହ, ଅନୁପିୟ, ଶ୍ରାବସ୍ତି, ବୈଶାଳୀ, କୋଶାମ୍ବି, ନାଳନ୍ଦା, ପାଟଳିପୁତ୍ର, କୋଟିଗ୍ରାମ, ନନ୍ଦିକା, ହସ୍ତିଗ୍ରାମ, ଆମ୍ରଗ୍ରାମ, ଜମ୍ବୁଗ୍ରାମ, ଭୋଗନଗର, ପାଭା ପ୍ରଭୃତି ନାନା ସ୍ଥାନରେ ପରିଭ୍ରମଣ କରିଥିଲେ ଏବଂ ଜୀବନର ଶେଷଦିନ ପର୍ଯ୍ୟନ୍ତ ଶିଷ୍ୟମାନଙ୍କୁ ଉପଦେଶ ଦାନ କରି ଅଶୀତି ବର୍ଷ ବୟସରେ କୁଶୀନଗର ନାମକ ସ୍ଥାନରେ ନିର୍ବାଣ ଲାଭ କରିଥିଲେ ।

ଏହାହିଁ ହେଉଛି ଭାରତର ଅଦ୍ୱିତୀୟ ମହାମାନବ ଏବଂ ପୃଥିବୀର ଶ୍ରେଷ୍ଠତମ ଧର୍ମ-ପ୍ରବର୍ତ୍ତକଙ୍କର ଅତି ସଂକ୍ଷିପ୍ତ ଜୀବନ ଚରିତ । ବୁଦ୍ଧଙ୍କ ମୃତ୍ୟୁକାଳରୁ ତାହାଙ୍କର ଜୀବନ ଚରିତ ପୃଥିବୀର ବହୁ ଭାଷାରେ ଶତ ସହସ୍ର ଆକାରରେ ଲିଖିତ ହୋଇଛି । ସଂସ୍କୃତ, ପାଲି ପ୍ରଭୃତି ଭାରତୀୟ ଭାଷାରେ ଏବଂ ତିବ୍ବତ ଓ ଚୀନ ଦେଶର ବିଭିନ୍ନ ଭାଷାରେ ତଥା ମଧ୍ୟ ପ୍ରାଚ୍ୟ ଏବଂ ସୁଦୂର ପ୍ରାଚ୍ୟର ବହୁ ରାଜ୍ୟର ବହୁ ଭାଷାରେ ବୁଦ୍ଧଙ୍କର ଜୀବନୀ ସେହି ଇତିହାସ ଯୁଗର ଆରମ୍ଭ ପାଖରୁ ଲିଖିତ ହୋଇ ଆସିଛି । ବୁଦ୍ଧଙ୍କ ଜୀବନର ପ୍ରତ୍ୟେକ ଘଟଣା, ତାହାଙ୍କର ଜନ୍ମ, ଶୈଶବ, ଯୌବନ, ବିବାହ, ଗୃହତ୍ୟାଗ, ସନ୍ନ୍ୟାସ, ତପସ୍ୟା, ସାଧନା, ଧ୍ୟାନ, ଜ୍ଞାନଲାଭ, ଧର୍ମପ୍ରଚାର, ଏବଂ ନିର୍ବାଣ ଇତ୍ୟାଦି ସମସ୍ତ ବିଷୟ ବୌଦ୍ଧ ଧର୍ମଗ୍ରନ୍ଥମାନଙ୍କର ସ୍ତୂପୀକୃତ ଆକାର ମଧ୍ୟରେ ସୁବିସ୍ତୃତଭାବେ ବର୍ଣ୍ଣିତ ରହିଛି । ଏପରିକି ବୁଦ୍ଧଙ୍କ ଜନ୍ମ ପୂର୍ବରୁ ତାହାଙ୍କର ପୂର୍ବ ଜନ୍ମର ଇତିବୃତ୍ତମାନ ମଧ୍ୟ ବିଶଦଭାବେ ବୌଦ୍ଧଲେଖକମାନଙ୍କ ଦ୍ୱାରା ଲିପିବଦ୍ଧ କରାଯାଇଛି । ପୃଥିବୀର ବିଭିନ୍ନ ଭାଷାରେ ଏବଂ ଏସିଆ ମହାଦେଶର ପ୍ରାୟ ସମସ୍ତ ପ୍ରାଚୀନ ଭାଷାରେ ବୁଦ୍ଧଙ୍କ ଜୀବନୀ ଯେପରି ଲେଖାଯାଇଛି ଅନ୍ୟ କୌଣସି ମହାପୁରୁଷଙ୍କର ସେପରି ଲେଖା ହୋଇ ନାହିଁ । ବୁଦ୍ଧଙ୍କ ବୈଚିତ୍ର୍ୟମୟ ଜୀବନ ଉପରେ ଯେପରି ରାଶିକୃତ ଗ୍ରନ୍ଥ ଲେଖାଯାଇଛି ତାହାଙ୍କ ପ୍ରଚାରିତ ସରଳ ସହଜ ନୀତିବାକ୍ୟମାନଙ୍କ ଉପରେ ମଧ୍ୟ ଠିକ୍ ସେହିପରି ଅସଂଖ୍ୟ ଧର୍ମଗ୍ରନ୍ଥ ରଚିତ ହୋଇଛି । କିନ୍ତୁ ବୌଦ୍ଧଧର୍ମ ସମ୍ବନ୍ଧରେ ଯେତେ ପ୍ରକାର ବିରାଟ ଗ୍ରନ୍ଥ ରଚିତ ଏବଂ ଲିଖିତ ହେଉ ନା କାହିଁକି ବୁଦ୍ଧଙ୍କର ପ୍ରଚାରିତ ବାଣୀ ଥିଲା ଅତି ସହଜ ଏବଂ ଅତି ସରଳ । ବୁଦ୍ଧଙ୍କର ପ୍ରଚାରିତ ଧର୍ମର ସାର ମର୍ମ ହେଉଛି ଆତ୍ମସଂଯମ ଏବଂ ଆତ୍ମଜ୍ଞାନ । ବୌଦ୍ଧ ମତବାଦ ମଧ୍ୟରେ ପୂଜା ପଦ୍ଧତି, ବାହ୍ୟ ରୀତି, ବାହ୍ୟ ବିଶ୍ୱାସ ପ୍ରଭୃତିର ସ୍ଥାନ ନାହିଁ । ବୁଦ୍ଧ ତାହାଙ୍କର ଦିବ୍ୟଜ୍ଞାନ ବଳରେ ଜାଣି ପାରିଥିଲେ ଯେ ମନୁଷ୍ୟର ସମସ୍ତ ଅଶାନ୍ତିର ମୂଳ ତାହାର କାମନା ଏବଂ ଏହି କାମନାର ବିନାଶରେ ଦୁଃଖର ବିନାଶ ହୁଏ ଏବଂ ଏହି କାମନାର ବିନାଶାର୍ଥେ ଏକ ପବିତ୍ର ଋଷି ଜୀବନ ଆବଶ୍ୟକ ଯେଉଁ ଜୀବନରେ ସଂସାରର ମାୟା ମୋହ କିଛି ନାହିଁ । ଏହିପରି ଏକ ନିଷ୍କାମ ଜୀବନଯାତ୍ରାକୁ କେନ୍ଦ୍ରକରି ବୁଦ୍ଧ ତାହାଙ୍କର ମତ ପ୍ରଚାର କରିଥିଲେ । ମନୁଷ୍ୟ ଜନ୍ମ କେବଳ ଦୁଃଖର ନାମାନ୍ତର ମାତ୍ର । କାରଣ ଜନ୍ମର ପରିଣତି ମୃତ୍ୟୁ ଏବଂ ଜନ୍ମ ଓ ମୃତ୍ୟୁ ଏ ଦୁଇ ମଧ୍ୟରେ ନାନା ପ୍ରକାର ବ୍ୟାଧି, ଜଞ୍ଜାଳ ଓ ଜରା ପ୍ରଭୃତିର ଅତ୍ୟାଚାର ।

ତଥାପି ମନୁଷ୍ୟ ଅଜ୍ଞାନ ଏବଂ ଏହି ଅଜ୍ଞାନତା ପାଇଁ ମନୁଷ୍ୟ ସଦା ସର୍ବଦା ସାଂସାରିକ ଜୀବନ ପ୍ରତି ଆକୃଷ୍ଟ । ସଂସାରର ଭୋଗ ବିଳାସ ପ୍ରତି ଯେଉଁ ତୃଷା ସେହି ତୃଷା ପାଇଁ ମନୁଷ୍ୟର ସାଂସାରିକ ଜୀବନ ପାଇଁ ମଧ୍ୟ ତୃଷା ଏବଂ କାମନାର ଏହି ତୃଷା ପାଇଁ ସଂସାରରେ ମନୁଷ୍ୟର ବାରମ୍ବାର ଜନ୍ମ । ଯେତେବେଳେ ଏହି କାମନାର ତୃଷା ନିଃଶେଷ ହେବ ସେତିକିବେଳେ ଦୁଃଖର ମଧ୍ୟ ଶେଷ ହେବ ଏବଂ ସେତିକି-ବେଳେ ହେବ ଆତ୍ମାର ନିର୍ବାଣ । ଏହି ନିର୍ବାଣ ପ୍ରତ୍ୟେକ ମନୁଷ୍ୟର କାମ୍ୟ । କାରଣ ନିର୍ବାଣପ୍ରାପ୍ତ ଆତ୍ମାର ପୁନର୍ଜନ୍ମ ନାହିଁ । ଏବଂ ତେଣୁ ସାଂସାରିକ ଜୀବନର ଦୁଃଖକଷ୍ଟ ମଧ୍ୟ ନାହିଁ । ଏ ନିର୍ବାଣର ମାର୍ଗ ଜାତିଧର୍ମ, ଉଚ୍ଚ ନୀଚ ନିର୍ବିଶେଷରେ ସମସ୍ତଙ୍କ ପାଇଁ ଉନ୍ମୁକ୍ତ ଏବଂ ଏ ନିର୍ବାଣପ୍ରାପ୍ତି ପାଇଁ କୌଣସି ଦେବଦେବୀଙ୍କୁ ସନ୍ତୁଷ୍ଟ କରିବାକୁ ପଡ଼ିବ ନାହିଁ କିମ୍ବା ପୂଜକ ସମ୍ପ୍ରଦାୟଙ୍କ ନିକଟରେ ଆଶ୍ରୟ ନେବାକୁ ହେବ ନାହିଁ କିମ୍ବା ପୂଜା ପଦ୍ଧତି, ମନ୍ତ୍ର ତନ୍ତ୍ରର ମଧ୍ୟ ପ୍ରୟୋଜନ ହେବ ନାହିଁ । କାରଣ ଏ ନିର୍ବାଣଲାଭ ପାଇଁ କେବଳ ନିଜର ପବିତ୍ରତା ଆବଶ୍ୟକ ଏବଂ ଏ ପବିତ୍ରତା ପାଇଁ ଜୀବନ ପଥରେ ସତ୍କର୍ମ ଏବଂ ସଦାଚରଣବ୍ରତୀ ହେବାକୁ ହେବ । ବୁଦ୍ଧଙ୍କ ପ୍ରଗୃହୀତ ନିୟମାନୁଯାୟୀ ଏହି ସତ୍କର୍ମ ଏବଂ ସଦାଚରଣ ପାଇଁ ମନୁଷ୍ୟଙ୍କୁ 'ଅଷ୍ଟାଙ୍ଗିକ ମାର୍ଗ' ମଧ୍ୟରେ ଗତି କରିବାକୁ ପଡ଼ିବ । ସେ ଆଠଟି ମାର୍ଗ ବା ପନ୍ଥା ହେଉଛି ସତ୍ ବିଶ୍ୱାସ, ସତ୍ ଆକାଂକ୍ଷା, ସଦ୍‌ବାକ୍ୟ, ସତ୍ ସ୍ୱଭାବ, ସତ୍ ଜୀବନଯାତ୍ରା, ସତ୍ ଚେଷ୍ଟା, ସତ୍ ଚିନ୍ତା ଏବଂ ସତ୍ ଧ୍ୟାନ । ଏହି ଆଠଟି ସତ୍ ମାର୍ଗରେ ଗତି କଲେ ମନୁଷ୍ୟର ଜୀବନ ପବିତ୍ର ହେବ ଓ ଚିତ୍ତଶୁଦ୍ଧି ହେବ ଏବଂ ଏହି ପବିତ୍ରତା ମୂଳରେ କ୍ରମେ କାମନାର ବିନାଶ ହେବ । ଏବଂ ଏହି କାମନାର ବିନାଶରେ ହେବ ନିର୍ବାଣପ୍ରାପ୍ତି । ବୁଦ୍ଧଙ୍କ ପ୍ରଦର୍ଶିତ ଏହି ଅଷ୍ଟ ମାର୍ଗ ମଧ୍ୟରୁ ପ୍ରତ୍ୟେକ ମାର୍ଗଟିର ଅର୍ଥ ମୂଳରେ ଯଥେଷ୍ଟ ବିଶେଷତ୍ୱ ନିହିତ ଅଛି । ସତ୍ ବିଶ୍ୱାସର ଅର୍ଥ ଅନ୍ଧ ବିଶ୍ୱାସ କିମ୍ବା କୁସଂସ୍କାର ନୁହେଁ, ତାହାର ଅର୍ଥ ପ୍ରକୃତ ଜ୍ଞାନାର୍ଜନ ଏବଂ ଜ୍ଞାନ ଦ୍ୱାରା ପ୍ରକୃତ ସତ୍ୟ ନିରୂପଣ ଏବଂ ସେହି ସତ୍ୟ ଉପରେ ବିଶ୍ୱାସ; ସତ୍ ଆକାଂକ୍ଷାର ଅର୍ଥ କାମନା ନୁହେଁ କିମ୍ବା ଆଶା-ଦୌରାତ୍ମ୍ୟ ମଧ୍ୟରେ ତଥାକଥିତ ସାଂସାରିକ ଭୋଗ ବିଳାସ ପାଇଁ ଲାଳାୟିତ ହେବା ନୁହେଁ, ସେ ଆକାଂକ୍ଷା ହେଉଛି ଜୀବନର ମୋକ୍ଷ ପାଇଁ, ଆତ୍ମାର ଶାନ୍ତି ପାଇଁ, ଏବଂ ସଂସାରର ମାୟା ମମତାରୁ ଚିର ନିର୍ବାଣ ପାଇଁ ଏକ ପ୍ରବଳ ଇଚ୍ଛା ଏବଂ ଉଦ୍ୟମ; ସତ୍ ବାକ୍ୟର ଅର୍ଥ ବାକ୍ୟର ପ୍ରତ୍ୟେକ ଶବ୍ଦରେ ଅକପଟ ସତ୍ୟର ବିକାଶ; ସତ୍ ସ୍ୱଭାବ

ଅର୍ଥ ଜୀବନର ପ୍ରତ୍ୟେକ କର୍ମ ମୂଳରେ ନିଷ୍ଠା ଓ କର୍ତ୍ତବ୍ୟ ଏବଂ ପିତାମାତା, ଗୁରୁଜନ, ବନ୍ଧୁବର୍ଗ, ଭ୍ରାତାଭଗ୍ନୀ, ପ୍ରତିବେଶୀ ଇତ୍ୟାଦି ସମସ୍ତଙ୍କ ସହ ସଦାଚରଣ; ସତ୍ ଜୀବନଯାତ୍ରାର ଅର୍ଥ ଯେଉଁ ଜୀବନରେ କାହାର ପ୍ରତି ଅନ୍ୟାୟ ବ୍ୟବହାର କରାଯାଏ ନାହିଁ , କାହାର ମନରେ ଅଶାନ୍ତି ଦିଆଯାଏ ନାହିଁ କିମ୍ବା ନିଜର ସ୍ୱାର୍ଥ ପାଇଁ ଅପରମାନଙ୍କର ଜୀବନଯାତ୍ରା, ସୁଖ ଶାନ୍ତିରେ ବାଧା ସୃଷ୍ଟି କରାଯାଏ ନାହିଁ , କିନ୍ତୁ ଅପର ଦିଗରେ ଏକ ଅତି ସରଳ ଏବଂ ସଦା ସନ୍ତୁଷ୍ଟ ଜୀବନ ଯାପନ କରାଯାଏ; ସତ୍ ଚେଷ୍ଟା ଅର୍ଥ ସାରା ଜୀବନବ୍ୟାପୀ ନିଜର ସ୍ୱାର୍ଥତ୍ୟାଗ ଦ୍ୱାରା ପରର ଉପକାର ଏବଂ ନିଜର ଜୀବନକୁ ନିଷ୍ପାପ ନିଷ୍କଳଙ୍କ ଏବଂ ପବିତ୍ର ରଖିବା ପାଇଁ ଯେଉଁ ଅଦମ୍ୟ ଚେଷ୍ଟା; ସତ୍ ଚିନ୍ତାର ଅର୍ଥ ନିଜର ମାନସପଟରେ ସଦାସର୍ବଦା ଆତ୍ମାର ସଦ୍‌ଗତି ପାଇଁ ଚିନ୍ତା; ଏବଂ, ସତ୍ ଧ୍ୟାନର ଅର୍ଥ ଦୁଃଖ ଜଞ୍ଜାଳପୂର୍ଣ୍ଣ ଜୀବନରେ ଜନ୍ମହୀନ ମୃତ୍ୟୁହୀନ ମହାନିର୍ବାଣ ପ୍ରାପ୍ତି ନିମିତ୍ତ ନୀରବ ନିଶ୍ଚଳ ଶାନ୍ତିପୂର୍ଣ୍ଣ ଧ୍ୟାନ, ଯାହାର ପରିଣତି ହେବ ଦିବ୍ୟଜ୍ଞାନ ପ୍ରାପ୍ତି । ଏହାହିଁ ଜୀବନ ଯାପନର ଅଠଟି ପନ୍ଥା ଯାହା ବଳରେ କାମନାର ଦମନ ହେବ ଏବଂ ସାଂସାରିକ ଜୀବନ ପ୍ରତି ଯେଉଁ ତୃଷା ତାହାର ମଧ୍ୟ ଅବସାନ ହେବ । ଏହି ଅଷ୍ଟାଙ୍ଗିକ ମାର୍ଗ ବ୍ୟତୀତ ବୁଦ୍ଧ ମନୁଷ୍ୟ ଜଗତ ପାଇଁ ଅପର ଏକ ବିଧିବଦ୍ଧ ଅନୁଶାସନ ମଧ୍ୟ ରଖି ଯାଇଥିଲେ । ସେ ସମସ୍ତର ବର୍ଣ୍ଣନା କରିବା ଏ ପୁସ୍ତକର ଉଦ୍ଦେଶ୍ୟ ନୁହେଁ । ମହାବୀର ଜୀନଙ୍କ ପରି ବୁଦ୍ଧ ମଧ୍ୟ ମନୁଷ୍ୟର କର୍ମଫଳରେ ବିଶ୍ୱାସ କରିଥିଲେ ଏବଂ ମହାବୀରଙ୍କ ପରି ସେ ମଧ୍ୟ କର୍ମବାଦ ଉପରେ ଦୀର୍ଘ ପ୍ରଚାର କରିଥିଲେ । ଅନ୍ୟାୟ ପାଇଁ ଦଣ୍ଡ ଏବଂ ପୁଣ୍ୟ ପାଇଁ ପୁରସ୍କାର ଏହା ସଂସାରର ନିୟମ । ଜନ୍ମଜନ୍ମାନ୍ତରବ୍ୟାପୀ ମନୁଷ୍ୟ କେବଳ ତା'ର ବିଗତ ଜନ୍ମାର୍ଜ୍ଜିତ କର୍ମଫଳହିଁ ଭୋଗ କରେ । ମହାବୀରଙ୍କ ପରି ବୁଦ୍ଧ ବେଦର ପ୍ରାଧାନ୍ୟ ଅସ୍ୱୀକାରପୂର୍ବକ ହିନ୍ଦୁ ବିଶ୍ୱାସ ମୂଳରେ ଘୋର ସନ୍ଦେହ ସୃଷ୍ଟି କରିଥିଲେ । ତାହାଙ୍କ ମତରେ ମନୁଷ୍ୟର ସ୍ୱଗୁଣ ଏବଂ ସ୍ୱସ୍ୱଭାବ ଫଳରେହିଁ ମନୁଷ୍ୟର ମୋକ୍ଷଲାଭ ହୁଏ, ବେଦମନ୍ତ୍ର ଉଚ୍ଚାରଣରେ ନୁହେଁ । ବେଦର ଟୀକା ଉପରେ ବିଶ୍ୱାସ ରଖି ଅନ୍ଧ ବିଶ୍ୱାସ ହରାଇ ବସିବା ଏବଂ ବେଦର ନିୟମ କାନୁନ ମାନିବାକୁ ଯାଇ ସ୍ୱତନ୍ତ୍ରା ଶକ୍ତିର ବିଳୟ ସାଧନ କରିବା ବୁଦ୍ଧଙ୍କ ମତରେ ଅଜ୍ଞାନତାର କାର୍ଯ୍ୟ । ବେଦ ବିରୁଦ୍ଧରେ ନିଜର ମତ ପ୍ରକାଶ କରି ହିନ୍ଦୁ ରକ୍ଷଣଶୀଳତା ବିରୁଦ୍ଧରେ ବୁଦ୍ଧଙ୍କର ଏ ଯେଉଁ ଅଭିଯାନ, ଏହା ସର୍ବସାଧାରଣ ଭାରତବାସୀଙ୍କ ମନରେ ଆନନ୍ଦ ଦେଇଥିଲା । କାରଣ ବୌଦ୍ଧ ଯୁଗର ଆରମ୍ଭ ହେବାର

ବହୁ ପୂର୍ବରୁ ବେଦ କେବଳ ବ୍ରାହ୍ମଣମାନଙ୍କର ସମ୍ପତ୍ତିରେ ପରିଣତ ହୋଇ ସାରିଥିଲା ଏବଂ ବ୍ରାହ୍ମଣମାନେ ବେଦ ନାମରେ ବେଦର ବିଭିନ୍ନ ଅର୍ଥ କରି ସମାଜ ଉପରେ ନିଜର ପ୍ରାଧାନ୍ୟ ବିସ୍ତାର କରି ପାରୁଥିଲେ । ତେଣୁ ବୁଦ୍ଧଙ୍କ ଦ୍ୱାରା ବେଦର ପ୍ରାଧାନ୍ୟ ଅସ୍ୱୀକାର ଦେଶବାସୀଙ୍କ ଦ୍ୱାରା ସମର୍ଥିତ ହୋଇଥିଲା । ବେଦର ପ୍ରାଧାନ୍ୟ ଅସ୍ୱୀକାର ସଙ୍ଗେ ସଙ୍ଗେ ବୁଦ୍ଧ ସମାଜ ମଧ୍ୟରେ ବ୍ରାହ୍ମଣମାନଙ୍କର ଶ୍ରେଷ୍ଠତ୍ୱ ମଧ୍ୟ ଅସ୍ୱୀକାର କରିଥିଲେ । କାରଣ ଜାତିଭେଦ ବୁଦ୍ଧଙ୍କର ସାମ୍ୟବାଦ ମଧ୍ୟରେ କୌଣସି ପ୍ରକାରେ ସ୍ଥାନ ପାଇ ପାରି ନ ଥିଲା । ବୁଦ୍ଧ ଜ୍ଞାନ ଏବଂ ପାଣ୍ଡିତ୍ୟ ପ୍ରତି ଯଥେଷ୍ଟ ସମ୍ମାନ ଦେଖାଉଥିଲେ ଏବଂ ବୌଦ୍ଧ ଶାସ୍ତ୍ରମାନଙ୍କର ପ୍ରମାଣାନୁଯାୟୀ ସେ ବହୁ ବ୍ରାହ୍ମଣ ପଣ୍ଡିତଙ୍କୁ ସାଦରେ ଗ୍ରହଣ କରିଥିଲେ । କିନ୍ତୁ ସମାଜ ମଧ୍ୟରେ ବ୍ରାହ୍ମଣ ବୋଲି ଏକ ତଥାକଥିତ ପଣ୍ଡିତ ଜାତିର ଅସ୍ତିତ୍ୱ ସେ ସ୍ୱୀକାର କରି ନ ଥିଲେ । ଆବ୍ରାହ୍ମଣ-ଚଣ୍ଡାଳ ସମସ୍ତେ ମନୁଷ୍ୟ ଏବଂ ଏହି ମନୁଷ୍ୟ ଜାତି ମଧ୍ୟରେ ଜାତିଗତ ଭେଦାଭେଦ ସର୍ବଥା ବର୍ଜନୀୟ । ବେଦ ଏବଂ ବ୍ରାହ୍ମଣର ପ୍ରାଧାନ୍ୟ ଅସ୍ୱୀକାର କରିବା ସଙ୍ଗେ ସଙ୍ଗେ ବୈଦିକ କ୍ରିୟାକାଣ୍ଡ ଏବଂ ବ୍ରାହ୍ମଣର ପୂଜା ପଦ୍ଧତି ଏ ସମସ୍ତ ମଧ୍ୟ ବୁଦ୍ଧ ଅସ୍ୱୀକାର କରିଥିଲେ । ବୁଦ୍ଧଙ୍କ ମତରେ ଧର୍ମ ନାମରେ ସମାଜ ମଧ୍ୟରେ ଯେଉଁ ଅସଂଖ୍ୟ ଜଟିଳ କ୍ରିୟାକଳାପର ସୃଷ୍ଟି କରାଯାଇଛି ସେ ସମସ୍ତ ମୂଲ୍ୟହୀନ ଏବଂ ଅର୍ଥହୀନ । କାରଣ ସେ ସମସ୍ତ ଦ୍ୱାରା ମନୁଷ୍ୟର ମୋକ୍ଷଲାଭ ହୁଏ ନା । ପ୍ରକୃତ ମୋକ୍ଷଲାଭ ପାଇଁ ଚିତ୍ତଶୁଦ୍ଧିର ଆବଶ୍ୟକ ଏବଂ ଚିତ୍ତଶୁଦ୍ଧି ପାଇଁ ମନୁଷ୍ୟର ପବିତ୍ର ଜୀବନ ଯାପନ ଆବଶ୍ୟକ । ବୈଦିକ ବିଶ୍ୱାସ ଏବଂ ବ୍ରାହ୍ମଣମାନଙ୍କର କ୍ରିୟାକଳାପ ବିରୁଦ୍ଧରେ ମତ ପ୍ରକାଶ କରିବା ଦ୍ୱାରା ଯାଗଯଜ୍ଞ, ପଶୁବଳି ଇତ୍ୟାଦି ଅର୍ଥହୀନ କୁସଂସ୍କାର ବୋଲି ପ୍ରମାଣିତ ହୋଇଥିଲା । ମହାବୀର ଜୀନଙ୍କ ପରି ବୁଦ୍ଧ ମଧ୍ୟ ଅହିଂସାବାଦୀ ଥିଲେ ଏବଂ 'ଜୀବପ୍ରତି ଦୟା' ଏହା ତାହାଙ୍କ ପ୍ରଚାରର ଏକ ମୂଳମନ୍ତ୍ର ଥିଲା । ସୁତରାଂ ହିନ୍ଦୁ ଧର୍ମରେ ଯେଉଁ ପ୍ରଚଳିତ ଜୀବହତ୍ୟା ତାହା ମୂଳରେ କୁଠାରଘାତ କରାଯାଇ-ଥିଲା । ବୁଦ୍ଧଙ୍କର ପ୍ରଚାର ଦ୍ୱାରା ଏହିପରି ଭାବରେ ଜାତିଭେଦ, ବଳିପ୍ରଥା, ବ୍ରାହ୍ମଣର ପ୍ରାଧାନ୍ୟ, ଏ ସମସ୍ତ ଚିରାଚରିତ ସାମାଜିକ ଏବଂ ଧର୍ମଗତ ଗ୍ଳାନିମାନଙ୍କ ବିରୁଦ୍ଧରେ ତୀବ୍ର ଜନମତ ସୃଷ୍ଟି ହୋଇଥିଲା । ଅପର ଦିଗରେ ପ୍ରକୃତ ପବିତ୍ରତା, ପ୍ରକୃତ ଧର୍ମ, ଏବଂ ପ୍ରକୃତ ନିର୍ବାଣ, ଏ ସବୁର ମୂଳ ତତ୍ତ୍ୱ ମନୁଷ୍ୟ ସମାଜ ମଧ୍ୟରେ ପ୍ରଚାରିତ ହେବା ଫଳରେ ମନୁଷ୍ୟର ଧର୍ମ ପ୍ରତି ବିଶ୍ୱାସ ଏବଂ ସତ୍‌କାର୍ଯ୍ୟ ପ୍ରତି ମତ ପରିବର୍ତ୍ତିତ ହୋଇଥିଲା ।

ବୌଦ୍ଧ ବିଶ୍ୱାସରେ ଧର୍ମର ପରିଣତି ହେଉଛି ନିର୍ବାଣ । କେତେକ ବୌଦ୍ଧ ପଣ୍ଡିତଙ୍କ ମତରେ ନିର୍ବାଣ ଶବ୍ଦର ଅର୍ଥ ଚରମ ମୁକ୍ତି । ନିର୍ବାଣୋନ୍ମୁଖ ପ୍ରଦୀପର ଅନ୍ତିମ ଶିଖା ଯେପରି ଅନନ୍ତ ଶୂନ୍ୟ ମଧ୍ୟରେ ନିଜର ସତ୍ତା ବିସର୍ଜନ କରେ, ଠିକ୍ ସେହିପରି ଆତ୍ମା ଯେତେବେଳେ ନଶ୍ୱର ଶରୀର ପରିତ୍ୟାଗ କରି ଅନନ୍ତ ଅବିନଶ୍ୱର ଶୂନ୍ୟ ମଧ୍ୟରେ ବିଲୟ ଭଜେ, ତାହାହିଁ ନିର୍ବାଣ—ଅର୍ଥାତ୍ ପୁନର୍ଜନ୍ମହୀନ ମୃତ୍ୟୁ । ଅପର କେତେକଙ୍କ ମତରେ ଜୀବନର ପାପ, ଦୁଃଖ, ଜଞ୍ଜାଳ, କାମନାଏହି ସମସ୍ତର ବିନାଶହିଁ ନିର୍ବାଣ । ଅର୍ଥାତ୍, ମନୁଷ୍ୟର ଜୀବିତାବସ୍ଥାରେହିଁ ନିର୍ବାଣ ପ୍ରାପ୍ତି ହୁଏ ଯେତେବେଳେ ଦୁଃଖର କାରଣସମୂହ ବିନାଶପୂର୍ବକ ମନୁଷ୍ୟ ପରମ ଶାନ୍ତିରେ ଜୀବନ ଯାପନ କରେ । ପ୍ରାଚୀନ ବୌଦ୍ଧ ପଣ୍ଡିତମାନଙ୍କର ଏହି ମତଭେଦ ମଧ୍ୟରୁ ଶେଷ ସିଦ୍ଧାନ୍ତ ନିର୍ଦ୍ଧାରଣ କରିବା କଷ୍ଟକର । ଆଧୁନିକ ପଣ୍ଡିତମାନେ ସାଧାରଣତଃ ଏହାହିଁ ବିଶ୍ୱାସ କରୁଥିଲେ ଯେ ନିର୍ବାଣ ଅର୍ଥ ମୃତ୍ୟୁ । କିନ୍ତୁ ଅଧ୍ୟାପକ ମ୍ୟାକ୍ସ ମୁଲର ସର୍ବପ୍ରଥମେ ପ୍ରମାଣ କରିବାକୁ ଚେଷ୍ଟା କରିଥିଲେ ଯେ ବୁଦ୍ଧଙ୍କ ସମୟରେ ନିର୍ବାଣ ଶବ୍ଦ ଯେଉଁ ଅର୍ଥ ପାଇଁ ବ୍ୟବହୃତ ହେଉଥିଲା ତାହା ହେଉଛି ମନ ମଧ୍ୟରୁ ସମସ୍ତ ପାପ, ତାପ, ଶୋକ, ଦୁଃଖ, ମାୟା, ମମତା ଓ କାମନାର ବିନାଶ ; ଏବଂ ମୃତ୍ୟୁ ନୁହେଁ । ମ୍ୟାକ୍ସ ମୁଲରଙ୍କର ଏହି ମତ ଏବେ ଅଧିକାଂଶ ପଣ୍ଡିତ ଗ୍ରହଣ କରିଛନ୍ତି । ଜୀବିତାବସ୍ଥାରେହିଁ ଗୌତମ ନିର୍ବାଣପ୍ରାପ୍ତି ପାଇଁ ଚେଷ୍ଟା କରିଥିଲେ ଏବଂ ନିର୍ବାଣପ୍ରାପ୍ତି ପରେ ସେ ବୁଦ୍ଧରୂପେ ଏ ସଂସାରରେ ଜୀବିତ ଥିଲେ । ସୁତରାଂ ନିର୍ବାଣ ଅର୍ଥ ଦିବ୍ୟଜ୍ଞାନ ଲାଭ, ସାଂସାରିକ ସମସ୍ତ ମାୟା ମୋହ, ଦୁଃଖ କ୍ଳେଶ, ଆଶା କାମନାର ଅତୀତ ଯେଉଁ ଜୀବନ । ସୁଚିନ୍ତା, ସୁଧ୍ୟାନ ଏବଂ ଆତ୍ମଜ୍ଞାନ ବଳରେ ମନୁଷ୍ୟ ଯେତେବେଳେ ଆଶା ଏବଂ କାମନା ବିସର୍ଜନ କରିପାରେ ଏବଂ ତଦ୍‌ଜନିତ ଦୁଃଖ କ୍ଳେଶରୁ ନିସ୍ତାର ପାଏ, ସେତେବେଳେ ସେହି ପବିତ୍ର, ଶାନ୍ତିମୟ, ଜ୍ଞାନପୂର୍ଣ୍ଣ ଜୀବନହିଁ ନିର୍ବାଣ । ଡକ୍ଟର ରିସ୍ ଡେଭିସ୍‌ଙ୍କ ଭାଷାରେ, "ମୃତ୍ୟୁ ବୌଦ୍ଧମାନଙ୍କର ସ୍ୱର୍ଗ ନୁହେଁ କିମ୍ବା ମୃତ୍ୟୁରେ ସେମାନଙ୍କର ସ୍ୱର୍ଗ ପ୍ରାପ୍ତି ହୁଏ ନାହିଁ, କିନ୍ତୁ ପୁଣ୍ୟମୟ ଜୀବନ ଯାପନହିଁ ସେମାନଙ୍କର ସ୍ୱର୍ଗ ଏବଂ ସେ ସ୍ୱର୍ଗ ଏହିଠାରେ, ଏହି ସଂସାର କ୍ଷେତ୍ରରେ ବିଦ୍ୟମାନ ।" ଧର୍ମ ପୁସ୍ତକରେ ଏପରି ସ୍ୱର୍ଗର କଳ୍ପନା ଏବଂ ଜୀବିତ ମନୁଷ୍ୟ ପକ୍ଷରେ ସ୍ୱର୍ଗସୁଖ ଲାଭ, ଏହା ବାସ୍ତବିକ ବୁଦ୍ଧଙ୍କର ଅତି ମହିମମୟୀ ନିର୍ଦ୍ଦେଶ ।

ଏହାହିଁ ହେଉଛି ପୃଥିବୀର ଶ୍ରେଷ୍ଠତମ ଧର୍ମପ୍ରବର୍ତ୍ତକଙ୍କ ଦ୍ୱାରା ପ୍ରଚାରିତ ବାଣୀର ଯତ୍କିଞ୍ଚିତ୍ ଆଭାସ ମାତ୍ର । କିନ୍ତୁ ଆଶ୍ଚର୍ଯ୍ୟ ଲାଗେ, କେଉଁ ଯାଦୁବଳରେ ବୁଦ୍ଧଙ୍କର ଏହି ସରଳ, ସହଜ ବାଣୀ ପୃଥିବୀର ଶ୍ରେଷ୍ଠତମ ଧର୍ମରେ ପରିଣତ ହୋଇ ପାରିଲା । ହୁଏତ ବୁଦ୍ଧଙ୍କ ବ୍ୟକ୍ତିତ୍ୱ ମୂଳରେ ଏପରି କିଛି ମହତ୍ତ୍ୱ ଥିଲା ଯାହାବଳରେ ତାହାଙ୍କର ଜୀବଦ୍ଦଶାରେ ସେ ଭାରତବାସୀଙ୍କର ପ୍ରିୟଭାଜନ ହୋଇ ପାରିଥିଲେ ଏବଂ ତାହାଙ୍କ ମୃତ୍ୟୁପରେ ସେହି ଭାରତବାସୀଙ୍କଦ୍ୱାରା ସେ ସ୍ୱୟଂ ଭଗବାନଙ୍କର ଅବତାରରୂପେ ପୂଜା ପାଇପାରିଥିଲେ । ତାହାଙ୍କ ପ୍ରଚାର ମୂଳରେ ମଧ୍ୟ ହୁଏତ ଏପରି କିଛି ବିଶେଷତ୍ୱ ଥିଲା ଯାହାଫଳରେ ତାହାଙ୍କର ପ୍ରଚାରିତ ନୀତି ସମଗ୍ର ଭାରତ ତଥା ଏସିଆ ମହାଦେଶର ଅକଳନ୍ତ, ଅସରନ୍ତି ମନୁଷ୍ୟଗୋଷ୍ଠୀର ଧର୍ମରୂପେ ପରିଣତ ହୋଇଥିଲା । ବୁଦ୍ଧଙ୍କର ବ୍ୟକ୍ତିତ୍ୱ ଏବଂ ତାହାଙ୍କର ବାଣୀ, ଏ ଉଭୟ ଆଦର୍ଶର ଦୃଷ୍ଟାନ୍ତ ସମସ୍ତ ମନୁଷ୍ୟ ଜାତିର ଇତିହାସରେ ବିରଳ । ବୁଦ୍ଧଙ୍କର ଜନ୍ମ କପିଳବାସ୍ତୁର ରାଜପୁତ୍ରରୂପେ, କିନ୍ତୁ ରାଜପୁତ୍ରଙ୍କର ଭିକ୍ଷୁବେଶ ଧାରଣ ଏହା ଜନସାଧାରଣଙ୍କ ଦୃଷ୍ଟିରେ ଏକ ହୃଦୟ-ସ୍ପର୍ଶୀ ଦୃଶ୍ୟ । ତ୍ୟାଗୀ ରାଜପୁତ୍ରଙ୍କ ଦୁର୍ଗମ ଅରଣ୍ୟ ମଧ୍ୟରେ ସାଧନା, ନିଜର ରକ୍ତମାଂସର ଏହି ଶରୀର ଉପରେ ଦୀର୍ଘକାଳବ୍ୟାପୀ ନିର୍ଯ୍ୟାତନ ଏବଂ ତା'ପରେ ସତ୍ୟର ଅନୁସନ୍ଧାନ ପାଇଁ ଦୀର୍ଘ ତପସ୍ୟା—ଏ ସମସ୍ତ ଅଲୌକିକ କର୍ମ କାହାର ମଙ୍ଗଳ ପାଇଁ ? ନିଜର ସ୍ୱର୍ଗପ୍ରାପ୍ତି ପାଇଁ ନୁହେଁ କିମ୍ବା ସ୍ୱାର୍ଥସିଦ୍ଧି ପାଇଁ ନୁହେଁ, ଗୌତମଙ୍କର ଏ ସମସ୍ତ ସାଧନା ଓ ତପସ୍ୟା ଦୁଃଖ ଜର୍ଜ୍ଜରିତ, ପଥଭ୍ରଷ୍ଟ, ଅସହାୟ ମନୁଷ୍ୟ ସମାଜର ଉପକାର ପାଇଁ । ଦିବ୍ୟଜ୍ଞାନ ଲାଭ ପରେ ବୁଦ୍ଧଙ୍କର ସେହି ମହାଜ୍ଞାନର ସାରାଂଶ କେବଳ ରାଜା, ସମ୍ରାଟ, ଜ୍ଞାନୀ, ପଣ୍ଡିତ, ଏମାନଙ୍କ ଉଦ୍ଦେଶ୍ୟରେ ପ୍ରଚାରିତ ହୋଇ ନ ଥିଲା । ବୁଦ୍ଧଙ୍କର ସେ ବାଣୀ ଅଜ୍ଞାନ, ଅନ୍ଧକାରାଚ୍ଛନ୍ନ, ସମାଜ ପ୍ରପୀଡ଼ିତ, ନିଷ୍ପେଷିତ ତଥାକଥିତ ଶୂଦ୍ରମାନଙ୍କ ଉଦ୍ଦେଶ୍ୟରେ ପ୍ରଚାରିତ ହୋଇଥିଲା । ଭିକ୍ଷୁ ବୁଦ୍ଧଙ୍କ ଚତୁର୍ପାର୍ଶ୍ୱରେ ସମାଜର ଦୁର୍ବଳ, ଦରିଦ୍ର, ଅନୁନ୍ନତ-ମାନେହିଁ ସମବେତ ହୋଇଥିଲେ ଏବଂ ସେହିମାନଙ୍କର ମଙ୍ଗଳ ପାଇଁ ବୁଦ୍ଧଙ୍କର ସାରା ଜୀବନ ଉତ୍ସର୍ଗିତ ହୋଇଥିଲା । କିନ୍ତୁ ଭିକ୍ଷୁର ଯେଉଁ ଅଲୌକିକ ପ୍ରତିଭା ଲକ୍ଷ ଲକ୍ଷ ଦେଶବାସୀଙ୍କର ମର୍ମ ସ୍ପର୍ଶ କରିଥିଲା ସେ ପ୍ରତିଭା ଅନତିବିଳମ୍ବେ ରାଜା, ସମ୍ରାଟ,ଧନିକ, ପଣ୍ଡିତ, ଏମାନଙ୍କ ଉନ୍ନତ ମସ୍ତକ ମଧ୍ୟ ଅବନତ କରି ଆଣିଥିଲା । ଏବଂ ମହାପ୍ରେମୀ ବୁଦ୍ଧ ତାହାଙ୍କର ସାର୍ବଜନୀନ ପ୍ରେମଦ୍ୱାରା କି ରାଜା, କି ପ୍ରଜା,

କ ଧନୀ, କ ଦରିଦ୍ର, କ ବ୍ରାହ୍ମଣ, କ ଶୂଦ୍ର ସମସ୍ତଙ୍କୁ ଆଲିଙ୍ଗନ ଦେଇଥିଲେ । ବୁଦ୍ଧଙ୍କର ପବିତ୍ର ଆଦର୍ଶରେ ପଥଭ୍ରଷ୍ଟ ମନୁଷ୍ୟ ଚେତନା ଲାଭ କରିଥିଲା । ବୁଦ୍ଧଙ୍କର ନିଷ୍ପାପ, ନିଷ୍କଳଙ୍କ, ନିଷ୍କାମ ଜୀବନଯାତ୍ରା ସ୍ୱାର୍ଥ ବିଜଡ଼ିତ ପାପ ପଙ୍କିଳମୟ ସଂସାରରେ ନୂତନ ଚିନ୍ତାଧାରା ଏବଂ ନୂତନ ଯୁଗର ଆରମ୍ଭ କରିଥିଲା । ବୁଦ୍ଧଙ୍କର ତ୍ୟାଗ, ପ୍ରେମ ଏବଂ ସେବା ତାହାଙ୍କର ପ୍ରତ୍ୟେକ ଶିଷ୍ୟର ହୃଦୟ-ତନ୍ତ୍ରୀରେ ଅତି କରୁଣ ଏବଂ କୋମଳ ସ୍ପନ୍ଦନ ଆଣିଥିଲା । ବୁଦ୍ଧଙ୍କର ଦୈନନ୍ଦିନ ଜୀବନ ଯାପନ ପ୍ରକୃତରେ କାମନାହୀନ ଜୀବନର ଏକ ପବିତ୍ର ଦୃଷ୍ଟାନ୍ତ । ଏପରିକି "ଯେଉଁ ସମୟ ବେଳକୁ ବୁଦ୍ଧଙ୍କର ଖ୍ୟାତି ଶୀର୍ଷସୀମା ଲାଭ କରି ସାରିଥିଲା, ଯେତେବେଳେ ତାହାଙ୍କର ନାମ ସର୍ବଶ୍ରେଷ୍ଠ ନାମମାନଙ୍କ ମଧ୍ୟରେ ସମଗ୍ର ଭାରତର ଦିଗେ ଦିଗେ ପ୍ରତିଧ୍ୱନିତ ହେଉଥିଲା ଏବଂ ଯେତେବେଳେ ତାହାଙ୍କ ସମ୍ମୁଖରେ ନରପତିମାନେ ସ୍ୱତଃପ୍ରବୃତ୍ତ ଅବସ୍ଥାରେ ମସ୍ତକ ନତ କରୁଥିଲେ, ସେତେବେଳେ ସେହି ବୁଦ୍ଧଙ୍କୁ ଭିକ୍ଷାପାତ୍ର ହସ୍ତରେ ସହରର ଗଳି ପ୍ରଗଳି ମଧ୍ୟରେ ଗୃହ ପରେ ଗୃହ ପ୍ରତ୍ୟେକ ଗୃହ ଦ୍ୱାରରେ ଅବନତ ଦୃଷ୍ଟିରେ ଏବଂ ବିନା ଅନୁରୋଧରେ ମୁଷ୍ଟିମାନ ଖାଦ୍ୟ ତାହାଙ୍କର ଭିକ୍ଷାପାତ୍ରରେ ନିକ୍ଷେପ କରି ନ ହେଲା ପର୍ଯ୍ୟନ୍ତ ନୀରବରେ ଦଣ୍ଡାୟମାନ ରହି-ଥିବାର ଦେଖା ଯାଉଥିଲା ।"[1] ସେ ଯୁଗର ସର୍ବଶ୍ରେଷ୍ଠ ଭାରତୀୟଙ୍କର ଏହାହିଁ ଥିଲା ଦୈନନ୍ଦିନ କର୍ମ । ଦିନ ପରେ ଦିନ, ବର୍ଷ ପରେ ବର୍ଷ, ଏହିପରି ଦ୍ୱାରେ ଦ୍ୱାରେ ଭିକ୍ଷା ଗ୍ରହଣ କରି ବୁଦ୍ଧ ସ୍ଥାନ ସ୍ଥାନାନ୍ତରେ ବିଶ୍ୱପ୍ରେମ ଏବଂ ସାର୍ବଜନୀନ ଭ୍ରାତୃଭାବର ବୀଜ ବପନ କରୁଥିଲେ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ବୁଦ୍ଧ ଅକ୍ଳାନ୍ତ କର୍ମୀରୂପେ ପ୍ରବୃତ୍ତିରତ ରହିଥିଲେ । ଯେଉଁ ରଜନୀରେ ବୁଦ୍ଧଙ୍କର ମୃତ୍ୟୁ ହୁଏ ସେହି ରଜନୀରେ କୁଶୀନଗରର ସୁଭଦ୍ର ନାମକ ଜନୈକ ବ୍ରାହ୍ମଣ ଦାର୍ଶନିକ ବୁଦ୍ଧଙ୍କ ନିକଟରୁ ନିଜର ସନ୍ଦେହ ମୋଚନ ପାଇଁ ଆସିଥିଲେ । ଶଯ୍ୟାଶାୟୀ ମୁମୂର୍ଷୁ ବୁଦ୍ଧଙ୍କର ଦୁର୍ବଳ ଶରୀର ଉପରେ କଷ୍ଟ ଆସିବ ବୋଲି ତାହାଙ୍କର ଚିର ବିଶ୍ୱାସୀ ଅନୁଚର ଏବଂ ଶିଷ୍ୟ ଆନନ୍ଦ ବ୍ରାହ୍ମଣକୁ ଫେରିଯିବା ପାଇଁ ଅନୁରୋଧ କରିଥିଲେ । ଆନନ୍ଦ ଏବଂ ବ୍ରାହ୍ମଣଙ୍କର କଥୋପକଥନ ମୁମୂର୍ଷୁ ବୁଦ୍ଧଙ୍କର କର୍ଣ୍ଣ ପ୍ରବେଶ କରିଥିଲା ଏବଂ ବୁଦ୍ଧ ଜୀବନର ସେହି ଶେଷ ସନ୍ଧିରେ ମଧ୍ୟ ବ୍ରାହ୍ମଣକୁ ବିଫଳ ମନୋରଥ ହୋଇ ଫେରି ଯିବାକୁ ହେବ ବୋଲି ଭାବି ସଙ୍ଗେ ସଙ୍ଗେ ତାହାଙ୍କୁ ନିଜ ନିକଟକୁ ଡକାଇ ଥିଲେ । ବ୍ରାହ୍ମଣ ଯେତେ କିଛି ପ୍ରଶ୍ନ ପଚାରିଥିଲା ସେସବୁର ଉତ୍ତର ବୁଦ୍ଧ ତାହାଙ୍କର

1. **Buddha -- Dr. Oldenberg -- p. 149.**

ଅନ୍ତିମ କ୍ଷଣରେ ଦୀକ୍ଷିତ ହୋଇଥିଲେ ଏବଂ ଏହି ବ୍ରାହ୍ମଣହିଁ ବୁଦ୍ଧଙ୍କର ଶେଷ ସ୍ୱଦୀକ୍ଷିତ ଶିଷ୍ୟ। ଏହାର ଅଳ୍ପକ୍ଷଣ ପରେ ରଜନୀର ଅନ୍ତିମ ଯାମରେ ବିଶ୍ୱବାସୀଙ୍କ ପ୍ରତି ନିଜର ଅନ୍ତିମ ବାଣୀ ଉଚ୍ଚାରଣ କରୁଁ କରୁଁ ବୁଦ୍ଧ ଚିରଦିନ ପାଇଁ ନୟନ ମୁଦ୍ରିତ କରିଥିଲେ। ଏପରି ଏକ ପୁଣ୍ୟମୟ ଜୀବନଦ୍ୱାରା ଦେଶବାସୀଙ୍କର ହୃଦୟ ପ୍ରଭାବିତ ହେବା କିଛି ଆଶ୍ଚର୍ଯ୍ୟର ବିଷୟ ନୁହେଁ, କିମ୍ବା ମୃତ୍ୟୁ ପରେ ତାହାଙ୍କର ପବିତ୍ର ସ୍ମୃତି ସବୁଯୁଗର ମନୁଷ୍ୟ ହୃଦୟରେ ଯେଉଁ ରେଖାପାତ କରିଆସିଛି ତାହାମଧ୍ୟ ଆଶ୍ଚର୍ଯ୍ୟପ୍ରଦ ନୁହେଁ।

ବୁଦ୍ଧଙ୍କର ବ୍ୟକ୍ତିତ୍ୱ ଅପେକ୍ଷା ତାହାଙ୍କର ପ୍ରଚାରିତ ବାଣୀ ଅଧିକତର ଜନପ୍ରିୟ। ପୃଥିବୀର କୌଣସି ଧର୍ମ ପ୍ରବର୍ତ୍ତକ ଏପରି ସରଳ ଭିତ୍ତି ଉପରେ ଏକ ବିରାଟ ମହା-ଧର୍ମର ମୂଳଭିତ୍ତି ସ୍ଥାପନ କରି ଯାଇ ନାହାନ୍ତି। ବୁଦ୍ଧ ଈଶ୍ୱରଙ୍କର ପିତୃତ୍ୱକୁ ଧର୍ମର କେନ୍ଦ୍ର ନ କରି ମନୁଷ୍ୟର ଭ୍ରାତୃତ୍ୱକୁ ସ୍ୱଧର୍ମର କେନ୍ଦ୍ର କରିଥିଲେ। ତାହାଙ୍କର ସେହି ବିଶ୍ୱଜନୀନ ଭ୍ରାତୃଭାବ ମୂଳରେ ତାହାଙ୍କ ମତର ଜନପ୍ରିୟତା ନିହିତ ଥିଲା। ଯେଉଁ ଯୁଗରେ ମନୁଷ୍ୟ ମଧ୍ୟରେ ଭେଦାଭେଦ ଭାବ ସମାଜର କଠୋର ନିୟମ ରୂପେ ପରିଣତ ହୋଇଥିଲା ସେହି ଯୁଗରେ ଭେଦାଭେଦହୀନ ଭ୍ରାତୃଭାବ ପ୍ରଚାର କରି ବୁଦ୍ଧ ପତିତ, ଅନୁନ୍ନତମାନଙ୍କ ମନରେ ଉତ୍ଥାନର ଆଶା ସଞ୍ଚାର କରିଥିଲେ। ପୃଥିବୀର ପ୍ରତ୍ୟେକ ଧର୍ମ କେବଳ ଈଶ୍ୱର ଏବଂ ଅପର କାଳ୍ପନିକ ଦେବଦେବୀଙ୍କୁ କେନ୍ଦ୍ରକରି ଏବଂ ବହୁବିଧ ପୂଜା ପଦ୍ଧତିର ଉଦ୍ଭାବନ କରି ମନୁଷ୍ୟର ମତିଗତି ସେହି ଦିଗକୁ ଆକର୍ଷଣ କରିବାକୁ ଚେଷ୍ଟା କରିଛି ଏବଂ ସଂସାର କ୍ଷେତ୍ରରେ ମନୁଷ୍ୟର ସ୍ଥାନ ପ୍ରତି ଯଥାଯୋଗ୍ୟ ସମ୍ମାନ ନ ଦେଇ ତଥାକଥିତ ଦେବତା ଆଗରେ ମନୁଷ୍ୟକୁ କ୍ଷୁଦ୍ରାଦପି କ୍ଷୁଦ୍ର ରୂପେ ପରିଚୟ ଦେଇ ଧର୍ମ ଆଗରେ ମନୁଷ୍ୟର ଆତ୍ମମର୍ଯ୍ୟାଦାକୁ ଦଳି ଦେଇଛି। କିନ୍ତୁ ବୁଦ୍ଧଙ୍କ ଧର୍ମରେ ମନୁଷ୍ୟହିଁ ନିଜେ ଦେବତା। ବୌଦ୍ଧଧର୍ମରେ ମନୁଷ୍ୟପ୍ରତି ସମସ୍ତ ସମ୍ମାନ ଦିଆଯାଇଛି ଏବଂ ତାହା ଫଳରେ ସଂସାରର ଦୁର୍ବଳତମ ମନୁଷ୍ୟ ମଧ୍ୟ ନିଜର ଆତ୍ମମର୍ଯ୍ୟାଦା ଉପଲବ୍ଧି କରିପାରିଛି। ମନୁଷ୍ୟ ମନରେ ଏହି ଅଭିନବ ବିଶ୍ୱାସ ସଞ୍ଚାର ବୁଦ୍ଧଙ୍କର ଏକ ଅପରୂପ କୀର୍ତ୍ତି। ବୁଦ୍ଧଙ୍କ ଧର୍ମର ମୂଳମନ୍ତ୍ର ଥିଲା କେବଳ ଗୋଟିଏ କଥା — ଜୀବନ ଦୁଃଖମୟ, ଦୁଃଖର କାରଣ କାମନା, କାମନାର ବିନାଶରେ ଦୁଃଖର ବିନାଶ, ଏବଂ ସତ୍ ଜୀବନ-ଯାପନରେହିଁ କାମନାର ବିନାଶ। ଏତିକମାତ୍ର ହୃଦୟଙ୍ଗମ କରି ମନୁଷ୍ୟ ଚିତ୍ତ ଶୁଦ୍ଧ କରିପାରିଲେ ତାହାହିଁ ହେଲା ତାହାର ଧର୍ମଲାଭ ଏବଂ ଅନନ୍ତ ଶାନ୍ତି।

କେବଳ ସେତିକି ନୁହେଁ, ସତ୍ ଜୀବନ ଯାପନପୂର୍ବକ କାମନାର ବିନାଶ କରିପାରିଲେ ତାହାହିଁ ହେଲା ନିର୍ବାଣ, ଅର୍ଥାତ୍ ସଂସାର ଭୂମିରେ ସ୍ୱର୍ଗଲାଭ। ଏ ଜନ୍ମରେ ସତ୍‌କାର୍ଯ୍ୟ କଲେ ମୃତ୍ୟୁପରେ କେଉଁ ଅଜଣା ଅଦେଖା ସ୍ୱର୍ଗରେ ମନୁଷ୍ୟକୁ ଶାନ୍ତି ମିଳିବ ବୋଲି ଅପର ଧର୍ମମାନଙ୍କର ଯେଉଁ ବିଶ୍ୱାସ ତାହା ବୁଦ୍ଧଙ୍କ ମନରେ ତୃପ୍ତି ଦେଇ ପାରି ନ ଥିଲା। ତେଣୁ ସେ ଏକ କାଳ୍ପନିକ ଜୀବନରେ କାଳ୍ପନିକ ସ୍ୱର୍ଗର ଲୋଭ ଦେଖାଇ ମନୁଷ୍ୟମାନଙ୍କୁ ସତ୍ ପଥଗାମୀ କରିବାକୁ ପ୍ରୟାସୀ ହୋଇ ନ ଥିଲେ। କିମ୍ବା, ଏ ସଂସାରର ମନୁଷ୍ୟ ଆଗରେ ଅପର ଏକ ସଂସାରର ଚିତ୍ର ଅଙ୍କନ କରି ମନୁଷ୍ୟ ମନରେ ମିଥ୍ୟା ଆଶା ସୃଷ୍ଟି କରି ନ ଥିଲେ। ବୁଦ୍ଧଙ୍କର ସ୍ୱର୍ଗ ଥିଲା ଏହି ସଂସାର କ୍ଷେତ୍ରରେ ଏବଂ ସେ ସ୍ୱର୍ଗର ନିବାସୀ ହେବାପାଇଁ ଉପଯୁକ୍ତ ଥିଲେ ଏହି ସଂସାରର ମନୁଷ୍ୟ। ଏବଂ ସେ ସ୍ୱର୍ଗଲାଭ କରିବାପାଇଁ ଈଶ୍ୱରଙ୍କର ବର କିମ୍ବା ଦେବତାର ଆଶୀର୍ବାଦ ଆବଶ୍ୟକ ନ ଥିଲା; ବ୍ରାହ୍ମଣର ମଧ୍ୟସ୍ଥତା କିମ୍ବା ବଳିଦାନର ପ୍ରୟୋଜନ ନ ଥିଲା; ସେ ସ୍ୱର୍ଗଲାଭ ପାଇଁ ଆବଶ୍ୟକ ଥିଲା କେବଳ ସନ୍ମାର୍ଗରେ ଜୀବନ ଯାପନ, ପ୍ରେମ ଏବଂ ଅହିଂସା ଏବଂ ଶେଷରେ କାମନାର ବିନାଶ। ଏହି ସଂସାରରେ, ଏହି ଜୀବନରେ, ନିଜପାଇଁ ଏବଂ ନିଜ ଚେଷ୍ଟାରେ ସ୍ୱର୍ଗଲାଭ କରିବାର ଏ ଯେଉଁ ନିର୍ଦ୍ଦେଶ ଏହା କେବଳ ବୁଦ୍ଧଙ୍କଦ୍ୱାରାହିଁ ସମ୍ଭବ ହୋଇଥିଲା। ଏପରି ନିର୍ଦ୍ଦେଶ ମାନବ ଜାତିର ଇତିହାସରେ ଏହାହିଁ ପ୍ରଥମ ଏବଂ ଏହାହିଁ ଶେଷ।

ଏହିପରି ଏକ ଆଦର୍ଶ ନୀତି କି ମୂର୍ଖ କି ପଣ୍ଡିତ ସମସ୍ତଙ୍କର ହୃଦୟସ୍ପର୍ଶ କରିଥିଲା। ବୁଦ୍ଧଙ୍କର ସରଳ ନୀତି ପାଇଁ ବୌଦ୍ଧଧର୍ମର ବହୁଳ ପ୍ରଚାର ହୋଇପାରିଥିଲା। ଜୀବଦ୍ଦଶାରେ ବୁଦ୍ଧଙ୍କର ଆଦର୍ଶ ଏବଂ ପବିତ୍ର ଜୀବନ ଯାପନ ଏବଂ ତାହାଙ୍କର ଶ୍ରୀମୁଖ ପ୍ରଚାରିତ ସହଜବୋଧ ବାଣୀ ଭାରତର ଆବାଳ-ବୃଦ୍ଧ-ବନିତା ସମସ୍ତଙ୍କ ହୃଦୟରେ ଗଭୀର ଅନୁଭୂତି ଆଣିଦେଇଥିଲା। ତାହାଙ୍କ ମୃତ୍ୟୁପରେ ବୌଦ୍ଧଧର୍ମ ଦ୍ରୁତ୍ ଗତିରେ ସମଗ୍ର ଭାରତଖଣ୍ଡରେ ବିସ୍ତାରିତ ହୋଇଯାଇଥିଲା। ତାହାପରେ, ବୁଦ୍ଧଙ୍କ ମୃତ୍ୟୁର କେବଳ ମାତ୍ର ଦୁଇଶତ ବର୍ଷ ମଧ୍ୟରେ ବୌଦ୍ଧଧର୍ମ ସମଗ୍ର ଏସିଆ ମହାଦେଶର ମୁଖ୍ୟଧର୍ମ ହୋଇପଡ଼ିଥିଲା। ଭାରତ ବାହାରେ ସୁଦୂର ତିବ୍ବତ, ଚୀନ, ଜାପାନ, ଶ୍ୟାମ, ମାଳୟ, ବ୍ରହ୍ମ, ପୂର୍ବଭାରତୀୟ ଦ୍ୱୀପପୁଞ୍ଜ, ଏବଂ ସିଂହଳ ପ୍ରଭୃତି ଦେଶରେ ସେହିଦେଶମାନଙ୍କର ପ୍ରାଚୀନ ଧର୍ମମାନଙ୍କର ବିଲୟ ସାଧନ କରି ଦ୍ରୁତ ଗତିରେ ବୌଦ୍ଧଧର୍ମ ପ୍ରସାରଲାଭ କରିଯାଇଥିଲା। ଏପରି ଦ୍ରୁତ ପ୍ରସାରଲାଭର

ଏକମାତ୍ର କାରଣ ହେଉଛି ବୌଦ୍ଧଧର୍ମରେ ସାର୍ବଜନୀନ ପ୍ରେମ, ଭ୍ରାତୃଭାବ ଏବଂ ପୁଣ୍ୟମୟ ଜୀବନଯାପନ ପାଇଁ ଯେଉଁ ଅମର ନିର୍ଦ୍ଦେଶ ଦିଆଯାଇଛି ତାହାହିଁ । ଏସିଆ ମହାଦେଶର ବିଭିନ୍ନ ଜଟିଳ ବର୍ଣ୍ଣସମାନଙ୍କର ବିଲୟ ସାଧନ କରି ଏପରି ଏକ ସରଳ ବିଶ୍ୱାସର ଡଭିତ୍ ଗଢରେ ପ୍ରସାରଲାଭ ସେପରି କିଛି ଆଶ୍ଚର୍ଯ୍ୟର ବିଷୟ ନୁହେଁ । କାରଣ ପ୍ରତ୍ୟେକ ପ୍ରାଚୀନ ଧର୍ମ ଜଟିଳ ଏବଂ ଅବୋଧଗମ୍ୟ ଅବସ୍ଥାରେ ଜନସାଧାରଣଙ୍କ ନିକଟରୁ ବହୁଦୂରରେ ରହି କେବଳ ପୁରୋହିତ ସମ୍ପ୍ରଦାୟ ନିକଟରେ ଆବଦ୍ଧ ଥିଲାବେଳେ ବୌଦ୍ଧଧର୍ମ ଅତି ସରଳ ଏବଂ ଅତି ସହଜବୋଧ ଆକାରରେ ଜନତାର ଧର୍ମ ରୂପେ ମସ୍ତକ ଉତ୍ତୋଳନ କରିଥିଲା । ବୁଦ୍ଧଙ୍କର ଧର୍ମ ହେଉଛି ଜନତାର ଧର୍ମ ଏବଂ ସେଥିପାଇଁ ପୃଥିବୀରେ ବୌଦ୍ଧଧର୍ମାବଲମ୍ବୀମାନଙ୍କର ସଂଖ୍ୟା ଏତେ ଅଧିକ । ଖ୍ରୀଷ୍ଟଙ୍କ ଜନ୍ମ ପୂର୍ବରୁ ବୌଦ୍ଧଧର୍ମ ଭାରତର ତଥା ଏସିଆର ଶ୍ରେଷ୍ଠତମ ଧର୍ମ ରୂପେ ପ୍ରସାର ଲାଭ କରି ସାରିଥିଲା । ଖ୍ରୀଷ୍ଟ ଜନ୍ମର ପଞ୍ଚମଠାରୁ ଦଶମ ଶତାବ୍ଦୀ ମଧ୍ୟରେ ସମଗ୍ର ମନୁଷ୍ୟ ଜାତିର ଅର୍ଦ୍ଧାଧିକ ଲୋକଙ୍କର ଧର୍ମ ଥିଲା ବୌଦ୍ଧଧର୍ମ । ଏ ଯୁଗର ପୃଥିବୀରେ ମନୁଷ୍ୟ ଜାତିର ଏକ-ତୃତୀୟାଂଶ ହେଉଛନ୍ତି ବୌଦ୍ଧଧର୍ମାବଲମ୍ବୀ । ଆଜି ପୃଥିବୀରେ ବୌଦ୍ଧମାନଙ୍କର ସଂଖ୍ୟା ପଚିଶ କୋଟିରୁ ବହୁ ଊର୍ଦ୍ଧ୍ୱ । ଏପରି ଏକ ବିରାଟ ଗଣଧର୍ମ ପୃଥିବୀର ସବୁ ଧର୍ମ ମଧ୍ୟରେ ଶ୍ରେଷ୍ଠତମ ଏବଂ ଏହି ଧର୍ମର ପ୍ରବର୍ତ୍ତକ ଥିଲେ ଭାରତର ଜଣେ ଭିକ୍ଷୁ ।

କିନ୍ତୁ, ଆଜି ଯେଉଁ ଧର୍ମ ପୃଥିବୀ ମଧ୍ୟରେ ବିରାଟତମ ସେ ଧର୍ମର ଉତ୍ପତ୍ତି ହେଉଛି ଆର୍ଯ୍ୟଧର୍ମରୁ । ଗୌତମ ବୁଦ୍ଧ ଏକ ନୂତନ ଧର୍ମ ସୃଷ୍ଟି କରିବା ଉଦ୍ଦେଶ୍ୟରେ ତାହାଙ୍କର ପ୍ରଚାର କାର୍ଯ୍ୟ ଆରମ୍ଭ କରି ନ ଥିଲେ । ସେ ଚାହିଁଥିଲେ ପୁରାତନ ହିନ୍ଦୁ ଧର୍ମର ସଂସ୍କାର ମାତ୍ର । ହୁଏତ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ବୁଦ୍ଧ ଜାଣି ପାରି ନ ଥିଲେ ଯେ ତାହାଙ୍କର ପ୍ରଚାର ମୂଳରୁ ଏକ ନୂତନ ଧର୍ମ ସୃଷ୍ଟି ହୋଇ ସାରିଛି କିମ୍ବା ସୃଷ୍ଟି ହେବାକୁ ଯାଉଛି । ଅପର ଦିଗରେ, ବୋଧହୁଏ ଶେଷ ପର୍ଯ୍ୟନ୍ତ ସେ ବିଶ୍ୱାସ କରିଥିଲେ ଯେ ଯାହା ସମସ୍ତ ସେ ପ୍ରଚାର କରିଛନ୍ତି ତାହା କେବଳ ବିପଥଗାମୀ ହିନ୍ଦୁ ସମାଜ ଏବଂ ମ୍ଳାନ-ବିଜଡ଼ିତ ଆର୍ଯ୍ୟଧର୍ମର ସଂସ୍କାର ପାଇଁ । ନୂତନ ଧର୍ମ ସୃଷ୍ଟି କରିବା ଉଦ୍ଦେଶ୍ୟରେ ବୁଦ୍ଧ ଯଦି ତାହାଙ୍କର ପ୍ରଚାର ଆରମ୍ଭ କରି ଥାଆନ୍ତେ ତେବେ ସେ ହିନ୍ଦୁଧର୍ମର ମୂଳତତ୍ତ୍ୱମାନଙ୍କ ଉପରେ ନିଜ ପ୍ରଚାରର ଭିତ୍ତିସ୍ଥାପନ କରି ନ ଥାନ୍ତେ । ବୁଦ୍ଧଙ୍କର ବାଣୀ ଏବଂ ଆଦି-ଯୁଗର

ଆର୍ଯ୍ୟଋଷିମାନଙ୍କର ବିଶ୍ୱାସ, ଏହା ମଧ୍ୟରେ ଯଥେଷ୍ଟ ସାମଞ୍ଜସ୍ୟ ରହିଛି । କେବଳ ପରବର୍ତ୍ତୀ ହିନ୍ଦୁଧର୍ମର କୁସଂସ୍କାରମାନଙ୍କ ସହ ବୁଦ୍ଧଙ୍କର ମତ ମିଳନ ନାହିଁ । ବୁଦ୍ଧ ଈଶ୍ୱରଙ୍କର ଅସ୍ତିତ୍ୱ ସମ୍ବନ୍ଧରେ କୌଣସି ପ୍ରକାର ମତ ବ୍ୟକ୍ତ କରି ନାହାନ୍ତି । ହୁଏତ ବୁଦ୍ଧ ଭାବିଥିଲେ ଯେ ଈଶ୍ୱର ଥାଆନ୍ତୁ ବା ନ ଥାଆନ୍ତୁ ସେପାଇଁ ମନୁଷ୍ୟର ଚିନ୍ତା କରିବାର ଆବଶ୍ୟକତା ନାହିଁ । କାରଣ ତାହାଙ୍କ ମତରେ ସ୍ୱର୍ଗର ଚାବି ଈଶ୍ୱରଙ୍କ ହାତରେ ନାହିଁ, ତାହା ରହିଛି ମନୁଷ୍ୟର ନିଜ ହାତରେ । ବୁଦ୍ଧ ଈଶ୍ୱରଙ୍କ ସମ୍ବନ୍ଧରେ ଯେତେବେଳେ କୌଣସି ପ୍ରକାର ନିଷ୍ଠ ମତ ପ୍ରକାଶ କରି ନାହାନ୍ତି ସେତେବେଳେ ସେ ଈଶ୍ୱର ବିଶ୍ୱାସ କରୁଥିଲେ କି ନାହିଁ ସେ କଥା କହିବା ଅସମ୍ଭବ । ଅବଶ୍ୟ ତାହାଙ୍କୁ ନାସ୍ତିକ ବୋଲି ଯେଉଁ ଆଖ୍ୟା ଦିଆ ଯାଉଛି ତାହା ମୂଳରେ କୌଣସି ଯୁକ୍ତି ନାହିଁ ଏବଂ ତାହା ବୌଦ୍ଧ-ବିରୋଧୀ ବ୍ରାହ୍ମଣ-ମାନଙ୍କର କାର୍ଯ୍ୟ ବୋଲି ଅନୁମାନ । ବୁଦ୍ଧ କର୍ମଫଳ ଏବଂ ପୁନର୍ଜନ୍ମବାଦ ଉପରେ ପୂର୍ଣ୍ଣ ବିଶ୍ୱାସ କରୁଥିଲେ ଏବଂ ଏ ସବୁ ପ୍ରାଚୀନ ହିନ୍ଦୁମାନଙ୍କଦ୍ୱାରା ମଧ୍ୟ ପୂର୍ଣ୍ଣ ମାତ୍ରାରେ ବିଶ୍ୱାସ କରାଯାଉଥିଲା । ସତ୍ ଜୀବନ ଯାପନ ପାଇଁ ବୁଦ୍ଧଙ୍କର ଯେଉଁ ଅଷ୍ଟ ମାର୍ଗ, ସେ ସବୁ ମାର୍ଗ ହିନ୍ଦୁ ଦର୍ଶନ ମଧ୍ୟରେ ବିଦ୍ୟମାନ ଥିଲା । ଦୁଃଖ, କାମନା ଏବଂ ନିର୍ବାଣ ଉପରେ ବୁଦ୍ଧଙ୍କର ଯେଉଁଭଳି ଧାରଣା, ହିନ୍ଦୁର ସାଂଖ୍ୟ ଦର୍ଶନବାଦ ମୂଳରେ ମଧ୍ୟ ସେହିପରି ବିଶ୍ୱାସ । ମିସେସ୍ ରିସ୍ ଡେଭିଡ୍ସ, ଜ୍ୟାକୋବି ପ୍ରମୁଖ ପଣ୍ଡିତମାନଙ୍କ ମତରେ ବୁଦ୍ଧଙ୍କର ଦର୍ଶନ ଉପରେ ସାଂଖ୍ୟ ଦର୍ଶନର ପ୍ରଭାବ ଯଥେଷ୍ଟ ମାତ୍ରାରେ ପଡ଼ିଛି । ବୁଦ୍ଧଙ୍କର ଦର୍ଶନ ମୂଳରେ ଦୁଃଖ ଏବଂ କାମନା, ସାଂଖ୍ୟ ଦର୍ଶନର ଆରମ୍ଭ ମଧ୍ୟ ଦୁଃଖ ପାଖରୁ । ଜୀବ ପ୍ରତି ଦୟା ଏବଂ ଅହିଂସା ଏହା ବୁଦ୍ଧଙ୍କ ପ୍ରଚାରର ଏକ ମୁଖ୍ୟ ଅଙ୍ଗ । ହିନ୍ଦୁମାନେ ଏହା ପାଳନ କରୁ ନ ଥିଲେ ମଧ୍ୟ ସେମାନଙ୍କ ଧର୍ମର ମୁଖ୍ୟ ଅଙ୍ଗ ଥିଲା ସେହି ଦୟା ଏବଂ ଅହିଂସା । ଏହିପରି ହିନ୍ଦୁଧର୍ମର ସାରତତ୍ତ୍ୱ ଉପରେ ନିଜର ଆସ୍ଥା ରଖି ବୁଦ୍ଧ ମନୁଷ୍ୟ ଜୀବନରେ ପବିତ୍ରତା ଏବଂ ସଦାଚରଣ ପ୍ରତି ଦୃଷ୍ଟି ଦେଇଥିଲେ । ଏକ ପୁଣ୍ୟମୟ ଜୀବନ ଯାପନହିଁ ତାହାଙ୍କ ବିଶ୍ୱାସରେ ଶ୍ରେଷ୍ଠ ଧର୍ମ ଥିଲା । ଏବଂ ଏପରି ଏକ ଜୀବନ ଯାପନ ପାଇଁ ସେ ତାହାଙ୍କର ସମସାମୟିକ ଭାରତବାସୀଙ୍କୁ ଆହ୍ୱାନ କରିଥିଲେ । ତାହାଙ୍କର ଏହି ଆହ୍ୱାନ ଜନତା ଦ୍ୱାରା ଯେପରି ଭାବେ ଗୃହୀତ ହୋଇଥିଲା ତାହାର ପରିଣତି ହେଲା ବୌଦ୍ଧଧର୍ମ ପରି ଏକ ଗଣଧର୍ମର ଅଭ୍ୟୁତ୍‌ଥାନ ।

ବୌଦ୍ଧଧର୍ମ ପରି ଜୈନଧର୍ମର ମଧ୍ୟ ଉତ୍ପତ୍ତି ସେହି ହିନ୍ଦୁଧର୍ମରୁ ସତତ ପରେ ପରେ ଜୈନଧର୍ମ ଏକ ପୃଥକ ଧର୍ମରେ ପରିଣତ ହୋଇଯାଇଥିଲା । ବୌଦ୍ଧ ଏବଂ ଜୈନଧର୍ମକୁ ହିନ୍ଦୁଧର୍ମ ପାଖରୁ ପୃଥକ୍ ହୋଇଯିବା ପାଇଁ ଅଧିକ ସମୟ ଲାଗି ନ ଥିଲା ସତ୍ୟ, କିନ୍ତୁ ଏ ଦୁଇ ମତବାଦର ଉତ୍ଥାନଜନିତ ଯେଉଁ ବିପ୍ଳବର ସୃଷ୍ଟି ହୋଇଥିଲା ତାହାଦ୍ୱାରା ହିନ୍ଦୁ ସମାଜ ଏବଂ ହିନ୍ଦୁଧର୍ମ ମଧ୍ୟରୁ ବହୁ ଗ୍ଲାନି ଦୂରୀଭୂତ ହୋଇଥିଲା । ବୌଦ୍ଧ ଏବଂ ଜୈନ ବିପ୍ଳବ ପ୍ରାଚୀନ ହିନ୍ଦୁଧର୍ମରେ ପ୍ରଥମ ଥର ପାଇଁ ଏକ ଆମୂଳଚୂଳ ସଂସ୍କାର ଆଣିଥିଲା । ଏହି ସଂସ୍କାର ଫଳରେ ଭାରତୀୟ ଧର୍ମ ଓ ସମାଜ ନବ ଜୀବନ ଲାଭ କରିଥିଲା ଏବଂ ଏକ ଦୀର୍ଘକାଳ ପାଇଁ ଏ ସଂସ୍କାର ଭାରତ ଉପରେ ତା'ର ପ୍ରଭାବ ଅକ୍ଷୁଣ୍ଣ ରଖି ପାରିଥିଲା । ସଂକ୍ଷେପରେ, ଭାରତୀୟ ଧର୍ମ, ଦର୍ଶନ, ସମାଜନୀତି ଓ ସଭ୍ୟତାର ଏକ ଅତି ବିଶିଷ୍ଟ ଅଙ୍ଗ ହେଉଛି ବୌଦ୍ଧ ଏବଂ ଜୈନ ମତବାଦ ।

ବୌଦ୍ଧ ଏବଂ ଜୈନଧର୍ମ ଉପରେ ସଂକ୍ଷେପରେ ଏହି ସାଧାରଣ ଦୃଷ୍ଟିପାତ କରିଗଲା ପରେ ବର୍ତ୍ତମାନ ଉତ୍କଳଖଣ୍ଡରେ ସେ ଦୁଇ ଧର୍ମର ଯେଉଁ ଆଦି ପ୍ରଭାବ ପଡ଼ିଥିଲା ତାହା ଅତି ସଂକ୍ଷେପରେ ଦେଖାଯାଉ ।

ଉତ୍କଳଖଣ୍ଡରେ ଜୈନଧର୍ମ ଏବଂ ବୌଦ୍ଧଧର୍ମ ମଧ୍ୟରୁ କେଉଁ ଧର୍ମ ସର୍ବାଗ୍ରେ ପ୍ରବେଶ କରିଥିଲା ତାହା ନିର୍ଭୁଲଭାବେ ନିରୂପଣ କରିବା କଷ୍ଟକର । ହୁଏତ, ପ୍ରାୟ ଏକା ସମୟରେହିଁ ଏ ଦୁଇଟି ମତବାଦ ଏ ଦେଶରେ ପ୍ରବେଶ କରି ଥାଇ ପାରେ । ତେବେ ବୌଦ୍ଧଧର୍ମ ଅପେକ୍ଷା ଜୈନଧର୍ମ ଉତ୍କଳରେ ପ୍ରଥମେ ପ୍ରବେଶ କରିଥିବା ଅଧିକତର ସମ୍ଭବପର । ଏ ସମ୍ବନ୍ଧରେ ଉଣା ଅଧିକ କିଛି କିଛି ପ୍ରମାଣ ସଂଗ୍ରହ କରିଯାଇ ପାରେ । ମହାବୀର ଜୀନଙ୍କ ଜନ୍ମର ବହୁ ପୂର୍ବରୁ ଭାରତରେ ଜୈନମତବାଦର ସୃଷ୍ଟି ହୋଇଥିଲା ବୋଲି ସମସ୍ତ ପଣ୍ଡିତଙ୍କର ମତ । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀର ବହୁ ପୂର୍ବରୁ ଜୈନମତାବଲମ୍ବୀ ସମାଜ-ବିପ୍ଳବୀମାନେ ଭାରତର ନାନା ସ୍ଥାନରେ ପ୍ରଚାର କାର୍ଯ୍ୟ ଆରମ୍ଭ କରିଥିଲେ । ଜୈନ ଧର୍ମଗ୍ରନ୍ଥମାନଙ୍କ ଅନୁସାରେ ମହାବୀରଙ୍କ ଜନ୍ମ ପୂର୍ବରୁ ଅପର ୨୩ ଜଣ ତୀର୍ଥଙ୍କର ଭାରତରେ ଜନ୍ମ ଗ୍ରହଣ କରିଥିଲେ ଏବଂ ଜୈନଧର୍ମ ପ୍ରଚାର କରିଥିଲେ । ଏହି ତୀର୍ଥଙ୍କରମାନଙ୍କ ପ୍ରଚାରଦ୍ୱାରା ସମଗ୍ର ଭାରତରେ ଜୈନ ମତବାଦର ପ୍ରଭାବ ପଡ଼ିଥିବାର ସମ୍ଭାବନା ।

ଉତ୍କଳଖଣ୍ଡରେ ମଧ୍ୟ ସେ ପ୍ରଭାବ ଊଣା ଅଧିକ ପଡ଼ିଥିବ । ସୁତରାଂ ଏହା ଅନୁମାନ କରା ଯାଇପାରେ ଯେ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ମହାବୀର ଜୈନ ଏବଂ ଗୌତମ ବୁଦ୍ଧଙ୍କ ଜନ୍ମର ବହୁ ଆଗରୁ ଜୈନ ମତବାଦ ଉତ୍କଳରେ ପ୍ରବେଶ କରି ଥାଇ ପାରେ । ମହାବୀରଙ୍କର ପୂର୍ବବର୍ତ୍ତୀ ତୀର୍ଥଙ୍କରମାନେ ଭାରତର ବିଭିନ୍ନ ସ୍ଥାନରେ ଜନ୍ମ ଗ୍ରହଣ କରିଥିଲେ ବୋଲି ଜୈନ ଧର୍ମଗ୍ରନ୍ଥରୁ ଜଣାଯାଏ । କିନ୍ତୁ ସେମାନଙ୍କର ଜନ୍ମସ୍ଥାନଗୁଡ଼ିକର ଯେଉଁ ନାମ ଦେଖିବାକୁ ମିଳେ ସେଥିରୁ ଭାରତର କେଉଁ କେଉଁ ସ୍ଥାନରେ ସେମାନଙ୍କର ଜନ୍ମ ହୋଇଥିଲା ତାହା ସଠିକ୍ ରୂପେ ଜାଣି ହୁଏ ନାହିଁ । କାରଣ ଜୈନଗ୍ରନ୍ଥ ବର୍ଣ୍ଣିତ ସେହି ପ୍ରାଚୀନ ନାମଗୁଡ଼ିକ କାଳକ୍ରମେ ପରିବର୍ତ୍ତିତ ହୋଇ ନୂତନ ନାମରେ ପରିଣତ ହୋଇ ଯାଇଛି । ତଥାପି ତୀର୍ଥଙ୍କର-ମାନଙ୍କର ଜନ୍ମସ୍ଥାନ ନିରୂପଣ ପାଇଁ ବହୁ ଚେଷ୍ଟା କରି ପଣ୍ଡିତମାନେ ସେସ୍ଥାନ-ଗୁଡ଼ିକର ଅବସ୍ଥିତି ସମ୍ବନ୍ଧରେ ଏକ ପ୍ରକାର ମୋଟାମୋଟି ଧାରଣା କରିନେଇଛନ୍ତି । ୨୩ ଜଣ ତୀର୍ଥଙ୍କର ମଧ୍ୟରୁ ଅନ୍ତତଃ ଜଣେ ତୀର୍ଥଙ୍କର କଳିଙ୍ଗ ଦେଶରେ ଜନ୍ମ ଗ୍ରହଣ କରିଥିଲେ ବୋଲି କେତେକ ଐତିହାସିକ ମତ ପ୍ରକାଶ କରିଛନ୍ତି । ଅବଶ୍ୟ ଜୈନ ଧର୍ମଗ୍ରନ୍ଥମାନଙ୍କରେ କଳିଙ୍ଗ ରାଜ୍ୟରେ କୌଣସି ଜଣେ ତୀର୍ଥଙ୍କର ଜନ୍ମ ଗ୍ରହଣ କରିଥିଲେ ବୋଲି ସ୍ପଷ୍ଟଭାବେ ଲିଖିତ ହୋଇ ନାହିଁ । ତଥାପି ଅନ୍ୟ କେତେକ ଘଟଣାରୁ କଳିଙ୍ଗରେ ଜଣେ କେହି ତୀର୍ଥଙ୍କର ଜନ୍ମ ଗ୍ରହଣ କରିଥିଲେ ବୋଲି ବିଶ୍ୱାସ କରିବାକୁ ହୁଏ । କଳିଙ୍ଗ ସମ୍ରାଟ ଖାରବେଳଙ୍କର ହାତୀଗୁମ୍ଫା ଶୈଳ ପ୍ରଶସ୍ତିରେ ବର୍ଣ୍ଣିତ ଅଛି ଯେ ରାଜତ୍ୱର ଦ୍ୱାଦଶ ବର୍ଷରେ ଖାରବେଳ ମଗଧ ଅଧିକାର କରିଥିଲେ ଏବଂ ବହୁପୂର୍ବେ ମଗଧର ନନ୍ଦରାଜଙ୍କଦ୍ୱାରା ଅପହୃତ ହୋଇଥିବା କଳିଙ୍ଗଜିନଙ୍କ ମୂର୍ତ୍ତିକୁ ମହାସମାରୋହରେ ମଗଧରୁ କଳିଙ୍ଗକୁ ଫେରାଇ ଆଣିଥିଲେ । ମଗଧ ବିଜୟାନ୍ତେ ବିଜୟୀ ସମ୍ରାଟ ବିଜୟର ଶ୍ରେଷ୍ଠ ସନ୍ତକରୂପେ ଏ ଯେଉଁ କଳିଙ୍ଗଜିନ ମୂର୍ତ୍ତିକୁ ସ୍ୱରାଜ୍ୟକୁ ଫେରାଇ ଆଣିଥିଲେ ସେ ମୂର୍ତ୍ତିମୂଳରେ ଅନେକ କିଛି ତଥ୍ୟ ଥିବାର ଅନୁମାନ କରାଯାଏ । ଏଠାରେ କେବଳ ଏତିକି ଦେଖାଯାଉ ଯେ ଏ କଳିଙ୍ଗଜିନ କିଏ ? ମହାବୀର ନିଜେ କଳିଙ୍ଗରେ ଜନ୍ମଗ୍ରହଣ କରି ନ ଥିଲେ ଏବଂ ତେଣୁ ତାହାଙ୍କୁ କଳିଙ୍ଗର ଜିନ ବୋଲି ଆଖ୍ୟା ଦିଆଯାଇ ନ ପାରେ । ଅଥଚ ୨୪ ଜଣ ଜିନଙ୍କ ମଧ୍ୟରୁ ଜଣେ କେହି ଜିନ ନିଶ୍ଚୟ କଳିଙ୍ଗ ଦେଶରେ ଜନ୍ମଗ୍ରହଣ କରିଥିବେ ଏବଂ ସେହି ଜିନଙ୍କୁ କଳିଙ୍ଗଜିନରୂପେ ଆଖ୍ୟାତ କରାଯାଇଥିବ । ସେହି କଳିଙ୍ଗ-ଜିନଙ୍କର ମୂର୍ତ୍ତି ବହୁକାଳ ଯାବତ୍ କଳିଙ୍ଗର ଆରାଧ୍ୟ ମୂର୍ତ୍ତିରୂପେ ପୂଜା ପାଇ

ଆସିଥିବ । ଶେଷରେ ଯେତେ ବେଳେ ଯାଦବଗୋତ୍ରୀ ନନ୍ଦ ସମ୍ରାଟ ମଗଧରୁ କଳିଙ୍ଗ ରାଜ୍ୟ ଉଦ୍ଦେଶ୍ୟରେ ଆସି କଳିଙ୍ଗର ସେହି ଆରାଧ୍ୟ ମୂର୍ତ୍ତିକୁ ସ୍ୱରାଜ୍ୟକୁ ନେଇ ଯାଇଥିଲେ। ତଦବଧି ବହୁ ବର୍ଷଧରି କଳିଙ୍ଗଜିନ ମୂର୍ତ୍ତିକୁ ମଗଧ ରାଜଧାନୀ ପାଟଳିପୁତ୍ରରେ ରହିବାକୁ ପଡ଼ିଥିଲା । କିନ୍ତୁ ପରିଶେଷରେ ଯେତେବେଳେ କଳିଙ୍ଗ ସମ୍ରାଟ ଖାରବେଳ ମଗଧରାଜଙ୍କୁ ପରାଜିତ କରି ଏବଂ ମଗଧବାସୀଙ୍କୁ ଆତଙ୍କିତ କରି ମଗଧର ପୂର୍ବ ଶତ୍ରୁତାର ପ୍ରତିଶୋଧ ନେଇଥିଲେ, ସେତେବେଳେ ସେହି ବିଜୟକୁ ସର୍ବାଙ୍ଗ ସୁନ୍ଦର କରିବାପାଇଁ ଏବଂ ବିଜୟର ସ୍ମୃତି କଳିଙ୍ଗବାସୀଙ୍କ ହୃଦୟରେ ଚିର ଜାଗ୍ରତ ରଖିବା ପାଇଁ ସେ କଳିଙ୍ଗଜିନ ମୂର୍ତ୍ତିକୁ ସହସ୍ର ସହସ୍ର ହସ୍ତୀ, ଗଜ, ସୈନ୍ୟସେନା ସମ-ଭିବ୍ୟାହାରେ ଏକ ଦୀର୍ଘ ଶୋଭାଯାତ୍ରାରେ ମଗଧରୁ କଳିଙ୍ଗ ରାଜ୍ୟକୁ ନେଇ ଆସିଥିଲେ । କଳିଙ୍ଗର ପ୍ରାଚୀନ ଧର୍ମଜଗତରେ ଏହି ଜିନଙ୍କର ଖ୍ୟାତି ଯଥେଷ୍ଟ ଥିଲା ଏଥିରେ ସନ୍ଦେହ ନାହିଁ । କାରଣ ସେପରି ଏକ ଖ୍ୟାତି ଏବଂ ପ୍ରସିଦ୍ଧି ନ ଥିଲେ ନନ୍ଦରାଜ ସେ ଜିନଙ୍କର ମୂର୍ତ୍ତିକୁ କଳିଙ୍ଗ ଦେଶରୁ ସୁଦୂର ପାଟଳିପୁତ୍ରକୁ ନେଇ ନ ଥାନ୍ତେ କିମ୍ବା ନନ୍ଦରାଜଙ୍କର ମୃତ୍ୟୁର ବହୁବର୍ଷ ପରେ ଖାରବେଳ ପୁନର୍ବାର ସେ ମୂର୍ତ୍ତିକୁ ଉକ୍ତ ଏବଂ ମହାସମ୍ମାନ ସହକାରେ କଳିଙ୍ଗକୁ ଫେରାଇ ଆଣି ନ ଥାନ୍ତେ । ଏ ସମସ୍ତ ବିଷୟରୁ ଅନୁମାନ ହୁଏ ଯେ କଳିଙ୍ଗର ଏହି ଯେଉଁ ଜିନ ସେ ହେଉଛନ୍ତି ଭାରତର ୨୪ ଜଣ ଜିନଙ୍କ ମଧ୍ୟରୁ ଜଣେ ଏବଂ ସେ ବିସ୍ତୃତ କଳିଙ୍ଗ ଦେଶର କୌଣସି ସ୍ଥାନରେ ଜନ୍ମଗ୍ରହଣ କରିଥିଲେ । ଶ୍ରୀଯୁକ୍ତ କେ. ପି. ଜୟସ୍ୱାଲ ଏବଂ ଶ୍ରୀଯୁକ୍ତ ରାଖାଲ ଦାସ ବାନାର୍ଜି ମତପ୍ରକାଶ କରିଛନ୍ତି ଯେ ଏହି କଳିଙ୍ଗ ଜିନ ହେଉଛନ୍ତି ଜୈନମାନଙ୍କର ଦଶମ ତୀର୍ଥଙ୍କର, ଶୀତଳନାଥ । ଜୈନଗ୍ରନ୍ଥମାନଙ୍କ ଅନୁସାରେ ଏହି ଶୀତଳନାଥ ଭଦ୍ଦଲପୁର ନାମକ ସ୍ଥାନରେ ଜନ୍ମଗ୍ରହଣ କରିଥିଲେ । କିନ୍ତୁ ଭଦ୍ଦଲପୁର ସ୍ଥାନଟି ଭାରତର କେଉଁ ଅଂଶରେ ସେ ବିଷୟରେ ଜୈନଶାସ୍ତ୍ର ନୀରବ । ଜୟସ୍ୱାଲ ଏବଂ ବାନାର୍ଜି ମହାଶୟ ଏହି ଭଦ୍ଦଲପୁରକୁ କଳିଙ୍ଗ ଦେଶର ଗୋଦାବରୀ ଅଞ୍ଚଳସ୍ଥ ଭଦ୍ରାଚଳମ୍ ବା ଭଦ୍ରପୁରମ୍ ନାମକ ସ୍ଥାନ ବୋଲି ମନେ କରନ୍ତି ।[1] ଭାରତର ଅନ୍ୟ କୌଣସି ସ୍ଥାନରେ ଜୈନଗ୍ରନ୍ଥ ଉଲ୍ଲିଖିତ ଭଦ୍ଦଲପୁରର ଅବସ୍ଥିତି ବିଷୟରେ କିଛି ପ୍ରମାଣ ନ ଥିବା ସତ୍ତ୍ୱେ ଜୟସ୍ୱାଲ ଏବଂ ବାନାର୍ଜିଙ୍କ ମତାନୁଯାୟୀ ଭଦ୍ଦଲପୁର ଯେ କଳିଙ୍ଗ ଦେଶର ସ୍ଥାନବିଶେଷ ଏହା ଗ୍ରହଣ କରିବା ଅସଙ୍ଗତ ନୁହେଁ । ମୋଟ ଉପରେ ହାତୀଗୁମ୍ଫା ବର୍ଣ୍ଣିତ

1. R. D. Banerjee --- History of Orissa -- p. 61.

କଳିଙ୍ଗଜିନଙ୍କୁ କେନ୍ଦ୍ର କରି ଏତିକି ମାତ୍ର ବିଶ୍ୱାସ କରାଯାଇ ପାରେ ଯେ ମହାବୀରଙ୍କ-ଦ୍ୱାରା ଜୈନଧର୍ମର ପୂର୍ଣ୍ଣ ପ୍ରବର୍ତ୍ତନ ହେବା ପୂର୍ବରୁ କଳିଙ୍ଗଖଣ୍ଡରେ ଜୈନ ମତବାଦର ପ୍ରଭାବ ଉଣା ଅଧିକ ପଡ଼ି ସାରିଥିଲା ।

ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ମହାବୀର ବର୍ଦ୍ଧମାନ ଜନ୍ମଗ୍ରହଣ କରିଥିଲେ । ସେ ହେଉଛନ୍ତି ସର୍ବଶେଷ ଏବଂ ସର୍ବଶ୍ରେଷ୍ଠ ତୀର୍ଥଙ୍କର । ମହାବୀର କୈବଲ୍ୟଜ୍ଞାନ ଲାଭ କରି ସାରିଥିଲା ପରେ ସ୍ୱମତ ପ୍ରଚାରପାଇଁ ଦୀର୍ଘକାଳ ଧରି ଭାରତର ବହୁ-ସ୍ଥାନରେ ଭ୍ରମଣ କରିଥିଲେ । ଏହି ଦୀର୍ଘକାଳ ଭ୍ରମଣମଧ୍ୟରେ ସେ ଉତ୍କଳଖଣ୍ଡରେ ମଧ୍ୟ ଧର୍ମପ୍ରଚାର ପାଇଁ ପ୍ରବେଶ କରିଥିଲେ ବୋଲି ପ୍ରାଚୀନ ଜୈନ ଧର୍ମଗ୍ରନ୍ଥମାନଙ୍କରୁ ଜଣାଯାଏ । 'ହରିବଂଶ ପୁରାଣ' ନାମକ ଜୈନ ଧର୍ମଗ୍ରନ୍ଥରେ ବର୍ଣ୍ଣିତ ଅଛି ଯେ ସ୍ୱୟଂ ମହାବୀର ବର୍ଦ୍ଧମାନ କଳିଙ୍ଗଖଣ୍ଡରେ ଜୈନଧର୍ମ ପ୍ରଚାର କରିଥିଲେ । ମହାବୀର ଭାରତର ବିଭିନ୍ନ ସ୍ଥାନରେ ଭ୍ରମଣପୂର୍ବକ ଧର୍ମପ୍ରଚାର କରିଥିଲାବେଳେ କଳିଙ୍ଗ ଦେଶରେ ମଧ୍ୟ ପ୍ରବେଶ କରିଥିବେ ଏଥିରେ ସନ୍ଦେହ ପ୍ରକାଶ କରିବାର କିଛି କାରଣ ନାହିଁ । ବିଶେଷତଃ, ପ୍ରାଚୀନ ଜୈନ ଗ୍ରନ୍ଥମାନଙ୍କରେ ମହାବୀରଙ୍କର କଳିଙ୍ଗଭ୍ରମଣ ବିଷୟ ବର୍ଣ୍ଣିତ ଥିଲାବେଳେ ମହାବୀରଙ୍କର ଏ ଦେଶକୁ ଆସିବା ସମ୍ବନ୍ଧରେ କୌଣସି ପ୍ରକାର କିଛି ଅବିଶ୍ୱାସ କରିବା ଅସମ୍ଭବ । ମହାବୀରଙ୍କ ପ୍ରଚାରରେ ସାରା କଳିଙ୍ଗରେ ଜୈନ ମତବାଦ ପ୍ରବଳ ହୋଇ ଉଠିଥିବ । ପ୍ରାଚୀନ ଭାରତରେ କଳିଙ୍ଗ ଜୈନଧର୍ମର ଏକ କେନ୍ଦ୍ରସ୍ଥଳୀରୂପେ ପରିଗଣିତ ହେଉଥିଲା । କଳିଙ୍ଗରେ ଏହି ଜୈନ ପ୍ରଭାବ ପାଇଁ ମହାବୀରଙ୍କର ପ୍ରଚାର ନିଃସନ୍ଦେହ ରୂପେ ଦାୟୀ । କଳିଙ୍ଗର କେଉଁ କେଉଁ ସ୍ଥାନରେ ମହାବୀର ଧର୍ମପ୍ରଚାର କରିଥିଲେ ସେ ବିଷୟ ଅନୁମାନ କରିବା କଷ୍ଟକର । ହାତୀଗୁମ୍ଫା ପ୍ରଶସ୍ତିରୁ ଜଣାଯାଏ ଯେ ସମ୍ରାଟ ଖାରବେଳ ତାହାଙ୍କ ରାଜତ୍ୱର ତ୍ରୟୋଦଶ ବର୍ଷରେ କୁମାରୀ ବା ଉଦୟଗିରି ଶୈଳ-ଶିଖରରେ ଜୈନ ସନ୍ୟାସୀମାନଙ୍କୁ ଶ୍ୱେତବସ୍ତ୍ର ଦାନ କରିଥିଲେ । ଯେଉଁଠାରେ ସେ ଜୈନ ସନ୍ୟାସୀମାନଙ୍କୁ ବସ୍ତ୍ରଦାନ କରିଥିଲେ ତତ୍ପୂର୍ବେ ସେହି ସ୍ଥାନରେ ସ୍ୱୟଂ ମହାବୀର ଜିନ କଳିଙ୍ଗଅଧିବାସୀଙ୍କ ଉଦ୍ଦେଶ୍ୟରେ ତାହାଙ୍କର ଧର୍ମପ୍ରଚାର କରିଥିଲେ ବୋଲି ହାତୀଗୁମ୍ଫା ପ୍ରଶସ୍ତିରୁ ଆଭାସ ମିଳେ । ଉତ୍କଳର ଖଣ୍ଡଗିରି ଓ ଉଦୟଗିରି ପାହାଡ଼ଦ୍ୱୟ ବହୁ ପ୍ରାଚୀନ କାଳରୁ ଜୈନମାନଙ୍କର ଏକ ପୁଣ୍ୟପୀଠ-ରୂପେ ପରିଗଣିତ ହୋଇ ଆସିଛି । ଏହି ପାହାଡ଼ଦ୍ୱୟ ଗାତ୍ରରେ ପ୍ରାଚୀନ ଜୈନ

ସ୍ଥାପତ୍ୟର ଯେଉଁ ଧ୍ୱଂସାବଶେଷ ବିଦ୍ୟମାନ ତାହା ସେ ସ୍ଥଳରେ ଜୈନ ପ୍ରଭାବର ଯଥେଷ୍ଟ ପରିଚୟ ଦିଏ । ଖଣ୍ଡଗିରି ଏବଂ ଉଦୟଗିରି ଏପରି ଭାରତ-ବିଖ୍ୟାତ ଜୈନ କେନ୍ଦ୍ର ହେବା ମୂଳରେ ନିଶ୍ଚୟ କିଛି ଗଭୀର କାରଣ ରହିଛି । ଅନୁମାନ କରି ଯାଇପାରେ ଯେ ସେ କାରଣମାନଙ୍କ ମଧ୍ୟରୁ ଗୋଟିଏ କାରଣ ହେଉଛି ସେ ସ୍ଥାନରେ ସ୍ୱୟଂ ମହାବୀର ଜୀନଙ୍କର ଧର୍ମପ୍ରଚାର । ଯେଉଁ ସମୟରେ ମହାବୀର ସେଠାରେ ପଦାର୍ପଣ କରିଥିବେ ଏବଂ ସେଠାକାର ପାହାଡ଼ ଗହ୍ୱରରେ ବସବାସ କରି ସେଠାରୁ କଳିଙ୍ଗବାସୀଙ୍କୁ ନିଜର ପବିତ୍ରବାଣୀ ଶୁଣାଇଥିବେ, ସେହି ସମୟରୁ ଖଣ୍ଡଗିରି ଉଦୟଗିରି ଜୈନମାନଙ୍କର ଏକ ତୀର୍ଥସ୍ଥଳୀରେ ପରିଣତ ହୋଇ ଯାଇଥିବ । କଳିଙ୍ଗର ଅନ୍ୟ କୌଣସି ସ୍ଥାନରେ ଏପରି ପ୍ରାଚୀନ ଜୈନକୀର୍ତ୍ତି ଦେଖିବାକୁ ମିଳେ ନାହିଁ । କିମ୍ବା ଅନ୍ୟ କୌଣସି ସ୍ଥାନକୁ ମଧ୍ୟ ଜୈନମାନେ ନିଜର ପୁଣ୍ୟପୀଠ ରୂପେ ଏପରି ପୂଜା କରନ୍ତି ନାହିଁ । ସୁତରାଂ କଳିଙ୍ଗ ଦେଶରେ ଧର୍ମପ୍ରଚାର କରୁଁ କରୁଁ ମହାବୀର ଅନ୍ୟ କୌଣସି ସ୍ଥାନରେ ନିଜର ପ୍ରଚାର କେନ୍ଦ୍ର ସ୍ଥାପନ କରନ୍ତୁ ନ କରନ୍ତୁ ଅନ୍ତତଃ ଖଣ୍ଡଗିରି-ଉଦୟଗିରି ତାହାଙ୍କର ଏକ ପ୍ରଚାର କେନ୍ଦ୍ର ହୋଇ-ଥିଲା ବୋଲି ନିଶ୍ଚୟ ବିଶ୍ୱାସ କରାଯାଇ ପାରେ । କଳିଙ୍ଗ ସହ ମହାବୀରଙ୍କ ସମ୍ପର୍କ ସମ୍ବନ୍ଧରେ ଅପର ଏକ ବିବରଣୀ ମିଳେ ଜୈନଗ୍ରନ୍ଥ 'ହରିଭଦ୍ରୀୟ ବୃତ୍ତି' ରୁ । ଏ ଗ୍ରନ୍ଥରେ ବର୍ଣ୍ଣିତ ଅଛି ଯେ କଳିଙ୍ଗ ନରପତି ମହାବୀରଙ୍କର ପିତାଙ୍କର ଏକ ବନ୍ଧୁ ଥିଲେ । ତେଣୁ ତାହାଙ୍କ ନିମନ୍ତ୍ରଣରେ ମହାବୀର କଳିଙ୍ଗ ଆସିଥିଲେ । ମହାବୀରଙ୍କ ପିତା କୁଣ୍ଡଗ୍ରାମର ଜନୈକ ପ୍ରତିପତ୍ତିଶାଳୀ ସମ୍ଭ୍ରାନ୍ତ କ୍ଷତ୍ରିୟ ଥିଲେ ବୋଲି ଆଗରୁ ଦେଖିଛୁଁ । ତାହାଙ୍କର ନାମ ଥିଲା ସିଦ୍ଧାର୍ଥ । ସିଦ୍ଧାର୍ଥ ତଦାନୀନ୍ତନ ବୈଶାଳୀ ଏବଂ ମଗଧର ଶକ୍ତିଶାଳୀ ରାଜବଂଶମାନଙ୍କ ସହ ବିବାହଗତ ସମ୍ପର୍କରେ ଜଡ଼ିତ ଥିଲେ । କଳିଙ୍ଗ ରାଜବଂଶ ସହିତ ତାହାଙ୍କର ଏପରି ବିବାହଗତ ବନ୍ଧୁତା ଥିଲା କି ନାହିଁ ଜାଣି ହୁଏ ନାହିଁ । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ କଳିଙ୍ଗରେ ଏକ କ୍ଷତ୍ରିୟ ରାଜବଂଶ ରାଜତ୍ୱ କରୁଥିଲେ ବୋଲି ଅନୁମାନ କରାଯାଇ ପାରିବ କାରଣ ମାତ୍ର ଦେଢ଼ଶହ ବର୍ଷ ମଧ୍ୟରେ ମଗଧ ସମ୍ରାଟ 'ସର୍ବକ୍ଷତ୍ରାନ୍ତକ' ମହାପଦ୍ମନନ୍ଦ କଳିଙ୍ଗ ଅଧିକାରପୂର୍ବକ ସେଠାକାର କ୍ଷତ୍ରିୟ ରାଜତ୍ୱର ଅବସାନ କରିଥିଲେ ବୋଲି କେହି କେହି ଐତିହାସିକ ବିଶ୍ୱାସ କରୁଛନ୍ତି । ସେ ଯାହାହେଉ କଳିଙ୍ଗ ଅଧିପତିଙ୍କ ସହ ମହାବୀରଙ୍କ ପିତା କିପରି ବନ୍ଧୁତା ସୂତ୍ରରେ ଆବଦ୍ଧ ଥିଲେ ତାହା ଜାଣିବା କଷ୍ଟକର । କିନ୍ତୁ ଯେ କୌଣସି ସୂତ୍ରେ ହେଉ ସେ ଦୁଇଙ୍କ ମଧ୍ୟରେ ପରିଚୟ ଥିଲା ଏବଂ ଯେତେବେଳେ

କଳିଙ୍ଗରାଜ ତାହାଙ୍କ ପୂର୍ବ ବନ୍ଧୁଙ୍କର ପୁତ୍ର ମହାବୀରଙ୍କୁ ଧର୍ମପ୍ରଚାର କରୁଥିବାର ଦେଖିଥିବେ ସେ ସ୍ୱତଃପ୍ରବୃତ୍ତ ହୋଇ ହୁଏତ ତାହାଙ୍କୁ ନିଜରାଜ୍ୟକୁ ଡକାଇ-ଥିବେ । ନଚେତ୍, ମହାବୀର ନିଜେ କଳିଙ୍ଗରାଜଙ୍କୁ ନିଜ ପିତାଙ୍କର ବନ୍ଧୁରୂପେ ଜାଣି ଏବଂ ସେହି ସୁଯୋଗର ସୁବିଧା ନେଇ କଳିଙ୍ଗକୁ ଆସିଥିବେ ଏବଂ ସେ ଦେଶରେ ନିଜର ମତ ପ୍ରଚାର କରିଥିବେ ।

ଏସମସ୍ତ ଆଲୋଚନା ମୂଳରୁ ଅନ୍ତତଃ ଏତିକ ବିଷୟରେ ନିଶ୍ଚିତ ହୋଇ ହେବ ଯେ ମହାବୀର ଜୀନ ସ୍ୱଧର୍ମ ପ୍ରଚାରାର୍ଥେ କଳିଙ୍ଗଖଣ୍ଡରେ ପଦାର୍ପଣ କରିଥିଲେ ଏବଂ କଳିଙ୍ଗବାସୀଙ୍କୁ ସ୍ୱପ୍ରଚାରବାଣୀ ଶୁଣାଇ ଥିଲେ । ତାହାଙ୍କ ପ୍ରଚାର ପ୍ରଭାବରେ ଭବିଷ୍ୟତ ଯୁଗ ପାଇଁ ଉତ୍କଳଖଣ୍ଡ ଜୈନଧର୍ମର ଏକ କେନ୍ଦ୍ରସ୍ଥଳରୂପେ ପ୍ରସିଦ୍ଧି ଲାଭ କରିବାକୁ ସମର୍ଥ ହୋଇଥିଲା । ମହାବୀର ଜୀବନର ୭୨ ବର୍ଷ ବୟସରେ ରାଜଗୃହ ନିକଟସ୍ଥ ପାଭା ନାମକ ସ୍ଥାନରେ ଦେହତ୍ୟାଗ କରିଥିଲେ । ମୃତ୍ୟୁ ପରେ ତାହାଙ୍କ ଅସ୍ଥି ଭାରତର ବିଭିନ୍ନ ସ୍ଥାନକୁ ଜୈନ ସନ୍ନ୍ୟାସୀମାନଙ୍କଦ୍ୱାରା ଆନୀତ ହୋଇଥିବ ଏବଂ ଯେଉଁ ଯେଉଁ ସ୍ଥାନରେ ସେ ପବିତ୍ର ଅସ୍ଥିଖଣ୍ଡମାନ ସଂରକ୍ଷିତ ହୋଇଥିବ ସେ ସ୍ଥାନ ଜୈନମାନଙ୍କର ତୀର୍ଥସ୍ଥଳୀରେ ପରିଣତ ହୋଇଥିବ । ଉତ୍କଳ-ଖଣ୍ଡକୁ ମଧ୍ୟ ମହାବୀର ଜୀନଙ୍କ ମର ଶରୀରର ଶେଷ-ସନ୍ତକ ଆନୀତ ହୋଇଥିଲା ବୋଲି ଅନୁମାନ କରାଯାଇଛି । ହାତିଗୁମ୍ଫା ଶିଳାଲିପିରୁ ଆଭାସ ମିଳେ ଯେ ମହାବୀର ଜୀନଙ୍କ ଶେଷ ସନ୍ତକ କୁମାରୀ ବା ଉଦୟଗିରି ପାହାଡ଼ ଉପରେ ସଂରକ୍ଷିତ ହୋଇଥିଲା । ସେହି ସ୍ତୂପପୀଠ ନିକଟରେ ଖାରବେଳ ଏକ ଜୈନଧର୍ମ ସଭା ଆହ୍ୱାନ କରିଥିଲେ । ଭାରତର ସବୁ ଦିଗରୁ ଜୈନ ସାଧୁ ସନ୍ନ୍ୟାସୀମାନେ ଏହି ଧର୍ମମହାସଭାରେ ଯୋଗ ଦେବା ପାଇଁ ଆସିଥିଲେ । ଏହିଠାରେ ଉଲ୍ଲେଖଯୋଗ୍ୟ ଯେ, ବୁଦ୍ଧଙ୍କର ମୃତ୍ୟୁପରେ ଶେଷ ସନ୍ତକ ରୂପେ ତାହାଙ୍କର ଦନ୍ତ ଉତ୍କଳକୁ ଆନୀତ ହୋଇଥିଲା । ବୁଦ୍ଧ ଏବଂ ମହାବୀର ସମ-ସାମୟିକ । ବୁଦ୍ଧଙ୍କର ମୃତ୍ୟୁ ମଧ୍ୟରେ ମାତ୍ର କେତେକ ବର୍ଷ ବ୍ୟବଧାନ ଥିଲା । ଅବଶ୍ୟ, ବୁଦ୍ଧ ଏବଂ ମହାବୀରଙ୍କ ମଧ୍ୟରେ କିଏ ବୟୋଜ୍ୟେଷ୍ଠ ଏବଂ କାହାଙ୍କର ମୃତ୍ୟୁ ପ୍ରଥମେ ହୋଇଥିଲା ସେ ବିଷୟରେ ଐତିହାସିକମାନଙ୍କ ମଧ୍ୟରେ ଯଥେଷ୍ଟ ମତ ପାର୍ଥକ୍ୟ ଅଛି । ବୌଦ୍ଧମାନଙ୍କ ବିଶ୍ୱାସ ଅନୁଯାୟୀ ବୁଦ୍ଧଙ୍କ ମୃତ୍ୟୁ ପୂର୍ବରୁ ମହାବୀରଙ୍କର ମୃତ୍ୟୁ ହୋଇଥିଲା । କେତେକ ପଣ୍ଡିତଙ୍କ ମତରେ ଏହା ଭୁଲ ଏବଂ

ଏହି ପଣ୍ଡିତମାନେ ବିଶ୍ୱାସ କରନ୍ତି ଯେ ମହାବୀର ଜୀନ ବୁଦ୍ଧଙ୍କ ମୃତ୍ୟୁର ଦଶ କିମ୍ବା ପନ୍ଦର ବର୍ଷ ପରେ ଦେହତ୍ୟାଗ କରିଥିଲେ ।[1] ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ଦୁଇ ମହାପୁରୁଷଙ୍କର ଲୀଳା । କିନ୍ତୁ ବୁଦ୍ଧଙ୍କର ଜନ୍ମ ମୃତ୍ୟୁର ସମୟ ନିର୍ଭୁଲରୂପେ ଏ ପର୍ଯ୍ୟନ୍ତ ନିର୍ଦ୍ଧାରିତ ହୋଇ ପାରିନାହିଁ । ବୁଦ୍ଧ ଏବଂ ମହାବୀରଙ୍କ ମଧ୍ୟରୁ କିଏ ପ୍ରଥମେ ଜନ୍ମଗ୍ରହଣ କରିଥିଲେ ଏବଂ କିଏ ପ୍ରଥମେ ଦେହତ୍ୟାଗ କରିଥିଲେ ଏ ବିଷୟ ନେଇ ଐତିହାସିକମାନଙ୍କ ମଧ୍ୟରେ ଯେଉଁ ତୁମୁଳ ମତଦ୍ୱନ୍ଦ୍ୱ ଚାଲି ଆସିଛି ସେ ଦ୍ୱନ୍ଦ୍ୱ ଉପରେ ଆଲୋଚନା କରି ସମୟ ନଷ୍ଟ କରିବା ଏଠାରେ ଉଦ୍ଦେଶ୍ୟ ନୁହେଁ । ଏଠାରେ କେବଳ ଏତିକି କହିବା ଉଦ୍ଦେଶ୍ୟ ଯେ ସମସାମୟିକ ଏ ଦୁଇ ମହାପୁରୁଷଙ୍କର ପରସ୍ପରର ମୃତ୍ୟୁକାଳ ମଧ୍ୟରେ କେତେକ ବର୍ଷର ପାର୍ଥକ୍ୟ ନିଶ୍ଚୟ ଥିବ । ସେ ପାର୍ଥକ୍ୟ ଯାହା ଥାଉ ନା କାହିଁକି ବୁଦ୍ଧଙ୍କ ମୃତ୍ୟୁପରେ ସେମାନଙ୍କର ଶିଷ୍ୟମାନେ ନିଜ ନିଜ ଧର୍ମଗୁରୁଙ୍କର ସ୍ମୃତିରକ୍ଷା ପାଇଁ ପ୍ରାଣପଣ ଚେଷ୍ଟା କରିଥିବେ ଏବଂ ପରସ୍ପର ପରସ୍ପରକୁ ଏ ବିଷୟରେ ଅନୁକରଣ କରିବାକୁ ଚେଷ୍ଟିତ ହୋଇଥିବେ । ବୁଦ୍ଧଙ୍କ ମୃତ୍ୟୁପରେ ସଙ୍ଗେ ସଙ୍ଗେ ତାହାଙ୍କର ଦନ୍ତ ବୌଦ୍ଧ ଭିକ୍ଷୁମାନଙ୍କଦ୍ୱାରା କଳିଙ୍ଗକୁ ଅଣା ହୋଇଥିଲା । ଠିକ୍ ସେହିପରି ମହାବୀରଙ୍କ ମୃତ୍ୟୁ ପରେ ତାହାଙ୍କର ନଶ୍ୱର ଶରୀରର କୌଣସି ଅଂଶ ଜୈନ ସାଧୁମାନେ କଳିଙ୍ଗକୁ ଆଣିଥିବାର ସମ୍ପୂର୍ଣ୍ଣ ସମ୍ଭବ । ହୁଏତ ଜୈନମାନେ ବୌଦ୍ଧମାନଙ୍କୁ ଅନୁକରଣ କରିଥିବେ କିମ୍ବା ବୌଦ୍ଧମାନେ ଜୈନମାନଙ୍କୁ ଅନୁକରଣ କରିଥିବେ, କିମ୍ବା କେହି କାହାକୁ ଅନୁକରଣ ନ କରି ମଧ୍ୟ ନିଜ ନିଜ ଧର୍ମପ୍ରବର୍ତ୍ତିକମାନଙ୍କ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ସେମାନଙ୍କର ଦନ୍ତ କିମ୍ବା ଅସ୍ଥି ଭାରତର ବିଭିନ୍ନ ସ୍ଥାନରେ ସଂରକ୍ଷିତ କରିଥିବେ । ଉତ୍କଳ-ଖଣ୍ଡରେ ମଧ୍ୟ ବୁଦ୍ଧ ଏବଂ ଜୀନ, ଉଭୟଙ୍କର ଶେଷ ସନ୍ତକ ସଂରକ୍ଷିତ ହୋଇଥିଲା, ଏହା ଐତିହାସିକ ଯୁକ୍ତିସଙ୍ଗତ ।

ମହାବୀରଙ୍କ ପୂର୍ବରୁ କୌଣସି ଜଣେ ତୀର୍ଥଙ୍କରଙ୍କର କଳିଙ୍ଗରେ ଜନ୍ମ ଏବଂ ଜୈନ ମତବାଦ ପ୍ରଚାର, ସ୍ୱୟଂ ମହାବୀରଙ୍କର କଳିଙ୍ଗ ଆଗମନ ଏବଂ ଧର୍ମ ପ୍ରଚାର, କଳିଙ୍ଗ ନରପତିଙ୍କ ସହ ମହାବୀରଙ୍କର ପ୍ରୀତିପୂର୍ଣ୍ଣ ସଦ୍ଭାବ ଏବଂ ମହାବୀରଙ୍କର ମୃତ୍ୟୁ ପରେ ଉଦୟଗିରି ଶିଖରରେ ତାହାଙ୍କର ଅସ୍ଥି ସଂରକ୍ଷଣ, ଏ ସମସ୍ତ ଫଳରେ କଳିଙ୍ଗ ଉପରେ ଜୈନଧର୍ମର ପ୍ରଭୂତ ପ୍ରଭାବ ପଡ଼ିଥିଲା । ଏ ହେଲା କଳିଙ୍ଗ

1. See Cambridge History, vol. I.

ରାଷ୍ଟ୍ରରେ ଜୈନଧର୍ମର ଆଦି ପ୍ରଭାବ । କିନ୍ତୁ ଜୈନ ପ୍ରଭାବ ଏ ଦେଶରେ ଶୀର୍ଷସ୍ଥାନ ଲାଭ କରିଥିଲା ଯେତେବେଳେ କଳିଙ୍ଗର ସର୍ବଶ୍ରେଷ୍ଠ ସମ୍ରାଟ ମହାମେଘବାହନ ମହାରାଜ ଖାରବେଳ ଜୈନଧର୍ମର ପୃଷ୍ଠପୋଷକତା କରିଥିଲେ । ସେ ବିଷୟ ଏ ପୁସ୍ତକର ଅପର ଏକ ସ୍ଥାନରେ ଆଲୋଚିତ ହେବ ।

ମହାବୀରଙ୍କ ମତ ପ୍ରଚାର ସଙ୍ଗେ ସଙ୍ଗେ କିମ୍ବା ଅଳ୍ପପରେ ଗୌତମ ବୁଦ୍ଧଙ୍କ ମତବାଦ ମଧ୍ୟ କଳିଙ୍ଗରେ ପ୍ରବେଶ କରିଥିଲା । ବାରାଣସୀ ନିକଟରୁ ବୁଦ୍ଧ ତାହାଙ୍କର ଷାଠିଏ ଜଣ ଶିଷ୍ୟଙ୍କୁ ଭାରତର ବିଭିନ୍ନ ଦିଗରେ ଧର୍ମପ୍ରଚାର ନିମିତ୍ତ ପଠାଇଥିଲେ । ଏହି ଶିଷ୍ୟମାନଙ୍କ ମଧ୍ୟରୁ କେହି କେହି କଳିଙ୍ଗରେ ମଧ୍ୟ ପ୍ରବେଶ କରିଥାଇ ପାରନ୍ତି । ବୌଦ୍ଧ ଜାତକମାନଙ୍କରୁ କଳିଙ୍ଗ ଏବଂ ଉତ୍କଳ ବିଷୟରେ ଗଳ୍ପକଥା ଜଣାଯାଏ । ସେ ସବୁ ବିବରଣୀରୁ ଅନୁମାନ କରାଯାଏ ଯେ କଳିଙ୍ଗାଞ୍ଚଳରେ ବୌଦ୍ଧମତ ଦ୍ରୁତ ଗତିରେ ବିସ୍ତାର ଲାଭ କରିଥିଲା । ମହାବୀର ଜୀନଙ୍କ ପରି ଗୌତମ ବୁଦ୍ଧ ସ୍ୱୟଂ କଳିଙ୍ଗ ଦେଶରେ ଧର୍ମ ପ୍ରଚାରାର୍ଥେ ପ୍ରବେଶ କରିଥିଲେ କି ନାହିଁ ଜଣାଯାଏ ନାହିଁ । ଦୀର୍ଘ ୪୫ ବର୍ଷକାଳ ବୁଦ୍ଧ ଧର୍ମପ୍ରଚାର କାର୍ଯ୍ୟରେ ବ୍ୟସ୍ତ ଥିଲେ । କିନ୍ତୁ ତାହାଙ୍କର ପ୍ରଚାର ମୁଖ୍ୟତଃ ଆର୍ଯ୍ୟାବର୍ତ୍ତ ମଧ୍ୟରେ କେନ୍ଦ୍ରୀଭୂତ ଥିଲା । ହୁଏତ ବୁଦ୍ଧ ଆର୍ଯ୍ୟାବର୍ତ୍ତକୁ କେନ୍ଦ୍ରକରି ସେହି ସ୍ଥାନରୁ ଭାରତର ଅପର ସ୍ଥାନକୁ ତାହାଙ୍କ ଶିଷ୍ୟମାନଙ୍କୁ ପଠାଉଥିଲେ ଏବଂ ନିଜେ ଆର୍ଯ୍ୟାବର୍ତ୍ତରେ ଧର୍ମପ୍ରଚାରର ଦାୟିତ୍ୱ ନେଇଥିଲେ । କାଶୀ, କୋଶଳ, କୋଶାମ୍ବି, ବିଦେହ, ବୈଶାଳୀ, ମଗଧ, ଅଯୋଧ୍ୟା, ପାଟଳିପୁତ୍ର, କୁଶୀନଗର, କପିଳବାସ୍ତୁ ଏବଂ ଉତ୍ତରାପଥର ଅନ୍ୟ ସ୍ଥାନମାନଙ୍କରେ ରାଜା, ପ୍ରଜା ସମସ୍ତଙ୍କୁ ସ୍ୱମତରେ ଦୀକ୍ଷିତ କରୁଁ କରୁଁ ବୁଦ୍ଧ ଦକ୍ଷିଣ ଭାରତକୁ ଆସିବା ପାଇଁ ହୁଏତ ଅବସର ପାଇ ନ ଥିବେ । ଅବଶ୍ୟ ବୌଦ୍ଧ ଜନଶ୍ରୁତି ଅନୁସାରେ ବୁଦ୍ଧ ସୁଦୂର ସିଂହଳ ଦ୍ୱୀପକୁ ମଧ୍ୟ ଯାଇଥିଲେ ଏବଂ ସେଠାରେ 'ଆଦାମ' ଶୃଙ୍ଗ ଉପରେ ନିଜର ପଦଚିହ୍ନ ରଖି ଆସିଥିଲେ । ଆଜି ସୁଦ୍ଧା ଲକ୍ଷ ଲକ୍ଷ ବୌଦ୍ଧ ପୃଥିବୀର ବିଭିନ୍ନ ସ୍ଥାନରୁ ଆଦାମ ଶୃଙ୍ଗ ଆରୋହଣପୂର୍ବକ ସେଠାରେ ବୁଦ୍ଧଙ୍କ ପାଦଚିହ୍ନ ଦର୍ଶନ କରନ୍ତି । କିନ୍ତୁ ବୁଦ୍ଧଙ୍କ ସିଂହଳଯାତ୍ରା ସପକ୍ଷରେ ଐତିହାସିକ ଉପାଦାନ ପାଇବା ସମ୍ଭବ ହୋଇ ନାହିଁ । ଯେତେଦୂର ସମ୍ଭବ ବୁଦ୍ଧ ଦକ୍ଷିଣ ଭାରତ କିମ୍ବା ସିଂହଳ ଦ୍ୱୀପକୁ ଆସି ନ ଥିଲେ, କିମ୍ବା ଆସିଥିଲେ ମଧ୍ୟ ସେ ସମ୍ବନ୍ଧରେ ସଠିକ ଐତିହାସିକ ଉପାଦାନ ଏ ପର୍ଯ୍ୟନ୍ତ ଆବିଷ୍କୃତ

ହୋଇ ପାରି ନାହିଁ । ବୁଦ୍ଧଙ୍କ ଜୀବନୀର ବହୁ ଅଂଶ ଆଜିସୁଦ୍ଧା ଅନ୍ଧକାରମୟ । ସେ ଅନ୍ଧକାର ଉପରେ ଆଲୋକପାତ ହୋଇ ପାରିଲେ ବୁଦ୍ଧ ଦକ୍ଷିଣ ଭାରତ ମଧ୍ୟରେ ଭ୍ରମଣ କରିଥିଲେ କି ନାହିଁ ଏବଂ କଳିଙ୍ଗରେ ପଦାର୍ପଣ କରିଥିଲେ କି ନାହିଁ ସେ ବିଷୟ ଉପରୁ ସନ୍ଦେହ ଦୂରୀଭୂତ ହେବ ।

ସେ ଯାହାହେଉ, ବୁଦ୍ଧଙ୍କର ଜୀବିତାବସ୍ଥାରେ ତାହାଙ୍କର ଖ୍ୟାତି ଏବଂ ମତବାଦ କଳିଙ୍ଗ ଉପରେ ଯଥେଷ୍ଟ ପ୍ରଭାବ ବିସ୍ତାର କରିଥିଲା ଏଥିରେ ସନ୍ଦେହ ନାହିଁ । ବୁଦ୍ଧଙ୍କ ଜୀବନୀ ଏବଂ କୀର୍ତ୍ତିକୁ କେନ୍ଦ୍ରକରି ଯେଉଁସବୁ ବୌଦ୍ଧ ଜାତକମାନ ଲିଖିତ ହୋଇଛି ସେଥିରେ କଳିଙ୍ଗ ଏବଂ ଉତ୍କଳ ସମ୍ବନ୍ଧରେ ବହୁ ବିଷୟ ବର୍ଣ୍ଣିତ ଅଛି ଏବଂ ତତ୍କାଳୀନ କଳିଙ୍ଗର ଅନେକାନେକ ରାଜା, ରାଜଧାନୀ ଏବଂ ସ୍ଥାନର ନାମ ଉଲ୍ଲିଖିତ ଅଛି । ସେଥିରୁ ଏତିକି ଅନୁମାନ କରାଯାଇ ପାରେ ଯେ ପ୍ରଥମରୁ କଳିଙ୍ଗ-ଉତ୍କଳ ବୌଦ୍ଧ ପ୍ରଭାବିତ ହୋଇଥିଲା ଏବଂ ବୌଦ୍ଧ ଗ୍ରନ୍ଥକାରମାନେ ଉତ୍ତର ଭାରତର ପ୍ରସିଦ୍ଧ ସ୍ଥାନମାନଙ୍କ ପରି କଳିଙ୍ଗ-ଉତ୍କଳକୁ ମଧ୍ୟ ସେମାନଙ୍କ ଗ୍ରନ୍ଥରେ ଯଥାଯୋଗ୍ୟ ସ୍ଥାନ ଦେଇଥିଲେ । ଉତ୍କଳବାସୀଙ୍କ ମଧ୍ୟରୁ କେହି କେହି ନିଶ୍ଚୟ ବୁଦ୍ଧଙ୍କର ଉପଦେଶ ପ୍ରତି ଆକୃଷ୍ଟ ହୋଇ ତାହାଙ୍କର ଦର୍ଶନାର୍ଥେ ସୁଦୂର ଉତ୍ତରକୁ ଯାତ୍ରା କରିଥିବେ ଏବଂ ସେମାନଙ୍କ ମଧ୍ୟରୁ କେହି କେହି ନିଶ୍ଚୟ ତାହାଙ୍କର ପ୍ରଧାନ ଶିଷ୍ୟମଣ୍ଡଳୀ ମଧ୍ୟରେ ସ୍ଥାନ ପାଇଥିବେ । 'ମଝ୍‌ଝିମ ନିକାୟ' ଏବଂ 'ମହାବାଗ' ପ୍ରଭୃତି ବୌଦ୍ଧଗ୍ରନ୍ଥରୁ ଜଣାଯାଏ ଯେ ଦୁଇଜଣ ଉତ୍କଳୀୟ ବଣିକ ଉରୁବିଲ୍ୱ ନିକଟସ୍ଥ କୌଣସି ଏକ ସ୍ଥାନରେ ବୁଦ୍ଧଙ୍କ ନିକଟରୁ ତାହାଙ୍କର ମତବାଦ ଶ୍ରବଣ କରିଥିଲେ । ବୁଦ୍ଧଦେବ ଏହି ଦୁଇ ଉତ୍କଳୀୟଙ୍କ ହସ୍ତରୁ ଭୋଜନ ଗ୍ରହଣ ମଧ୍ୟ କରିଥିଲେ । ବୁଦ୍ଧଙ୍କ ଜୀବିତାବସ୍ଥାରେ କଳିଙ୍ଗବାସୀଙ୍କର ତାହାଙ୍କ ପ୍ରତି ଯେଉଁ ପ୍ରଗାଢ଼ ଭକ୍ତି ଗଢ଼ି ଉଠିଥିଲା ତାହାର ନିଦର୍ଶନ ମିଳେ ବିଖ୍ୟାତ ବୌଦ୍ଧଧର୍ମ ଗ୍ରନ୍ଥ 'ମହାପରି ନିର୍ବାଣ ସୁତ୍ତ'ରୁ । ବୁଦ୍ଧଙ୍କ ମୃତ୍ୟୁପରେ ତାହାଙ୍କର ଶବଦାହ କାର୍ଯ୍ୟ କୁଶୀନଗର ଅଧିବାସୀମାନଙ୍କଦ୍ୱାରା ସମ୍ପାଦିତ ହୋଇଥିଲା । ତା'ପରେ ଚିତାଭସ୍ମ ମଧ୍ୟରୁ ବୁଦ୍ଧଙ୍କର ଅସ୍ଥି ଉଦ୍ଧାର କରାଯାଇଥିଲା ଏବଂ ସେହି ଅସ୍ଥିରୁ ଖଣ୍ଡିଏ ଖଣ୍ଡିଏ ଅଂଶ ରାଜଗୃହ, ବୈଶାଳୀ, କପିଳବାସ୍ତୁ, କୁଶୀନଗର ପ୍ରଭୃତି ସ୍ଥାନମାନଙ୍କୁ ଆନୀତ ହୋଇ ସେ ସବୁ ସ୍ଥାନରେ ସ୍ତୂପ ମଧ୍ୟରେ ସଂରକ୍ଷିତ ହୋଇଥିଲା । 'ମହାପରି ନିର୍ବାଣ ସୁତ୍ତ' ଅନୁସାରେ ଖେମାଥେର ନାମକ ଜନୈକ ବିଖ୍ୟାତ ବୌଦ୍ଧ ଭିକ୍ଷୁ ଏହି ସମୟରେ

ବୁଦ୍ଧଙ୍କର ଗୋଟିଏ ଦାନ୍ତ କଳିଙ୍ଗଦେଶକୁ ନେଇ ଆସିଥିଲେ । ଏ ଦାନ୍ତ ତତ୍କାଳୀନ କଳିଙ୍ଗରାଜ ବ୍ରହ୍ମଦତ୍ତଙ୍କୁ ଦିଆଯାଇଥିଲା । ବ୍ରହ୍ମଦତ୍ତ ଏ ଦାନ୍ତର ସଂରକ୍ଷଣ ପାଇଁ ନିଜ ରାଜଧାନୀରେ ଏକ ସ୍ତୂପ ନିର୍ମାଣ କରିଥିଲେ । ଦାନ୍ତ ସଂରକ୍ଷିତ ହେଲାପରେ ସେ ନଗରୀ ଦନ୍ତପୁର ନାମରେ ବିଖ୍ୟାତ ହୋଇଥିଲା ଏବଂ ଏହି ଦନ୍ତପୁର ବୌଦ୍ଧମାନଙ୍କର ଏକ ପ୍ରଧାନ ତୀର୍ଥସ୍ଥଳୀରେ ପରିଣତ ହୋଇଥିଲା । ବୌଦ୍ଧ ଧର୍ମଗ୍ରନ୍ଥମାନଙ୍କର ବହୁ ସ୍ଥାନରେ କଳିଙ୍ଗ ରାଜଧାନୀ ଦନ୍ତପୁର ବିଷୟ ଉଲ୍ଲିଖିତ ଥିବାର ଦେଖାଯାଏ ଏବଂ ସେଥିରୁ ସହଜରେ ଅନୁମାନ କରାଯାଏ ଯେ ବୁଦ୍ଧଙ୍କ ମୃତ୍ୟୁ ପରେ ପରେ କଳିଙ୍ଗର ଦନ୍ତପୁର ବୌଦ୍ଧଧର୍ମର ଏକ କେନ୍ଦ୍ରସ୍ଥଳୀ ହୋଇ ପଡ଼ିଥିଲା । ଭିକ୍ଷୁ ଖେମାଥେରଙ୍କର ବୁଦ୍ଧଙ୍କ ଦନ୍ତ ଆନୟନ ଏବଂ କଳିଙ୍ଗ ନରପତିଙ୍କଦ୍ୱାରା ସେ ଦନ୍ତ ସାଦରେ ଗ୍ରହଣ ଏବଂ ଦନ୍ତ ସଂରକ୍ଷଣ ପାଇଁ ସ୍ତୂପ ନିର୍ମାଣ ଇତ୍ୟାଦିରୁ ସୁନ୍ଦରଭାବେ ଜଣାଯାଏ ଯେ ବୁଦ୍ଧଙ୍କ ମୃତ୍ୟୁର ବହୁପୂର୍ବରୁ କଳିଙ୍ଗ ଅଧିବାସୀମାନେ ଏବଂ ନିଜେ କଳିଙ୍ଗରାଜ ବୁଦ୍ଧଙ୍କ ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲେ । ବୁଦ୍ଧଙ୍କ ଜୀବିତାବସ୍ଥାରେ କଳିଙ୍ଗ ଉପରେ ବୌଦ୍ଧ ପ୍ରଭାବ ସୁପ୍ରତିଷ୍ଠିତ ହୋଇ ନ ଥିଲେ ତାହାଙ୍କ ମୃତ୍ୟୁ ସଙ୍ଗେ ସଙ୍ଗେ ତାହାଙ୍କର ଦନ୍ତ ସହ ଖେମାଥେର କଳିଙ୍ଗ ଦେଶକୁ ଆସି ନ ଥାନ୍ତେ । କଳିଙ୍ଗ ଅଧିପତି ବ୍ରହ୍ମଦତ୍ତ ମଧ୍ୟ ଆଗରୁ ବୁଦ୍ଧଙ୍କ ବ୍ୟକ୍ତିତ୍ୱ ଏବଂ ତାହାଙ୍କର ଧର୍ମଚିନ୍ତା ଯଥେଷ୍ଟରୂପେ ଆକୃଷ୍ଟ ହୋଇଥିବେ; ନଚେତ୍ ତାହାଙ୍କ ଦ୍ୱାରା ଏପରି ଆଗ୍ରହ ସହକାରେ ଦନ୍ତ ଗ୍ରହଣ ଏବଂ ସ୍ତୂପ ନିର୍ମାଣ ସମ୍ଭବ ହୋଇ ନ ଥାନ୍ତା । ବୁଦ୍ଧଙ୍କ ମୃତ୍ୟୁ କାଳରୁ ବା କଳିଙ୍ଗରେ ରାଜା ବ୍ରହ୍ମଦତ୍ତଙ୍କ ରାଜତ୍ୱ ସମୟରୁ ଦୀର୍ଘ ଆଠଶହ ବର୍ଷକାଳ ବୁଦ୍ଧଙ୍କ ଦନ୍ତ କଳିଙ୍ଗରେ ପୂଜା ପାଇ-ଥିଲା । ଶେଷରେ ସେ ଦନ୍ତ କଳିଙ୍ଗରୁ ସିଂହଳଦ୍ୱୀପକୁ ପଠା ହୋଇଥିଲା । ସେ ବୃତ୍ତାନ୍ତ ସିଂହଳ ଦେଶର ବୌଦ୍ଧ ଧର୍ମଗ୍ରନ୍ଥମାନଙ୍କରେ ବିଶଦଭାବରେ ବର୍ଣ୍ଣିତ ଅଛି । ସେତେବେଳେ ସିଂହଳ-ଖଣ୍ଡରେ ରାଜା ଶ୍ରୀମେଘବର୍ଣ୍ଣଙ୍କର ରାଜତ୍ୱକାଳ (ଖ୍ରୀ: ଅ: ୩୫୨ ରୁ ୩୭୯) । ଏହି ସମୟରେ କଳିଙ୍ଗଦେଶ ଉପରକୁ ବୈଦେଶିକ ଆକ୍ରମଣ ମାଡ଼ି ଆସିଥିଲା । ତତ୍କାଳୀନ କଳିଙ୍ଗ ନରପତି ଗୁହଶିବ ଶତ୍ରୁମାନଙ୍କ ହସ୍ତରେ ପରାଜିତ ହେବାର ଅବ୍ୟବହିତ ପୂର୍ବରୁ ବୁଦ୍ଧଙ୍କ ଦନ୍ତ ନିଜ କନ୍ୟା ହେମମାଳାଙ୍କ ହସ୍ତରେ ଅର୍ପଣ କରି ତାହାଙ୍କୁ ସେ ପବିତ୍ର ଦନ୍ତର ରକ୍ଷଣଭାର ଦେଇଥିଲେ । କଳିଙ୍ଗ ରାଜକନ୍ୟା ହେମମାଳା ତାହାଙ୍କ ସ୍ୱାମୀ ଦନ୍ତକୁମାରଙ୍କ ସହ ସେ ଦନ୍ତକୁ ଲଙ୍କା ନେଇ ଯାଇଥିଲେ ଏବଂ ସେଠାକାର ରାଜା ଶ୍ରୀମେଘବର୍ଣ୍ଣଙ୍କ ହସ୍ତରେ ତାହା

ଅନୁରାଧାପୁରଠାରେ ଅର୍ପଣ କରିଥିଲେ । ମେଘବର୍ଣ୍ଣ ବୁଦ୍ଧଙ୍କର ସେହି ପବିତ୍ର ଦନ୍ତକୁ ଭକ୍ତି ସହକାରେ ଗ୍ରହଣ କରିଥିଲେ । ସେହି ସମୟରୁ ତାହା ଲଙ୍କାର ରାଜାମାନଙ୍କର ତତ୍ତ୍ୱାବଧାନରେ ରହି ପୂଜା ପାଇ ଆସୁଛି ।[1]

ବୁଦ୍ଧଙ୍କ ମୃତ୍ୟୁପରେ ଅଢ଼େଇଶହ ବର୍ଷ ମଧ୍ୟରେ ବୌଦ୍ଧଧର୍ମ ଭାରତ ମଧ୍ୟରେ ବ୍ୟାପି ଯାଇଥିଲା । ସେହି ସ୍ରୋତରେ କଳିଙ୍ଗର ଜନସାଧାରଣ ମଧ୍ୟ ଭାସି ଯାଇଥିଲେ । ମୌର୍ଯ୍ୟ ସମ୍ରାଟ ଅଶୋକଙ୍କ କଳିଙ୍ଗ ଆକ୍ରମଣବେଳକୁ କଳିଙ୍ଗରେ ବୌଦ୍ଧମତ ସୁଦୃଢ଼ ହୋଇ ସାରିଥିଲା । ତେଣୁ ଏହି କଳିଙ୍ଗ ଦେଶରେହିଁ ଅଶୋକ ପ୍ରକୃତ ବୌଦ୍ଧରେ ପରିଣତ ହୋଇଥିଲେ । ଅବଶ୍ୟ ଭାରତରେ ବୌଦ୍ଧଧର୍ମ ତା'ର ଶୀର୍ଷସୀମା ସ୍ପର୍ଶ କରିଥିଲା ଅଶୋକଙ୍କ ରାଜତ୍ୱବେଳେ । କଳିଙ୍ଗରେ ମଧ୍ୟ ସେହି ଭୁବନବିଖ୍ୟାତ ବୌଦ୍ଧ ସମ୍ରାଟ ପ୍ରକୃତ ବୌଦ୍ଧ ଯୁଗର ପ୍ରବର୍ତ୍ତନ କରିଥିଲେ । ତଥାପି କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ ଯେଉଁ ଅଶୋକ ବୌଦ୍ଧଧର୍ମକୁ ପୃଥିବୀର ସର୍ବବୃହତ୍ ଧର୍ମରେ ପରିଣତ କରିଥିଲେ ସେହି ଅଶୋକଙ୍କର ନିର୍ମମ ହୃଦୟରେ ବୁଦ୍ଧ ତଥାଗତଙ୍କର ପବିତ୍ରବାଣୀ ବଦ୍ଧମୂଳ କରିଥିଲେ ଏହି କଳିଙ୍ଗ ଦେଶର ବୌଦ୍ଧ ଭିକ୍ଷୁମାନେ । ବର୍ତ୍ତମାନ ସମ୍ରାଟ ଅଶୋକ ଏବଂ କଳିଙ୍ଗରେ ବୌଦ୍ଧଯୁଗ ସମ୍ବନ୍ଧରେ ପଦେ ଅଧେ ଦେଖାଯାଉ ।

---

1. See Buddhistic Studies---Law---pp. 487, 488.

# ସମ୍ରାଟ ଅଶୋକ, କଳିଙ୍ଗ ମହାସମର ଓ ବୌଦ୍ଧଯୁଗ

ଧରାପୃଷ୍ଠରେ ବହୁରାଜା ରାଜତ୍ୱ କରିଯାଇଛନ୍ତି । ଅଶୋକ ସେମାନଙ୍କ ମଧ୍ୟରେ ଜଣେ । ଯେଉଁ ଶତ ସହସ୍ର ରାଜା ରାଜତ୍ୱ କରିଯାଇଛନ୍ତି ସେମାନଙ୍କ ମଧ୍ୟରୁ ଅନେକଙ୍କୁ ଇତିହାସ ସମ୍ପୂର୍ଣ୍ଣରୂପେ ଭୁଲି ଯାଇଛି । ଯେଉଁ ଅଗଣିତ ରାଜାଙ୍କୁ ଇତିହାସ ମନେ ରଖିଛି ସେମାନଙ୍କ ମଧ୍ୟରୁ ଅନେକଙ୍କର କେବଳ ନାମମାତ୍ର ଇତିହାସ ପୃଷ୍ଠାରେ ଦେଖିବାକୁ ମିଳେ । ନାମ ବ୍ୟତୀତ ସେମାନଙ୍କ ବିଷୟରେ ଅନ୍ୟ କିଛି ଜାଣିବାକୁ ମିଳେ ନାହିଁ । ଅପର ଅନେକଙ୍କ ସମ୍ବନ୍ଧରେ ଇତିହାସ କେବଳ ପଦେ ଦୁଇପଦ ମାତ୍ର ବର୍ଣ୍ଣନା କରି ସେତିକିରେ କ୍ଷାନ୍ତ । ଯେଉଁ-ମାନେ ଅବିସ୍ମରଣୀୟ ରହିଲେ ସେମାନଙ୍କର କୀର୍ତ୍ତି ଅନୁଯାୟୀ ଇତିହାସ ସେମାନଙ୍କ ବିଷୟରେ ଅଳ୍ପବହୁତ ବର୍ଣ୍ଣନା କରିଛି । ଇତିହାସ ପକ୍ଷରେ ପୃଥିବୀର ଅସଂଖ୍ୟ ରାଜ୍ୟର ଅସଂଖ୍ୟ ରାଜାଙ୍କର ନାମ ନିଜ ବକ୍ଷରେ ଧାରଣ କରିବା ସମ୍ଭବ ନୁହେଁ କିମ୍ବା ତାହାର ଆବଶ୍ୟକତା ମଧ୍ୟ ନାହିଁ । କେବଳ ସେମାନଙ୍କ ମଧ୍ୟରୁ ଯେଉଁମାନେ ନିଜର ସୁକୀର୍ତ୍ତି କିମ୍ବା କୁକୀର୍ତ୍ତି ଦ୍ୱାରା ମନୁଷ୍ୟ ସମାଜରେ ପ୍ରସିଦ୍ଧିଲାଭ କରିଛନ୍ତି ଇତିହାସ ସେହିମାନଙ୍କର ନାମରେ ନିଜର ସ୍ମୃତି ସାଧନ କରିଛି । ପୃଥିବୀର ଏହି ପ୍ରସିଦ୍ଧ ନରପତିମାନଙ୍କ ମଧ୍ୟରେ ଅଶୋକ ସର୍ବଶ୍ରେଷ୍ଠ ଏବଂ ତେଣୁ ଇତିହାସର ଶତ ସହସ୍ର ରାଜାଙ୍କ ନାମ ମଧ୍ୟରେ ତାହାଙ୍କର ନାମ ସବୁଠାରୁ ଉଜ୍ଜ୍ୱଳ । ଏହା ଜଣେ ଭାରତୀୟର ପ୍ରଳାପ ନୁହେଁ; ଏହା ପୃଥିବୀ ଇତିହାସର ନିର୍ଦ୍ଦେଶ ଓ ମାନବ ଜାତିର ସିଦ୍ଧାନ୍ତ । କାହିଁକି ପୃଥିବୀର ରାଜନ୍ୟମଣ୍ଡଳୀ ମଧ୍ୟରେ ଅଶୋକଙ୍କର ସ୍ଥାନ ସର୍ବୋଚ୍ଚ ସେ ପ୍ରଶ୍ନର ଉତ୍ତର ଅତିଶୟ ସହଜ । ପୃଥିବୀ ପୃଷ୍ଠର ଯେଉଁ ନରପତିମାନଙ୍କର କୀର୍ତ୍ତିରେ ଇତିହାସ ପୃଷ୍ଠା ମୁଖରିତ ହୋଇ ଉଠିଛି ସେମାନଙ୍କ ମଧ୍ୟରୁ ଅଧିକାଂଶ ସେମାନଙ୍କର କୁକୀର୍ତ୍ତି ପାଇଁ ପ୍ରସିଦ୍ଧ । ସିକନ୍ଦର, ସିଜାର, ଚେଙ୍ଗିଜ୍, ହାନିବଲ୍, ତୈମୁର, ନେପୋଲିୟନ, ଏମାନେ ପୃଥିବୀର ପ୍ରସିଦ୍ଧ ନରପତିମାନଙ୍କର ପ୍ରକୃତ ପ୍ରତିନିଧି। କିନ୍ତୁ ଏମାନଙ୍କର ପ୍ରସିଦ୍ଧି ମୂଳରେ ଏମାନଙ୍କର କେଉଁ କୀର୍ତ୍ତି ଦେଖିବାକୁ ମିଳେ ?

ଦିଗ୍‌ବିଜୟୀ ସିକନ୍ଦର ସୁଦୂର ଗ୍ରୀସ୍ ଭୂମିରୁ ସିନ୍ଧୁକୂଳ ପର୍ଯ୍ୟନ୍ତ ଇଉରୋପ-ଏସିଆର ଏକ ସୁବିସ୍ତୃତ ଅଂଶ ଉପରେ ନିଜର ସୈନ୍ୟ ଚାଳନା କରିଥିଲେ, ବହୁ ରଣକ୍ଷେତ୍ରରେ ନିଜର ବିଜୟ ଧ୍ୱଜା ଉଡ଼ାଇଥିଲେ, ଏବଂ ପରିଶେଷରେ ପୃଥିବୀର ଶେଷସୀମା ପର୍ଯ୍ୟନ୍ତ ରାଜ୍ୟ ଅଧିକାର କରିଥିଲେ ବୋଲି ଗର୍ବରେ ଧରାକୁ ସରା ଜ୍ଞାନ କରିଥିଲେ । ଏଥିପାଇଁ ସିକନ୍ଦର ଇତିହାସ ପ୍ରସିଦ୍ଧ । କିନ୍ତୁ ତାହାଙ୍କର ଦିଗ୍‌ବିଜୟ ବହୁ ଶାନ୍ତିପୂର୍ଣ୍ଣ ରାଜ୍ୟ ଉପରେ ଧ୍ୱଂସର ତାଣ୍ଡବ ଲୀଳା ସୃଷ୍ଟି କରିଥିଲା, ସୁଖ ସମୃଦ୍ଧିଶାଳୀ ସମାଜ ମଧ୍ୟରେ ବିଶୃଙ୍ଖଳା ଓ ଅଶାନ୍ତି ସୃଷ୍ଟି କରିଥିଲା ଏବଂ ପରିଶେଷରେ ଦିଗ୍‌ବିଜୟୀର ମୃତ୍ୟୁ ସଙ୍ଗେ ସଙ୍ଗେ ତାହାଙ୍କର ବିଜିତ ସାମ୍ରାଜ୍ୟ କ୍ଷଣିକର ବୁଦ୍‌ବୁଦ ପରି ଧରାପୃଷ୍ଠରୁ ଉଭେଇ ଯାଇଥିଲା । ପୃଥିବୀ ଦିଗ୍‌ବିଜୟ କରି ସିକନ୍ଦର ଇତିହାସ ବକ୍ଷରେ ନିଜ ନାମ ଚିରଦିନ ପାଇଁ ଲିପିବଦ୍ଧ କରିଗଲେ ସତ୍ୟ, କିନ୍ତୁ ତାହାଦ୍ୱାରା ମନୁଷ୍ୟ ଜାତିର ଲାଭ ହେଲା କ'ଣ? ପ୍ରାୟ କିଛି ନୁହେଁ । ରୋମୀୟ ଜନନାୟକ ସିଜାର ସମଗ୍ର ଇଉରୋପଖଣ୍ଡ ଅଧିକାର କରି ସୁଦୂର ମିଶର ଦେଶ ପର୍ଯ୍ୟନ୍ତ ମାଡ଼ି ଆସିଥିଲେ ଏବଂ ସେଠାରୁ ପ୍ରାଚ୍ୟଖଣ୍ଡ ଉପରେ ଆଧିପତ୍ୟ ବିସ୍ତାର କରିବାର କଳ୍ପନାରେ ଅଧୀର ହୋଇ ଉଠିଥିଲେ । କିନ୍ତୁ ଏହାଦ୍ୱାରା ମାନବ ସମାଜର ଗଲା କେତେ ବା ଆସିଲା କେତେ ? ମନୁଷ୍ୟର ହିତ ସାଧନ ଉଦ୍ଦେଶ୍ୟରେ ସିଜାର କିଛି କରିଯାଇ ନାହାନ୍ତି; ବରଂ, ସୁଖ୍ୟାତି ଏବଂ ଉନ୍ନତିର ଶୀର୍ଷସୀମାରେ ସିଜାର ଯେତେବେଳେ ତଦାନୀନ୍ତନ ପାଶ୍ଚାତ୍ୟ ଖଣ୍ଡର ଶ୍ରେଷ୍ଠ ଜନନାୟକରୂପେ ସଭ୍ୟତାର ବିକାଶ ପାଇଁ କିଛି କରିପାରି ଥାଆନ୍ତେ, ସେତେବେଳେ ସେ ମିଶର ରାଜନନ୍ଦିନୀ ଅନିନ୍ଦ୍ୟସୁନ୍ଦରୀ କ୍ଲିଓପାଟ୍ରାଙ୍କ ପ୍ରଣୟ ବାସନାରେ ପାଗଳ ହୋଇ ଜୀବନର ଶ୍ରେଷ୍ଠ ସମୟଟିକୁ ନଷ୍ଟ କରି ଦେଇଥିଲେ । କାଳସ୍ରୋତରେ ସିଜାରଙ୍କର ବିଶାଳ ସାମ୍ରାଜ୍ୟ ଭାସି ଯାଇଛି, କେବଳ ଇତିହାସର ଶୁଷ୍କ ଚଡ଼ା ଉପରେ ତାହାଙ୍କର ନାମଟିଏ ପଡ଼ିରହିଛି ମାତ୍ର । ଠିକ୍ ସେହିପରି କାହିଁ ଆଜି ଚେଙ୍ଗିସ୍‌ଙ୍କର ସାମ୍ରାଜ୍ୟ, କାହିଁ ତାହାଙ୍କର ସୈନ୍ୟସେନା ଏବଂ ସିଂହାସନ ? ଚେଙ୍ଗିସ୍ ଥିଲେ ପୃଥିବୀର ସର୍ବଶ୍ରେଷ୍ଠ ଦିଗ୍‌ବିଜୟୀ । ତାହାଙ୍କର ସାମ୍ରାଜ୍ୟ ଥିଲା ପୃଥିବୀର ସବୁ ସାମ୍ରାଜ୍ୟ ମଧ୍ୟରେ ବୃହତ୍ତମ । ସୁଦୂର ସାଇବେରିଆ, ମଙ୍ଗୋଲିଆ ପାଖରୁ ଆରମ୍ଭ କରି ବିଶାଳ ଚୀନ ଏବଂ ତିବ୍ବତ ସହ ମଧ୍ୟପ୍ରାଚ୍ୟ ଓ ପୂର୍ବ ଇଉରୋପଖଣ୍ଡ ମିଶାଇ ଏ ଯେଉଁ ସୁବିରାଟ ମହାଦେଶ ଚେଙ୍ଗିସ୍ ଥିଲେ ସେ ମହାଦେଶର ଏକଚ୍ଛତ୍ର ଅଧିପତି । କିନ୍ତୁ ଏହି ମହାଦେଶୀୟ ସାମ୍ରାଜ୍ୟ ନିର୍ମିତ ହୋଇଥିଲା ଲକ୍ଷ ଲକ୍ଷ ନିହତ ମନୁଷ୍ୟର କଙ୍କାଳରାଶି ଉପରେ । ଦୟାମାୟାହୀନ,

ନିର୍ମମ ଚେଙ୍ଗିସ୍‌ଙ୍କର ଇଙ୍ଗିତ ମାତ୍ରକେ ଲକ୍ଷ ଲକ୍ଷ ମନୁଷ୍ୟର ରକ୍ତରେ ଧରା ପ୍ଲାବିତ ହେଉଥିଲା । ଆଜିସୁଦ୍ଧା ତାହାଙ୍କ ନାମ ଏସିଆବାସୀଙ୍କ ମନରେ ଆତଙ୍କ ସୃଷ୍ଟିକରେ । ଆଜିସୁଦ୍ଧା ମନୁଷ୍ୟ ଜାତି ତାହାଙ୍କୁ 'ଈଶ୍ୱରଙ୍କର ଅଭିଶାପ' ହିସାବରେ ସ୍ମରଣ କରେ । ସେଥିପାଇଁ ଚେଙ୍ଗିସ୍ ଇତିହାସରେ ଅତି ପ୍ରସିଦ୍ଧ । କିନ୍ତୁ ତାହାଙ୍କର ଏହି କୁକୀର୍ତ୍ତିମଣ୍ଡିତ ଖ୍ୟାତିସୌଧ କେବଳ ତାଙ୍କରି ଉପକାରରେ ଆସିଥିଲା ଓ ଆସିଛି, ଅନ୍ୟ କାହାରି ଉପକାରରେ ନୁହେଁ । ଚେଙ୍ଗିସ୍‌ଙ୍କର ଉପଯୁକ୍ତ ବଂଶଧର ଥିଲେ ତାଇମୁର । ଏସିଆବାସୀଙ୍କ ରକ୍ତରେ ପିପାସା ନିବାରଣ କରି ଓ ମହମ୍ମଦୀୟ ଧର୍ମର ଶ୍ରେଷ୍ଠ ପ୍ରତିନିଧି ଖାଲିଫାଙ୍କୁ ହତ୍ୟାକରି ସେ ଇତିହାସ ପ୍ରସିଦ୍ଧ । ଅନ୍ୟ କୌଣସି କାର୍ଯ୍ୟଦ୍ୱାରା ନୁହେଁ । ଅପର ଏକ ଖ୍ୟାତନାମା ନରପତି ଥିଲେ ତମୁର । ଦିଲ୍ଲୀ ରାଜପଥ ରକ୍ତ-ରଞ୍ଜିତ କରି, ଲକ୍ଷ ଲକ୍ଷ ହିନ୍ଦୁଙ୍କର ବିନାଶ ସାଧନ କରି ଏହି ଧର୍ମଦ୍ୱେଷୀ ଆକ୍ରମଣକାରୀ ରକ୍ତ-ମସୀରେ ନିଜ ନାମ ଇତିହାସ ପୃଷ୍ଠାରେ ଲେଖି ଯାଇଛନ୍ତି । କିନ୍ତୁ କେତେ ଲକ୍ଷ ଲକ୍ଷ ମନୁଷ୍ୟର ତପ୍ତଶ୍ୱାସ ଏହାଙ୍କ ଉଦ୍ଦେଶ୍ୟରେ ବାୟୁମଣ୍ଡଳ ଦୂଷିତ କରି ନ ଥିବ ! କେତେ ଅଗଣିତ ମନୁଷ୍ୟର ଅଭିଶାପ ଏହି କୁକୀର୍ତ୍ତିଶାଳୀ ନରପତିଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗିତ ହୋଇ ନ ଥିବ ! ପୃଥିବୀର ଅନ୍ୟତମ ସୁବିଖ୍ୟାତ ସମ୍ରାଟ ହେଉଛନ୍ତି ଇଉରୋପ-ବିଜୟୀ ନେପୋଲିୟନ । ଫରାସୀ ରାଷ୍ଟ୍ର ବିପ୍ଳବର ଜାରଜ ସନ୍ତାନରୂପେ ଆବିର୍ଭୂତ ହୋଇ ନେପୋଲିୟନ ଉତ୍ତରମେରୁ ସୀମାରୁ ମିଶର ଦେଶ ପର୍ଯ୍ୟନ୍ତ ଏବଂ ମସ୍କୋଠାରୁ ମ୍ୟାଡ୍ରିଡ ପର୍ଯ୍ୟନ୍ତ ଏହି ବିଶାଳ ଭୂ-ଖଣ୍ଡ ଉପରେ ନିଜର ଆଧିପତ୍ୟ ବିସ୍ତାର କରିଥିଲେ । କିନ୍ତୁ ଏହାହିଁ କ'ଣ ମାନବ ଜାତିକୁ ତାଙ୍କର ଦାନ ? ମନୁଷ୍ୟ ଜାତି କ'ଣ ତା'ର ରାଜାମାନଙ୍କ ପାଖରୁ କେବଳ ରାଜ୍ୟ ବିସ୍ତାର ବ୍ୟତୀତ ଅପର କିଛି ଆଶା କରେ ନା ? ଫରାସୀ ରାଷ୍ଟ୍ର ବିପ୍ଳବର ମୂଳମନ୍ତ୍ର ଉପରେ ଯେତେବେଳେ ଗଣତନ୍ତ୍ର ପ୍ରତିଷ୍ଠିତ ହେବାକୁ ଯାଉଥିଲା ସେତେବେଳେ ନେପୋଲିୟନ ସେହି ବିପ୍ଳବର ସନ୍ତାନ ହୋଇସୁଦ୍ଧା ଜନମତର ଧ୍ୱଂସ ସାଧନ କରି ଇଉରୋପ-ଖଣ୍ଡରେ ସୈର ଶାସନର ପ୍ରତିଷ୍ଠା କରିଥିଲେ । ଏହାଦ୍ୱାରା ଇତିହାସ ବକ୍ଷରେ ନେପୋଲିୟନ ଅମର ହୋଇଗଲେ ସତ୍ୟ, କିନ୍ତୁ ମନୁଷ୍ୟର ପ୍ରଗତି ପଥରେ ସେ ଯେଉଁ ବାଧା ସୃଷ୍ଟି କରିଥିଲେ ସେଥିପାଇଁ ସେ କେତେଦୂର କ୍ଷମଣୀୟ ?

ଆଲେକ୍‌ଜାଣ୍ଡାର, ସିଜାର, ଚେଙ୍ଗିସ୍, ନେପୋଲିୟନ ହେଉଛନ୍ତି ପୃଥିବୀର ରାଜନ୍ୟମଣ୍ଡଳୀ ମଧ୍ୟରେ ଅତି ପ୍ରସିଦ୍ଧ । ସେମାନଙ୍କ କିମ୍ବଦନ୍ତୀ ସେହିମାନଙ୍କ ଭଳି

ଅସଂଖ୍ୟ ଦିଗ୍‌ବିଜୟୀ, ମହାବୀର, ଯୋଦ୍ଧା ନରପତି ଇତିହାସର ଅଙ୍ଗ ପୁଷ୍ଟି କରିଛନ୍ତି । ଉଣା ଅଧିକ ସେମାନେ ମଧ୍ୟ କୀର୍ତ୍ତିମାନ ଏବଂ ତେଣୁ ପ୍ରସିଦ୍ଧ । ଇତିହାସର ଏହି ପ୍ରସିଦ୍ଧ ରାଜାମାନେ, ବିଶେଷତଃ ସିକନ୍ଦର, ସିଜାର, ଚେଙ୍ଗିସ୍, ନେପୋଲିୟନ ପ୍ରଭୃତି ଅତି ପ୍ରସିଦ୍ଧ ରାଜାମାନେ, ପ୍ରକୃତରେ ମନୁଷ୍ୟଜାତିର ସ୍ମରଣୀୟ । କିନ୍ତୁ ସେମାନଙ୍କ ମଧ୍ୟରୁ ନରପତି ସମାଜର ସର୍ବୋଚ୍ଚ ସ୍ଥାନ ଦିଆଯିବ କାହାକୁ ? ମାନବ ସମାଜ ସେମାନଙ୍କ ମଧ୍ୟରୁ ପ୍ରାତଃ ସ୍ମରଣୀୟ ରୂପେ ଯୁଗ ଯୁଗବ୍ୟାପୀ ମନେ କରୁଥିବ କାହାକୁ ? କାହାକୁ ମନୁଷ୍ୟଜାତିର ଆଦର୍ଶରୂପେ ଇତିହାସ ଚିରଦିନ ଧରି ପୂଜା କରୁଥିବ ? ଯେଉଁମାନେ ରକ୍ତରଞ୍ଜିତ ହସ୍ତରେ କେବଳ ନିଜ ନିଜର ଶକ୍ତି ସଞ୍ଚୟ ପାଇଁ ସମସ୍ତ ଜୀବନ ବ୍ୟୟ କରିଯାଇଛନ୍ତି ଏବଂ ମନୁଷ୍ୟ ସମାଜର ଦୁଃଖ କ୍ଲେଶ ମୂଲ୍ୟରେ ଇତିହାସରେ ନିଜର ନାମ କ୍ରୟ କରି ଯାଇଛନ୍ତି ସେମାନଙ୍କ ମଧ୍ୟରୁ ମନୁଷ୍ୟଜାତିର ଆଦର୍ଶ ହେବାପାଇଁ କିମ୍ବା ନରପତି ସମାଜ ମଧ୍ୟରେ ସର୍ବଶ୍ରେଷ୍ଠ ଆସନ ଗ୍ରହଣ କରିବା ପାଇଁ କେହିହେଲେ ଉପଯୁକ୍ତ ନୁହନ୍ତି । ସେ ସମ୍ମାନର ଅଧିକାରୀ ହେବା-ପାଇଁ ଉପଯୁକ୍ତ ସେହି ନରପତି ଯିଏ ନିଜ ଶକ୍ତିର ଶୀର୍ଷ ସୀମାରେ ମନୁଷ୍ୟଜାତିର ହିତ ସାଧନ ପାଇଁ, ମାନବ ସଭ୍ୟତାର ଉନ୍ନତି ପାଇଁ ନିଜର ଜୀବନ ଉତ୍ସର୍ଗ କରି ଯାଇଛନ୍ତି । ପୃଥିବୀ ପୃଷ୍ଠରେ ଏପରି ରାଜାମାନଙ୍କ ସଂଖ୍ୟା ଅତ୍ୟନ୍ତ ବିରଳ ଯେଉଁମାନେ ରାଜା ହୋଇ ପ୍ରଜାର ଦୁଃଖରେ କାତର ହୋଇଛନ୍ତି, ନରପତି ହୋଇ ସେ ନାମର ସାର୍ଥକତା ପାଇଁ ନର ସମାଜର ସମୂହ କଲ୍ୟାଣାର୍ଥେ ସଦା ଚେଷ୍ଟିତ ହୋଇଛନ୍ତି ଏବଂ ଶେଷରେ କୃତକାର୍ଯ୍ୟ ହୋଇ ସଂସାରରୁ ବିଦାୟ ନେଇଛନ୍ତି । ଏହି ମୁଷ୍ଟିମେୟ ପୁଣ୍ୟଶ୍ଳୋକ ପବିତ୍ର ରାଜାମାନଙ୍କ ମଧ୍ୟରେ ଦେବାନାଂ ପ୍ରିୟ ପ୍ରିୟଦର୍ଶୀ ରାଜା ଅଶୋକ ସର୍ବାଗ୍ରଗଣ୍ୟ ।

ଅଶୋକ ଚେଙ୍ଗିସ୍‌ଙ୍କ ପରି ପୃଥିବୀର ବିଶାଳତମ ସାମ୍ରାଜ୍ୟ ଉପରେ ସମ୍ରାଟ ହୋଇ ନ ଥିଲେ, ସିକନ୍ଦରଙ୍କ ପରି ବହୁଯୁଦ୍ଧରେ ବିଜୟୀ ହୋଇ ନ ଥିଲେ, ସିଜାରଙ୍କ ପରି ମିଶର ବିଜୟ କରି ନ ଥିଲେ କିମ୍ବା ନେପୋଲିୟନଙ୍କ ପରି ଅସାଧାରଣ ସୈନିକ ନ ଥିଲେ । ସେ ଥିଲେ କେବଳ ମାତ୍ର ଭାରତର ସମ୍ରାଟ ଏବଂ ଜୀବନରେ ଜୟ କରିଥିଲେ ମାତ୍ର ଗୋଟିଏ ଯୁଦ୍ଧ । ସୁତରାଂ ସେହି ଦିଗ୍‌ବିଜୟୀ ଚେଙ୍ଗିସ୍, ସିକନ୍ଦର ପ୍ରଭୃତି ସମ୍ରାଟମାନଙ୍କର ସାମ୍ରାଜ୍ୟ ଓ ଯୁଦ୍ଧ ସଂଖ୍ୟା ଦୃଷ୍ଟିରୁ ଅଶୋକ ସେମାନଙ୍କର ସମକକ୍ଷ ହୋଇ ନ ପାରନ୍ତି, କାରଣ ସେମାନଙ୍କ ସାମ୍ରାଜ୍ୟ

ସୀମା ଅପେକ୍ଷା ଅଶୋକଙ୍କର ସାମ୍ରାଜ୍ୟ ଥିଲା ଅପେକ୍ଷାକୃତ କ୍ଷୁଦ୍ର ଏବଂ ସେମାନଙ୍କ ବିଜୟ ସଂଖ୍ୟା ତୁଳନାରେ ଅଶୋକଙ୍କର ବିଜୟ ସଂଖ୍ୟା ଥିଲା ନଗଣ୍ୟ । କିନ୍ତୁ ସାମ୍ରାଜ୍ୟସୀମା ଓ ଯୁଦ୍ଧ ସଂଖ୍ୟା ପ୍ରଭୃତି ମହତ୍ତ୍ୱ କିମ୍ବା ଶ୍ରେଷ୍ଠତ୍ୱର ମାପକାଠି ନୁହେଁ । କାଳଗର୍ଭରେ ଚେଙ୍ଗିସ୍‌ଙ୍କର ବିଶାଳ ସାମ୍ରାଜ୍ୟ କ୍ଷୁଦ୍ର ଭୂଖଣ୍ଡବତ୍ ମିଳେଇ ଯାଇଛି, ସିକନ୍ଦରଙ୍କର ଗ୍ରୀସ୍ ଏବଂ ସିଜାରଙ୍କର ରୋମ୍ ସାମ୍ରାଜ୍ୟ ସ୍ୱପ୍ନପରି ଉଭେଇ ଯାଇଛି, ଏପରିକି ନେପୋଲିୟନଙ୍କ ସାମ୍ରାଜ୍ୟ ତାହାଙ୍କ ଜୀବଦ୍ଦଶାରେ ବିଲୟ ଭଜିଛି, ଏବଂ ଅଶୋକଙ୍କର ମୌର୍ଯ୍ୟ ସାମ୍ରାଜ୍ୟ ମଧ୍ୟ ତାହାଙ୍କ ମୃତ୍ୟୁ ସଙ୍ଗେ ସଙ୍ଗେ ଭାଙ୍ଗି ପଡ଼ିଛି । ଏହିପରି ପୃଥିବୀର ସମସ୍ତ ଦିଗ୍‌ବିଜୟୀ ଓ ସାମ୍ରାଜ୍ୟ-ସ୍ଥାପୟିତାଙ୍କର ଶୋଣିତ ଅସିଧାରରେ ପ୍ରତିଷ୍ଠିତ ସାମ୍ରାଜ୍ୟମାନ କ୍ଷଣିକର ବୁଦ୍‌ବୁଦପରି ଧରାପୃଷ୍ଠରୁ ଲୁପ୍ତ ହୋଇ ଯାଇଛି । ସୁତରାଂ ଯୁଦ୍ଧ, ରାଜ୍ୟଜୟ ଏବଂ ସାମ୍ରାଜ୍ୟ-ସ୍ଥାପନ, ଏହା ରାଜାମାନଙ୍କର ଚିରସ୍ଥାୟୀ କୃତିତ୍ୱ ନୁହେଁ, ଏହା କ୍ଷଣିକର ପ୍ରଳାପ-ମାତ୍ର । ଅପର ଦିଗରେ ଅଶୋକ ଯେଉଁ ସୁବିଶାଳ ଧର୍ମ-ସାମ୍ରାଜ୍ୟ ସ୍ଥାପନ କରି ସାମ୍ୟ, ମୈତ୍ରୀ ଏବଂ ପ୍ରୀତି ଡୋରିରେ ସମଗ୍ର ଏସିଆବାସୀଙ୍କୁ ବାନ୍ଧି ଦେଇ ଯାଇଛନ୍ତି ତାହାଙ୍କର ସେ ଧର୍ମରାଜ୍ୟ ଚିରନ୍ତନ ଏବଂ ତାହାଙ୍କର ସେ ବନ୍ଧନ ଅମର । ଅଶୋକଙ୍କ ମୌର୍ଯ୍ୟ ସାମ୍ରାଜ୍ୟ ଆଜି ଅତୀତର ଏକ ସ୍ୱପ୍ନରେ ପରିଣତ ହୋଇଛି, କାରଣ ସେ ସାମ୍ରାଜ୍ୟର ମୂଳଦୂଆ ଥିଲା ହିଂସାର ତରବାରୀରେ ସାମ୍ରାଜ୍ୟ ସ୍ଥାପନ । କିନ୍ତୁ ଅହିଂସାର ପବିତ୍ର ମନ୍ତ୍ରରେ ସେହି ଅଶୋକ ତାହାଙ୍କର ନୂତନ ଯେଉଁ ସାମ୍ରାଜ୍ୟ ସୃଷ୍ଟି କରିଗଲେ ସେ ସାମ୍ରାଜ୍ୟ ପୃଥିବୀରେ ଲୋପ ପାଇବାର ନୁହେଁ । ରାଜା ହୋଇ ପୃଥିବୀରେ ଯେଉଁ ଧର୍ମପ୍ରଚାର ଏବଂ ସେହି ଧର୍ମକୁ ଡୋରିକରି ତାହାଙ୍କର ଯେଉଁ ସୁଦୃଢ଼ ସାମ୍ରାଜ୍ୟ ଗଠନ ସେହିଠାରେହିଁ ଅଶୋକଙ୍କର ବିଶେଷତ୍ୱ । ମାନବ ଇତିହାସରେ ଅପର କୌଣସି ରାଜା ଏହା କରି ପାରି ନାହାନ୍ତି ଯାହା ଅଶୋକ କରିଯାଇଛନ୍ତି । ଚେଙ୍ଗିସ୍, ସିକନ୍ଦର ପ୍ରଭୃତି ନରପତିମାନଙ୍କର ସୈନ୍ୟବାହିନୀ ପୃଥିବୀ ପୃଷ୍ଠରେ ହିଂସା ଏବଂ ଧ୍ୱଂସର ତାଣ୍ଡବଲୀଳା ସୃଷ୍ଟି କରିଛନ୍ତି ; ଅଶୋକଙ୍କର ବୌଦ୍ଧ ଭିକ୍ଷୁମାନେ ସେହି ପୃଥିବୀ ପୃଷ୍ଠରେ ଅହିଂସା ମନ୍ତ୍ର ଉଚ୍ଚାରଣ କରି ମାନବ ଜାତି ପ୍ରାଣରେ ଶାନ୍ତି ଆଣିଛନ୍ତି । ଯେତେବେଳେ ଅପର ରାଜାମାନଙ୍କର ରାଜଦୂତମାନେ କୂଟନୀତିଦ୍ୱାରା ଦେଶ ବିଦେଶର ରାଜନଗରୀମାନଙ୍କରେ ଆତଙ୍କ ସୃଷ୍ଟି କରିଛନ୍ତି, ସେତେବେଳେ ଅଶୋକଙ୍କର ଧର୍ମଦୂତମାନେ ମୈତ୍ରୀଭାବ ପ୍ରଚାର କରି ସବଳ ଓ ଦୁର୍ବଳଙ୍କୁ ବନ୍ଧୁତାସୂତ୍ରରେ ଆବଦ୍ଧ କରିଛନ୍ତି । ପ୍ରେମ

ନଗରୀରୁ ସୈନ୍ୟଚାଳନା କରି ସିଜାର ଭୂମଧ୍ୟ ସାଗର ସେପାରି ସୁଦୂର ମିଶରଖଣ୍ଡ ଅଧିକାର କରିଥିଲେ ; ଅଶୋକ ମଧ୍ୟ ମଗଧପୁରୀ ପାଟଳିପୁତ୍ରରୁ ସୈନ୍ୟଚାଳନା କରି ସାଗର ବେଷ୍ଟିତ ସୁଦୂର ସିଂହଳ ଅଧିକାର କରି ଥାଆନ୍ତେ । କିନ୍ତୁ ସିଂହଳ ସୈକତ ଉପରେ ଅଶୋକଙ୍କ ସେନାପତିମାନଙ୍କର ପଦାଙ୍କ ପଡ଼ି ନାହିଁ, ପଡ଼ିଛି ଭିକ୍ଷୁବେଶୀ ତାହାଙ୍କର ପୁତ୍ର ମହେନ୍ଦ୍ର ଓ କନ୍ୟା ସଂଘମିତ୍ରାଙ୍କର ପଦଚିହ୍ନ । ସେଥିପାଇଁ ଦୁଇ ସହସ୍ର ବର୍ଷପରେ ଆଜିସୁଦ୍ଧା ସିଂହଳ ଅଶୋକଙ୍କ ବିଶାଳ ଧର୍ମ-ସାମ୍ରାଜ୍ୟର ଏକ ଅଂଶରୂପେ ରହିଛି ଏବଂ ଚିରକାଳ ମଧ୍ୟ ରହିବ । ଅଥଚ କାହିଁ ଗଲା ମିଶର ଉପରେ ସିଜାରଙ୍କର ସେହି ସୁପ୍ରତିଷ୍ଠିତ ରାଜନୈତିକ ପ୍ରଭାବ ? ଠିକ୍ ସେହିପରି କାହିଁ ଗଲା ସମ୍ରାଟ ଚେଙ୍ଗିସ୍‌ଙ୍କର ସୁବିଶାଳ ଚୀନ ସାମ୍ରାଜ୍ୟ ? ଅଥଚ ଆଜିସୁଦ୍ଧା ଯୁଗଯୁଗବ୍ୟାପୀ ସେହି ଚୀନ ଭୂଖଣ୍ଡର ଅଗଣିତ ମନୁଷ୍ୟ ଅଶୋକଙ୍କ ବୌଦ୍ଧ ସାମ୍ରାଜ୍ୟର ଅଧିବାସୀ । ହିଂସା ପ୍ରଣୋଦିତ ତରବାରିର ଜୟ ଜୟ ନୁହେଁ, ପ୍ରେମର ଜୟହିଁ ପ୍ରକୃତ ଜୟ । ଏହା କେବଳ ପ୍ରିୟଦର୍ଶୀ ଅଶୋକହିଁ ଉପଲବ୍ଧି କରିଥିଲେ ଏବଂ ଏହି ମନ୍ତ୍ରକୁ କେନ୍ଦ୍ରକରି ସେ ପୃଥିବୀ ପୃଷ୍ଠରେ ତାହାଙ୍କର ପ୍ରେମର ସାମ୍ରାଜ୍ୟ ନିର୍ମାଣ କରିଯାଇଥିଲେ । ଆଜି ଅଶୋକ ନାହାନ୍ତି କିନ୍ତୁ ତାହାଙ୍କର ଧର୍ମ-ସାମ୍ରାଜ୍ୟ ରହିଛି । ଏ ସାମ୍ରାଜ୍ୟ ଶାଣିତ ତରବାରି-ମୁନରେ ଶାସିତ ହୋଇ ନାହିଁ ; ଶାସିତ ହୋଇଛି ଅହିଂସା ଓ ଧର୍ମ ନୀତିରେ । ଏହିପରି ଏକ ଅଭିନବ ସାମ୍ରାଜ୍ୟ ସୃଷ୍ଟି କରିଥିବା ପାଇଁ ଅଶୋକ ପୃଥିବୀ ଇତିହାସରେ ଅଦ୍ୱିତୀୟ ଏବଂ ମାନବର ହିତାର୍ଥେ ନିଜର ଜୀବନ ଉତ୍ସର୍ଗ କରିଥିବା ପାଇଁ ସେ ପୃଥିବୀର ରାଜନ୍ୟ ପରିବାରରେ ସର୍ବଶ୍ରେଷ୍ଠ ।

କିନ୍ତୁ କେଉଁ କାରଣ ପାଇଁ ସମ୍ରାଟ ଅଶୋକଙ୍କର ଏହି ବିଶେଷତ୍ୱ ? ଯେତେବେଳେ ପୃଥିବୀର ଶତ ସହସ୍ର ରାଜା ସମ୍ରାଟ ହିଂସାପ୍ରଣୋଦିତ ତରବାରି ବଳରେ ମାନବ ଜାତିକୁ ଶାସନ କରିଗଲେ ସେତେବେଳେ ଅଶୋକ ବା କାହିଁକି ସେହି ରାଜାମାନଙ୍କ ମଧ୍ୟରେ ଅନ୍ୟତମ ହୋଇସୁଦ୍ଧା ଗତାନୁଗତିକ ରାଜପନ୍ଥା ଅନୁସରଣ ନ କରି ଅହିଂସା ପଥରେ ପୃଥିବୀକୁ ନୂତନ ଆଲୋକ ଦାନ କରିଗଲେ ? କେଉଁ ଘଟଣା କିମ୍ବା କେଉଁ ଜାତି ପାଇଁ ଅଶୋକଙ୍କୁ ହିଂସାପ୍ରଣୋଦିତ ତରବାରି ପରିତ୍ୟାଗପୂର୍ବକ 'ଅହିଂସା ପରମୋ ଧର୍ମ' ବୋଲି ମାନବ ଜାତି ଆଗରେ ଘୋଷଣା କରିବାକୁ ପଡ଼ିଲା ? ଇତିହାସ ଦୃଢ଼ଭାବରେ ଘୋଷଣା କରି ଆସିଛି ଏବଂ ଆସୁଛି

ଯେ ଅଶୋକଙ୍କର ଏହି ଅଲୌକିକ ପରିବର୍ତ୍ତନ ପାଇଁ ଦାୟୀ କଳିଙ୍ଗ ଦେଶ ଏବଂ ସେ ଦେଶର ଅଗଣିତ ନରନାରୀ । କଳିଙ୍ଗ ମାଟିରେ ସମ୍ରାଟ ଅଶୋକ ମାନବିକତାର ମହାମନ୍ତ୍ର ଗ୍ରହଣ କରି ଧର୍ମପ୍ରଚାରକ ରୂପେ ପୃଥିବୀ ଆଗରେ ଦଣ୍ଡାୟମାନ ହେବାକୁ ସମର୍ଥ ହୋଇଥିଲେ । ଅଶୋକଙ୍କୁ ଦୀକ୍ଷା ପ୍ରଦାନ କରି କଳିଙ୍ଗ ଧନ୍ୟ, କାରଣ ସେହି ଦୀକ୍ଷାରେ ଅଶୋକ ପୃଥିବୀକୁ ଦୀକ୍ଷିତ କରି ଆଜି ପୃଥିବୀର ସର୍ବଶ୍ରେଷ୍ଠ ନରପତି ଏବଂ ମାନବଜାତିର ବରେଣ୍ୟ । କିପରି଼ଭାବରେ କଳିଙ୍ଗ ଅଶୋକଙ୍କ ଉପରେ ଏପରି ଅଦ୍ଵିତୀୟ ପ୍ରଭାବ ବିସ୍ତାର କରିପାରିଲା ତାହାର ସଂକ୍ଷିପ୍ତ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।

ଅଶୋକଙ୍କ ସହିତ କଳିଙ୍ଗର ରାଜନୈତିକ କିମ୍ବା ଧର୍ମଗତ ସମ୍ପର୍କ ବିଷୟରେ ଆଲୋଚନା କରିବା ପୂର୍ବରୁ ଭାରତୀୟ ରାଜନୈତିକ କ୍ଷେତ୍ରରେ ପ୍ରାଚୀନ କଳିଙ୍ଗର ସ୍ଥାନ କ'ଣ ଥିଲା ସେ ସମ୍ପର୍କରେ ଅଳ୍ପ କିଛି କହି ରଖିବା ଆବଶ୍ୟକ । କଳିଙ୍ଗ ପ୍ରାଗ୍ଐତିହାସିକ ଯୁଗର କୁହେଳିକା ମଧ୍ୟରୁ ରାଜନୈତିକ ଇତିହାସର ଉଜ୍ଜ୍ୱଳ ଦିବାଲୋକକୁ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ପ୍ରବେଶ କରିଥିଲା । ସେତେବେଳେ ଉତ୍ତର ଭାରତରେ ପ୍ରତାପଶାଳୀ ନନ୍ଦ ସମ୍ରାଟମାନଙ୍କର ରାଜତ୍ୱକାଳ । ମଗଧକୁ କେନ୍ଦ୍ରକରି ଭାରତଖଣ୍ଡରେ ଏକ ବିରାଟ, ଶକ୍ତିଶାଳୀ ସାମ୍ରାଜ୍ୟଗଠନ କରିବା ପାଇଁ ଏକ ସମ୍ୟକ ଚେଷ୍ଟା ଏତେବେଳକୁ ଖୁବ ଦୃଢଗତିରେ ଚାଲିଥାଏ । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ଯେତେବେଳେ ଗୌତମ ବୁଦ୍ଧ ଭାରତରେ ସାମାଜିକ ବିପ୍ଳବ ସୃଷ୍ଟି କରୁଥାଆନ୍ତି ଠିକ୍ ସେହିକବେଳେ ଭାରତବର୍ଷରେ ଏକ ରାଜନୈତିକ ଆନ୍ଦୋଳନର ସୂତ୍ରପାତ ମଧ୍ୟ ଚାଲିଥାଏ । ଏହି ରାଜନୈତିକ ଆନ୍ଦୋଳନ ହେଉଛି ଭାରତରେ ଏକ ସୁଦୃଢ଼, ଶକ୍ତିଶାଳୀ ସାମ୍ରାଜ୍ୟ ଗଠନ କରିବା ପାଇଁ ଉଦ୍ୟୋଗ । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀ ପାଖରୁ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀ ପର୍ଯ୍ୟନ୍ତ ଏହି ଦୁଇଶତ ବର୍ଷ ମଧ୍ୟରେ ଏ ଆନ୍ଦୋଳନ ଅନେକ ମାତ୍ରାରେ ଆଗେଇ ଯାଇଥିଲା । ମଗଧରେ ନନ୍ଦ ରାଜତ୍ୱ ଆରମ୍ଭବେଳକୁ ଉତ୍ତରାପଥରେ ଏକଚ୍ଛତ୍ର ସାମ୍ରାଜ୍ୟ ଗଠନ ପାଇଁ ସମ୍ଭୂହ ଚେଷ୍ଟା ଏକ ରାଜନୈତିକ ନିୟମରେ ପରିଣତ ହୋଇ ଯାଇଥିଲା । ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ପ୍ରଥମ ନନ୍ଦ ସମ୍ରାଟ ମହାପଦ୍ମନନ୍ଦ ଉତ୍ତର ଭାରତରେ ଏକ ଶକ୍ତିଶାଳୀ ସାମ୍ରାଜ୍ୟ ସୁପ୍ରତିଷ୍ଠିତ କରିଥିଲେ । ଏହାଙ୍କ ରାଜତ୍ୱକାଳରେ ମଗଧୀୟ ସାମ୍ରାଜ୍ୟବାଦ ଉତ୍ତରରୁ ଦକ୍ଷିଣକୁ ପ୍ରସାର ଲାଭ କରିଥିବାର ଅନୁମାନ କରାଯାଏ ।

ନନ୍ଦ ସାମ୍ରାଜ୍ୟର ସାମ୍ରାଜ୍ୟକାଳରେ ଯେତେବେଳେ ଦିଗ୍‌ବିଜୟୀ ଆଲେକ୍‌ଜାଣ୍ଡାର ଏବଂ ତାହାଙ୍କ ସହିତ ଆସିଥିବା ଗ୍ରୀକ୍ ଐତିହାସିକମାନେ ପଞ୍ଚନଦ କୂଳରେ ଦଣ୍ଡାୟମାନ ହୋଇ ନନ୍ଦ ସାମ୍ରାଜ୍ୟର ସମୃଦ୍ଧି ପ୍ରତି ଦୃଷ୍ଟି ଦେଉଥିଲେ ସେତେବେଳେ ସେମାନେ ଦେଖିପାରୁଥିଲେ ଯେ ବିତସ୍ତା ନଦୀର ପୂର୍ବତଟରୁ ବହୁଦୂର ପର୍ଯ୍ୟନ୍ତ ପୂର୍ବାଭିମୁଖୀଭାବରେ ନନ୍ଦ ସାମ୍ରାଜ୍ୟ ବିସ୍ତୃତ ଲାଭ କରିଅଛି । ଏ ସାମ୍ରାଜ୍ୟର ରାଜଧାନୀ ଥିଲା ପାଟଳିପୁତ୍ର ଏବଂ ଏହି ସୁବିସ୍ତୃତ ସାମ୍ରାଜ୍ୟର ସୃଷ୍ଟିକର୍ତ୍ତା ଥିଲେ ସ୍ୱୟଂ ମହାପଦ୍ମନନ୍ଦ । ଦକ୍ଷିଣରେ ଏହାଙ୍କ ସାମ୍ରାଜ୍ୟ କେତେଦୂର ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା ସେ ସମ୍ବନ୍ଧରେ ନିର୍ଭୁଲଭାବରେ କିଛି କହି ହେବ ନାହିଁ । କିନ୍ତୁ ଦକ୍ଷିଣରେ କଳିଙ୍ଗ ରାଷ୍ଟ୍ର ଯେ ନନ୍ଦ ରାଜତ୍ୱ ଅଧୀନରେ ଆସିଥିଲା ସେ ବିଷୟର ଆଭାସ ହାତୀଗୁମ୍ଫା ଶୈଳପ୍ରଶସ୍ତିରୁ ମିଳୁଛି । ଉକ୍ତ ପ୍ରଶସ୍ତିରୁ ଜାଣିବାକୁ ମିଳେ ଯେ ନନ୍ଦରାଜ କଳିଙ୍ଗରେ ଗୋଟିଏ କେନାଲ ଖୋଳାଇ ଥିଲେ ଏବଂ କଳିଙ୍ଗର ଜୀନ ମୂର୍ତ୍ତିକୁ ଅପହରଣ କରି ନେଇଯାଇଥିଲେ । ଏହି ଦୁଇ ଘଟଣାରୁ ଏହା ଅନୁମେୟ ଯେ ନନ୍ଦମାନଙ୍କ ସହ କଳିଙ୍ଗର ସମ୍ପର୍କ ଥିଲା ଏବଂ ହୁଏତ ଏହି ସମ୍ପର୍କ ରାଜନୈତିକ । କେତେକ ଐତିହାସିକଙ୍କ ମତରେ ମହାପଦ୍ମନନ୍ଦହିଁ କଳିଙ୍ଗ ଅଧିକାର କରିଥିବା ସମ୍ଭବପର । କାରଣ ନନ୍ଦମାନଙ୍କ ମଧ୍ୟରେ ସେହି ଥିଲେ ସବୁଠାରୁ ଶକ୍ତିଶାଳୀ ଏବଂ ପ୍ରତାପୀ । ପୁରାଣମାନଙ୍କରେ ତାହାଙ୍କୁ 'ସର୍ବକ୍ଷତ୍ରାନ୍ତକ' ବୋଲି ଆଖ୍ୟାତ କରାଯାଇଛି । ହୁଏତ ସେ ଉତ୍ତର ଭାରତର କ୍ଷତ୍ରିୟ ରାଜ୍ୟମାନଙ୍କର ଧ୍ୱଂସସାଧନ କରି ଶେଷରେ କଳିଙ୍ଗର କ୍ଷତ୍ରିୟ ରାଜବଂଶ ମଧ୍ୟ ଲୋପ କରିଥିଲେ । କିନ୍ତୁ କଳିଙ୍ଗ ନନ୍ଦରାଜତ୍ୱ ଅଧୀନରେ ଆସି ଥାଉ ବା ନ ଥାଉ ନନ୍ଦରାଜତ୍ୱ ଆଗରୁ କଳିଙ୍ଗ ଯେ ଏକ ଶକ୍ତିଶାଳୀ ରାଷ୍ଟ୍ର ଥିଲା ଏଥିରେ ସନ୍ଦେହ ନାହିଁ । କାରଣ ନନ୍ଦ ସାମ୍ରାଜ୍ୟବାଦ କଳିଙ୍ଗ ଆକ୍ରମଣ କରିବା ପୂର୍ବରୁ ଏକ ସହସ୍ର ବର୍ଷରୁ ଊର୍ଦ୍ଧ୍ୱକାଳବ୍ୟାପୀ କଳିଙ୍ଗରେ ଏକ ପ୍ରତାପଶାଳୀ ରାଜବଂଶ ରାଜତ୍ୱ କରୁଥିଲେ । ପୌରାଣିକ ବର୍ଣ୍ଣନାନୁଯାୟୀ ଏହି ରାଜବଂଶରେ ଏକାଦିକ୍ରମେ ବତିଶ ଜଣ ରାଜା ଜନ୍ମଗ୍ରହଣ କରିଥିଲେ ଏବଂ କ୍ରମାନ୍ୱୟ ଭାବରେ କଳିଙ୍ଗ ଶାସନ କରିଥିଲେ । ଦୀର୍ଘ ଏକ ସହସ୍ର ବର୍ଷରୁ ଊର୍ଦ୍ଧ୍ୱକାଳବ୍ୟାପୀ ଏକ ନିରବଚ୍ଛିନ୍ନ ରାଜବଂଶର ରାଜତ୍ୱ ପ୍ରମାଣ କରେ ଯେ କଳିଙ୍ଗ ଏକ ଶକ୍ତିଶାଳୀ ରାଷ୍ଟ୍ର ଥିଲା । ବହୁବିଧ ପୌରାଣିକ ବର୍ଣ୍ଣନା ରହିଛି ଯେଉଁଥିରୁ କଳିଙ୍ଗର ପ୍ରାଚୀନ ସମୃଦ୍ଧି ବିଷୟର ଆଭାସ ମିଳେ । ଏପରି ଏକ ଶକ୍ତିଶାଳୀ ରାଜ୍ୟ ବିରୁଦ୍ଧରେ ମହାପଦ୍ମନନ୍ଦ ଅଭିଯାନ ଚଳାଇ ପାରି ଥାଆନ୍ତି, କିନ୍ତୁ ଏ ଅଭିଯାନ ଫଳରେ କଳିଙ୍ଗର ସମୃଦ୍ଧି ଓ

ଶକ୍ତି ବିଶେଷଭାବରେ ଆଘାତ ନ ପାଇଥିବା ସମ୍ଭବ । କାରଣ ମହାପଦ୍ମନନ୍ଦଙ୍କର ମୃତ୍ୟୁ ସଙ୍ଗେ ସଙ୍ଗେ କିମ୍ବା ନନ୍ଦରାଜତ୍ୱର ଅବସାନ ମାତ୍ରେ କଳିଙ୍ଗ ପୁନର୍ବାର ସ୍ୱାଧୀନ ହୋଇ ପାରିଥିଲା ଏବଂ ନିଜର ଶକ୍ତି ସାମର୍ଥ୍ୟର ଯଥେଷ୍ଟ ପରିଚୟ ଦେଇ ପାରିଥିଲା । ନନ୍ଦମାନଙ୍କ ସହ କଳିଙ୍ଗର ନିଶ୍ଚୟ କିଛି ସମ୍ବନ୍ଧ ଥିଲା ଏଥିରେ ସନ୍ଦେହ ନାହିଁ । କାରଣ ସେ ସମ୍ବନ୍ଧର ମୂକସାକ୍ଷୀରୂପେ ଅଙ୍କସୂଚୀ ହାତୀଗୁମ୍ଫା ଦଣ୍ଡାୟମାନ ରହିଛି । ତୃତୀୟ ନନ୍ଦ ସମ୍ରାଟମାନଙ୍କ ଅଧୀନରେ କଳିଙ୍ଗକୁ କିଛିକାଳ ରହିବାକୁ ପଡ଼ିଥିଲା । କିନ୍ତୁ ଏହାଦ୍ୱାରା କଳିଙ୍ଗଖଣ୍ଡରେ ମଗଧର ସମ୍ୟକ୍ ପ୍ରତିପତ୍ତି ଏବଂ ସୁଦୃଢ଼ ଶାସନତନ୍ତ୍ର ପ୍ରତିଷ୍ଠିତ ହୋଇ ପାରି ନ ଥିଲା । ତା ଯଦି ହୋଇ ଥାଆନ୍ତା ତେବେ ମାତ୍ର ଅଳ୍ପସମୟ ପରେ କଳିଙ୍ଗ ନିଜର ସ୍ୱାଧୀନତା ଘୋଷଣାପୂର୍ବକ ଭାରତଖଣ୍ଡରେ ଏକ ମହାଶକ୍ତି ରୂପେ ପରିଗଣିତ ହୋଇ ପାରି ନ ଥାନ୍ତା ।

ସେ ଯାହାହେଉ କଳିଙ୍ଗ ରାଷ୍ଟ୍ରର ବାସ୍ତବ ଶକ୍ତିର ପରିଚୟ ମିଳିଲା ନନ୍ଦରାଜତ୍ୱର ଅବସାନ ପରେ ଏବଂ ମୌର୍ଯ୍ୟମାନଙ୍କ ଅମଳରେ । ଖ୍ରୀଷ୍ଟପୂର୍ବ ୩୨୪ ସାଲରେ ଶେଷ ନନ୍ଦସମ୍ରାଟଙ୍କୁ ହତ୍ୟାକରି ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ତାହାଙ୍କର କୂଟଚକ୍ରୀ ମନ୍ତ୍ରୀ ଚାଣକ୍ୟଙ୍କ ସାହାଯ୍ୟରେ ମଗଧରେ ମୌର୍ଯ୍ୟ ସାମ୍ରାଜ୍ୟର ମୂଳଭିତ୍ତି ସ୍ଥାପନ କଲେ । ଏ ଘଟଣାର ଠିକ ବର୍ଷକ ପରେ ସୁଦୂର ବ୍ୟାବିଲୋନ୍ ନଗରୀରେ ଇତିହାସର ସର୍ବପ୍ରଥମ ଜଗତ୍-ଜେତା ମହାବୀର ଆଲେକ୍‌ଜାଣ୍ଡାର ତାହାଙ୍କର ବିଶାଳ ସାମ୍ରାଜ୍ୟକୁ ପଶ୍ଚାତରେ ରଖି ସଂସାରରୁ ଚିରବିଦାୟ ନେଲେ । ଆଲେକ୍‌ଜାଣ୍ଡାରଙ୍କ ମୃତ୍ୟୁର ସୁଯୋଗ ନେଇ ଚନ୍ଦ୍ରଗୁପ୍ତ ସିଂହାସନାରୋହଣ ସଙ୍ଗେ ସଙ୍ଗେ ପଞ୍ଜାବଖଣ୍ଡରୁ ଆଲେକ୍‌ଜାଣ୍ଡାରଙ୍କ ଗ୍ରୀକ୍ ସେନାପତିମାନଙ୍କୁ ବିତାଡ଼ିତ କରି ଦେଇଥିଲେ ଏବଂ ଭାରତ ଭୂମିରୁ ବିଦେଶୀ-ଶାସନ ବିଲୁପ୍ତ କରିଥିଲେ । ବିଦେଶୀ ଗ୍ରୀକ୍‌ମାନଙ୍କୁ ଭାରତବକ୍ଷରୁ ବିତାଡ଼ିତ କରି ସାରିଲା ପରେ ସମ୍ରାଟ ଚନ୍ଦ୍ରଗୁପ୍ତ ଏବଂ ମନ୍ତ୍ରୀ ଚାଣକ୍ୟ ସେମାନଙ୍କର ଶକ୍ତି ଏବଂ କୂଟନୀତି ବଳରେ ସମଗ୍ର ଭାରତବର୍ଷକୁ ଏକ ଶାସନାଧୀନରେ ଆଣିବା ପାଇଁ ଏବଂ ଖଣ୍ଡବିଖଣ୍ଡିତ ବିକ୍ଷିପ୍ତ ଭାରତକୁ ଏକ ଶାସନ ଡୋରିରେ ବାନ୍ଧି ରଖିବା ପାଇଁ ଏକ ସର୍ବବ୍ୟାପୀ ଚେଷ୍ଟା ଆରମ୍ଭ କରିଥିଲେ । ଚାଣକ୍ୟ ସେ ଯୁଗର ତଥା ସବୁ ଯୁଗର ଜଣେ ଶ୍ରେଷ୍ଠ କୂଟନୀତିଜ୍ଞ । ଚନ୍ଦ୍ରଗୁପ୍ତ ଭାରତୀୟ ସମ୍ରାଟମାନଙ୍କ ମଧ୍ୟରେ ସବୁଠାରୁ ଶକ୍ତିଶାଳୀ । ଚନ୍ଦ୍ରଗୁପ୍ତଙ୍କର ଶକ୍ତି ଏବଂ ଚାଣକ୍ୟଙ୍କର କୂଟନୀତି ବଳରେ ସୁବିଶାଳ ଭାରତ ଏକ ସାମ୍ରାଜ୍ୟରେ ପରିଣତ ହେବାକୁ ବସିଥିଲା । ପଞ୍ଜାବଠାରୁ ଗଙ୍ଗା ପର୍ଯ୍ୟନ୍ତ

ନନ୍ଦ ସାମ୍ରାଜ୍ୟର ଅଧୀଶ୍ବର ହେବା ପରେ ପରେ ଚନ୍ଦ୍ରଗୁପ୍ତ ଏବଂ ଚାଣକ୍ୟ ଭାରତର ଅନ୍ୟାନ୍ୟ ଅଞ୍ଚଳଗୁଡ଼ିକ ଅଧିକାର କରିବା ପାଇଁ ବ୍ୟସ୍ତ ହୋଇ ପଡ଼ିଥିଲେ । ଭାରତର ପଶ୍ଚିମଖଣ୍ଡରେ ଶକ୍ତିଶାଳୀ ସୁରାଷ୍ଟ୍ର ରାଜ୍ୟ ଚନ୍ଦ୍ରଗୁପ୍ତଙ୍କ ଶାସନାଧୀନ ହୋଇଥିଲା ।[1] ପଶ୍ଚିମରେ ଆରବ ସାଗରକୁ ନିଜ ସାମ୍ରାଜ୍ୟର ସୀମାରେ ପରିଣତ କରି ଚନ୍ଦ୍ରଗୁପ୍ତ ବିନ୍ଧ୍ୟାଚଳର ଦକ୍ଷିଣବର୍ତ୍ତୀ ଭୂଖଣ୍ଡ ପ୍ରତି ଲୋଲୁପ ଦୃଷ୍ଟି ପକାଇଥିଲେ । ପ୍ରାଚୀନ କାଳର ଅନେକ ତାମିଲ ଲେଖକଙ୍କ ଲେଖାରୁ ଜଣାଯାଏ ଯେ ଚନ୍ଦ୍ରଗୁପ୍ତ ସୁଦୂର ଦକ୍ଷିଣରେ ଟାଇନାଭେଲି ଜିଲ୍ଲାର ପଦ୍ୟିଲ ପର୍ବତ ପର୍ଯ୍ୟନ୍ତ ନିଜର ଶକ୍ତି ବିସ୍ତାର କରିଥିଲେ ।[2] ପଦ୍ୟିଲ ପର୍ବତ ଦାକ୍ଷିଣାତ୍ୟର ପ୍ରାୟ ଶେଷ ସୀମାରେ ଦଣ୍ଡାୟମାନ । ଆଧୁନିକ ମହୀଶୂର ଅଞ୍ଚଳରେ ଆବିଷ୍କୃତ ହୋଇଥିବା କେତେକ ଶିଳାଲିପିମାନଙ୍କରୁ ମଧ୍ୟ ଏକଥା ଜଣାଯାଏ ଯେ ଚନ୍ଦ୍ରଗୁପ୍ତ ଦାକ୍ଷିଣାତ୍ୟ ଅଧିକାର କରିଥିଲେ । ଚନ୍ଦ୍ରଗୁପ୍ତ ଏବଂ ଚାଣକ୍ୟ ଯେ ଭାରତରେ ଏକ ସୁବୃହତ୍ ସାମ୍ରାଜ୍ୟ ସ୍ଥାପନ କରିଥିଲେ ସେକଥା ଅନ୍ୟାନ୍ୟ ଅନେକ ଐତିହାସିକ ତଥ୍ୟରୁ ଜଣାପଡ଼େ । ସୁପ୍ରସିଦ୍ଧ ପ୍ରାଚୀନ ଗ୍ରୀକ୍ ଐତିହାସିକ ପ୍ଲୁଟାର୍କଙ୍କ ଭାଷାରେ, "ଚନ୍ଦ୍ରଗୁପ୍ତ ଛଅଲକ୍ଷ ସୈନ୍ୟ ସାହାଯ୍ୟରେ ସମଗ୍ର ଭାରତ ବିଜୟ କରିଥିଲେ ।"[3] ପ୍ରାଚୀନ ବୌଦ୍ଧ ପୁରାଣ ମହାବଂଶରୁ ଜଣାଯାଏ ଯେ, 'ଚନ୍ଦ୍ରଗୁପ୍ତ ସମସ୍ତ ଜମ୍ବୁଦ୍ୱୀପର ଅଧୀଶ୍ବର ହୋଇଥିଲେ ।'[4] ଏ ସମସ୍ତ ଐତିହାସିକ ତଥ୍ୟରୁ ସ୍ପଷ୍ଟଭାବରେ ଜଣାଯାଏ ଯେ ଚନ୍ଦ୍ରଗୁପ୍ତ ଭାରତରେ ଏକ ସୁବିଶାଳ ସାମ୍ରାଜ୍ୟ ସ୍ଥାପନ କରି ପାରିଥିଲେ । ଆରବ ଉପସାଗର ତଟରୁ ବ୍ରହ୍ମପୁତ୍ର ପର୍ଯ୍ୟନ୍ତ ଏବଂ ହିମାଳୟ ପାଦରୁ ଟିନାଭେଲି ଯାଏ ଏହି ବିଶାଳ ଦେଶ ଅଧିକାର କରିସାରିଲା ପରେ ଚନ୍ଦ୍ରଗୁପ୍ତ ହିନ୍ଦୁକୁଶ ସେପାରି ମଧ୍ୟ-ପ୍ରାଚ୍ୟର ଗ୍ରୀକ୍ ସାମ୍ରାଜ୍ୟ ଉପରେ ଲୋଲୁପ ଦୃଷ୍ଟିପାତ କରିଥିଲେ । ସେତେବେଳେ ମଧ୍ୟ-ପ୍ରାଚ୍ୟଖଣ୍ଡର ଏକଚ୍ଛତ୍ର ଅଧିପତି ଥିଲେ ଦିଗ୍‌ବିଜୟୀ ସିକନ୍ଦରଙ୍କର ଅନ୍ୟତମ ସେନାନାୟକ ସେଲ୍ୟୁକସ୍ ନିକାଟର । ସେଲ୍ୟୁକସ୍ ଥିଲେ ଜଣେ ପ୍ରବଳପ୍ରତାପୀ ଗ୍ରୀକ୍ ଯୋଦ୍ଧା । ସିକନ୍ଦରଙ୍କର ଏସିଆ ସାମ୍ରାଜ୍ୟର ଉତ୍ତରାଧିକାରୀ ରୂପେ ତାହାଙ୍କର ଶକ୍ତି ମଧ୍ୟ ଥିଲା ଅପରିସୀମ । ଏହି ଶକ୍ତିବଳରେ ସେ ବ୍ୟାବିଲୋନ୍ ନଗରୀ କରକବଳିତ

1. Junagarh inscription of Rudradaman.
2. Prof. Aiyanger—South Indian History.
3. Mecrindle—Invasion of India by Alexander.
4. ପ୍ରାଚୀନ ଗ୍ରନ୍ଥମାନଙ୍କରେ ଭାରତବର୍ଷକୁ ଅନେକ ସମୟରେ ଜମ୍ବୁଦ୍ୱୀପ ନାମରେ ଆଖ୍ୟାତ କରାଯାଇଛି ।

କର ଦୁର୍ଦ୍ଧର୍ଷ ବ୍ୟକ୍ତି ଗ୍ରୀକ୍‌ମାନଙ୍କୁ ନିଜର ପଦାନତ କରିଥିଲେ । ଶେଷରେ ଶତ୍ରୁର ଶୀର୍ଷ ସୀମାରେ ଉପନୀତ ହୋଇ ସେଲ୍ୟୁକାସ୍ ଭାରତବିଜୟର ପରିକଳ୍ପନାରେ ଅଧୀର ହୋଇପଡ଼ିଥିଲେ । ଏଣେ ଚନ୍ଦ୍ରଗୁପ୍ତ ମଧ୍ୟ ଭାରତବିଜୟ ସମାପ୍ତ କରି ମଧ୍ୟ-ପ୍ରାଚ୍ୟ ଉପରେ ଦୃଷ୍ଟିପାତ କରିଥିଲେ । ଏହିପରି ତଦାନୀନ୍ତନ ପ୍ରାଚ୍ୟର ଦୁଇ ମହାଯୋଦ୍ଧା ମଧ୍ୟରେ ସଂଘର୍ଷର ସୂତ୍ରପାତ ହୋଇଥିଲା । ଏହି ସଂଘର୍ଷର ବିଶଦ ବିବରଣୀ ସମ୍ବନ୍ଧରେ ଗ୍ରୀକ୍ ଐତିହାସିକମାନେ ଏକ ସନ୍ଦେହଜନକ ନୀରବତା ଅବଲମ୍ବନ କରିଛନ୍ତି । କିମ୍ବା ଏକ ଅସ୍ପଷ୍ଟ ବର୍ଣ୍ଣନାରେ ଘଟଣାଟିକୁ ଲୁଚାଇ ଦେବାର ପ୍ରୟାସ କରିଛନ୍ତି । ତଥାପି ସତ୍ୟ ପରିସ୍ଫୁଟ ଆକାରରେ ଇତିହାସ ଗର୍ଭକୁ ବାହାରି ଆସିଛି । ଚନ୍ଦ୍ରଗୁପ୍ତ ଏବଂ ସେଲ୍ୟୁକାସ୍‌ଙ୍କ ମଧ୍ୟରେ ଏକ ତୁମୁଳ ସଂଗ୍ରାମ ହୋଇଥିଲା ଏଥିରେ ସନ୍ଦେହ ନାହିଁ । ଏ ସଂଗ୍ରାମ ଶେଷରେ ଯେଉଁ ସନ୍ଧି ହୋଇଥିଲା ସେଥିରୁ ନିର୍ଭୁଲଭାବେ ଅନୁମାନ କରାଯାଏ ଯେ ଚନ୍ଦ୍ରଗୁପ୍ତ ଯୁଦ୍ଧରେ ଜୟଲାଭ କରିଥିଲେ ଏବଂ ସେଲ୍ୟୁକାସ୍ ପରାଜିତ ହୋଇ ଏକ ଅପମାନସୂଚକ ସନ୍ଧି କରିବାପାଇଁ ବାଧ୍ୟ ହୋଇଥିଲେ । ସେ ଯୁଗର ସମସାମୟିକ ଗ୍ରୀକ୍ ଐତିହାସିକମାନେ ଯୁଦ୍ଧର ପରିଣତି ଏବଂ ସନ୍ଧିର ସର୍ତ୍ତମାନଙ୍କ ବିଷୟରେ ଯେତିକ ବର୍ଣ୍ଣନା କରିଛନ୍ତି ସେତିକରୁ ନିର୍ଭୁଲ ସିଦ୍ଧାନ୍ତ ମିଳେ ଯେ ଯୁଦ୍ଧ ଶେଷରେ ସେଲ୍ୟୁକାସ୍ ତାହାଙ୍କ ସାମ୍ରାଜ୍ୟରୁ ଏକ ବିରାଟ ଅଂଶ ଚନ୍ଦ୍ରଗୁପ୍ତଙ୍କ ହସ୍ତରେ ସମର୍ପଣ କରିଥିଲେ । ସେକାଳର ଐତିହାସିକ ଷ୍ଟ୍ରାବୋ ( Strabo )ଙ୍କ ଲେଖନୀରୁ ଜଣାଯାଏ ଯେ 'ଏରିଆନା'ର ବୃହଦାଂଶ ଚନ୍ଦ୍ରଗୁପ୍ତଙ୍କ ହସ୍ତରେ ଅର୍ପଣ କରାଯାଇଥିଲା ।[1] ଷ୍ଟ୍ରାବୋଙ୍କ ବର୍ଣ୍ଣିତ ଅଞ୍ଚଳ ଯେ ଏସିଆର ହେରାଟ୍, କାନ୍ଧାହାର, କାବୁଲ ଏବଂ ବେଲୁଚିସ୍ଥାନ ଏ ବିଷୟ ସ୍ମିଥ୍ ସାହେବ ନିର୍ଭୁଲଭାବେ ପ୍ରମାଣ କରି ଯାଇଛନ୍ତି ।[2] ଷ୍ଟ୍ରାବୋ ଏବଂ ଅନ୍ୟ କେତେକ ଗ୍ରୀକ୍ ଐତିହାସିକଙ୍କ ବର୍ଣ୍ଣନାନୁଯାୟୀ ସେଲ୍ୟୁକାସ୍ ଚନ୍ଦ୍ରଗୁପ୍ତଙ୍କ ସହ ନିଜର କନ୍ୟାଙ୍କର ବିବାହ ଦେଇଥିଲେ ଏବଂ ମଧ୍ୟ-ପ୍ରାଚ୍ୟର ଉପର ଲିଖିତ ଅଞ୍ଚଳଗୁଡ଼ିକ ଚନ୍ଦ୍ରଗୁପ୍ତଙ୍କ ଉପହାର ଦେଇଥିଲେ । ହୁଏତ ଯୁଦ୍ଧର ପରାଜୟ ଚିହ୍ନକୁ ଅନ୍ୟଭାବେ ଚିହ୍ନିତ କରିବାକୁ ଯାଇ ସେଲ୍ୟୁକାସ୍ ଏପରି ଏକ ବିବାହ କାର୍ଯ୍ୟ ସମ୍ପାଦନ କରିଥିଲେ ଏବଂ ବିବାହର ଯୌତୁକରୂପେ ନିଜ ସାମ୍ରାଜ୍ୟର ଏକ ଅଂଶକୁ ଜାମାତା ହସ୍ତରେ ଅର୍ପଣ କରିଥିଲେ । ଗ୍ରୀକ୍ ଐତିହାସିକମାନେ ସେମାନଙ୍କ ସମ୍ରାଟଙ୍କର

1. Mecrindle—Ancient India.
2. Dr. V. Smith—Early History of India—p. 158.

ପରାଜୟଟିକୁ ସ୍ପଷ୍ଟଭାବେ ବର୍ଣ୍ଣନ ନ କରି ବିବାହ ଏବଂ ଯୌତୁକ ଏହି ଦୁଇଟି ମଧ୍ୟରେ ସେ ପରାଜୟର ଆଭାସ ଦେଇଯାଇଛନ୍ତି । କିନ୍ତୁ ଇତିହାସର ସିଦ୍ଧାନ୍ତ ଅନୁଯାୟୀ ଜାମାତା ଚନ୍ଦ୍ରଗୁପ୍ତ ହେଉଛନ୍ତି ବିଜୟୀ ଚନ୍ଦ୍ରଗୁପ୍ତ ଏବଂ ଶ୍ୱଶୁରଙ୍କ ନିକଟରୁ ପାଇଥିବା ଯୌତୁକ ହେଉଛି ପରାଜିତ ପାଖରୁ ବିଜେତାର ପ୍ରାପ୍ୟ ରାଜ୍ୟ । ମଧ୍ୟ-ପ୍ରାଚ୍ୟର ହେରାତ୍, କାନ୍ଦାହାର, କାବୁଲ ଓ ବେଲୁଚିସ୍ଥାନ ଅଧିକାର କରି ସାରିଲା ପରେ ବୋଧହୁଏ ଚନ୍ଦ୍ରଗୁପ୍ତ ଦିଗ୍‌ବିଜୟ କାର୍ଯ୍ୟରୁ କ୍ଷାନ୍ତ ହୋଇଥିଲେ ଏବଂ ରାଜତ୍ୱର ଦୀର୍ଘ ଅବଶିଷ୍ଟାଂଶ କାଳ ରାଜ୍ୟ ଶାସନ ଦ୍ୱାରା ଅତିବାହିତ କରିଥିଲେ ।

ଏହିପରି ସମ୍ରାଟ ଚନ୍ଦ୍ରଗୁପ୍ତ ତାହାଙ୍କର ଅସାଧାରଣ ବୀରତ୍ୱ ବଳରେ ଏବଂ ମନ୍ତ୍ରୀ ଚାଣକ୍ୟଙ୍କର ଅଦ୍ୱିତୀୟ କୂଟନୈତିକ ପ୍ରତିଭା ସାହାଯ୍ୟରେ ସୁଦୂର ଉତ୍ତର-ପଶ୍ଚିମରେ ହେରାତ୍ ଏବଂ କାବୁଲ ରାଜ୍ୟରୁ ସୁଦୂର ଦକ୍ଷିଣରେ କୁମାରିକା ନିକଟସ୍ଥ ଟିନାଭେଲି ପର୍ଯ୍ୟନ୍ତ ଏବଂ ପଶ୍ଚିମରେ ଆରବ ସାଗର କୂଳରୁ ପୂର୍ବରେ ବ୍ରହ୍ମପୁତ୍ର ନଦୀ ପର୍ଯ୍ୟନ୍ତ ଏହି ସୁବିସ୍ତୃତ ଭୂଖଣ୍ଡ ଉପରେ ମୌର୍ଯ୍ୟ ସାମ୍ରାଜ୍ୟ ସ୍ଥାପନ କରିଥିଲେ । ଏପରି ଏକ ଅପ୍ରତିଦ୍ୱନ୍ଦ୍ୱୀ ସାମ୍ରାଜ୍ୟ ଗଠନ କରିଥିବା ଯୋଗୁଁ ଭାରତ ଇତିହାସ ବାସ୍ତବ ପକ୍ଷରେ ଚନ୍ଦ୍ରଗୁପ୍ତ ଏବଂ ଚାଣକ୍ୟଙ୍କ ନିକଟରେ ଋଣୀ । କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ ଇତିହାସ ଯୁଗର ପ୍ରାରମ୍ଭରୁ ଏ ପର୍ଯ୍ୟନ୍ତ ଭାରତବର୍ଷ ବକ୍ଷରେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ସାମ୍ରାଜ୍ୟ ପରି ଏତେ ବଡ଼ ବିରାଟ ସାମ୍ରାଜ୍ୟ ଅନ୍ୟ କୌଣସି ସମୟରେ କିମ୍ବା ଅନ୍ୟ କୌଣସି ରାଜଶକ୍ତି ଦ୍ୱାରା ଗଠିତ ହୋଇ ପାରି ନାହିଁ । କିନ୍ତୁ ଅତିଶୟ ଆଶ୍ଚର୍ଯ୍ୟର ବିଷୟ ହେଉଛି ଚନ୍ଦ୍ରଗୁପ୍ତ ଏବଂ ଚାଣକ୍ୟଙ୍କର ଏହି ନିଖିଳ ଭାରତୀୟ ସାମ୍ରାଜ୍ୟ ମଧ୍ୟରେ କଳିଙ୍ଗ ଗୋଟିଏ ପ୍ରଦେଶ ରୂପେ ଅବସ୍ଥାନ କରି ନାହିଁ । ଯେତେବେଳେ ସମଗ୍ର ଭାରତ ମୌର୍ଯ୍ୟ ରାଜଦଣ୍ଡ ତଳେ ଆଶ୍ରୟ ନେବାକୁ ବାଧ୍ୟ ହୋଇଛି ସେତେବେଳେ କଳିଙ୍ଗ ସାମ୍ରାଜ୍ୟ ତା'ର ସ୍ୱାଧୀନତା ଅକ୍ଷୁର୍ଣ୍ଣ ରଖି ଗର୍ବ ଏବଂ ଗୌରବ ସହକାରେ ମୌର୍ଯ୍ୟ ରାଜଶକ୍ତିର ଏକ ପ୍ରତିପକ୍ଷ ରାଜଶକ୍ତି ରୂପେ ଭାରତ-ଖଣ୍ଡରେ ତିଷ୍ଠି ରହି ପାରିଛି । କଳିଙ୍ଗର ଏପରି ଏକ ଆଶ୍ଚର୍ଯ୍ୟଜନକ ସ୍ୱାଧୀନ ଅବସ୍ଥିତିର କାରଣ କ'ଣ ? ଯେଉଁ କୂଟନୀତି ବଳରେ ଚାଣକ୍ୟ ଭାରତର କ୍ଷୁଦ୍ର ବୃହତ୍ ବହୁରାଜ୍ୟ ମୌର୍ଯ୍ୟଶାସନର କରକବଳିତ କରି ପାରିଲେ ଏବଂ ଯେଉଁ ଶକ୍ତି ବଳରେ ଚନ୍ଦ୍ରଗୁପ୍ତ ନନ୍ଦ ସମ୍ରାଟ ତଥା ଗ୍ରୀକ

ସମ୍ରାଟଙ୍କୁ ପରାଜିତ କରି ପାରିଲେ ସେହି କୂଟନୀତି ଏବଂ ସେହି ଶକ୍ତି ବଳରେ ସେମାନେ କଳିଙ୍ଗକୁ ମଧ୍ୟ ମୌର୍ଯ୍ୟ ଶାସନାଧୀନ କରି ପାରି ଥାଆନ୍ତେ। କିନ୍ତୁ ମୌର୍ଯ୍ୟଶକ୍ତି ଏବଂ ମୌର୍ଯ୍ୟ କୂଟନୀତି କଳିଙ୍ଗର ସ୍ୱାଧୀନ ଅବସ୍ଥିତି ଉପରେ ହସ୍ତକ୍ଷେପ କରିବାକୁ ଚେଷ୍ଟା କରି ନାହିଁ। ଏପରି ଏକ ଐତିହାସିକ ସମସ୍ୟାମୂଳରେ ଏତିକି ସତ୍ୟ ପରିଦୃଷ୍ଟ ହୁଏ ଯେ ମଗଧ ପରି କଳିଙ୍ଗ ମଧ୍ୟ ଏକ ସମୃଦ୍ଧିଶାଳୀ ସାମ୍ରାଜ୍ୟ ଥିଲା ଏବଂ ଚନ୍ଦ୍ରଗୁପ୍ତ ନିର୍ଭୁଲଭାବେ ଅନୁମାନ କରି ପାରିଥିଲେ ଯେ କଳିଙ୍ଗ ପରି ଏକ ସୁଦୃଢ଼ ଶକ୍ତି ବିରୁଦ୍ଧରେ ଅଭିଯାନ ଆରମ୍ଭ କରିବା ଅର୍ଥ ନବ-ଗଠିତ ମୌର୍ଯ୍ୟ ସାମ୍ରାଜ୍ୟ ମୂଳରେ କୁଠାରାଘାତ କରିବା। ତଦାନୀନ୍ତନ ଭାରତରେ ମଗଧ ଏବଂ କଳିଙ୍ଗ ବ୍ୟତୀତ ଅନ୍ୟ କୌଣସି ବିରାଟ ଶକ୍ତିର ଅସ୍ତିତ୍ୱ ସମ୍ବନ୍ଧରେ ଏ ପର୍ଯ୍ୟନ୍ତ ଇତିହାସ ନିର୍ବାକ ଅଛି। ଏ ଦୁଇ ରାଜ୍ୟ ଛଡ଼ା ଅନ୍ୟାନ୍ୟ ଭାରତୀୟ ରାଜ୍ୟମାନ ଅପେକ୍ଷାକୃତ ଦୁର୍ବଳ ଥିଲେ। ମଗଧରେ ମୌର୍ଯ୍ୟ ସାମ୍ରାଜ୍ୟ ସ୍ଥାପନ ପରେ ଚନ୍ଦ୍ରଗୁପ୍ତ ଭାରତର ଏହି ଅପେକ୍ଷାକୃତ ଦୁର୍ବଳ ଏବଂ କ୍ଷୁଦ୍ର ରାଜ୍ୟମାନଙ୍କର ବିଳୟ ସାଧନ କରି ସୁଦୂର ଦାକ୍ଷିଣାତ୍ୟର ଶେଷ ସୀମା ପର୍ଯ୍ୟନ୍ତ ନିଜର ସାମ୍ରାଜ୍ୟ ବିସ୍ତାର କରିଥିଲେ। ଅବଶ୍ୟ ସୁରାଷ୍ଟ୍ର ପ୍ରଭୃତି କେତେକ ଶକ୍ତିଶାଳୀ ରାଜ୍ୟ ତାହାଙ୍କୁ ଅଧିକାର କରିବାକୁ ପଡ଼ିଥିଲା। କିନ୍ତୁ ମଗଧ ଏବଂ କଳିଙ୍ଗର ରାଜନୈତିକ ଶକ୍ତି ସହି ସେ ସବୁ ରାଜ୍ୟର ଶକ୍ତି ତୁଳନୀୟ ନ ଥିଲା। କାଳକ୍ରମେ କଳିଙ୍ଗ ବ୍ୟତୀତ ସମଗ୍ର ଭାରତବର୍ଷ ଅଧିକାର କରି ସାରିଲା ପରେ ଚନ୍ଦ୍ରଗୁପ୍ତ ଗ୍ରୀକ୍ ସମ୍ରାଟ ସେଲୁକସ୍‌ଙ୍କୁ ପରାଜିତ କରିଥିଲେ ଏବଂ ମଧ୍ୟ-ପ୍ରାଚ୍ୟର ଅଧୀଶ୍ୱର ହୋଇଥିଲେ। ଐତିହାସିକମାନଙ୍କ ମତରେ ସେଲୁକସ୍‌ଙ୍କୁ ପରାଜିତ କରି ସାରିଲା ପରେ ଚନ୍ଦ୍ରଗୁପ୍ତ ନିଜର ଉନ୍ମୁକ୍ତ ଅସି କୋଷବଦ୍ଧ କରିଥିଲେ ଏବଂ ସାମ୍ରାଜ୍ୟଶାସନ ଦିଗକୁ ମନଯୋଗ ଦେଇଥିଲେ। ସେଲୁକସ୍‌ଙ୍କୁ ପରାଜୟ କରି ସାରିଲା ପରେ ଚନ୍ଦ୍ରଗୁପ୍ତ ଦୀର୍ଘ ଷୋଡ଼ଶ ବର୍ଷକାଳ ଭାରତଶାସନ କରିଥିଲେ। କିନ୍ତୁ ଏହି ଦୀର୍ଘ ସମୟ ମଧ୍ୟରେ ସେ କଳିଙ୍ଗ ଅଧିକାର କରିବାକୁ ଚେଷ୍ଟା କରି ନ ଥିଲେ। ମୌର୍ଯ୍ୟ ସାମ୍ରାଜ୍ୟର କେନ୍ଦ୍ରସ୍ଥଳୀ ମଗଧର ଅତି ନିକଟରେ କଳିଙ୍ଗ ପରି ଏକ ଶକ୍ତିଶାଳୀ ସ୍ୱାଧୀନ ଦେଶର ଅବସ୍ଥିତି ନିଶ୍ଚୟ ମୌର୍ଯ୍ୟମାନଙ୍କ ମନରେ ସଦା ସର୍ବଦା ଭୀତି ସଞ୍ଚାର କରିଥିବ। ବିଶେଷତଃ ଯେତେବେଳେ ଚନ୍ଦ୍ରଗୁପ୍ତ ସୁଦୂର ଦକ୍ଷିଣ କିମ୍ବା ପଶ୍ଚିମ ଅଭିମୁଖେ ନିଜର ସୈନ୍ୟ ଚାଳନା କରିଥିବେ ସେତେବେଳେ ମଗଧର ଦ୍ୱାରଦେଶରେ କଳିଙ୍ଗ ଦେଶର ସମୃଦ୍ଧି ଏବଂ ଶକ୍ତି ତାହାଙ୍କୁ ଆତଙ୍କିତ କରିଥିବ।

ତଥାପି ସେ କଳିଙ୍ଗ ବିରୁଦ୍ଧରେ ଯୁଦ୍ଧ କରି ନ ଥିଲେ ଏବଂ ସମଗ୍ର ଭାରତର ଅଧିପତି ରୂପେ ଦୀର୍ଘ ଷୋଡ଼ଶ ବର୍ଷକାଳ ଶାସନ କାର୍ଯ୍ୟରେ ରତ ଥିଲାବେଳେ ମଧ୍ୟ କଳିଙ୍ଗ ଅଧିକାର ପାଇଁ ସଚେଷ୍ଟ ହୋଇ ନ ଥିଲେ । ସମ୍ରାଟ ଚନ୍ଦ୍ରଗୁପ୍ତ ଏବଂ ରାଜନୀତିଜ୍ଞ ଚାଣକ୍ୟ ତାହାଙ୍କ କଳିଙ୍ଗ ଅଧିକାର କରିବାକୁ ଚେଷ୍ଟା କରି ନ ଥିଲେ ତାହାର ଦୁଇଟି କାରଣ ଅନୁମାନ କରାଯାଇ ପାରେ । ପ୍ରଥମତଃ, ମୌର୍ଯ୍ୟ ରାଜନୀତିଜ୍ଞମାନେ ମୂଳରୁ ନିଶ୍ଚିତରୂପେ ଜାଣିଥିଲେ ଯେ କଳିଙ୍ଗ ପରି ଏକ ଶକ୍ତିଶାଳୀ ଦେଶ ବିରୁଦ୍ଧରେ ପ୍ରଥମେ ଯୁଦ୍ଧ ଘୋଷଣା କରିବା ଅର୍ଥ ମୌର୍ଯ୍ୟ ସାମ୍ରାଜ୍ୟର ଲକ୍ଷ ଲକ୍ଷ ସେନା କ୍ଷୟ କରିବା ଏବଂ ମଗଧର ଅର୍ଥନୈତିକ ସମୃଦ୍ଧି ଉପରେ ବାଧା ଆଣିବା । ଏପରି ଜନକ୍ଷୟ ଏବଂ ଅର୍ଥବ୍ୟୟ ପରେ ଭାରତର ଅନ୍ୟାନ୍ୟ ଅଞ୍ଚଳମାନ ଜୟ କରିବା କଷ୍ଟସାଧ୍ୟ ହେବ ଏବଂ ବିଦେଶୀମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ଅସମ୍ଭବ ହୋଇ ପଡ଼ିବ । ସମସ୍ତ ଭାରତ ଅଧିକାର କରି ସାରିଲା ପରେ ଏବଂ ସେଲୁକସ୍‌ଙ୍କୁ ପରାଜିତ କଲାପରେ ମଧ୍ୟ ମୌର୍ଯ୍ୟ ସମ୍ରାଟ କଳିଙ୍ଗ ଅଧିକାର କରିବା ପାଇଁ ପ୍ରୟାସୀ ହୋଇ ନ ଥିଲେ କାରଣ ଅତି ବିଚକ୍ଷଣ ସାମ୍ରାଜ୍ୟ-ନିର୍ମାତା ହିସାବରେ ସେ ଜାଣି ପାରିଥିଲେ ଯେ ଭାରତ ଅଧିକାର ପରେ ତାହାଙ୍କର ପ୍ରଥମ କର୍ତ୍ତବ୍ୟ ହେଉଛି ଏକ ସୁଦୃଢ଼, ସୁନ୍ଦର ଶାସନ ପ୍ରଣାଳୀରେ ରାଜ୍ୟଶାସନ କରିବା । କଳିଙ୍ଗ ସହ ଯୁଦ୍ଧ ଘୋଷଣା କରି ଏକ ଦୀର୍ଘ ଏବଂ ଅନିଶ୍ଚିତ ଯୁଦ୍ଧ ଆହ୍ୱାନ କରିବାଦ୍ୱାରା ଦେଶର ଶାସନ କାର୍ଯ୍ୟରେ ବାଧା ପଡ଼ିବ ବୋଲି ସୁଶାସକ ଚନ୍ଦ୍ରଗୁପ୍ତ କଳିଙ୍ଗପ୍ରତି ଦୃଷ୍ଟିପାତ କରି ନ ଥିଲେ । ଦ୍ୱିତୀୟତଃ, ହୁଏତ ଚନ୍ଦ୍ରଗୁପ୍ତ ଏବଂ ଚାଣକ୍ୟ ଅନୁମାନ କରିଥିଲେ ଯେ ମଗଧର ଅନତିଦୂରରେ ଏକ ସ୍ୱାଧୀନ କଳିଙ୍ଗ ଅପେକ୍ଷା ଏକ ପରାଧୀନ କଳିଙ୍ଗ ମୌର୍ଯ୍ୟ ସାମ୍ରାଜ୍ୟ ପ୍ରତି ଅଧିକତର ବିପଜ୍ଜନକ ହୋଇ ପାରେ । କାରଣ କଳିଙ୍ଗ ପରି ଏକ ଦୁର୍ଦ୍ଧର୍ଷ ଜାତିକୁ ପଦାନତ କରି ରଖିଲେ ମଗଧର ଦ୍ୱାରଦେଶରେ ସଦା ସର୍ବଦା ବିଦ୍ରୋହର ସମ୍ଭାବନା ଲାଗି ରହିବ । ସେପରି ବିଦ୍ରୋହ ଦମନାର୍ଥେ ସାମ୍ରାଜ୍ୟର ଅଧିକାଂଶ ଶକ୍ତି ସର୍ବଦା ନିୟୋଜିତ କରି ରଖିବାକୁ ପଡ଼ିବ । ତେଣୁ କଳିଙ୍ଗ ଅଧିକାର କରି ତାହାକୁ ପରାଧୀନ କରି ରଖିବା ଅପେକ୍ଷା କଳିଙ୍ଗକୁ ସ୍ୱାଧୀନ ଅବସ୍ଥାରେ ରହିବାକୁ ଦେବା ଅଧିକତର ଶ୍ରେୟଃ ବୋଲି ମୌର୍ଯ୍ୟ ରାଜନୀତିଜ୍ଞମାନେ ମୌର୍ଯ୍ୟ ସାମ୍ରାଜ୍ୟର ଶୈଶବାବସ୍ଥାରେ ଠିକ୍ କରି ନେଇଥିଲେ । ଏହିପରି ଚନ୍ଦ୍ରଗୁପ୍ତ ଏବଂ ଚାଣକ୍ୟଙ୍କ ଯୁଗରେ କଳିଙ୍ଗ ନିଜର ସ୍ୱାଧୀନତା ରକ୍ଷା କରି ଏକ ମହାଭାରତୀୟ ସାମ୍ରାଜ୍ୟର ପରିସର ପାଖରୁ ଦୂରରେ ରହି ପାରିଲା । କିନ୍ତୁ

ଏପରି ସ୍ୱାଧୀନତା ସମସ୍ତ ଏବଂ ପରିସ୍ଥିତି ଦୃଷ୍ଟିରୁ ଥିଲା ସମ୍ପୂର୍ଣ୍ଣ ଅସମ୍ଭବ । ଯେତେବେଳେ ସାରା ଭାରତବର୍ଷ ଏକ ଶାସନାଧୀନ ହୋଇ ସାରିଥିଲା ସେତେବେଳେ ସେହି ଏକଛତ୍ରିତ ଭାରତୀୟ ସାମ୍ରାଜ୍ୟର ରାଜଧାନୀ ପାଟଳିପୁତ୍ରର ଅନତିଦୂରରେ ଅବସ୍ଥିତ ହୋଇ କଳିଙ୍ଗ ଯେ ଚିରକାଳ ଧରି ସ୍ୱାଧୀନଭାବେ ଛିଡ଼ା ରହିବ ଏହା ଥିଲା ଭାରତୀୟ ରାଜନୈତିକ ଏବଂ ଭୌଗଳିକ ଦୃଷ୍ଟିରୁ ଅସମ୍ଭବ । ତେଣୁ ଯାହା ମୌର୍ଯ୍ୟ ସାମ୍ରାଜ୍ୟର ପ୍ରାରମ୍ଭିକ କାଳରେ ଚନ୍ଦ୍ରଗୁପ୍ତଙ୍କ ଦ୍ୱାରା ସମ୍ପାଦିତ ହୋଇ ପାରି ନ ଥିଲା ତାହା କିନ୍ତୁ ସମସ୍ତ ପରେ ସମ୍ପାଦିତ ହେବ ବୋଲି ଘଟଣା ଦୃଷ୍ଟିରୁ ଅବଶ୍ୟମ୍ଭାବୀ ହୋଇ ପଡ଼ିଥିଲା । ଅର୍ଥାତ୍, ମୌର୍ଯ୍ୟ ସାମ୍ରାଜ୍ୟବାଦ ଦ୍ୱାରା କଳିଙ୍ଗର ସ୍ୱାଧୀନତା ଲୋପ ପାଇବାର ଦିନ ନିକଟବର୍ତ୍ତୀ ହୋଇ ଆସୁଥିଲା ।

ଚନ୍ଦ୍ରଗୁପ୍ତଙ୍କ ପୁତ୍ର ବିନ୍ଦୁସାର ଅମିତ୍ରଘାତ ପିତାଙ୍କ ପରି ଜଣେ ବିଚକ୍ଷଣ ମହାଯୋଦ୍ଧା ନ ଥିଲେ । କିନ୍ତୁ ସମଗ୍ର ମୌର୍ଯ୍ୟ ସାମ୍ରାଜ୍ୟ ଉପରେ ଶାସନ କ୍ଷମତା ଅକ୍ଷୁର୍ଣ୍ଣ ରଖିବା ପାଇଁ ସେ ଯଥେଷ୍ଟ ଉପଯୁକ୍ତ ଥିଲେ । ବିନ୍ଦୁସାର ପ୍ରାୟ ଖ୍ରୀଷ୍ଟପୂର୍ବ ୩୦୧ରୁ ଖ୍ରୀଷ୍ଟପୂର୍ବ ୨୭୩ ପର୍ଯ୍ୟନ୍ତ ଭାରତ ଶାସନ କରିଥିଲେ । ଏହାଙ୍କ ରାଜତ୍ୱ କାଳରେ ଚନ୍ଦ୍ରଗୁପ୍ତଙ୍କ ନିର୍ମିତ ସାମ୍ରାଜ୍ୟ ପୂର୍ବପରି ରହିଥିଲା, କିନ୍ତୁ ବିନ୍ଦୁସାର ଚନ୍ଦ୍ରଗୁପ୍ତଙ୍କ ଅନଧିକୃତ କୌଣସି ଅଞ୍ଚଳ ମୌର୍ଯ୍ୟ ସାମ୍ରାଜ୍ୟରେ ମିଶାଇବା ପାଇଁ ସକ୍ଷମ ହୋଇ ପାରି ନ ଥିଲେ । ଅର୍ଥାତ୍ ବିନ୍ଦୁସାରଙ୍କ ରାଜତ୍ୱ କାଳରେ କଳିଙ୍ଗ ପୂର୍ବପରି ତା'ର ସ୍ୱାଧୀନତା ବଜାୟ ରଖିଥିଲା । ହୁଏତ ଇତିହାସର କିଛି ମହତ୍ ଉଦ୍ଦେଶ୍ୟ ପାଇଁ କଳିଙ୍ଗ ଯୁଦ୍ଧ ବିନ୍ଦୁସାରଙ୍କ ସମୟରୁ ଅଶୋକଙ୍କ ସମୟ ପର୍ଯ୍ୟନ୍ତ ସ୍ଥଗିତ ରଖାଯାଇଥିଲା ।

ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କର ପୌତ୍ର ଏବଂ ବିନ୍ଦୁସାର ଅମିତ୍ରଘାତଙ୍କର ପୁତ୍ର ଅଶୋକ ଖ୍ରୀଷ୍ଟପୂର୍ବ ୨୭୩ ସାଲରେ ମୌର୍ଯ୍ୟ ସିଂହାସନ ଆରୋହଣ କରିଥିଲେ । ଆନୁମାନିକ ଚାରିବର୍ଷ ପରେ ଅର୍ଥାତ୍ ଖ୍ରୀଷ୍ଟପୂର୍ବ ୨୬୯ ରେ ରାଜଧାନୀ ପାଟଳିପୁତ୍ରରେ ତାହାଙ୍କର ରାଜ୍ୟାଭିଷେକ ଉତ୍ସବ ସମ୍ପାଦିତ ହୋଇଥିଲା । ରାଜତ୍ୱର ଦ୍ୱାଦଶ ବର୍ଷରେ ଏବଂ ଅଭିଷେକର ଅଷ୍ଟମ ବର୍ଷରେ ସମ୍ରାଟ ଅଶୋକ ସ୍ୱାଧୀନ କଳିଙ୍ଗ ବିରୁଦ୍ଧରେ ତାହାଙ୍କର ଇତିହାସ-ପ୍ରସିଦ୍ଧ ଅଭିଯାନ ଆରମ୍ଭ କରିଥିଲେ । ଚନ୍ଦ୍ରଗୁପ୍ତ ଏବଂ ବିନ୍ଦୁସାର କଳିଙ୍ଗ ଅଧିକାର କରି ପାରି ନ ଥିଲେ, କିନ୍ତୁ ସତେ ଯେପରି

ସେ ବୁଦ୍ଧଙ୍କ ରାଜତ୍ୱ କାଳର ସମୃଦ୍ଧ ଶକ୍ତ କଳିଙ୍ଗ ବିରୁଦ୍ଧରେ ସ୍ତୂପୀକୃତ ଆକାରରେ ଗଚ୍ଛିତ ରଖା ଯାଇଥିଲା । ଅଶୋକଙ୍କ ରାଜତ୍ୱର ପ୍ରଥମାର୍ଦ୍ଧରେ ଅର୍ଥାତ ରାଜତ୍ୱର ଦୀର୍ଘ ଦ୍ୱାଦଶ ବର୍ଷକାଳ ମଧ୍ୟରେ ମଗଧର ସମସ୍ତ ସମର ଶକ୍ତି କଳିଙ୍ଗ ଅଭିଯାନ ଉଦ୍ଦେଶ୍ୟରେ ସତେ ଯେପରି ସଞ୍ଚିତ କରାଯାଇଥିଲା । ଯେତେବେଳେ ସମସ୍ତ ପ୍ରସ୍ତୁତ ହୋଇ ସାରିଥିଲା ସେତେବେଳେ ମୌର୍ଯ୍ୟ ସମ୍ରାଟ ଅଶୋକ ତାହାଙ୍କର ନିଖିଳ ଭାରତୀୟ ସାମ୍ରାଜ୍ୟର ସମସ୍ତ ଶକ୍ତି ସହ କଳିଙ୍ଗ ବିରୁଦ୍ଧରେ ଅଭିଯାନ ଆରମ୍ଭ କରିଥିଲେ । ଅଶୋକଙ୍କର କଳିଙ୍ଗ ମହାସମର ଭାରତ ଇତିହାସରେ ଏକ ଅଦ୍ୱିତୀୟ ଯୁଦ୍ଧ । ଏକ ପକ୍ଷରେ ସମଗ୍ର ଭାରତ, ଅପର ପକ୍ଷରେ ଏକମାତ୍ର କଳିଙ୍ଗ । ଏକ ପକ୍ଷରେ ଭାରତ ବିଜୟୀ ମୌର୍ଯ୍ୟ-ବାହିନୀ ଏବଂ ସାମ୍ରାଜ୍ୟ ଗର୍ବୀ ଭାରତ ସମ୍ରାଟ, ଅପର ପକ୍ଷରେ ଦୃଢ଼ ପ୍ରତିଜ୍ଞ, ସ୍ୱାଧୀନତା ପିପାସୁ କଳିଙ୍ଗ ଜାତି । କଳିଙ୍ଗ ଜାତିର ଦର୍ପ ଚନ୍ଦ୍ରଗୁପ୍ତ ଏବଂ ବିନ୍ଦୁସାରଙ୍କୁ ଉପେକ୍ଷା କରିଛି, କିନ୍ତୁ ଅଶୋକ ସେ ଦର୍ପ ଚୂର୍ଣ୍ଣ କରିବାକୁ ବଦ୍ଧ-ପରିକର । ଅପର ଦିଗରେ ଜୀବନ ମୂର୍ଚ୍ଛା ସଂଗ୍ରାମ ଏବଂ ପ୍ରାଣଦାନ ଦ୍ୱାରା କଳିଙ୍ଗ ଜାତି ନିଜର ମସ୍ତକ ଉନ୍ନତ ରଖିବାକୁ ଦୃଢ଼ ସଂକଳ୍ପିତ । ମୌର୍ଯ୍ୟ ସାମ୍ରାଜ୍ୟର ସୀମା ମଧ୍ୟକୁ କଳିଙ୍ଗକୁ ଯେ କୌଣସି ପ୍ରକାରେ ଭର୍ତ୍ତି କରି ନେବା ପାଇଁ ଓ ସେଥିପାଇଁ ଲକ୍ଷ ଲକ୍ଷ ମନୁଷ୍ୟର ଜୀବନ ଧ୍ୱଂସ କରିବା ପାଇଁ ଏବଂ ସମଗ୍ର କଳିଙ୍ଗ ଦେଶକୁ ଶ୍ମଶାନରେ ପରିଣତ କରିବା ପାଇଁ ଅଶୋକଙ୍କର ପ୍ରବୃତ୍ତି ସବଳ ଏବଂ ସଜାଗ ; ଅପର କ୍ଷେତ୍ରରେ କଳିଙ୍ଗର ଲକ୍ଷ ଲକ୍ଷ ନରନାରୀ ନିଜର ଜୀବନ ବିସର୍ଜନପୂର୍ବକ ଦେଶର ମର୍ଯ୍ୟାଦା ରକ୍ଷା କରିବା ପାଇଁ ଏବଂ ଆକ୍ରମଣକାରୀର ଆକ୍ରମଣ ପ୍ରତିହତ କରିବାପାଇଁ ପ୍ରସ୍ତୁତ । ମଗଧ ଏବଂ କଳିଙ୍ଗ ମଧ୍ୟରେ ଏହି ଜୀବନମୂର୍ଚ୍ଛା ପଣ କଳିଙ୍ଗ ମହାସମରକୁ ଏକ ଧ୍ୱଂସ ଲୀଳାର ତାଣ୍ଡବ ନୃତ୍ୟରେ ପରିଣତ କରିଥିଲା । ପ୍ରବଳ ଆକ୍ରମଣ ଏବଂ ପ୍ରାଣପାତ ପ୍ରତିରୋଧ, ଏ ଦୁଇଟିକୁ କେନ୍ଦ୍ର କରି ମହାସମରର ପରିଣାମ ତୀବ୍ର ହୋଇ ଉଠିଥିଲା । ଖ୍ରୀଷ୍ଟପୂର୍ବ ୨୬୧ରେ ଅଶୋକ କଳିଙ୍ଗ ଆକ୍ରମଣ କରିଥିଲେ । ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ କଳିଙ୍ଗର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ମୌର୍ଯ୍ୟ ସୈନ୍ୟମାନେ ସେମାନଙ୍କର ସର୍ବଧ୍ୱଂସୀ ସଂଗ୍ରାମ ଚଳାଇଥିଲେ ଏବଂ କଳିଙ୍ଗର ପୁରପଲ୍ଲୀ, ପାହାଡ଼ ପର୍ବତ ଗୁହାଅଢ଼େ ଅଗଣିତ କଳିଙ୍ଗ ନରନାରୀ ମଗଧୀୟ ସାମ୍ରାଜ୍ୟବାଦ ବିରୁଦ୍ଧରେ ଯୁଦ୍ଧ କରୁଁ କରୁଁ ଜୀବନ ବିସର୍ଜନ କରିଥିଲେ । ଯୁଦ୍ଧ ପରେ ଅଶୋକଙ୍କ ସ୍ୱରଚିତ

ହତାହତ ସଂଖ୍ୟାରୁ ଏ ମହାସମରର ଗୁରୁତ୍ୱ ସହଜରେ ଉପଲବ୍ଧି କରିହୁଏ । କଳିଙ୍ଗବାସୀ ନରନାରୀ ଶତ ସହସ୍ର ସଂଖ୍ୟାରେ ଜୀବନ ବିସର୍ଜନ କରି ସାରିଲା ପରେ ଏବଂ ସମଗ୍ର କଳିଙ୍ଗ ସାମ୍ରାଜ୍ୟ ଏକ ବିସ୍ତୃତ ଧ୍ୱଂସସ୍ତୂପରେ ପରିଣତ ହୋଇ ସାରିଲା ପରେ ଶେଷରେ କଳିଙ୍ଗ ମହାସମର ସମାପ୍ତ ହେଲା । ମହାସମରର ଶେଷରେ କଳିଙ୍ଗ ମୌର୍ଯ୍ୟ ସମ୍ରାଟଙ୍କର ପଦାନତ ହେଲା ସତ୍ୟ କିନ୍ତୁ ସେତେବେଳକୁ ମହାଯୁଦ୍ଧର ପରିଣତି ଫଳରେ ପୃଥିବୀ ଇତିହାସରେ ଏକ ମହା ପରିବର୍ତ୍ତନର ସୂତ୍ରପାତ ହୋଇ ସାରିଥିଲା ।

ଭାରତ ଇତିହାସରେ କଳିଙ୍ଗ ଯୁଦ୍ଧ ପରି ଆଉ ଏକ ଦ୍ୱିତୀୟ ଯୁଦ୍ଧ ହୋଇ ନାହିଁ ଯେଉଁଥିରେ ଏତେ ସଂଖ୍ୟକ ମନୁଷ୍ୟ ହତାହତ ହୋଇଛନ୍ତି କିମ୍ବା ଯେଉଁ ଯୁଦ୍ଧର ପରିଶେଷରେ ମନୁଷ୍ୟ ଜାତିର ଇତିହାସରେ ଏପରି ଏକ ଅବିସ୍ମରଣୀୟ ଘଟଣା ଘଟିଛି । ଏହି ଦୃଷ୍ଟିରୁ ଏପରି ଏକ ଯୁଦ୍ଧର ଦୃଷ୍ଟାନ୍ତ ପୃଥିବୀ ଇତିହାସରେ ମଧ୍ୟ ବିରଳ । ମନୁଷ୍ୟ ଜାତିର ରାଜନୈତିକ ଇତିହାସ କେବଳ ଅଗଣିତ ଯୁଦ୍ଧର ହିସାବ ନିକାଶ ବୋଲି କହିଲେ ବିଶେଷ କିଛି ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ଏହି ସଂଖ୍ୟାହୀନ ଯୁଦ୍ଧମାନଙ୍କ ମଧ୍ୟରୁ ହୁଏତ କୌଣସି ଯୁଦ୍ଧର ଶେଷରେ ବିଶ୍ୱ ବକ୍ଷରେ ଶାନ୍ତିର ପ୍ରଚାର ପାଇଁ ଏପରି ଏକ ସମ୍ୟକ୍ ଉଦ୍ୟମ ହୋଇ ନାହିଁ ଯେଉଁ ଉଦ୍ୟମ କଳିଙ୍ଗ ଯୁଦ୍ଧ ପରେ କରାଯାଇଥିଲା । ବାସ୍ତବିକ୍ ମନୁଷ୍ୟ ଜାତିର ସେ ଥିଲା ଗୋଟିଏ ଅତି ପବିତ୍ର ମୁହୂର୍ତ୍ତ ଯେତେବେଳେ ବିଜେତା ଅଶୋକ ବିଜିତ କଳିଙ୍ଗ ଦେଶର ଧୂମାୟମାନ ହୋଇ ସ୍ତୂପୀକୃତ ଧ୍ୱଂସରାଶିର ଲେଲିହାନ ଶିଖାପ୍ରତି ଆତଙ୍କିତ ଦୃଷ୍ଟିପାତ କରିଥିଲେ । ଶତ ସହସ୍ର ନିରୀହ ମନୁଷ୍ୟର ମୃତଶବ, ଲକ୍ଷ ଲକ୍ଷ ନିରାଶ୍ରୟ ନରନାରୀଙ୍କର ହୃଦୟବିଦାରୀ ଆର୍ତ୍ତନାଦ, ଦୁର୍ଭିକ୍ଷ ପ୍ରପୀଡ଼ିତ ଯୁଦ୍ଧଧ୍ୱସ୍ତ ଦେଶର କରୁଣ ଛବି, ଚତୁର୍ଦ୍ଦିଗରେ ନୈରାଶ୍ୟ ଏବଂ ହାହାକାର, ଗୋଟିଏ ବିରାଟ ସାମ୍ରାଜ୍ୟ ବକ୍ଷରେ ଦିଗନ୍ତ-ବିସ୍ତାରୀ ଏକ ମହାଶ୍ମଶାନର ମୃତ୍ୟୁରୂପୀ ଦୃଶ୍ୟ, ଏ ସମସ୍ତର ସମ୍ମୁଖ ପ୍ରତିକ୍ରିୟା ତଡ଼ିତ୍ ଗତିରେ ବିଜୟୀ ଅଶୋକଙ୍କର ବିଜୟୋତ୍‌ଫୁଲ୍ଲ ହୃଦୟରେ ଏକ ପ୍ରବଳ ଝଞ୍ଜା ସୃଷ୍ଟି କରିଥିଲା । ଏ ଝଞ୍ଜା ଥିଲା ବିଜୟୀ ସମ୍ରାଟଙ୍କ ପ୍ରତି ଏକ ଚିରନ୍ତନ ପ୍ରଶ୍ନ । ନର ରକ୍ତରେ ଧରା ପ୍ଲାବିତ କରି, ମନୁଷ୍ୟର ସୁଖ ସମୃଦ୍ଧି ଚୂର୍ଣ୍ଣୀଭୂତ କରି, ଲକ୍ଷ ଲକ୍ଷ ନରନାରୀ ଶିଶୁ ବୃଦ୍ଧଙ୍କର କରୁଣ ତପ୍ତ ଶ୍ୱାସରେ ଗଗନ ମଣ୍ଡଳ ଦୂଷିତ କରି ଏ ଯେଉଁ ବିଜୟ ତାହାର ମୂଲ୍ୟ କ'ଣ ? ତାହାର ଅର୍ଥ କ'ଣ ? ଅନ୍ୟାନ

ପଞ୍ଚଲକ୍ଷ ନରନାରୀଙ୍କର ମୃତପିଣ୍ଡ ଉପରେ କଳିଙ୍ଗଯୁଦ୍ଧର ଅବସାନ ହୋଇଥିଲା । କିନ୍ତୁ ଏହି ପାଞ୍ଚଲକ୍ଷ ମୃତପିଣ୍ଡ କ'ଣ ବିଜୟୀର ବରଣମାଳା ? ଯୁଦ୍ଧର ଘନଘଟା ମଧ୍ୟରେ ଅଶୋକ ଏପରି ନରହତ୍ୟାର ଦାରୁଣ ପରିଣତି ବିଷୟ ଚିନ୍ତା କରିବାକୁ ହୁଏତ ସମୟ ପାଇ ନ ଥିଲେ । କିନ୍ତୁ ଯୁଦ୍ଧର ଅବସାନ ପରେ ଯୁଦ୍ଧର ବାସ୍ତବ ବିଭିଷିକା ଉଲଗ୍ନ ଭାବରେ ତାହାଙ୍କର ବିସ୍ଫାରିତ ନେତ୍ରଦ୍ୱୟକୁ ଉଦ୍ଭାସିତ କରି ଦେଇଥିଲା । ସେତେବେଳେ ବିଜୟୀ ବୀର ସ୍ୱକୃତ ଧ୍ୱଂସସ୍ତୂପ ମଧ୍ୟରେ ଦେଖି ପାରିଥିଲେ ନିଜର ଗୌରବ ସୌଧ, ଲକ୍ଷ ଲକ୍ଷ ବିଧବା ଏବଂ ନିରାଶ୍ରୟର ଅଭିଶାପ ଓ ଶ୍ୱାନ ଗୃଧ୍ରର କ୍ରନ୍ଦିତ ରବ ମଧ୍ୟରେ ଶୁଣି ପାରିଥିଲେ ନିଜର ବିଜୟ ବନ୍ଦନା, ଏବଂ ରକ୍ତ କର୍ଦ୍ଦମାକ୍ତ କଳିଙ୍ଗ ମାଟିରେ ଦେଖି ପାରିଥିଲେ ନିଜର ବିଜୟ ତିଳକ । ଏତେବେଳେ ସତକତ ସମ୍ରାଟଙ୍କ ପ୍ରାଣରେ ସଞ୍ଚାରିତ ହୋଇଥିଲା ଏକ ଦାରୁଣ ଅନୁତାପ ଯେଉଁ ଅନୁତାପର ପରିଣତି ହେଲା ସମ୍ରାଟଙ୍କର ଅଲୌକିକ ପରିବର୍ତ୍ତନ । ସତେ ଯେପରି କଳିଙ୍ଗ ଉପକଣ୍ଠରୁ ଏତିକିବେଳେ ବୁଦ୍ଧ ତଥାଗତଙ୍କର ଅମର ବାଣୀ ବୌଦ୍ଧ ଭିକ୍ଷୁମାନଙ୍କ କଣ୍ଠରୁ ନିସୃତ ହୋଇ ଅଶୋକଙ୍କ କର୍ଣ୍ଣ କୁହରରେ ପ୍ରବେଶ କରିଥିଲା,—'ଅହିଂସା ପରମୋ ଧର୍ମ' । ବିଜୟୀ ଅଶୋକଙ୍କ ରକ୍ତରଞ୍ଜିତ ଅସି ବିଜିତ ରାଜ୍ୟର ରକ୍ତମାକ୍ତ ବକ୍ଷରେ ଖସି ପଡ଼ିଥିଲା । ଅଶୋକ ଉପଲବ୍ଧି କରି ପାରିଥିଲେ 'ହିଂସା ପ୍ରଶୋଦିତ ତରବାରୀର ଜୟ ଜୟ ନୁହେଁ, ଅହିଂସା ଏବଂ ପ୍ରେମର ଜୟ ହିଁ ପ୍ରକୃତ ଜୟ ।' ବିଜୟ ଶେଷରେ ବିଜୟୀର ଏପରି ପରିବର୍ତ୍ତନ ପୃଥିବୀ ଇତିହାସରେ ଏହି ପ୍ରଥମ ଏବଂ ଏହି ଶେଷ । ଏହି ପରିବର୍ତ୍ତନ ଫଳରେ ମନୁଷ୍ୟ ଜାତି ଯେତେଦୂର ଉପକୃତ ହୋଇ ପାରିଛି ତାହା ବର୍ଣ୍ଣନା କରିବାକୁ ଚେଷ୍ଟା କରିବା ବାହୁଲ୍ୟ ମାତ୍ର । ପରିବର୍ତ୍ତନ ପରେ ଅଶୋକ ଦିଗ୍‌ବିଜୟୀ ପରିବର୍ତ୍ତେ ଧର୍ମ ବିଜୟୀ ରୂପେ ପୃଥିବୀ ବକ୍ଷରେ ଦଣ୍ଡାୟମାନ ହୋଇଥିଲେ ଏବଂ ଏହି ଧର୍ମବିଜୟୀ ରୂପେ ସେ ପୃଥିବୀର ଦିଗେ ଦିଗେ ନିଜର ଧର୍ମଦୂତ ପ୍ରେରଣପୂର୍ବକ ହିଂସା ଏବଂ ଅଶାନ୍ତି-ଗ୍ରସ୍ତ ମାନବ ସମାଜ ମଧ୍ୟରେ ଶାନ୍ତି ଏବଂ ଅହିଂସାର ମହାମନ୍ତ୍ର ପ୍ରଚାର କରିଥିଲେ । କଳିଙ୍ଗ ମହାସମର ପୂର୍ବରୁ ବୌଦ୍ଧ ଜାତକମାନଙ୍କ କଥାନୁଯାୟୀ ଅଶୋକ ଥିଲେ ଚଣ୍ଡାଶୋକ, କିନ୍ତୁ ମହାସମର ପରେ ଅଶୋକ ହେଲେ ଧର୍ମାଶୋକ । ପରିବର୍ତ୍ତନ ପୂର୍ବରୁ ଅଶୋକ ଥିଲେ ଭାରତର ଜନୈକ ଦିଗ୍‌ବିଜୟୀ ଯୋଦ୍ଧା, କିନ୍ତୁ ପରିବର୍ତ୍ତନ ପରେ ସେ ହେଲେ ଭାରତ ତଥା ପୃଥିବୀର ଜନୈକ ଧର୍ମଗୁରୁ । କଳିଙ୍ଗର ପବିତ୍ର ମାଟିରେ ଅନୁତପ୍ତ

ସମ୍ରାଟ ଚିରଦିନ ପାଇଁ ନିଜର ଯୁଦ୍ଧ ଏବଂ ବିଜୟ କାମନା ପରିତ୍ୟାଗପୂର୍ବକ ଏକ ନବୀନ ପଥର ପଥିକ ହିସାବରେ ଦେଶ ବିଦେଶରେ ଏବଂ ଜାତିଧର୍ମ-ନିର୍ବିଶେଷରେ ବୁଦ୍ଧ ତଥାଗତଙ୍କର ସାମ୍ୟ, ମୈତ୍ରୀ ଏବଂ ଅହିଂସା ବାଣୀ ପ୍ରଚାରାର୍ଥେ ଜୀବନର ଅବଶିଷ୍ଟାଂଶ ସମସ୍ତ ଅକାତର ପ୍ରାଣରେ ଉତ୍ସର୍ଗ କରିଥିଲେ। ଏହାହିଁ ଥିଲା ଅଶୋକଙ୍କର ବିଶେଷତ୍ୱ ଯେଉଁଥିପାଇଁ ସେ ଆଜି ପୃଥିବୀର ରାଜନ୍ୟମଣ୍ଡଳୀରେ ସର୍ବଶ୍ରେଷ୍ଠ। କଳିଙ୍ଗଯୁଦ୍ଧ ପରେ ଭାରତ ମଧ୍ୟରେ ପ୍ରଜାମାନଙ୍କର ହିତ ସାଧନାର୍ଥେ ଅଶୋକ ଯାହା କରିଗଲେ ତାହା ପୃଥିବୀର ଅନ୍ୟ କୌଣସି ସ୍ଥାନରେ କୌଣସି ସମ୍ରାଟ କରି ନାହାନ୍ତି। ଭାରତ ବାହାରେ ଅଶୋକଙ୍କର ଧର୍ମଦୂତ ଏବଂ ଧର୍ମଯାଜକମାନଙ୍କର ପ୍ରଚାର ଫଳରେ ସୁଦୂର ଚୀନ, ଜାପାନ, ତିବ୍ବତ, ମଙ୍ଗୋଲିଆ, ଶ୍ୟାମ, ବ୍ରହ୍ମ, ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ, ସିଂହଳ ଏବଂ ମଧ୍ୟ-ପ୍ରାଚ୍ୟଖଣ୍ଡରେ ବୌଦ୍ଧଧର୍ମ ପ୍ରଚାରିତ ହୋଇଥିଲା। ବୌଦ୍ଧଧର୍ମ ପ୍ରଚାରାର୍ଥେ ସମ୍ରାଟ ଅଶୋକ ଯାହା କରି ଯାଇଛନ୍ତି ଅନ୍ୟ କୌଣସି ଧର୍ମ ପ୍ରଚାରାର୍ଥେ ଅନ୍ୟ କୌଣସି ସମ୍ରାଟ ସେପରି କରି ନାହାନ୍ତି। ଅବଶ୍ୟ ଅନେକ ସମ୍ରାଟ ନିଜ ନିଜର ଧର୍ମ ଅପରମାନଙ୍କ ମଧ୍ୟରେ ଅସି ମୁନରେ ପ୍ରଚାର କରିବାକୁ ବହୁ ଚେଷ୍ଟା କରିଛନ୍ତି। ଜଣେ ସୁଲତାନ୍ ମାହ୍‌ମୁଦ୍ ଶାଣିତ କୃପାଣ ଧାରରେ ଭାରତ ଖଣ୍ଡରେ ଇସ୍‌ଲାମ ଧର୍ମ ପ୍ରଚାର କରିବା ପାଇଁ ବ୍ୟାକୁଳ ହୋଇ ପଡ଼ିଥିଲେ ଏବଂ ସେ ପାଇଁ ପ୍ରାଣପଣ ଚେଷ୍ଟା କରିଥିଲେ। କିନ୍ତୁ ମାହ୍‌ମୁଦ୍‌ଙ୍କ ପରି ତଥାକଥିତ ଧର୍ମପ୍ରଚାରକମାନଙ୍କୁ ପୃଥିବୀ କୌଣସି କାଳେ ଧର୍ମପ୍ରଚାରକରୂପେ ଗ୍ରହଣ କରି ନାହିଁ କିମ୍ବା ସେମାନଙ୍କର ଧର୍ମକୀର୍ତ୍ତି ଦ୍ୱାରା ମନୁଷ୍ୟ ସମାଜର ଦୁର୍ଦ୍ଦଶା ବ୍ୟତୀତ କଲ୍ୟାଣ ବୋଲି କିଛି ସାଧିତ ହୋଇ ନାହିଁ। କିନ୍ତୁ ପ୍ରେମ ବଳରେ ଅଶୋକ ସମଗ୍ର ପ୍ରାଚ୍ୟର ଏହି ମହା-ଜନତା ମଧ୍ୟରେ ଯେଉଁ ଧର୍ମବାଣୀ ପ୍ରଚାର କରିଗଲେ ତା ଫଳରେ ପ୍ରାଚ୍ୟ ସଭ୍ୟତା ଅଶୋକଙ୍କ ନିକଟରେ ଚିରଋଣୀ ଏବଂ ପ୍ରାଚ୍ୟର ଜନତା ନିକଟରେ ଅଶୋକ ଚିର ପୂଜ୍ୟ। କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ ଅଶୋକ ଯଦି ଭାରତରେ ଜନ୍ମ ଗ୍ରହଣ କରି ନ ଥାନ୍ତେ ଏବଂ ବୌଦ୍ଧଧର୍ମ ପ୍ରଚାରାର୍ଥ ନିଜର ସମଗ୍ର ଶକ୍ତି ନିୟୋଜିତ କରି ନ ଥାନ୍ତେ ତେବେ ଶାକ୍ୟମୁନିଙ୍କର ଧର୍ମ କେବଳ ଭାରତ-ଖଣ୍ଡରେହିଁ ଜନ୍ମ ହୋଇ ସେହିଠାରେ ବିଲୀନ ହୋଇଯାଇ ଥାଆନ୍ତା। ବୌଦ୍ଧଧର୍ମକୁ ଯଦି ପୃଥିବୀର ସର୍ବଶ୍ରେଷ୍ଠ ଧର୍ମରେ ପରିଣତ କରିଥିବା ପାଇଁ ଦାୟୀ କେହି ଥାଆନ୍ତି ସେ ହେଉଛନ୍ତି ଅଶୋକ। ଏଥିପାଇଁ ଅଶୋକଙ୍କ ଆସନ ଏତେ ଉଚ୍ଚରେ। କିନ୍ତୁ ଯଦି

କଳିଙ୍ଗ ରଣକ୍ଷେତ୍ରରେ ଅଶୋକଙ୍କର ମାନସିକ ପରିବର୍ତ୍ତନ ସଂଘଟିତ ହୋଇ ନ ଥା'ନ୍ତା ତେବେ ଅଶୋକଙ୍କ ନାମ ପୃଥିବୀ ଇତିହାସର ଅଗଣିତ ନାମ ମଧ୍ୟରେ ଲୁପ୍ତ ରହିଯାଇ ଥାଆନ୍ତା ମାତ୍ର । ଅଶୋକ ଆଜି ପୃଥିବୀର ସର୍ବଶ୍ରେଷ୍ଠ ସମ୍ରାଟରୂପେ ପରିଗଣିତ ହେଉଛନ୍ତି କେବଳ ତାଙ୍କର ଧର୍ମପ୍ରଚାର ଏବଂ ମନୁଷ୍ୟର କଲ୍ୟାଣାର୍ଥେ ଜୀବନ ଉତ୍ସର୍ଗ କରିଥିବା ଯୋଗୁଁ ; ଅଶୋକ ଧର୍ମପ୍ରଚାର ଏବଂ ଜନ ହିତାର୍ଥେ ଜୀବନ ଉତ୍ସର୍ଗ କରି ପାରିଲେ କଳିଙ୍ଗ ରଣକ୍ଷେତ୍ରରେ ତାହାଙ୍କର ଯେଉଁ ଅସାଧାରଣ ପରିବର୍ତ୍ତନ ଆସିଥିଲା ସେହି ଯୋଗୁଁ ; ଏବଂ ତାହାଙ୍କର ସେପରି ଏକ ପରିବର୍ତ୍ତନ ଆସିଥିଲା କଳିଙ୍ଗର ଲକ୍ଷ ଲକ୍ଷ ନରନାରୀଙ୍କର ଅକାତର ପ୍ରାଣଦାନ ଯୋଗୁଁ । ତେଣୁ କଳିଙ୍ଗ ଦେଶର ସେହି ଅଜଣା ଅଶୁଣା ଅଗଣିତ ଆବାଳବୃଦ୍ଧବନିତା ନିଜର ରକ୍ତଦ୍ୱାରା ମନୁଷ୍ୟ ଜାତିକୁ ପୃଥିବୀର ଶ୍ରେଷ୍ଠତମ ନରପତିଙ୍କୁ ଦାନ କରି ଯାଇଛନ୍ତି । କଳିଙ୍ଗ ଇତିହାସର ଯଦି କିଛି ସର୍ବଶ୍ରେଷ୍ଠ ଘଟଣା ଥାଏ ତାହା ହେଉଛି ଅଶୋକଙ୍କ କଳିଙ୍ଗ ମହାଯୁଦ୍ଧ । ଆଜି ଅଶୋକଙ୍କୁ ଗର୍ଭରେ ଧାରଣ କରିଥିବା ପାଇଁ ଭାରତବର୍ଷ ଯଦି ଗର୍ବ ଅନୁଭବ କରେ ତେବେ ସେ ଗର୍ବ ପାଇଁ ଦାୟୀ କଳିଙ୍ଗ ଦେଶ । ବାସ୍ତବରେ ଦେବାନାଂପ୍ରିୟ ପ୍ରିୟଦର୍ଶୀ ଅଶୋକଙ୍କ ତରବାରି ତଳେ ରକ୍ତଦାନ କରି କଳିଙ୍ଗ ଚରିତରେ ଧନ୍ୟ ।

କଳିଙ୍ଗ ଧ୍ୱଂସର ବଭତ୍ସ ଦୃଶ୍ୟରେ କପରି ଅଶୋକଙ୍କ ପ୍ରାଣରେ ପରିବର୍ତ୍ତନ ଆସିଲା ସେ ବିଷୟ ଅନୁତପ୍ତ ସମ୍ରାଟ ଭବିଷ୍ୟତ ଭାରତବାସୀଙ୍କ ଉଦ୍ଦେଶ୍ୟରେ ଶିଳା ଗାତ୍ରରେ ଲିପିବଦ୍ଧ କରି ଯାଇଛନ୍ତି । ଅନୁତପ୍ତ ସମ୍ରାଟଙ୍କର ସେ ଅନ୍ତର ବେଦନା ଆଜିସୁଦ୍ଧା କଳିଙ୍ଗ ସମରର ମହାତ୍ମ୍ୟ ପୃଥିବୀ ଆଗରେ ଘୋଷଣା କରୁଛି । ପାଷାଣ ଖୋଦିତ ଅନୁଶାସନରେ ଏହିପରି ଭାବରେ ଅଶୋକଙ୍କ ବାଣୀ କଣ୍ଟିତ ଅଛି । "ଦେବାନାଂ ପ୍ରିୟ ପ୍ରିୟଦର୍ଶୀ ରାଜାଙ୍କ ରାଜତ୍ୱର ଅଷ୍ଟମ ବର୍ଷରେ କଳିଙ୍ଗ ବିଜୟ କରାଯାଇଥିଲା । କଳିଙ୍ଗ ଯୁଦ୍ଧରେ ଏକ ଲକ୍ଷ ପଞ୍ଚାଶତ୍ ସହସ୍ର ମନୁଷ୍ୟ ବନ୍ଦୀ ହିସାବରେ ଧୃତ ହୋଇଥିଲେ, ଏକ ଲକ୍ଷ ମନୁଷ୍ୟଙ୍କୁ ହତ୍ୟା କରାଯାଇଥିଲା, ଏବଂ ଏହି ସଂଖ୍ୟାର ବହୁଗୁଣ ମନୁଷ୍ୟ ଯୁଦ୍ଧ ହେତୁ କିହତ ହୋଇଥିଲେ । ଏ ଘଟଣା ପରେ ପ୍ରିୟଦର୍ଶୀ ରାଜାଙ୍କ ମନ ଧର୍ମପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲା ଏବଂ ସେ ଧର୍ମ ରକ୍ଷା ଓ ଧର୍ମ ପ୍ରଚାର ପାଇଁ ତତ୍ପର ହୋଇ ପଡ଼ିଥିଲେ । ଏହିପରି କଳିଙ୍ଗ ବିଜୟଜନିତ ହତ୍ୟାକାଣ୍ଡ ଯୋଗୁଁ ପ୍ରିୟଦର୍ଶୀଙ୍କ ହୃଦୟରେ ଗଭୀର ଅନୁତାପ ଜାତ

ହୋଇଥିଲା, କାରଣ ଏକ ନୂତନ ରାଜ୍ୟଜୟ ମୂଳରେ ନରହତ୍ୟା, ମୃତ୍ୟୁ, ବନ୍ଦୀକରଣ ପ୍ରଭୃତି କାର୍ଯ୍ୟ ଲାଗି ରହିଥାଏ । ଏ ସମସ୍ତ କାର୍ଯ୍ୟ ଦେବାନାଂ ପ୍ରିୟ ପ୍ରିୟଦର୍ଶୀ ରାଜାଙ୍କ ପକ୍ଷରେ ଗଭୀର ଦୁଃଖ ଓ ଅନୁତାପର ବିଷୟ ଅଟେ । ଅନ୍ୟ ଏକ ବିଷୟ ପାଇଁ ମଧ୍ୟ ପ୍ରିୟଦର୍ଶୀ ରାଜାଙ୍କ ମନରେ ଦୁଃଖ ଜାତ ହେଉଛି । ଯେଉଁ ରାଜ୍ୟ ଆକ୍ରମଣ କରାଯାଏ ସେ ରାଜ୍ୟରେ ବ୍ରାହ୍ମଣ, ଶ୍ରମଣ, ସନ୍ନ୍ୟାସୀ ଏବଂ ଗୃହସ୍ଥ-ମାନେ ବାସ କରୁଥାଆନ୍ତି ତଥା ଯେଉଁମାନେ ପିତାମାତା ଓ ଗୁରୁଙ୍କ ଆଜ୍ଞା ବହନ କରୁ ଥାଆନ୍ତି, ଯେଉଁମାନେ ବନ୍ଧୁବାନ୍ଧବ ଭୃତ୍ୟ ପ୍ରଭୃତିଙ୍କ ସହ ଯଥା-ଯୋଗ୍ୟ ବ୍ୟବହାର କରୁଥାଆନ୍ତି ସେମାନେ ମଧ୍ୟ ବାସ କରୁଥାଆନ୍ତି ; କିନ୍ତୁ ଯୁଦ୍ଧ ଦ୍ୱାରା ଏହି ସମସ୍ତ ଲୋକଙ୍କୁ ଏକେ ହତ୍ୟା କରାଯାଏ କିମ୍ବା ସେମାନଙ୍କ ପ୍ରତି ହିଂସାଚରଣ କରାଯାଏ, କିମ୍ବା ସେମାନଙ୍କୁ ସେମାନଙ୍କ ପ୍ରିୟଜନମାନଙ୍କ ନିକଟରୁ ବିଚ୍ଛିନ୍ନ କରାଯାଏ, ଏବଂ ସେମାନଙ୍କ ବନ୍ଧୁବାନ୍ଧବମାନେ ନିରାପଦରେ ରହିଲେ ସୁଦ୍ଧା ବିରହଜନିତ କ୍ଳେଶଦ୍ୱାରା ସେମାନଙ୍କ ପ୍ରତି ମଧ୍ୟ ହିଂସା କରାଯାଏ । ପ୍ରିୟଦର୍ଶୀ ରାଜାଙ୍କ ମନରେ ଦୁଃଖ ହେଉଛି ଯେ ହିଂସା ଏହିପରି ଭାବରେ ସମସ୍ତ ସମ୍ପ୍ରଦାୟର ଲୋକଙ୍କୁ ବିପଦଗ୍ରସ୍ତ କରିଥାଏ । ଏଥିପାଇଁ କଳିଙ୍ଗରେ ଯେତେ ମନୁଷ୍ୟଙ୍କୁ ହତ୍ୟା କରାଯାଇଥିଲା କିମ୍ବା ସେଠାରେ ଯେତେ ମନୁଷ୍ୟ ମୃତ୍ୟୁ ମୁଖରେ ପତିତ ହୋଇଥିଲେ କିମ୍ବା ଯେତେ ମନୁଷ୍ୟଙ୍କୁ ସେଠାରୁ ବନ୍ଦୀ ହିସାବରେ ନିଆ ଯାଇଥିଲା, ବର୍ତ୍ତମାନ ସେ ସଂଖ୍ୟାର ଶତାଂଶ କିମ୍ବା ସହସ୍ରାଂଶରୁ ଏକ ଅଂଶ ମନୁଷ୍ୟଙ୍କ ଭାଗ୍ୟରେ ଯଦି ସେପରି ଦୁର୍ଦ୍ଦଶା ଘଟେ ତେବେ ତାହା ପ୍ରିୟଦର୍ଶୀ ରାଜାଙ୍କ ହୃଦୟରେ ଦାରୁଣ ଦୁଃଖ ସୃଷ୍ଟି କରିବ । ବରଂ ଅନ୍ୟକେହି ତାଙ୍କ ପ୍ରତି ଅନ୍ୟାୟ ଆଚରଣ କଲେ ପ୍ରିୟଦର୍ଶୀ ରାଜା ତାହା ଯଥାସମ୍ଭବ ସହ୍ୟ କରିବେ । ଏହା ବ୍ୟତୀତ, ତାହାଙ୍କ ସାମ୍ରାଜ୍ୟର ବିଭିନ୍ନ ଅଞ୍ଚଳରେ ଯେଉଁ ବନ୍ୟଜାତିର ମନୁଷ୍ୟ-ମାନେ ବସବାସ କରୁଛନ୍ତି ସେମାନଙ୍କ ପ୍ରତି ମଧ୍ୟ ପ୍ରିୟଦର୍ଶୀ ରାଜାଙ୍କର ଯଥେଷ୍ଟ ଦୟା ଅଛି ଏବଂ ସେମାନେ ଯେପରି ସତ୍‌ପଥରେ ଗତି କରନ୍ତି ସେଥିପାଇଁ ପ୍ରିୟଦର୍ଶୀ ରାଜାଙ୍କର ସଦାସର୍ବଦା ଚେଷ୍ଟା ଯାହା ବିଫଳ ହେଲେ ପ୍ରିୟଦର୍ଶୀଙ୍କର ଅତ୍ୟନ୍ତ ଦୁଃଖ ହେବ । ସେହି ବନ୍ୟ ଜାତିର ମନୁଷ୍ୟମାନଙ୍କୁ ଉପଦେଶ ଦିଆ-ଯାଉଛି ଯେ ସେମାନେ କୁପଥ ପରିତ୍ୟାଗ କରନ୍ତୁ ଯାହାଦ୍ୱାରା ସେମାନେ ଦଣ୍ଡିତ ହେବେ ନାହିଁ । ପ୍ରିୟଦର୍ଶୀଙ୍କର ଏକାନ୍ତ କାମନା ଯେ ସମସ୍ତ ମନୁଷ୍ୟ ସଂଯମୀ, ସୁଖୀ, ଉଦାର ଏବଂ ନିରାପଦଭାବରେ ଜୀବନ ଯାପନ କରନ୍ତୁ ।”

ଶିଳାଲିପି ଏତିକରେ ସମାପ୍ତ ହୋଇ ନାହିଁ । ପରବର୍ତ୍ତୀତ ଅଶୋକଙ୍କର ମାନବ ଜାତି ପ୍ରତି ଯେଉଁ ବାଣୀ ତାହା ଆଗେଇ ଚାଲିଛି । "ଦେବାନାଂ ପ୍ରିୟ ମନେ କରନ୍ତି ଯେ ଧର୍ମବିଜୟହିଁ ସର୍ବଶ୍ରେଷ୍ଠ ବିଜୟ । ପ୍ରିୟଦର୍ଶୀଙ୍କ ଇଚ୍ଛା ଯେ ତାଙ୍କ ନିଜ ରାଜ୍ୟରେ ତଥା ଅନ୍ୟ ପ୍ରତିବେଶୀ ରାଜ୍ୟମାନଙ୍କରେ ଯେଉଁଠି ଯବନ-ରାଜ ଅନ୍ତିଓକ ବାସ କରନ୍ତି ଏବଂ ତାହାଙ୍କ ଉତ୍ତରକୁ ଯେଉଁଠି ତୁରାମୟ, ଏଣ୍ଟିଗୋନ୍ସ, ମାଗ ଓ ଅଲିକାସୁନ୍ଦର[1] ନାମଧେୟ ରାଜାମାନେ ରାଜତ୍ୱ କରନ୍ତି, ତଥା ଦକ୍ଷିଣରେ ତାମ୍ରପର୍ଣ୍ଣି ନଦୀ ପର୍ଯ୍ୟନ୍ତ ଦେଶମାନଙ୍କରେ ଏବଂ ଯବନ, କାମ୍ବୋଜ, ନାଭକର, ନାଭ୍ରପନ୍ତି, ଭୋଜ, ପିଟିନିକା, ଆନ୍ଧ୍ର, ପୁଲିନ୍ଦ, ଚୋଳ, ପାଣ୍ଡ୍ୟ ପ୍ରଭୃତି ଜାତିମାନଙ୍କ ମଧ୍ୟରେ ମଧ୍ୟ ଏହି ଧର୍ମବିଜୟ ସଫଳ ହେଉ । ପ୍ରିୟଦର୍ଶୀଙ୍କର ଆନନ୍ଦ ଯେ ସମସ୍ତେ ତାଙ୍କର ନିର୍ଦ୍ଦେଶାନୁଯାୟୀ ଧର୍ମପଥରେ ଚାଲୁଛନ୍ତି । ଏପରିକି ଯେଉଁ ସ୍ଥାନମାନଙ୍କରେ ପ୍ରିୟଦର୍ଶୀଙ୍କ ଦୂତମାନେ ପହଞ୍ଚି ପାରୁ ନାହାନ୍ତି, ସେ ସ୍ଥାନମାନଙ୍କରେ ମଧ୍ୟ ତାଙ୍କର ଧର୍ମବାର୍ତ୍ତା ଶୁଣି ଲୋକେ ତଦନୁସାରେ ଉକ୍ତ ଧର୍ମ ପାଳନ କରୁଛନ୍ତି ଏବଂ କରିବେ । ଏହିପରି ଚତୁର୍ଦ୍ଦିଗରେ ଧର୍ମର ବିଜୟ ସାଫଲ୍ୟମଣ୍ଡିତ ହେଉଛି ଏବଂ ଏପରି ବିଜୟ ବାସ୍ତବିକ୍ ଆନନ୍ଦଦାୟକ । କିନ୍ତୁ ଇହଲୋକର ଏ ବିଜୟ ଅପେକ୍ଷା ପରଲୋକର ବିଜୟ ପ୍ରିୟଦର୍ଶୀଙ୍କ ସମ୍ମୁଖରେ ଅଧିକ ଫଳପ୍ରଦ ।"

ଏହାପରେ ପ୍ରିୟଦର୍ଶୀ ସମ୍ରାଟ ନିଜର ପୁତ୍ର ପୌତ୍ରାଦିକ୍ରମେ ଭାବୀ ବଂଶଧର-ମାନଙ୍କୁ ଧର୍ମପଥରେ ଚାଲିବା ପାଇଁ ଏବଂ ନରରକ୍ତରେ ଧରା ରଞ୍ଜିତ ନ କରିବା ପାଇଁ ସତର୍କବାଣୀ ଖୋଦିତ କରିଯାଇଛନ୍ତି । "ମୋର ଏହି ଧର୍ମାନୁଶାସନମାନ ଲିପିବଦ୍ଧ କରିବାର ଉଦ୍ଦେଶ୍ୟ ହେଉଛି ଯେ ମୋର ପୁତ୍ର ପୌତ୍ରମାନେ କିମ୍ବା ଅନ୍ୟ ଯେ କେହି ହୁଅନ୍ତୁ ସେମାନେ ଯେପରି ନୂତନ ନୂତନ ରାଜ୍ୟଜୟ କରିବା କାର୍ଯ୍ୟକୁ ନିଜର କର୍ତ୍ତବ୍ୟ ବୋଲି ମନେ ନ କରନ୍ତି । ଯଦି ରାଜ୍ୟଜୟ ପାଇଁ ସେମାନଙ୍କର ପ୍ରବଳ ବାସନା ଜାଗ୍ରତ ହୁଏ ତେବେ ସେମାନେ ଧୈର୍ଯ୍ୟ ଏବଂ ସହିଷ୍ଣୁତା ଅବଲମ୍ବନପୂର୍ବକ ଧର୍ମର ଜୟକୁହିଁ ପ୍ରକୃତ ଜୟ ବୋଲି ମନେ କରନ୍ତୁ । କାରଣ ଧର୍ମ-

---

1. ଅନ୍ତିଓକ, ତୁରାମୟ, ଏଣ୍ଟଗୋନ, ମାଗ ଅଲିକାସୁନ୍ଦର, ଏମାନେ ହେଉଛନ୍ତି ଅଶୋକଙ୍କ ସମସାମୟିକ ଗ୍ରୀସ୍ ଓ ମିଶର ଦେଶମାନଙ୍କର ରାଜା । ଗ୍ରୀକ୍ ଭାଷାରେ ସେମାନଙ୍କର ନାମ ହେଉଛି Antiochus, Ptolomy, Antigonus, Magus and Alexander.

ବିଜୟ ଇହଲୋକ ଏବଂ ପରଲୋକ ଉଭୟର ମଙ୍ଗଳଦାୟକ, ଏବଂ ସତ୍କାର୍ଯ୍ୟଦ୍ୱାରା ଏ ଦୁଇ ସ୍ଥାନରେ ଶାନ୍ତିଲାଭ କରିବା ପାଇଁ ସେମାନେ ପ୍ରୟାସୀ ହୁଅନ୍ତୁ ।"

କଳିଙ୍ଗ ମହାସମର ପରେ ଅଶୋକଙ୍କର ଯେଉଁ ପରିବର୍ତ୍ତନ ଆସିଥିଲା ଏବଂ ଯେଉଁ ପରିବର୍ତ୍ତନ ଫଳରେ ପୃଥିବୀ ବକ୍ଷରେ ତାହାଙ୍କର ଯେଉଁ ଧର୍ମବିଜୟର ସୂତ୍ରପାତ ହେଲା ସେହି ଧର୍ମବିଜୟ ଫଳରେ ପୃଥିବୀରେ ପ୍ରକୃତ ବୌଦ୍ଧଯୁଗର ଆରମ୍ଭ ହେଲା । ଅଶୋକଙ୍କ ରାଜତ୍ୱକାଳ ବୌଦ୍ଧଧର୍ମର ସୁବର୍ଣ୍ଣ ଯୁଗ । ଏହି ରାଜତ୍ୱ କାଳରେ ଭାରତଖଣ୍ଡରେ ବୌଦ୍ଧ ମତବାଦର ଯେଉଁ ପ୍ରବଳ ସ୍ରୋତ ବହିବାକୁ ଲାଗିଲା ସେହି ସ୍ରୋତରେ ନବ ବିଜିତ କଳିଙ୍ଗ ରାଜ୍ୟ ମଧ୍ୟ ଅନାୟାସରେ ଭାସି ଯାଇଥିଲା । ଅବଶ୍ୟ ଅଶୋକଙ୍କ ବହୁ ପୂର୍ବରୁ କଳିଙ୍ଗ-ଖଣ୍ଡରେ ବୌଦ୍ଧ ମତବାଦ ଢେର ଅଧିକ ପ୍ରଚାରିତ ହୋଇ ସାରିଥିଲା ଏବଂ ସେ ଧର୍ମର ମାହାତ୍ମ୍ୟ କଳିଙ୍ଗବାସୀ ଉପଲବ୍ଧି କରି ସାରିଥିଲେ । ଏପରିକି ଅଶୋକ ସ୍ୱୟଂ ଏହି କଳିଙ୍ଗ ମାଟିରେ ନିଜକୁ ପ୍ରକୃତ ବୌଦ୍ଧରେ ପରିଣତ କରାଇଥିଲେ । କିନ୍ତୁ ଅଶୋକଙ୍କ ସହ କଳିଙ୍ଗକୁ ବୌଦ୍ଧଧର୍ମ ଆସି ନ ଥିଲେ ସୁଦ୍ଧା ତାହାଙ୍କ ଅମଳରେ ଏବଂ ତାହାଙ୍କର ଅକ୍ଳାନ୍ତ ପରିଶ୍ରମ ବଳରେ ବୌଦ୍ଧଧର୍ମ କଳିଙ୍ଗର ଗଣଧର୍ମରେ ପରିଣତ ହୋଇଥିଲା । କଳିଙ୍ଗ ଅଶୋକଙ୍କୁ ବୌଦ୍ଧଧର୍ମରେ ଦୀକ୍ଷିତ କରାଇଥିଲା ଏବଂ ଅଶୋକ ସେହି କଳିଙ୍ଗର ଅକଳନ୍ତି ମନୁଷ୍ୟ ସମାଜକୁ ବୌଦ୍ଧ କରାଇଥିଲେ । ଭାରତର ଏହି ବୌଦ୍ଧ ଯୁଗରେ କଳିଙ୍ଗ ବୌଦ୍ଧ ସମ୍ରାଟଙ୍କର ଯଥେଷ୍ଟ ସହାନୁଭୂତି ଉପଭୋଗ କରିଛି ଏବଂ ସେହି ସମ୍ରାଟଙ୍କ ବାହୁଛାୟାତଳେ କଳିଙ୍ଗ ଭାରତର ଏକ ମୁଖ୍ୟ ବୌଦ୍ଧ କେନ୍ଦ୍ରରେ ପରିଣତ ହୋଇ ପାରିଛି । ସ୍ୱାଭାବିକ ଗତିରେ ଭାରତର ଅନ୍ୟ ପ୍ରଦେଶମାନଙ୍କ ଅପେକ୍ଷା କଳିଙ୍ଗହିଁ ଅଶୋକଙ୍କର ଅଧିକ ଦୟାର ପାତ୍ର ହୋଇଥିଲା । ଧ୍ୱସ୍ତ ବିଧ୍ୱସ୍ତ କଳିଙ୍ଗର ସୁଖ ସମୃଦ୍ଧି ପାଇଁ ଅଶୋକଙ୍କର ପ୍ରାଣ ନିଶ୍ଚୟ ବ୍ୟାକୁଳ ହୋଇ-ଥିଲା ଏଥିରେ ସନ୍ଦେହ ନାହିଁ । କାରଣ ଅଶୋକଙ୍କ କଳିଙ୍ଗ ଅନୁଶାସନମାନଙ୍କରୁ କଳିଙ୍ଗର ଜନସାଧାରଣଙ୍କ ପ୍ରତି ତାହାଙ୍କର ଯେଉଁ ଆନ୍ତରିକ ଦୟା ଥିଲା ତାହାର ବହୁଳ ପ୍ରମାଣ ମିଳେ । କଳିଙ୍ଗ ଦେଶର ସୁଶାସନ ପାଇଁ ଅଶୋକ ତାଙ୍କର ସମସ୍ତ କର୍ମଚାରୀଙ୍କୁ ଶିଳାଲିପିମାନଙ୍କରେ ସତର୍କ କରି ଦେଇଥିଲେ । କଳିଙ୍ଗବାସୀ ଆରଣ୍ୟକ ବା ଅଦମ୍ୟ ଅଧିବାସୀମାନଙ୍କୁ ନିର୍ଭୟରେ ବସବାସ କରିବାକୁ ଅଶୋକ ତାଙ୍କର ପୂର୍ଣ୍ଣ ପ୍ରତିଶ୍ରୁତି ଘୋଷଣା କରିଥିଲେ । କଳିଙ୍ଗର ପୁରପଲ୍ଲୀରେ ସୁଶାସନ

ଏବଂ ପ୍ରଜାଙ୍କର ସୁବନ୍ଦୋବସ୍ତ ଉଦ୍ଦେଶ୍ୟରେ ବିଭିନ୍ନ ପ୍ରକାରର ସ୍ଥାୟୀ ଏବଂ ଭ୍ରାମ୍ୟମାଣ କର୍ମଚାରୀମାନଙ୍କୁ ନିଯୁକ୍ତ କରାଯାଇଥିଲା । କଳିଙ୍ଗ ଖଣ୍ଡରେ ଅଶୋକଙ୍କ ସୁଶାସନର ମୂକସାକ୍ଷୀରୂପେ ଆଜିବି ଧଉଳି ଏବଂ ଜଉଗଡ଼ର ଶିଳାଲିପିମାନ ସଗର୍ବେ ଦଣ୍ଡାୟମାନ ରହିଛନ୍ତି । ଜଉଗଡ଼ଠାରେ ଯେଉଁ ଦୁଇ ସ୍ୱତନ୍ତ୍ର ଅନୁଶାସନ ଘୋଷଣା କରାଯାଇଛି ତାହା ଶାସକ ହିସାବରେ ଅଶୋକଙ୍କ ମହାନୁଭବତାର ଅମର ପରିଚୟସୂଚକ । "ସମସ୍ତ ମନୁଷ୍ୟ ମୋର ସନ୍ତାନ । ନିଜର ସନ୍ତାନମାନଙ୍କ ପାଇଁ ମୁଁ ଯେପରି ଇହ ଜଗତ ଏବଂ ପର ଜଗତରେ ଶାନ୍ତି କାମନା କରେ, ସେହିପରି ସମସ୍ତ ମନୁଷ୍ୟଙ୍କ ପାଇଁ ମଧ୍ୟ ମୁଁ ତାହାହିଁ ଚାହେଁ ।" କଳିଙ୍ଗର ଜଉଗଡ଼ ଅନୁଶାସନରେ ଅଶୋକଙ୍କର ଏ ଯେଉଁ ମହତ ଘୋଷଣା ଏହାର ଦୃଷ୍ଟାନ୍ତ ପୃଥିବୀ ପୃଷ୍ଠରେ ବିରଳ । ପରାଜିତ କଳିଙ୍ଗବାସୀଙ୍କ ପ୍ରାଣରେ ଏପରି ଏକ ଦୟାର୍ଦ୍ର ବାଣୀ ନିଶ୍ଚୟ ଏକ ନବୀନ ଆଶାର ସଞ୍ଚାର କରିଥିବ । ଏହି ଜଉଗଡ଼ ଠାରୁ ସମ୍ରାଟ କଳିଙ୍ଗର ଆଦିମ ଅନନ୍ତ ଅଧିବାସୀମାନଙ୍କୁ ତାହାଙ୍କର ନିର୍ଭୟ ବାଣୀ ଶୁଣାଇଛନ୍ତି, " ପ୍ରିୟଦର୍ଶୀଙ୍କର ଇଚ୍ଛା ସେମାନେ ତାଙ୍କୁ ଭୟ ନ କରି ବିଶ୍ୱାସ କରନ୍ତୁ, କାରଣ ସେମାନେ ମୋଠାରୁ କ୍ଲେଶ ପରିବର୍ତ୍ତେ ସୁଖ ପାଇବେ ।" କେବଳ ଏହି ନିର୍ଭୟ ବାଣୀ ଶୁଣାଇ ସମ୍ରାଟ କ୍ଷାନ୍ତ ହୋଇ ନାହାନ୍ତି ; ଏ ବାଣୀକୁ କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ ସେ କଳିଙ୍ଗର ଶାସନକର୍ତ୍ତାମାନଙ୍କୁ କଠୋର ନିର୍ଦ୍ଦେଶ ଦେଇ ଯାଇଛନ୍ତି, "ମୁଁ ତୁମ୍ଭମାନଙ୍କୁ ମୋର ନିର୍ଦ୍ଦେଶ ଦେଉଅଛି ଯେ ମୋର ଇଚ୍ଛା ଓ ପ୍ରତିଜ୍ଞା ସେହି ଲୋକମାନଙ୍କୁ ଜଣାଇ ଦିଅ ଏବଂ ମୋର ନିର୍ଦ୍ଦେଶାନୁଯାୟୀ କାର୍ଯ୍ୟ କରି ମୋର ଋଣମୁକ୍ତ ହୁଅ । ସୀମାନ୍ତବାସୀଙ୍କ ମନରେ ମୋ ପ୍ରତି ବିଶ୍ୱାସ ଜନ୍ମାଅ ଓ ସେମାନଙ୍କ ମନରେ ଏହି ଧାରଣା ବଦ୍ଧମୂଳ କରାଇ ଦିଅ ଯେ ରାଜା ସେମାନଙ୍କର ପିତା ସଦୃଶ ଏବଂ ସେମାନେ ରାଜାଙ୍କର ସନ୍ତାନ ସଦୃଶ, ରାଜା ନିଜକୁ ଯେମିତି ଭଲ ପାଆନ୍ତି, ସେମାନଙ୍କୁ ମଧ୍ୟ ସେହିପରି ଭଲ ପାଆନ୍ତି ।" ପ୍ରଜାମାନଙ୍କର ହିତାର୍ଥେ ଅଶୋକ ନିଜର କର୍ମଚାରୀ ଏବଂ ଶାସନକର୍ତ୍ତାମାନଙ୍କ ଉପରେ ଯେପରି କଡ଼ାକଡ଼ି ନିୟମ ନିଷ୍ଠା ଜାରି କରିଥିଲେ ସେଥିରୁ ସହଜରେ ଅନୁମିତ ହୁଏ ଯେ ମୌର୍ଯ୍ୟ ଶାସନ ପ୍ରଣାଳୀ ବିଶେଷତଃ ଅଶୋକଙ୍କ ଶାସନ ପ୍ରଣାଳୀ ଅତି ପବିତ୍ର ଥିଲା । ରାଜକର୍ମଚାରୀମାନଙ୍କର ଅନ୍ୟାୟ ଆଚରଣ କିମ୍ବା କର୍ତ୍ତବ୍ୟ ଅବହେଳା ଅଶୋକଙ୍କ ଯୁଗରେ ଜଣା ନ ଥିଲା । ଜଉଗଡ଼ ଅନୁଶାସନରେ ଅଶୋକ ତାହାଙ୍କ ଉଚ୍ଚପଦସ୍ଥ ଶାସନକର୍ତ୍ତା ମହାମାତ୍ରମାନଙ୍କୁ

ଯେପରିଭାବେ କର୍ତ୍ତବ୍ୟ ପାଳନର ନିର୍ଦ୍ଦେଶ ଦେଇଛନ୍ତି ତାହା ସେ ଯୁଗର ନିଷ୍ଠାପରତା ଅକ୍ଷରେ ଅକ୍ଷରେ ପ୍ରମାଣ କରେ । "ମୁଁ ଚାହେଁ ଯେ ମୋର ଯାହା ଇଚ୍ଛା ତାହା ନିଷ୍ଠିତରୂପେ କାର୍ଯ୍ୟରେ ପରିଣତ ହେଉ । ସେଥିପାଇଁ ତୁମମାନଙ୍କୁ ମୋର ଏହି ନିର୍ଦ୍ଦେଶ ଦେବା ଆବଶ୍ୟକ । ସହସ୍ର ସହସ୍ର ଜୀବଙ୍କ ଦାୟିତ୍ୱ ତୁମର ଉପରେ ନ୍ୟସ୍ତ । ସେପାଇଁ ତୁମମାନଙ୍କୁ ସଜ୍ଜନମାନଙ୍କର ଶ୍ରଦ୍ଧାଭାଜନ ହେବାକୁ ହେବ । -----ଅସୂୟା, ଅନଧ୍ୟବସାୟ, ନିଷ୍ଠୁରତା ଅଧୀରତା, ଅନେକାଗ୍ରତା, ଆଳସ୍ୟ ତନ୍ଦ୍ରା ପ୍ରଭୃତି ପ୍ରବୃତ୍ତି ଦ୍ୱାରା ସଫଳକାମ ହେବା ଅସମ୍ଭବ । ତୁମମାନଙ୍କର ସଚେଷ୍ଟ ହେବା ଉଚିତ ଯେ ଏପରି ପ୍ରବୃତ୍ତି ଯେପରି ନ ରହେ । ମୋର ଶାସନନୀତିକୁ ପ୍ରୟୋଗ କରିବା ପାଇଁ ଅଧ୍ୟବସାୟ ଏବଂ ଧୈର୍ଯ୍ୟ ପ୍ରଥମେ ଆବଶ୍ୟକ । ଆଳସ୍ୟ ପରିପୂର୍ଣ୍ଣ ଲୋକେ ପ୍ରଗତିପନ୍ଥୀ ହୋଇ ପାରିବେ ନାହିଁ । କିନ୍ତୁ ତୁମମାନଙ୍କୁ ଅଗ୍ରସର ହେବାକୁ ହେବ । ଅଗ୍ରସର ହୁଅ । କର୍ତ୍ତବ୍ୟ ପାଳନ କର ଏବଂ ମନେ ପକାଅ ଯେ ଏହା ପ୍ରିୟଦର୍ଶୀ ରାଜାଙ୍କର ନିର୍ଦ୍ଦେଶ । ମୋର ନିର୍ଦ୍ଦେଶ ପ୍ରତିପାଳନ କଲେ ସୁଫଳ ଫଳିବ ନଚେତ୍ ବିପଦ । ଯେଉଁମାନେ ନିର୍ଦ୍ଦେଶାନୁଯାୟୀ କାର୍ଯ୍ୟ ନ କରିବେ ସେମାନେ ପରଲୋକରେ ସ୍ୱର୍ଗ ପ୍ରାପ୍ତି ହେବେ ନାହିଁ କିମ୍ବା ଏ ଲୋକରେ ରାଜାନୁଗ୍ରହ ପାଇବେ ନାହିଁ । କର୍ତ୍ତବ୍ୟନିଷ୍ଠ ନ ହେଲେ ମୋର ଶ୍ରଦ୍ଧାଭାଜନ ହୋଇ ପାରିବ ନାହିଁ, କିନ୍ତୁ ମୋର ନିର୍ଦ୍ଦେଶାନୁଯାୟୀ କର୍ତ୍ତବ୍ୟ ପାଳନ କଲେ ତୁମେମାନେ ସ୍ୱର୍ଗ ଲାଭ କରିବ ତଥା ମୋଠାରୁ ମଧ୍ୟ ଋଣମୁକ୍ତ ହେବ । ----- ମହାମାତ୍ରମାନେ ଯେପରି ଅବିଶ୍ରାନ୍ତ ଚେଷ୍ଟା କରିବେ ସେଥିପାଇଁ ଏହି ଅନୁଶାସନ ଲିପିବଦ୍ଧ କରାଯାଉଛି । ସେମାନେ ଦେଖିବେ ଯେପରି କେହି ବିନା କାରଣରେ ଦଣ୍ଡିତ ନ ହୁଅନ୍ତି ।" ଅତି ଅଳ୍ପ ସଂଖ୍ୟକ ରାଜା ଏପରି ଭାବରେ ନିଜର ଉଚ୍ଚପଦସ୍ଥ ଶାସନକର୍ତ୍ତାମାନଙ୍କ ଉପରେ ଉପରଲିଖିତ ନିର୍ଭୀକ ଆଦେଶ ଜାରି କରିବାକୁ ସକ୍ଷମ ହୋଇଥିବେ । କେବଳ ଆଦେଶ ଜାରି କରି ଅଶୋକ କ୍ଷାନ୍ତ ହୋଇ ନାହାନ୍ତି । ତାହାଙ୍କର ଆଦେଶ ଅକ୍ଷରେ ଅକ୍ଷରେ ପାଳିତ ହେଉଛି କି ନାହିଁ ତାହାର ତଦନ୍ତ କରିବା ଉଦ୍ଦେଶ୍ୟରେ ଅଶୋକଙ୍କର ଭ୍ରାମ୍ୟମାଣ କର୍ମଚାରୀମାନେ ସଦା ସର୍ବଦା ଦେଶ ଭ୍ରମଣ କରୁଥାଆନ୍ତି ଏବଂ ସମ୍ରାଟଙ୍କୁ ଯଥା ସମୟରେ ରାଜ୍ୟର ତଥା ଶାସନର ସଂବାଦ ଶୁଣାଉଥାଆନ୍ତି । ଏହି ପରିଦର୍ଶକ ଭ୍ରାମ୍ୟମାଣ କର୍ମଚାରୀମାନଙ୍କ ବିଷୟ ଜଉଗଡ଼ ଅନୁଶାସନ ନିଜ ଭାଷାରେ ଖୋଦିତ

କରି ରଖିଛି । ସଂକ୍ଷେପରେ କହିବାକୁ ଗଲେ, ଅଶୋକଙ୍କ ଶାସନ ତଳେ କଳିଙ୍ଗ ପ୍ରକୃତ ସମୃଦ୍ଧି ଉପଭୋଗ କରିବାର ସୁଯୋଗ ପାଇଥିଲା । କେବଳ ମନୁଷ୍ୟ ଜଗତ ଯେ ଏ ସମୃଦ୍ଧିର ସୁଖଭୋଗ କରିଥିଲେ ତାହା ନୁହେଁ, ଏପରିକି ପଶୁଜଗତ ମଧ୍ୟ ଅଶୋକଙ୍କ ବାହୁଚ୍ଛାୟାତଳେ ଯଥେଷ୍ଟ ଉପକାର ପାଇଥିଲା । ଧଉଳି ଏବଂ ଜଉଗଡ଼ଠାରେ ପର୍ବତଖୋଦିତ ଧର୍ମଲିପିମାନଙ୍କରେ ସମ୍ରାଟଙ୍କର ପ୍ରାଣୀ ଜଗତ ପ୍ରତି ସହାନୁଭୂତି ଏହିପରି ଭାବରେ ଘୋଷଣା କରାଯାଇଛି, " - - - - ପ୍ରିୟଦର୍ଶୀ ରାଜା ଦୁଇ ପ୍ରକାର ଚିକିତ୍ସାର ବ୍ୟବସ୍ଥା କରିଛନ୍ତି, ଯଥା, ମନୁଷ୍ୟମାନଙ୍କର ଚିକିତ୍ସା ଏବଂ ପଶୁମାନଙ୍କର ଚିକିତ୍ସା । ମନୁଷ୍ୟ ଏବଂ ପଶୁମାନଙ୍କ ଚିକିତ୍ସା ପାଇଁ ସର୍ବତ୍ର ଔଷଧ ପଟା ହୋଇଛି ଏବଂ ଔଷଧ ଉଦ୍ଭିଦ ମଧ୍ୟ ଲଗା ହୋଇଛି । ଏପରିକି ଯେଉଁଠାରେ ଫଳମୂଳର ଅଭାବ ସେଠାରେ ଔଷଧ ଉଦ୍ଭିଦ ମଧ୍ୟ କରା ହୋଇଛି । ରାଜପଥମାନଙ୍କରେ କୂପମାନ ଖୋଦିତ ହୋଇଛି ଏବଂ ମନୁଷ୍ୟ ଓ ପଶୁମାନଙ୍କୁ ଛାୟାଦାନ କରିବା ପାଇଁ ବୃକ୍ଷମାନ ରୋପଣ କରାଯାଇଛି ।" ମହାଯୁଦ୍ଧ ପରେ ଦୀର୍ଘ ତିରିଶ ବର୍ଷକାଳ କଳିଙ୍ଗ ଅଶୋକଙ୍କ ସୁଶାସନ ଭୋଗ କରିଥିଲା । ଅଶୋକଙ୍କର ଏହି ତିରିଶ ବର୍ଷ ଶାସନ କଳିଙ୍ଗ ଜାତିର ଏକ ଚିର ସ୍ମରଣୀୟ କାଳ । ପ୍ରିୟଦର୍ଶୀ ସମ୍ରାଟଙ୍କର ପିତୃସମ ଦୟା ଫଳରେ ବିଜିତ କଳିଙ୍ଗ ମହା-ଯୁଦ୍ଧର ସମସ୍ତ ଯାତନା ପାସୋରି ଦେଇଥିବା ସମ୍ଭବ । ଶାସକ ହିସାବରେ ଅଶୋକ ଥିଲେ ଅକ୍ଳାନ୍ତ କର୍ମୀ । ନିଜର କର୍ମଚାରୀମାନଙ୍କୁ ଯେପରିଭାବେ କର୍ମଠ ହେବାକୁ ନିର୍ଦ୍ଦେଶ ଦେଇଥିଲେ ନିଜେ ଥିଲେ ତାହାଠାରୁ ଅଧିକ ମାତ୍ରାରେ କର୍ମଠ ଓ କର୍ତ୍ତବ୍ୟପରାୟଣ । ଉତ୍କଳର ଧଉଳି ଓ ଜଉଗଡ଼ଠାରେ ସମ୍ରାଟ କହିଛନ୍ତି, "ସଦା ସମୟରେ, ମୁଁ ଭୋଜନରତ ଥାଏଁ କିମ୍ବା ଅନ୍ତଃପୁରରେ ଥାଏଁ, ବିଶ୍ରାମ କକ୍ଷରେ ଥାଏଁ କିମ୍ବା ପଶୁଶାଳାରେ ଥାଏଁ, ଯାନ ବାହନ ମଧ୍ୟରେ ଥାଏଁ କିମ୍ବା ପ୍ରମୋଦ ଉଦ୍ୟାନରେ ଥାଏଁ, କିମ୍ବା ଅନ୍ୟ ଯେ କୌଣସି ସ୍ଥାନରେ ଥାଏଁ, ସବୁ ସ୍ଥାନରେ ମୋର ସମ୍ବାଦବାହୀ କର୍ମଚାରୀମାନେ ମୋତେ ମୋ ପ୍ରଜାଙ୍କ ବିଷୟରେ ସମ୍ବାଦ ଦେବେ । .........ଜନସାଧାରଣଙ୍କ ମଙ୍ଗଳ ପାଇଁ ମୁଁ ନିଶ୍ଚୟ କାର୍ଯ୍ୟ କରିବି ଏବଂ ସେ କାର୍ଯ୍ୟର ମୂଳମନ୍ତ୍ର ହେଉଛି ଶକ୍ତି ଓ ସକ୍ରିୟତା । ଜନସାଧାରଣଙ୍କ ମଙ୍ଗଳ ସାଧନ ଠାରୁ ବଳି ବଡ଼ କାର୍ଯ୍ୟ ଆଉ କିଛି ନାହିଁ । ପ୍ରାଣୀଙ୍କ ନିକଟରୁ ଋଣମୁକ୍ତ ହେବାପାଇଁ ମୋର ଏ ସମସ୍ତ ଉଦ୍ୟମ ।" ଏପରି ଏକ

ଅନ୍ତର୍ଭୁକ୍ତ ନରପତିଙ୍କ ଅଧୀନରେ ରହିଥିବା ଯୋଗୁଁ କଳିଙ୍ଗ ସତ୍ୟ ସତ୍ୟ ଭାଗ୍ୟବାନ ।

କିନ୍ତୁ ଅଶୋକଙ୍କ ଶାସନକାର୍ଯ୍ୟ ଅପେକ୍ଷା ତାହାଙ୍କର ଧର୍ମପ୍ରଚାର ପାଇଁ ସେ ଅଧିକତର ପ୍ରସିଦ୍ଧ । ଅଶୋକଙ୍କ ରାଜତ୍ୱ କାଳରେ ବୌଦ୍ଧ ଭାରତର ସଭ୍ୟତା ଓ ସଂସ୍କୃତି ଭାରତର ସୀମା ଅତିକ୍ରମ କରି ପୃଥିବୀର ବିଭିନ୍ନ ଦିଗକୁ ପ୍ରସାର ଲାଭ କରିଥିଲା । ରାୱଲିନ୍‌ସନ୍‌ଙ୍କ ଭାଷାରେ, "ସମ୍ରାଟ ଅଶୋକଙ୍କ ଧର୍ମପ୍ରଚାର ପୃଥିବୀ ଇତିହାସରେ ସଭ୍ୟତା ବିକାଶର ଶ୍ରେଷ୍ଠତମ କାରଣମାନଙ୍କ ମଧ୍ୟରୁ ଅନ୍ୟତମ ; କାରଣ ସେ ପ୍ରଚାର ପ୍ରଧାନତଃ ବର୍ବର ଏବଂ ଅଜ୍ଞାନାନ୍ଧକାରାଚ୍ଛନ୍ନ ରାଜ୍ୟମାନଙ୍କ ମଧ୍ୟରେ ପ୍ରବେଶ କରିଥିଲା ଏବଂ ସେହି ଅନୁନ୍ନତ ଜନସମାଜମାନଙ୍କ ମଧ୍ୟରେ ବୌଦ୍ଧଧର୍ମ ତୀବ୍ର ବେଗରେ ପ୍ରସାର ଲାଭ କରିଯାଇଥିଲା ।"[1] "ଶ୍ୟାମ, ଯାପାନ ଓ ତିବ୍ବତ ଦେଶର ଇତିହାସ ପରି ସିଂହଳ ଏବଂ ବ୍ରହ୍ମଦେଶର ଇତିହାସ ମଧ୍ୟ ସେ ଦେଶମାନଙ୍କ ମଧ୍ୟକୁ ବୌଦ୍ଧଧର୍ମ ପ୍ରବେଶ କରିବା ସଙ୍ଗେ ସଙ୍ଗେ ଆରମ୍ଭ ହୋଇଛି ବୋଲି କୁହାଯାଇ ପାରେ ; ଏବଂ ଏହି ରାଜ୍ୟମାନଙ୍କରେ ସଭ୍ୟ ଚୀନ ଦେଶ ଅପେକ୍ଷା ବୌଦ୍ଧଧର୍ମ ଅଧିକତର ଦୃଢ଼ ଭିତ୍ତିରେ ପ୍ରସାର ଲାଭ କରି ପାରିଥିଲା ଏବଂ ଗଭୀରତର ପ୍ରଭାବ ବିସ୍ତାର କରି ପାରିଥିଲା । ଆଜି ଯେପରି ଖ୍ରୀଷ୍ଟଧର୍ମ ଆଫ୍ରିକା ଏବଂ ଦକ୍ଷିଣ ସାଗରୀୟ ଦ୍ୱୀପପୁଞ୍ଜମାନଙ୍କର ଅନୁନ୍ନତ ଜାତିମାନଙ୍କ ମଧ୍ୟରେ ତୁରନ୍ତ ଗତିରେ ମାଡ଼ିଯାଉଛି ଏବଂ ନିଜର ଶକ୍ତିଶାଳୀ ପ୍ରଭାବ ଦ୍ୱାରା ଅନ୍ଧ ବିଶ୍ୱାସ ଓ ଦୁର୍ନୀତି ଦୂର କରି ସେମାନଙ୍କ ମଧ୍ୟରେ ଏକ ଈଶ୍ୱର ଏବଂ ତାହାଙ୍କ ବିଧାନ ଉପରେ ବିଶ୍ୱାସ ଜନ୍ମାଇ ପାରୁଛି, ସେହିପରି ବୌଦ୍ଧଧର୍ମ ପ୍ରାଚ୍ୟ ଦେଶମାନଙ୍କରେ ରାକ୍ଷସ ଓ ସ୍ଥାନୀୟ ଦେବଦେବୀ ପୂଜା ପରିବର୍ତ୍ତେ କର୍ମ ଓ କର୍ମଫଳରେ ବିଶ୍ୱାସ ଜନ୍ମାଇଥିଲା ଏବଂ ସଂକୀର୍ଣ୍ଣ ବିଧି ବିଧାନ ଓ ଅନ୍ଧ ବିଶ୍ୱାସ ପରିବର୍ତ୍ତେ ଏକ ଉନ୍ନତ ନୈତିକତାର ମହାନ୍ ପ୍ରଭାବ ବିସ୍ତାର କରିଥିଲା । ଏତଦ୍‌ବ୍ୟତୀତ, ବୌଦ୍ଧ ପ୍ରଚାରକମାନେ ସେମାନଙ୍କ ସହ ସେମାନଙ୍କ ନିଜ ଦେଶର ସଂସ୍କୃତି ମଧ୍ୟ ଯଥେଷ୍ଟ ପରିମାଣରେ ତାହାଙ୍କୁ ବୋହି ଆଣିଥିଲେ । ଉଦାହରଣ ସ୍ୱରୂପ, ପ୍ରସ୍ତର ଗାତରେ ମୂର୍ତ୍ତି ଖନନ କରିବାର କଳା ଏବଂ ଜଳ ସେଚନ ପ୍ରଣାଳୀ ଯେଉଁଥିରେ କି ଅଶୋକ ଏପରି କୃତିତ୍ୱ ସହକାରେ ବ୍ୟସ୍ତ ଥିଲେ ସେ ସଂସ୍କୃତି ଅଶୋକଙ୍କ ପୁତ୍ର

1. H. G. Rawlinson — India — p. 79.

ମହିନ୍ଦ୍ର ଭାରତରୁ ସିଂହଳ ଦ୍ୱୀପକୁ ନେଇ ଯାଇଥିଲେ; ଏବଂ ଆଜିପର୍ଯ୍ୟନ୍ତ ସିଂହଳ ଅଧିବାସୀ ବୌଦ୍ଧମାନେ ଭାବନ୍ତି ଯେ ସିଂହଳ ଇତିହାସର ଅତୀତ ଗୌରବ ପାଇଁ ସେ ଦେଶ ବୌଦ୍ଧଧର୍ମ ନିକଟରେ ଋଣୀ।"[1] ଅଶୋକଙ୍କ ନେତୃତ୍ୱରେ ଭାରତ ଯେତେବେଳେ ସମଗ୍ର ପ୍ରାଚ୍ୟଖଣ୍ଡରେ ସଭ୍ୟତା ଓ ସଂସ୍କୃତିର ଆଲୋକ ବିସ୍ତାର ନିମିତ୍ତ ବ୍ୟଗ୍ର ହୋଇ ଉଠିଥିଲା ସେତେବେଳେ ଭାରତର ଏକ ବିଶିଷ୍ଟ ଅଂଶରୂପେ କଳିଙ୍ଗ ମଧ୍ୟ ବୌଦ୍ଧଯୁଗର ସଭ୍ୟତା ପୃଥିବୀର ବିଭିନ୍ନାଞ୍ଚଳକୁ ବିକ୍ଷିପ୍ତ କରିଦେବା ପାଇଁ ଚେଷ୍ଟିତ ହୋଇଥିଲା। କଳିଙ୍ଗର ଭୌଗଳିକ ଅବସ୍ଥିତି କଳିଙ୍ଗବାସୀଙ୍କୁ ଏ କାର୍ଯ୍ୟରେ ପ୍ରଭୂତ ସାହାଯ୍ୟ କରି ପାରିଥିଲା। ନୀଳ ସାଗରର ଦୂର ଦିଗ୍‌ବଳୟକୁ ଅତିକ୍ରମ କରି କଳିଙ୍ଗ ଉପକୂଳରୁ ଶତଶତ ବୌଦ୍ଧଭିକ୍ଷୁ ସୁଦୂର ସିଂହଳ ଏବଂ ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜ ଉଦ୍ଦେଶ୍ୟରେ ଯାତ୍ରା କରିଥିଲେ। ତଦାନୀନ୍ତନ ଭାରତରେ କଳିଙ୍ଗହିଁ ଥିଲା ଭାରତର ସାମୁଦ୍ରିକ ଦ୍ୱାରଦେଶ। ବହୁସଂଖ୍ୟକ ନଦନଦୀର ମୁହାଣ କଳିଙ୍ଗ ଉପକୂଳରେ ପ୍ରାକୃତିକ ବନ୍ଦରମାନ ସୃଷ୍ଟି କରିଥିଲା ଏବଂ ଏହି ବନ୍ଦରମାନଙ୍କରୁ ସୁଦୂର ପ୍ରାଚ୍ୟ ଉଦ୍ଦେଶ୍ୟରେ ଜଳଯାତ୍ରା ଲାଗିରହିଥାଏ। ପାଲୁର, ନଙ୍ଗାଇନା, କାଟିକରଡାମ, କନାଗର, ମଦେନା, ତାମ୍ରଲିପ୍ତି, ଦନ୍ତପୁର, କଳିଙ୍ଗ-ନଗର, ଚରିତ୍ର ଏବଂ ଆହୁରି ଅନେକଗୁଡ଼ିଏ ଭାରତ ପ୍ରସିଦ୍ଧ ବନ୍ଦରହିଁ ପ୍ରାଚୀନ କଳିଙ୍ଗର ସୁବିସ୍ତୃତ ଉପକୂଳ ଶୋଭା ପାଉଥିଲା। ଏହି ସମସ୍ତ ବନ୍ଦରହିଁ ଥିଲା ବହିର୍ଗାମୀ ଭାରତୀୟ ସଭ୍ୟତାର ଦ୍ୱାରପଥ। ଅଶୋକଙ୍କ ଅନେକ ପୂର୍ବରୁ କଳିଙ୍ଗ ବନ୍ଦରମାନଙ୍କରୁ ସୁଦୂର ପ୍ରାଚ୍ୟ ଉଦ୍ଦେଶ୍ୟରେ ବାଣିଜ୍ୟ ତରୀମାନ ଭେଳା ଭେଳା ହୋଇ ଗତି କରୁଥାଆନ୍ତି। ଅଶୋକଙ୍କ ସମୟରେ ସେହି ବନ୍ଦରମାନଙ୍କରୁ ମୁଖ୍ୟତଃ ଧର୍ମପ୍ରଚାରକମାନଙ୍କର ବହିର୍ଗମନ ଲାଗିରହିଥିଲା। କଳିଙ୍ଗ ଅଧିକାର ପୂର୍ବରୁ ମୌର୍ଯ୍ୟ ସାମ୍ରାଜ୍ୟର ଭାରତୀୟ ଦ୍ୱୀପପୁଞ୍ଜ ଏବଂ ସିଂହଳ ଦ୍ୱୀପ ସହିତ ନୌବାଣିଜ୍ୟ-ଗତ ସମ୍ପର୍କ ଥିଲା କି ନାହିଁ ବିଶଦଭାବେ ଜଣା ନାହିଁ। ହୁଏତ ସେପରି ସମ୍ୟକ୍-ସମ୍ପର୍କ ନ ଥିବାରହିଁ ସମ୍ଭାବନା କାରଣ କଳିଙ୍ଗହିଁ ମୌର୍ଯ୍ୟ ସାମ୍ରାଜ୍ୟର ପୂର୍ବମୁଖୀ ନୌପଥ ନ ଥିଲା କହିଲେ ଚଳେ। କିନ୍ତୁ କଳିଙ୍ଗ ଅଧିକାର ପରେ ମୌର୍ଯ୍ୟ ସମୃଦ୍ଧି ଏବଂ ମୌର୍ଯ୍ୟ ସଭ୍ୟତାର ସାଗର ସେପାରି ପ୍ରସାର ପାଇଁ ଦ୍ୱାରଦେଶ ଉନ୍ମୁକ୍ତ ହୋଇଯାଇଥିଲା। ଐତିହାସିକ ପାନିକ୍କାରଙ୍କ ଭାଷାରେ, "ଅଶୋକଙ୍କ ସମୟ ପର୍ଯ୍ୟନ୍ତ ମଗଧ ସାମ୍ରାଜ୍ୟର ସାମୁଦ୍ରିକ ଗତିବିଧି ଅଧିକମାତ୍ରାରେ ନ ଥିବାରହିଁ

1. K. J. Saunders quoted in Rawlinson's India— p. 79.

ସମ୍ଭାବନା । ଅବଶ୍ୟ ଚନ୍ଦ୍ରଗୁପ୍ତମୌର୍ଯ୍ୟଙ୍କର ଗୋଟିଏ ପୃଥକ୍ ନୌ ବିଭାଗ ରହିଥିଲା ଯାହାକି ବନ୍ଦରମାନଙ୍କର ତତ୍ତ୍ୱାବଧାନ କରୁଥାଏ, ସାମ୍ରାଜ୍ୟର ଜଳପଥମାନଙ୍କୁ ଉପଯୋଗୀ ରଖୁଥାଏ ଏବଂ ନୌବାଣିଜ୍ୟକୁ ଉତ୍ସାହିତ କରୁଥାଏ । କିନ୍ତୁ ମୌର୍ଯ୍ୟ ସାମ୍ରାଜ୍ୟର ଭୌଗଳିକ ଅବସ୍ଥିତି ଦୃଷ୍ଟିରୁ ଚନ୍ଦ୍ରଗୁପ୍ତ ଏବଂ ବିନ୍ଦୁସାରଙ୍କ ପ୍ରଜାମାନେ ଯେ ସାମୁଦ୍ରିକ ଗତାଗତ ଦିଗରେ ମନୋଯୋଗୀ ଥିଲେ ଏ ବିଷୟରେ ସନ୍ଦେହ ଜାତ ହେଉଛି । ବୋଧହୁଏ ଚନ୍ଦ୍ରଗୁପ୍ତଙ୍କ ନୌ ବିଭାଗର କାର୍ଯ୍ୟ କେବଳ ଗଙ୍ଗା ନଦୀର ଅଭ୍ୟନ୍ତରୀଣ ବନ୍ଦରମାନଙ୍କର ଦେଖାଶୁଣା କରିବା ଏବଂ ଦେଶର ଜଳପଥ-ମାନଙ୍କରେ ଅଭ୍ୟନ୍ତରୀଣ ବାଣିଜ୍ୟ ବ୍ୟବସାୟ ଚଳାଇବା ଓ ଏ ସବୁ ବନ୍ଦର-ମାନଙ୍କରେ ନୌ ବାଣିଜ୍ୟକୁ ଉତ୍ସାହିତ କରିବାରେହିଁ ସୀମାବଦ୍ଧ ଥାଏ । କିନ୍ତୁ କଳିଙ୍ଗ ବିଜୟ ସଙ୍ଗେ ସଙ୍ଗେ ଏବଂ ସେ ଦେଶର ବିଖ୍ୟାତ ବନ୍ଦରମାନଙ୍କୁ ଅଧିକାରକୁ ଆଣିବା ପରେ ପରେ ମୌର୍ଯ୍ୟ ସାମ୍ରାଜ୍ୟର ସାଗରପାରି ଯାତାୟାତ କଣ୍ଟିଭେଣ୍ଟରେ ବଢ଼ି ଉଠିଥିଲା । ଏ ବିଷୟର ପ୍ରତ୍ୟକ୍ଷ ପ୍ରମାଣ ହେଉଛି ଅଶୋକଙ୍କ ପୁତ୍ରକନ୍ୟା ସଙ୍ଘମିତ୍ରାଙ୍କର ସାଗର ପଥରେ ସିଂହଳ ଯାତ୍ରା । ସାଗରପାରି ଗ୍ରସ୍ତାମାନ ଉତ୍ତମରୂପେ ଜଣାଥିଲା ବୋଲି ଏବଂ ସମୁଦ୍ରଯାତ୍ରା ଏକ ସାଧାରଣ ବ୍ୟାପାର ଥିଲା ବୋଲି ସମ୍ରାଟ ଏପରି ଏକ ଯାତ୍ରା ପାଇଁ ଅନୁମତି ଦେଇଥିଲେ । ଏହାଛଡ଼ା, ଆମେମାନେ ଜାଣୁଁ ଯେ କଳିଙ୍ଗ ଅଧିବାସୀମାନେ ଚିରଦିନ ଧରି ଏକ ଅତିବଡ଼ ନୌଶକ୍ତି ରୂପେ ବାସ କରୁଥିଲେ । କଳିଙ୍ଗ ଉପକୂଳ ପର୍ଯ୍ୟନ୍ତ ମୌର୍ଯ୍ୟ ସାମ୍ରାଜ୍ୟର ବିସ୍ତାର ଫଳରେ ସାମ୍ରାଜ୍ୟର ବଣିକ ସମ୍ପ୍ରଦାୟମାନଙ୍କର ନିଶ୍ଚୟ ପ୍ରଭୂତ ଆର୍ଥିକ ଉନ୍ନତି ସାଧିତ ହୋଇଥିବ ।"[1] ବୌଦ୍ଧ ଜାତକମାନଙ୍କରୁ ଆମ୍ଭେମାନେ ଜାଣୁଁ ଯେ ଅଶୋକଙ୍କ ସମୟରେ ଏବଂ ସେହି ସମ୍ରାଟଙ୍କ ଚେଷ୍ଟାରେ ସିଂହଳ ଦ୍ୱୀପରେ ବୌଦ୍ଧଧର୍ମ ପ୍ରଚାରିତ ହୋଇଥିଲା । ଅଶୋକଙ୍କ ସମସାମୟିକ ସିଂହଳ ଅଧିପତିଙ୍କ ନାମ ଥାଏ ଦେବାନାଂପ୍ରିୟ ତିଷ । ଅଶୋକଙ୍କ ପ୍ରେରଣା ଓ ଆଦର୍ଶରେ ତିଷ ବୌଦ୍ଧଧର୍ମ ଗ୍ରହଣ କରିଥିଲେ ଏବଂ ଅନେକ ସ୍ତୂପର ବୌଦ୍ଧ ହିସାବରେ ସେ ସମଗ୍ର ସିଂହଳର ଜନସାଧାରଣଙ୍କୁ ମଧ୍ୟ ବୌଦ୍ଧଧର୍ମରେ ଦୀକ୍ଷିତ କରିବାକୁ ଚେଷ୍ଟା କରିଥିଲେ । ଅଶୋକ ଏବଂ ତିଷଙ୍କ ମଧ୍ୟରେ ଏ ସମ୍ବନ୍ଧରେ ବହୁବାର ଦୂତ ବିନିମୟ ହୋଇଥିଲା ଏବଂ ସେ ସମସ୍ତ ରାଜଦୂତ ଓ ଧର୍ମପ୍ରଚାରକମାନେ କଳିଙ୍ଗ ପଥରେ ଯାତାୟାତ କରିଥିଲେ । ଶେଷରେ କଳିଙ୍ଗର ସୁପ୍ରସିଦ୍ଧ ବନ୍ଦର ତାମ୍ରଲିପ୍ତିଠାରୁ ଅଶୋକଙ୍କ

1. See Panikkar— A Survey of Indian History.

କନ୍ୟା ସଂଘମିତ୍ରା ବୌଦ୍ଧଧର୍ମର ପବିତ୍ର ସନ୍ତକ ବୋଧିଦ୍ରୁମ ଭାରତରୁ ସିଂହଳ ନେଇ ଯାଇଥିଲେ । ସଂଘମିତ୍ରାଙ୍କର ସିଂହଳ ଯାତ୍ରା ସମ୍ବନ୍ଧରେ ପ୍ରାଚୀନ ବୌଦ୍ଧ ଗ୍ରନ୍ଥରେ ଯେଉଁ ବର୍ଣ୍ଣନା ଅଛି ତାହାର ଅନୁବାଦ ଐତିହାସିକ ସିଲ୍‌ଭା ନିମ୍ନଲିଖିତ ମତେ କରିଅଛନ୍ତି । "ସମ୍ରାଟ ଅଶୋକ ବୁଦ୍ଧଙ୍କର କୌଣସି ପବିତ୍ର ସ୍ମୃତିଚିହ୍ନ ଲଙ୍କାଦ୍ୱୀପକୁ ପଠାଇବା ପାଇଁ ସିଦ୍ଧାନ୍ତ କରିଥିଲେ ଏବଂ ଯେଉଁ ବୋଧିଦ୍ରୁମତଳେ ବୁଦ୍ଧ ନିର୍ବାଣ ଲାଭ କରିଥିଲେ ସେହି ବୃକ୍ଷର ଏକ ଶାଖାକୁ ସନ୍ତକରୂପେ ପ୍ରସ୍ତୁତ କରିଥିଲେ । ଗୋଟିଏ ସ୍ୱର୍ଣ୍ଣପାତ୍ରରେ ସେ ଏହି ଶାଖାଟିକୁ ରୋପଣ କରିଥିଲେ ଏବଂ ଯେତେବେଳେ ଏ ଶାଖାର ଚେର ବାହାରିଥିଲା ସେତେବେଳେ ସେ ନିଜେ ତାହାକୁ ସ୍ୱମସ୍ତକରେ ବହନପୂର୍ବକ ତହିଁରେ ସ୍ଥାପନ କରିଥିଲେ । ଏହା ସଙ୍ଗରେ ସେ ବୃକ୍ଷର ପରିଚାରକ ରୂପେ ବହୁ ସଂଖ୍ୟକ ଲୋକଙ୍କୁ ପଠାଇଥିଲେ ଏବଂ ସେମାନଙ୍କୁ ବ୍ରାହ୍ମଣ, ଅଭିଜାତ ସମ୍ପ୍ରଦାୟ, ଏବ ଗୃହସ୍ଥମାନଙ୍କ ମଧ୍ୟରୁ ମନୋନୀତ କରାଯାଇଥିଲା ଏବଂ ସେମାନେ ସମସ୍ତେ ୬୪ଟି ପରିବାର ଗଠନ କରିଥିଲେ । ସମ୍ରାଟ ନନ୍ଦିନୀ ସଂଘମିତ୍ରା, ତାହାଙ୍କର ପରିବ୍ରାଜିକାମାନେ, ଏବଂ ଲଙ୍କାଦ୍ୱୀପରୁ ଆସିଥିବା ରାଜଦୂତ ଓ ସଭାସଦଗଣ ମଧ୍ୟ ସେହି ତରୀ ଆରୋହଣ କରିଥିଲେ । ତାମ୍ରଲିପ୍ତି ବନ୍ଦରରୁ ଏ ତରୀ ଯାତ୍ରାକରି ଲଙ୍କାର ବନ୍ଦରରେ ସାତଦିନ ମଧ୍ୟରେ ପହଞ୍ଚିଥିଲା । ଲଙ୍କାର ସେ ବନ୍ଦରର ନାମ ଥିଲା ଜମ୍ବୁକୋଳପାଟଣା ଏବଂ ଏହା ଦ୍ୱୀପର ଉତ୍ତର କୋଣରେ ଅବସ୍ଥିତ ଥିଲା । ଲଙ୍କାର ରାଜା ତରୀର ଆଗମନ ବାର୍ତ୍ତାରେ ଜମ୍ବୁକୋଳ ବନ୍ଦର ନିକଟରୁ ରାଜଧାନୀ ଅନୁରାଧାପୁର ପର୍ଯ୍ୟନ୍ତ ରାସ୍ତାଟିକୁ ସୁନ୍ଦରଭାବେ ସୁସଜ୍ଜିତ କରିଥିଲେ । ତା'ପରେ ଆଡ଼ମ୍ବର ସହକାରେ ଆସି ସେ ନିଜେ ବୋଧିଦ୍ରୁମ ଗ୍ରହଣ କରିଥିଲେ । ଏ ଦ୍ରୁମ ଅନୁରାଧାପୁରସ୍ଥ ମହାମେଘ ଉଦ୍ୟାନରେ ମହାସମାରୋହରେ ରୋପିତ ହୋଇଥିଲା ଏବଂ ଆଜି ପର୍ଯ୍ୟନ୍ତ ତାହା ଏ ଯୁଗର ଲକ୍ଷ ଲକ୍ଷ ବୌଦ୍ଧମାନଙ୍କର ଭକ୍ତି ଓ ପୂଜାର ସାମଗ୍ରୀ ହିସାବରେ ବିଦ୍ୟମାନ ରହିଛି ।"[1] ଯେଉଁ ତାମ୍ରଲିପ୍ତି ସୁଦୂର ସିଂହଳ ଦ୍ୱୀପ ପ୍ରତି ଅଗଣିତ ବୌଦ୍ଧ ପ୍ରଚାରକମାନଙ୍କୁ ପଠାଇଥିଲା ସେହି ତାମ୍ରଲିପ୍ତି ଥିଲା ସେକାଳର କଳିଙ୍ଗର ଏକ ପ୍ରସିଦ୍ଧ ବନ୍ଦର । କଳିଙ୍ଗର ଅତୀତ ଗୌରବ ଲୁପ୍ତ ହେଲା ପରେ ମଧ୍ୟ ବହୁଦିନ ଯାବତ୍ ତାମ୍ରଲିପ୍ତି ଓଡ଼ିଶାର ଏକ ବନ୍ଦର ରୂପେ ରହିଥିଲା । ଅଧୁନା

1 **Dr. W. A. De Silva— 'History of Buddhism in Ceylon' in Buddhistic Studies by Law. p 471-72.**

ଓଡ଼ିଶାରେ କଳିଙ୍ଗର ସେହି ସୁବିଖ୍ୟାତ ବନ୍ଦର ନାହିଁ ସତ୍ୟ, କିନ୍ତୁ ଯେତେଦିନ ପର୍ଯ୍ୟନ୍ତ ଓଡ଼ିଶା ଭାରତୀୟ ରାଜନୀତି କ୍ଷେତ୍ରରେ ପଙ୍ଗୁ ହୋଇ ନ ଥିଲା ସେତେଦିନ ପର୍ଯ୍ୟନ୍ତ ତାମ୍ରଲିପ୍ତି ଓଡ଼ିଶାର ନିଜସ୍ୱ ଥିଲା । ଆଜି ସେହି ତାମ୍ରଲିପ୍ତି ତମ୍ଲୁକ୍ ନାମ ଧାରଣ କରି ପଶ୍ଚିମ ବଙ୍ଗ ପ୍ରଦେଶରେ ଅବସ୍ଥିତ, କିନ୍ତୁ ପ୍ରାଚୀନ ତାମ୍ରଲିପ୍ତିର ନାମସହ ପ୍ରାଚୀନ କଳିଙ୍ଗର ଗୌରବ ଗାଥା ଚିରତରେ ଲୁପ୍ତ ହୋଇ ରହିଛି ।

ସିଂହଳ ଦ୍ୱୀପପରି ପୂର୍ବଭାରତୀୟ ଦ୍ୱୀପପୁଞ୍ଜ, କାମ୍ବୋଡ଼ିଆ, ଆନାମ ଶ୍ୟାମ ଓ ବ୍ରହ୍ମଦେଶ ଉଦ୍ଦେଶ୍ୟରେ ମଧ୍ୟ କଳିଙ୍ଗର ଉକ୍ତ ବାଣିଜ୍ୟପଥ ଦେଇ ବୌଦ୍ଧଯୁଗର ଭାରତୀୟ ସଭ୍ୟତା ପ୍ରସାର ଲାଭ କରିଥିଲା । ବୌଦ୍ଧଯୁଗ ପୂର୍ବରୁ ମଧ୍ୟ ଏସବୁ ଦେଶମାନଙ୍କ ସହ କଳିଙ୍ଗର ଯେ ନୌ-ସମ୍ପର୍କ ଥିଲା ଏଥିରେ ସନ୍ଦେହ ନାହିଁ । ଇତିହାସ ଯୁଗର ଆରମ୍ଭ ବେଳକୁ କଳିଙ୍ଗବାସୀମାନେ ହିନ୍ଦୁ ସଭ୍ୟତା ସୁଦୂର ପ୍ରାଚ୍ୟଖଣ୍ଡରେ ଏବଂ ପ୍ରଶାନ୍ତ ମହାସାଗରୀୟ ଦ୍ୱୀପପୁଞ୍ଜରେ ବିସ୍ତାର କରି ସାରିଥିଲେ । ଡକ୍ଟର ଆର୍.ଡି.ବ୍ୟାନାର୍ଜିଙ୍କ କଥାରେ, "ଭାରତ ଇତିହାସର ଅରୁଣୋଦୟବେଳେ କଳିଙ୍ଗ ଅଧିବାସୀମାନେ ବୃହତ୍ତର ଭାରତ ଓ ଭାରତୀୟ ଦ୍ୱୀପପୁଞ୍ଜମାନଙ୍କରେ ଭାରତୀୟ ଉପନିବେଶ ସ୍ଥାପନର ଅଗ୍ରଦୂତ ଥିଲେ ।"[1] ପ୍ରାଗୈତିହାସିକ ଏବଂ ଐତିହାସିକ ଅତୀତର ଭାରତୀୟ ସଭ୍ୟତା ବହିର୍ଜଗତ ଉଦ୍ଦେଶ୍ୟରେ ବହନ କରି-ନେବା କାର୍ଯ୍ୟରେ କଳିଙ୍ଗବାସୀମାନେ ଯେତେଦୂର ଅଗ୍ରସର ହୋଇଥିଲେ ଭାରତର ଅନ୍ୟ କୌଣସି ଅଞ୍ଚଳର ଲୋକେ ସେପରି ହୋଇ ପାରି ନାହାନ୍ତି । ଅଭ୍ୟସ୍ତ କଳିଙ୍ଗବାସୀଙ୍କ ପକ୍ଷରେ ବହିର୍ମୁଖୀ ବୌଦ୍ଧଧର୍ମ ଭାରତ ବାହାରକୁ ବୋହିନେବା ଅତ୍ୟନ୍ତ ସହଜ ଥିଲା । କେତେ ଅଗଣିତ ବୌଦ୍ଧ ପ୍ରଚାରକ ପ୍ରାଚ୍ୟ ଭୂମିରେ ଧର୍ମପ୍ରଚାର ଉଦ୍ଦେଶ୍ୟରେ ବାହାରି ଯାଇଥିବେ ତାହାର ହିସାବ ଭାରତ ଭୁଲି ଯାଇଛି । କିନ୍ତୁ ଯେଉଁ ପ୍ରଚାର ବଳରେ ପ୍ରାଚ୍ୟର ଅଜଳନ୍ତ ମନୁଷ୍ୟ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇ ପାରିଥିଲେ ସେ ପ୍ରଚାର ପାଇଁ ଭାରତରୁ ଯେ ଶତ ସହସ୍ର ସଂଖ୍ୟାରେ ପ୍ରଚାରକମାନେ ଦେଶ ବିଦେଶ ଉଦ୍ଦେଶ୍ୟରେ ଯାତ୍ରା କରିଥିବେ ଏଥିରେ ସନ୍ଦେହ ନାହିଁ । ଅଶୋକଙ୍କ ନେତୃତ୍ୱରେ ଭାରତ ବାହାରକୁ ଯେଉଁ ବୌଦ୍ଧ ପ୍ରବାହ ବହି ଚାଲିଥିଲା କଳିଙ୍ଗ ସେ ପ୍ରବାହ ବହୁଦିନ ଯାବତ୍ ଖରସ୍ରୋତା ରଖିଥିଲା । ଅଶୋକଙ୍କ ମୃତ୍ୟୁର ବହୁଶତ ବର୍ଷ ଧରି କଳିଙ୍ଗରୁ ବୌଦ୍ଧଧର୍ମର ସ୍ରୋତ ଏସିଆ ମହାଦେଶର ଦକ୍ଷିଣାଞ୍ଚଳକୁ ବରାବର ବହି ଚାଲିଥାଏ । ଏପରିକି ଅଷ୍ଟମ

1. Dr. R. D. Banerjee— History of Orissa— p. 93

ଶତାବ୍ଦୀରେ ଯେତେବେଳେ କଳିଙ୍ଗ ଔପନିବେଶିକମାନେ ଭାରତୀୟ ଦ୍ୱୀପପୁଞ୍ଜ-ମାନଙ୍କରେ ବିଶାଳ ଶୈଳେନ୍ଦ୍ର ସାମ୍ରାଜ୍ୟ ଗଠନ କରୁ ଥାଆନ୍ତି ସେତେବେଳେ ମଧ୍ୟ କଳିଙ୍ଗରୁ ବୌଦ୍ଧଧର୍ମର ସ୍ରୋତ ଶୈଳେନ୍ଦ୍ର ସାମ୍ରାଜ୍ୟ ଉଦ୍ଦେଶ୍ୟରେ ବହି ଚାଲୁଥାଏ । ଭାରତ ବକ୍ଷରେ ଅଶୋକ ଯେଉଁ ବୌଦ୍ଧ ଯୁଗର ସୂତ୍ରପାତ କରିଥିଲେ ସେ ଯୁଗର ମାହାତ୍ମ୍ୟ ଯୁଗ ଯୁଗ ପାଇଁ ଜୀବିତ ରହିଥିଲା, କାରଣ ଭାରତରେ ବୌଦ୍ଧଧର୍ମ ପ୍ରବର୍ତ୍ତନ ପାଇଁ ଅଶୋକଙ୍କର ଯେଉଁ ଉଦ୍ୟମ ତାହା ଥିଲା ଅଲୌକିକ ଏବଂ ପୃଥିବୀ ପୃଷ୍ଠରେ ସେ ଧର୍ମର ପ୍ରଚାର ପାଇଁ ତାହାଙ୍କର ଯେଉଁ ଉଦ୍ଦେଶ୍ୟ ସେ ଥିଲା ସୁମହାନ୍ । ଧନ୍ୟ ସେହି ସମ୍ରାଟ ଅଶୋକ ଯେ ପ୍ରାଚୀନ ପୃଥିବୀର ଶ୍ରେଷ୍ଠତମ ସାମ୍ରାଜ୍ୟର ଅଧୀଶ୍ୱର ହୋଇସୁଦ୍ଧା ଭିକ୍ଷୁବେଶୀ । ଧନ୍ୟ ସେହି ବୌଦ୍ଧ ସମ୍ରାଟ ଯାହାଙ୍କର ପାଷାଣ ହୃଦୟ ସ୍ୱପୁତ୍ର ମହେନ୍ଦ୍ରଙ୍କୁ ବିଂଶତି ବର୍ଷ ବୟସରେ ଏବଂ ସ୍ୱକନ୍ୟା ସଂଘମିତ୍ରାଙ୍କୁ ମାତ୍ର ଅଷ୍ଟାଦଶ ବର୍ଷ ବୟସରେ ବୌଦ୍ଧ ଭିକ୍ଷୁରୂପେ ସଜ୍ଜିତ କରି ସାଗର ସେପାରି ଅଜଣା ସିଂହଳ ଦେଶକୁ ଧର୍ମ ପ୍ରଚାରାର୍ଥେ ଚିରଦିନ ପାଇଁ ପ୍ରେରଣ କରି ପାରିଥିଲା । ମହେନ୍ଦ୍ର ଏବଂ ସଂଘମିତ୍ରା ଭାରତ ଭୂମିକୁ ପୁଣି ଫେରି ନ ଥିଲେ କିମ୍ବା ନିଜ ବୌଦ୍ଧ ପିତାଙ୍କର ପୁନର୍ଦର୍ଶନ ପାଇ ନ ଥିଲେ । ଜୀବନର ଦୀର୍ଘ ଅବଶିଷ୍ଟାଂଶ କାଳ ସିଂହଳ ଦ୍ୱୀପରେ ପିତାଙ୍କ ଆଦେଶାନୁଯାୟୀ ଧର୍ମ ପ୍ରଚାର କରୁଁ କରୁଁ ସେହିଠାରେ ଚିର ନିବାସିତରୂପେ ସେମାନେ ଜୀବନ ବିସର୍ଜନ କରିଥିଲେ । ଧନ୍ୟ ସେହି ରାଜପୁତ୍ର ଏବଂ ରାଜକନ୍ୟା, ଧନ୍ୟ ସେମାନଙ୍କର ଧୈର୍ଯ୍ୟ ଓ କର୍ତ୍ତବ୍ୟପରାୟଣତା । ମୌର୍ଯ୍ୟ ସାମ୍ରାଜ୍ୟର ବିପୁଳ ବୈଭବ ସେମାନଙ୍କୁ ଲକ୍ଷ୍ୟଚ୍ୟୁତ କରି ନାହିଁ, କ୍ଷମତା ଲୋଭରେ ସେମାନେ କର୍ତ୍ତବ୍ୟ ଭୁଲି ନାହାନ୍ତି । ସେଥିପାଇଁ ଯୁଗ ଯୁଗ ଧରି ବୌଦ୍ଧ ଜଗତରେ ମହେନ୍ଦ୍ର ଓ ସଂଘମିତ୍ରା ଅମର ଏବଂ ସେଥିପାଇଁ ସିଂହଳର ଚିରନ୍ତନ ଜନସ୍ରୋତ ସେ ଦୁଇଙ୍କ ନିକଟରେ ଚିରଋଣୀ । ମହେନ୍ଦ୍ର ଓ ସଂଘମିତ୍ରା ଥିଲେ ଅଶୋକଙ୍କ ପୁତ୍ର ଓ କନ୍ୟା । ଯେଉଁ ବୌଦ୍ଧ ସମ୍ରାଟ ଧର୍ମପ୍ରଚାର ଉଦ୍ଦେଶ୍ୟରେ ନିଜର ପୁତ୍ର କନ୍ୟାଙ୍କୁ ବିସର୍ଜନ କରି ପାରିଥିଲେ ତାହାଙ୍କର ନିର୍ଦ୍ଦେଶରେ କେତେ ଶତ ଶତ ପ୍ରଚାରକ ଦେଶ ଦେଶାନ୍ତରକୁ ଗତ କରି ନ ଥିବେ ! ଇତିହାସ ସେହି ସଂଖ୍ୟାହୀନ ବୌଦ୍ଧ ପ୍ରଚାରକମାନଙ୍କ ମଧ୍ୟରୁ ମାତ୍ର ମୁଷ୍ଟିମେୟ କେତେଜଣଙ୍କୁ ମନେ ରଖିଛି । ଅଶୋକଙ୍କ ଆଦେଶରେ କାଶ୍ମୀର-ଗାନ୍ଧାର ଖଣ୍ଡକୁ ଧର୍ମ ପ୍ରଚାରାର୍ଥେ ନେତୃତ୍ୱ ନେଇ ଯାଇଥିଲେ ଭିକ୍ଷୁ ମାଧ୍ୟନ୍ତିକ; ମହିଷାମଣ୍ଡଳ ଖଣ୍ଡକୁ ଯାଇଥିଲେ ଭିକ୍ଷୁ ମହାଦେବ; ଭିକ୍ଷୁ ରକ୍ଷିତ ଯାଇଥିଲେ ବନବାସୀ ରାଜ୍ୟକୁ ; ଅପରାନ୍ତକ ଦେଶକୁ ଯାଇଥିଲେ ଭିକ୍ଷୁ ଧର୍ମରକ୍ଷିତ; ମହାରଥ

ଖଣ୍ଡକୁ ଯାଇଥିଲେ ଭିକ୍ଷୁ ମହାଧର୍ମ ରକ୍ଷିତ ; ଯୋନଲୋକ ଅଞ୍ଚଳକୁ ଯାଇଥିଲେ ଭିକ୍ଷୁ ମହାରକ୍ଷିତ ; ହିମବନ୍ତ ଦେଶକୁ ଯାଇଥିଲେ ଭିକ୍ଷୁ ମଜ୍‌ଝିମ ; ସୋନ ଓ ଉତ୍ତର ନାମଧେୟ ଭିକ୍ଷୁଦ୍ୱୟ ଯାଇଥିଲେ ସୁବର୍ଣ୍ଣଭୂମିକୁ ; ଏବଂ ଭିକ୍ଷୁ ମହାନ୍ଦ୍ର ଅପର ଚାରିଜଣ ଭିକ୍ଷୁଙ୍କ ସହ ଯାଇଥିଲେ ଲଙ୍କା । ସେ ଚାରିଜଣ ଭିକ୍ଷୁଙ୍କ ନାମ ଥିଲା ଇଟ୍ଟିୟ, ଉତ୍ତିୀୟ, ସମ୍ବଲ ଓ ଭଦ୍ରଶାଲ ।[1] ଏ ସବୁ ଅଞ୍ଚଳ ବ୍ୟତୀତ ସୁଦୂର ଆଫ୍ରିକା ଏବଂ ଇଉରୋପ ଖଣ୍ଡକୁ ମଧ୍ୟ ଅଶୋକଙ୍କ ଧର୍ମଦୂତମାନେ ସମ୍ରାଟଙ୍କ ବାର୍ତ୍ତା ସହ ପ୍ରବେଶ କରିଥିଲେ । ମିଶର ସମ୍ରାଟ ଟୋଲେମି, ମାସିଡନ୍ ଅଧିପତି ଏଣ୍ଟିଗୋନାସ୍, ସିରନ୍‌ର ରାଜା ମାଗାସ୍ ଏବଂ ଏପିରସ୍ ଶାସକ ଆଲେକ୍‌ଜାଣ୍ଡାର ପ୍ରଭୃତି ପାଶ୍ଚାତ୍ୟ ନରପତିମାନଙ୍କର ରାଜଦରବାରକୁ ଅଶୋକଙ୍କର ଧର୍ମଦୂତମାନ ପ୍ରେରିତ ହୋଇଥିଲେ । ଏହା ଫଳରେ ପାଶ୍ଚାତ୍ୟ ଭୂଖଣ୍ଡରେ ବୌଦ୍ଧଧର୍ମର ପ୍ରଭାବ ମାଡ଼ି ଯାଇଥିଲା । ବହୁ ଐତିହାସିକଙ୍କ ମତରେ ଖ୍ରୀଷ୍ଟଧର୍ମର ଉତ୍‌ଥାନ ଆଗରୁ ଇଉରୋପର ପୂର୍ବଭାଗ ଏବଂ ଏସିଆର ପଶ୍ଚିମ ଭାଗରେ ବୌଦ୍ଧଧର୍ମହିଁ ମୁଖ୍ୟ ଧର୍ମରୂପେ ଜନସାଧାରଣଙ୍କ ଦ୍ୱାରା ଗୃହୀତ ହୋଇଥିଲା । ଖ୍ରୀଷ୍ଟଙ୍କର ଦୁଇଶହ ପଚାଶ ବର୍ଷ ପୂର୍ବେ ଅଶୋକଙ୍କ ପ୍ରେରିତ ବୌଦ୍ଧ ପ୍ରଚାରକମାନେ ଇଉରୋପ-ଏସିଆର ଏକ ବିସ୍ତୃତ ଅଞ୍ଚଳକୁ ବୌଦ୍ଧଧର୍ମାବଲମ୍ବୀ କରି ନେଇଥିଲେ । ସେହି ବୌଦ୍ଧ ଅଧ୍ୟୁଷିତ ଅଞ୍ଚଳରେ ଜନ୍ମଲାଭ କରିଥିଲେ ଯିଶୁଖ୍ରୀଷ୍ଟ । କହିବା ବାହୁଲ୍ୟ, ବୌଦ୍ଧ ପ୍ରଭାବିତ ଅଞ୍ଚଳରେ ଜନ୍ମ ଓ ବୟୋପ୍ରାପ୍ତ ହୋଇ ଖ୍ରୀଷ୍ଟଧର୍ମ ଯେ ବହୁଭାବରେ ବୌଦ୍ଧଧର୍ମ ଅଙ୍ଗରୁ ବହୁ ଅଂଶ ଗ୍ରହଣ କରିଥିଲା ଏ କଥା ସେ ଦୁଇ ଧର୍ମର ମୌଳିକ ସାମଞ୍ଜସ୍ୟ ପ୍ରମାଣ କରିଥାଏ ।

ଭାରତ ବାହାରେ ବୌଦ୍ଧଧର୍ମ ପ୍ରଚାର କରିବା ବ୍ୟତୀତ ଭାରତ ମଧ୍ୟରେ ଅଶୋକ ସେ ଧର୍ମର ଉନ୍ନତି ଏବଂ ବହୁଳ ପ୍ରଚାର ନିମନ୍ତେ ଜୀବନର ଅବଶିଷ୍ଟ କାଳ ସମ୍ପୂର୍ଣ୍ଣମାତ୍ରାରେ ବ୍ୟୟ କରିଥିଲେ । ଏହି ଉପମହାଦେଶର ଭିନ୍ନ ଭିନ୍ନ ପ୍ରାନ୍ତରେ ଅଶୋକଙ୍କର ଯେଉଁ ଅନୁଶାସନମାନ ଦଣ୍ଡାୟମାନ ରହିଛି ସେ ସବୁ ଅଶୋକଙ୍କ ଧର୍ମକୀର୍ତ୍ତିର ସାକ୍ଷୀ । କଳିଙ୍ଗର ଧଉଳି ଏବଂ ଜଉଗଡ଼ର ଶିଳାଲିପିମାନଙ୍କରେ ବିଶେଷ ଭାବରେ ସମ୍ରାଟ ତାହାଙ୍କର ଧର୍ମକାର୍ଯ୍ୟମାନଙ୍କର ବର୍ଣ୍ଣନା କରି ଯାଇଛନ୍ତି । ବୁଦ୍ଧଙ୍କର ଅହିଂସା ବାଣୀ ଅକ୍ଷରେ ଅକ୍ଷରେ ପାଳନ କରିବାକୁ ଅଶୋକ ଚେଷ୍ଟା

1. **Buddhistic Studies— p. 461.**

କରିଥିଲେ ଏବଂ ସମଗ୍ର ମୌର୍ଯ୍ୟ ସାମ୍ରାଜ୍ୟରେ ପଶୁହତ୍ୟା ନିଷେଧ କରି ଦେଇଥିଲେ । ପ୍ରାଚୀନ ହିନ୍ଦୁ ପ୍ରଥା ଅନୁଯାୟୀ ଯଜ୍ଞ ଇତ୍ୟାଦି ଅନୁଷ୍ଠାନରେ ଯେଉଁ ପଶୁବଧ ହେଉଥାଏ ତାହା ଅଶୋକଙ୍କ ସାମ୍ରାଜ୍ୟରେ ସ୍ଥଗିତ କରି ହୋଇଥିଲା । "ଅତୀତରେ ବହୁଶତ ବର୍ଷ ଯାବତ୍ ଯଜ୍ଞ ପାଇଁ ଜୀବହତ୍ୟା କରାଯାଇଛି ଓ ଅନ୍ୟାନ୍ୟ କାରଣରୁ ମଧ୍ୟ ପଶୁବଧ, ବନ୍ଧୁବାନ୍ଧବ, ବ୍ରାହ୍ମଣ ଶ୍ରମଣମାନଙ୍କ ପ୍ରତି ଦୁର୍ବ୍ୟାଚରଣ କରାଯାଇଛି । କିନ୍ତୁ ବର୍ତ୍ତମାନ ପ୍ରିୟଦର୍ଶୀ ରାଜା ଧର୍ମାଚରଣ ଦ୍ୱାରା 'ବିମାନ', 'ହସ୍ତୀ', ଓ 'ଅଗ୍ନିଖଣ୍ଡ' ଇତ୍ୟାଦି ଦେବୋଚିତ ଦୃଶ୍ୟବମାନ ପାଳନ କରିବାଦ୍ୱାରା ରଣଭେରୀର ପ୍ରତିଧ୍ୱନି ଏବେ ଧର୍ମଭେରୀର ପ୍ରତିଧ୍ୱନିରେ ପରିଣତ ହୋଇପାରିଛି । ଯଜ୍ଞଜନିତ ପଶୁବଳି ଓ ଅନ୍ୟାନ୍ୟ କାରଣରୁ ଘଟୁଥିବା ପଶୁବଧ ପ୍ରଭୃତି ହିଂସାକାଣ୍ଡରୁ ନିବୃତ୍ତି, ବନ୍ଧୁ-ବାନ୍ଧବ, ବ୍ରାହ୍ମଣ ଶ୍ରମଣମାନଙ୍କ ପ୍ରତି ସଦାଚରଣ ଓ ପିତାମାତା ଇତ୍ୟାଦି ଗୁରୁଜନ-ମାନଙ୍କର ଆଦେଶ ପାଳନ, ଏ ସବୁ ବିଗତ ଶତ ଶତ ବର୍ଷ ମଧ୍ୟରେ ଯେପରି ହୋଇ ନ ଥିଲା ଏବେ ପ୍ରିୟଦର୍ଶୀଙ୍କ ଧର୍ମପ୍ରଚାର ଫଳରେ ହୋଇ ପାରିଛି ।" ଅହିଂସା ଓ ନୈତିକତା ସହ ପବିତ୍ର ଜୀବନ ଯାପନ, ଏହା ହେଉଛି ବୌଦ୍ଧଧର୍ମର ମୂଳମନ୍ତ୍ର । ଅଶୋକଙ୍କ ଭାରତରେ ଏହି ଦୁଇଟି ଉପରେ ସବୁଠାରୁ ଅଧିକ ଜୋର ଦିଆ ଯାଇ-ଥିଲା । ସାଧାରଣଙ୍କର ନୈତିକ ଉନ୍ନତି ପାଇଁ ରଜୁକ ଓ ଧର୍ମ ମହାମାତ୍ର ଉପାଧିଧାରୀ ରାଜକର୍ମଚାରୀମାନଙ୍କୁ ବିଶେଷଭାବେ ନିଯୁକ୍ତ କରାଯାଇଥିଲା । ଏମାନଙ୍କର କର୍ତ୍ତବ୍ୟ ଥିଲା ରାଜ୍ୟର ପୁରପଲ୍ଲୀରେ ପ୍ରଚାର କରି ବୁଲିବେ, "ପିତାମାତା ଗୁରୁଜନ-ମାନଙ୍କ ବଚନ ପାଳନ କରିବା ଉଚିତ ; ବନ୍ଧୁବାନ୍ଧବ, ବ୍ରାହ୍ମଣ ଶ୍ରମଣମାନଙ୍କୁ ଦାନ ଦେବା ଉଚିତ ; ଜୀବହତ୍ୟାରୁ ନିବୃତ୍ତ ହେବା ଉଚିତ ; ଏବଂ ସ୍ୱଳ୍ପ ସଞ୍ଚୟ ଓ ସ୍ୱଳ୍ପ ବ୍ୟୟରେ ଆନନ୍ଦ ଲାଭ କରିବା ଉଚିତ ।" ପ୍ରିୟଦର୍ଶୀ ଅଶୋକ ନିଜ ପ୍ରଜାଙ୍କ ପ୍ରତି ଯେଉଁ ବାର୍ତ୍ତା ପଠାଉଥିଲେ ତାହା ନିଜେ ପ୍ରଥମେ ପାଳନ କରି ପ୍ରଜାଙ୍କ ସମ୍ମୁଖରେ ଆଦର୍ଶରୂପେ ଦଣ୍ଡାୟମାନ ହେଉଥିଲେ । ପ୍ରଜାଙ୍କ ମଧ୍ୟରେ ଜୀବବଧ ପାଇଁ ନିଷେଧାଜ୍ଞା ଜାରୀ କରିବା ପାଖରୁ ନିଜେ ମଧ୍ୟ ମୃଗୟା ଇତ୍ୟାଦି ରାଜକୀୟ ଆମୋଦ ପ୍ରମୋଦ ପରିତ୍ୟାଗ କରିଥିଲେ । ପ୍ରଜାଙ୍କ ମଧ୍ୟରେ ଦାନର ମହତ୍ତ୍ୱ ପ୍ରଚାର କରିବା ପୂର୍ବରୁ ନିଜେ ବ୍ରାହ୍ମଣ ଶ୍ରମଣମାନଙ୍କୁ ଦାନଦ୍ୱାରା ଆପ୍ୟାୟିତ କରିଥିଲେ । କଳିଙ୍ଗ ଅନୁଶାସନର ବର୍ଣ୍ଣନା ଅନୁଯାୟୀ, "ଅତୀତରେ ରାଜା ରାଣୀ-ମାନେ ପ୍ରମୋଦ ଯାତ୍ରାରେ ବାହାରୁଥିଲେ । ଏପରି ଯାତ୍ରାରେ ମୃଗୟା ଇତ୍ୟାଦି ଆମୋଦ ପ୍ରମୋଦ ହେଉଥିଲା । ପ୍ରିୟଦର୍ଶୀ ରାଜା ତାହାଙ୍କ ଅଭିଷେକର ଦଶମ

କର୍ଷରେ ବୁଦ୍ଧଗୟା ଯାଇଥିଲେ । ସେହି ସମୟ ପାଖରୁ ତାହାଙ୍କର ଧର୍ମଯାତ୍ରା ଆରମ୍ଭ ହେଲା । ବ୍ରାହ୍ମଣ ଓ ଶ୍ରମଣମାନଙ୍କର ଦର୍ଶନ ଲାଭ କରିବା ଓ ସେମାନଙ୍କୁ ଦାନ ଦେବା, ବୟୋବୃଦ୍ଧମାନଙ୍କୁ ଦର୍ଶନପୂର୍ବକ ସେମାନଙ୍କୁ ସ୍ୱର୍ଣ୍ଣଦାନ କରିବା, ଦେଶବାସୀଙ୍କୁ ଦର୍ଶନ କରିବା ଓ ସେମାନଙ୍କ ସହିତ ଧର୍ମାଲୋଚନା କରି ସେମାନଙ୍କୁ ଧର୍ମଶିକ୍ଷା ଦେବା, ଇତ୍ୟାଦି କାର୍ଯ୍ୟ ଧର୍ମଯାତ୍ରାରେ ସମ୍ପନ୍ନ କରାଯାଏ । ଏ ସମସ୍ତ ଫଳରେ ପ୍ରିୟଦର୍ଶୀଙ୍କର ଆମୋଦ ପ୍ରମୋଦ ସମ୍ପୂର୍ଣ୍ଣ ଭିନ୍ନ ପ୍ରକାରର ହୋଇଛି ।” ଇହଲୋକରେ ସତ୍‌କାର୍ଯ୍ୟଦ୍ୱାରା ପରଲୋକରେ ଶାନ୍ତିଲାଭ ହେଉ, ବୌଦ୍ଧଧର୍ମର ଏହି ନୀତିଟିକୁ ଲୋକଙ୍କ ମନରେ ଦୃଢ଼ୀଭୂତ କରିବା ଉଦ୍ଦେଶ୍ୟରେ ଅଶୋକ ଯେତେଦୂର ସମ୍ଭବ ଚେଷ୍ଟା କରିଥିଲେ । ବୌଦ୍ଧଧର୍ମର ଉଦାର ନୀତି ଏବଂ ଅଶୋକଙ୍କର ଉଦାର ଆଦର୍ଶ ଫଳରେ ସେ ଯୁଗରେ ଭାରତୀୟ ଜନସାଧାରଣଙ୍କର ଯେଉଁ ଆଧ୍ୟାତ୍ମିକ ଉନ୍ନତି ହୋଇଥିଲା ତାହା ଇତିହାସ ଯୁଗର ଅନ୍ୟ କୌଣସି ସମୟରେ ଦେଖିବାକୁ ମିଳେ ନାହିଁ । ବୌଦ୍ଧ-ଯୁଗର ସେହି ଉନ୍ନତ ଚିନ୍ତାଧାରା ଦ୍ୱାରା କଳିଙ୍ଗ ଯେ ପୂର୍ଣ୍ଣମାତ୍ରାରେ ଅନୁପ୍ରାଣିତ ହୋଇଥିଲା ତାହାର ଏକମାତ୍ର କାରଣ ହେଉଛି ଭବିଷ୍ୟତ କାଳରେ ଯୁଗ ଯୁଗ ଧରି କଳିଙ୍ଗ ଯେପରି ବୌଦ୍ଧ-ଧର୍ମ ନିକର ଅନ୍ତିମ ସ୍ଥଳୀ ରଚନା କରିଥିଲା । ଅଶୋକ ଥିଲେ ହୀନଯାନପନ୍ଥୀ ବୌଦ୍ଧ, ତାହାଙ୍କର ସେ ପନ୍ଥା କାଳକ୍ରମେ ଭାରତର ଗୃହଆଡ଼େ ଲୋପ ଯାଇଥିଲେ ସୁଦ୍ଧା ଶେଷ ପର୍ଯ୍ୟନ୍ତ ଉତ୍କଳ ଖଣ୍ଡରେ ତା'ର ସ୍ଫୁଲିଙ୍ଗ ଟିକକ ଦେଖିବାକୁ ମିଳୁଥିଲା । ଯେତେବେଳେ ସମ୍ରାଟ ହର୍ଷବର୍ଦ୍ଧନ ଭାରତରେ ମହାଯାନ୍ ପନ୍ଥାର ପୃଷ୍ଠପୋଷକ ସେତେବେଳେ ମଧ୍ୟ ଉତ୍କଳଖଣ୍ଡ ଅଶୋକଙ୍କ ହୀନଯାନ ମାର୍ଗରେ ପୂର୍ଣ୍ଣ ବିଶ୍ୱାସ ରଖିଥିଲା । ଆଜି କଳିଙ୍ଗରେ ବୌଦ୍ଧଧର୍ମର ନାମଗନ୍ଧ ସୁଦ୍ଧା ନାହିଁ, ଭାରତରେ ମଧ୍ୟ ବୌଦ୍ଧଧର୍ମର ସେହି ଦଶା । କିନ୍ତୁ ଦିନ ଥିଲା ଯେତେବେଳେ କଳିଙ୍ଗ ତଥା ଭାରତର ମନୀଷୀମାନେ ସେହି ଧର୍ମର ପ୍ରବଳ ସ୍ରୋତରେ ଭାସି ଯାଇଥିଲେ । ବହୁ ଦିନରୁ ବୌଦ୍ଧଧର୍ମ ଭାରତରୁ ବିଦାୟ ନେଇ ଚାଲି ଯାଇଛି, କିନ୍ତୁ ମହାକାଳର ଶୁଷ୍କ ବାଲୁକାରାଶି ଉପରେ ବୌଦ୍ଧ ସଂସ୍କୃତିର ବିଦାୟକାଳୀନ ପଦଚିହ୍ନ ଏବେ ସୁଦ୍ଧା ପଡ଼ି ରହିଛି । ଉତ୍କଳୀୟ ସଭ୍ୟତା ପୀଠ ଉପରେ ମଧ୍ୟ ବୌଦ୍ଧଧର୍ମର ପଦାଙ୍କ ଅଙ୍କିତ ହୋଇ ବିଦ୍ୟମାନ । ଉତ୍କଳର ଧର୍ମକେନ୍ଦ୍ର ଜଗନ୍ନାଥ ଧାମରେ ସୁଦୂର ସେହି ବୌଦ୍ଧଯୁଗ ପାଖରୁ ଆଜି ପର୍ଯ୍ୟନ୍ତ ଜାତିପ୍ରଥାରୂପ ଦୁର୍ନୀତିକୁ ପ୍ରଶ୍ରୟ ଦିଆଯାଇ ନାହିଁ । ଜଗନ୍ନାଥପୁରୀଠାରେ ବୌଦ୍ଧ ସଂସ୍କୃତିର ଏପରି ଆଦର୍ଶ ଅଳ୍ପଭିଦ୍ଧା

ଜୀବିତ ଥିବାର କାରଣ ହେଉଛି ବୌଦ୍ଧ ଜନଶ୍ରୁତି ଅନୁସାରେ ଏହିଠାରେ ବୁଦ୍ଧଙ୍କର ଦନ୍ତ ସଂରକ୍ଷିତ ହୋଇଥିଲା ଏବଂ ତେଣୁ ଏହିସ୍ଥାନ ପ୍ରାଚୀନ ଭାରତରେ ଏକ ଅତି ବିଖ୍ୟାତ ବୌଦ୍ଧ କେନ୍ଦ୍ରରେ ପରିଣତ ହୋଇଥିଲା । ଆଜିସୁଦ୍ଧା ହିନ୍ଦୁର ବିଶ୍ୱାସ ଅନୁଯାୟୀ ଜଗନ୍ନାଥଙ୍କ ନାଭିପଦ୍ମରେ ବୁଦ୍ଧଦେବଙ୍କର ଦନ୍ତ ସଂରକ୍ଷିତ ରହିଛି । ସୁତରାଂ ପୁରୀଧାମ ଯୁଗ ଯୁଗ ଧରି ବୌଦ୍ଧଯୁଗର ସ୍ମୃତି ନିଜ ବକ୍ଷରେ ନିହିତ ରଖିଛି । ତେଣୁ ଆଜି ବୌଦ୍ଧଧର୍ମର ଶ୍ରେଣୀହୀନ ସମାଜର ମହାନ୍ ଆଦର୍ଶ ଟିକକ ପୁରୀର ସଂକୀର୍ଣ୍ଣ ପରିସର ମଧ୍ୟରେ ଜରାଜୀର୍ଣ୍ଣ ଅବସ୍ଥାରେ ପଡ଼ି ରହିଥିଲେ ମଧ୍ୟ କ୍ଷୀଣ ଭାବରେ ତାହା ସେ କାଳର ସମାଜ କଥା ମନେ ପକାଇ ଦେଉଛି ଏବଂ ଏକଥା ମଧ୍ୟ ପ୍ରମାଣ କରୁଛି ଯେ ସାରା ଭାରତ ଯେତେବେଳେ ବୌଦ୍ଧଯୁଗର ଆଦର୍ଶ ଜାତିହୀନ ସମାଜ କଥା ଭୁଲି ଯାଇଛି ସେତେବେଳେ କେବଳମାତ୍ର ଉତ୍କଳର ପୁରୀ ସେ ଆଦର୍ଶ ଟିକକୁ ଭୁଲି ପାରି ନାହିଁ । ବୁଦ୍ଧଦେବ ଆଜି ଭାରତବାସୀଙ୍କ ଚକ୍ଷୁରେ ଭଗବାନଙ୍କର ଦଶାବତାର ମଧ୍ୟରୁ ଏକ ଅବତାର ଏବଂ ଭାରତ ତଥା ଉତ୍କଳବାସୀଙ୍କ ଚକ୍ଷୁରେ ସେ ଅବତାରଙ୍କର ପ୍ରତିରୂପ ହେଉଛନ୍ତି ଶ୍ରୀକ୍ଷେତ୍ରର ଜଗନ୍ନାଥ । ଉତ୍କଳର ଜନଶ୍ରୁତି ଅନୁସାରେ ଜଗନ୍ନାଥ ହେଉଛନ୍ତି ଓଡ଼ିଶାର ଆଦିମ ବନ୍ୟଜାତି ଶବର-ମାନଙ୍କର ଦେବତା । ହିନ୍ଦୁର ବିଶ୍ୱାସ ଅନୁସାରେ ସେହି ଜଗନ୍ନାଥ ପୁଣି ବୁଦ୍ଧଙ୍କର ପ୍ରତିକୃତି । ଏହା ମୂଳରେ ଏକ ଗଭୀର ଐତିହାସିକ ତଥ୍ୟ ନିହିତ ରହିଛି । ପ୍ରିୟଦର୍ଶୀ ଅଶୋକଙ୍କ ଆହ୍ୱାନ ଏବଂ ପ୍ରଚେଷ୍ଟାରେ ଉତ୍କଳର ଆଦିମ ଆରଣ୍ୟକ ଜାତିର ମନୁଷ୍ୟମାନେ ବହୁ ସଂଖ୍ୟାରେ ବୌଦ୍ଧଧର୍ମ ଗ୍ରହଣ କରିଥିବେ ଏବଂ କାଳକ୍ରମେ ସେମାନଙ୍କର ଆଦି ଦେବତା ଜଗନ୍ନାଥଙ୍କୁ ବୁଦ୍ଧରୂପେ ପୂଜା କରିଥିବେ । ଶେଷରେ ଆଦିମ ଏବଂ ବୌଦ୍ଧମାନଙ୍କର ସେହି ଦେବତାଙ୍କୁ ହିନ୍ଦୁମାନେ ଜଗନ୍ନାଥ-ରୂପେ ନିଜସ୍ୱ କରି ନେଇଥିଲେ ।[1] ସେ ଯାହାହେଉ, ହିନ୍ଦୁ-ଭାରତର ମୁଖ୍ୟ ଦେବତା ଜଗନ୍ନାଥଙ୍କୁ ବୁଦ୍ଧରୂପେ କଳ୍ପନା କରିବା ପଛରେ ଏତିକି ତତ୍ତ୍ୱ ନିହିତ ରହିଛି ଯେ ଦିନ ଥିଲା ଯେତେବେଳେ ବୁଦ୍ଧଦେବଙ୍କୁ ସାରା ଭାରତ ନିଜର ଆରାଧ୍ୟ-ଦେବତାରୂପେ ମାନି ନେଇଥିଲା । ବୌଦ୍ଧଧର୍ମର ନୀତିମାନ ଆଜି ହିନ୍ଦୁଧର୍ମର ବିଶାଳ ପରିସର ମଧ୍ୟରେ ଅନ୍ତର୍ଦ୍ଧାନ ହୋଇଯାଇଛି ସତ୍ୟ ତଥାପି ସେ ନୀତିମାନଙ୍କର ବିଶେଷତ୍ୱ ଚିରଦିନ ଧରି ପରିସ୍ଫୁଟ । ସାମ୍ୟ, ମୈତ୍ରୀ, ଦୟା,

---

1. ଏ ବିଷୟ ଏହି ପୁସ୍ତକର ଦ୍ୱିତୀୟଖଣ୍ଡରେ 'ଶ୍ରୀଜଗନ୍ନାଥ' ନାମକ ପ୍ରବନ୍ଧରେ ବିଶଦଭାବେ ବର୍ଣ୍ଣନା କରାଯିବ ।

ଅହିଂସା, ନୈତିକତା, କର୍ମଫଳ, ଇହଲୋକ ପରଲୋକରେ ଅତୁଟ ବିଶ୍ୱାସ ଏହିସବୁ ବୌଦ୍ଧ ବିଶେଷତ୍ୱ ହିନ୍ଦୁ ସଭ୍ୟତାର ଅଙ୍ଗରୂପେ ଚିରଦିନ ଭାରତବାସୀଙ୍କ ମନ ଅଧିକାର କରି ରଖିଛି । ବୌଦ୍ଧଧର୍ମ ଭାରତ ପୃଷ୍ଠରୁ ଲୋପ ପାଇ ଯାଇ ଥାଇପାରେ କିନ୍ତୁ ବୌଦ୍ଧଯୁଗର ଗୌରବ ସ୍ମରଣ କରି ଏ ଦେଶ ଚିରଦିନ ଗର୍ବ ଅନୁଭବ କରିବ । ଉତ୍କଳୀୟ ଧର୍ମ ଓ ସଭ୍ୟତା ପୀଠରେ ମଧ୍ୟ ସେହି ବୌଦ୍ଧଯୁଗର ସ୍ମୃତି ଚିରଦିନ ପାଇଁ ଅମର ରହିଥିବ ।



# ମୌର୍ଯ୍ୟ ସଭ୍ୟତା

ଇତିହାସ-ଯୁଗର ଆରମ୍ଭ ପରେ ଏକ ନିଖିଳ ଭାରତୀୟ ମହାସଭ୍ୟତାର ପ୍ରଥମ ବିକାଶ ହେଲା ମୌର୍ଯ୍ୟ-ଯୁଗରେ । ବୈଦିକ ସଭ୍ୟତା ଓ ପୌରାଣିକ ସଭ୍ୟତା ଥିଲା ପ୍ରାଗ୍-ଐତିହାସିକ, ତେଣୁ କୁହେଳିକାମୟ । ଭାରତ ଇତିହାସର ପ୍ରଥମ ଅଧ୍ୟାୟରେ ଯେତେବେଳେ ବୌଦ୍ଧ ଓ ଜୈନଧର୍ମ ଭାରତୀୟ ସଭ୍ୟତାର ବିଭବ ବୃଦ୍ଧି କରୁଥାଆନ୍ତି ସେତେବେଳେ କେବଳ ଅଦୂର ଭବିଷ୍ୟତରେ ଏକ ସର୍ବାଙ୍ଗୀନ ମହାସଭ୍ୟତାର ବିକାଶ ଦିଗରେ ସୂତ୍ରପାତ ହେଉଥାଏ ମାତ୍ର । ମୌର୍ଯ୍ୟ ଯୁଗରେ ହେଲା ସେହି ସଭ୍ୟତାର ପରିଣତି । ପ୍ରଥମ ଥର ପାଇଁ ଆହିମାଦ୍ରି କୁମାରୀକା ବିଶାଳ ଭାରତବର୍ଷ ଏକ ଶାସନାଧୀନ ହେଲା ମୌର୍ଯ୍ୟ-ଯୁଗରେ । ପ୍ରଥମ ଥର ପାଇଁ ଏହି ଉପମହାଦେଶର ଅଗ୍ରମାମୀ ଜନତା ଏକ ରାଜନୈତିକ ଏକତାର ନବ ସ୍ପନ୍ଦନ ଲାଭକଲେ ସେହି ମୌର୍ଯ୍ୟ-ଯୁଗରେ । ଏକ ରାଜନୈତିକ ଏକତା ଏବଂ ଶାସନାଗତ ଶୃଙ୍ଖଳା ଫଳରେ ସୃଷ୍ଟି ହୋଇପାରିଥିଲା ଏକ ମହାଭାରତୀୟ ଜାତୀୟତା । ଏହି ଜାତୀୟତାକୁ କେନ୍ଦ୍ରକରି ଭାରତର ଧର୍ମ, ସଂସ୍କୃତି, କଳା, ସ୍ଥାପତ୍ୟ, ଭାଷା, ସାହିତ୍ୟ, ଶିଳ୍ପ, ବାଣିଜ୍ୟ ଏବଂ ସଭ୍ୟତାର ଅପରାପର ଯେତେ ଅଙ୍ଗ ପ୍ରତ୍ୟଙ୍ଗ ସମ୍ମିଳିତ ଭାବରେ ସତେଜ ହୋଇ ଉଠିଥିଲେ । ଯେତେବେଳେ ଭାରତ ମଧ୍ୟରେ ଏହି ଜାତୀୟତାର ନବ ଉନ୍ମାଦନା ଖେଳି ଯାଉଥାଏ ସେତେବେଳେ ପ୍ରାଚ୍ୟ ଏବଂ ପାଶ୍ଚାତ୍ୟର ବିଭିନ୍ନ ଅଞ୍ଚଳ ସହିତ ଭାରତର ଭାବ ବିନିମୟ ଘନେଇ ଉଠିଥାଏ । ବହିର୍ଜଗତ ସହିତ ସମ୍ପର୍କ ସ୍ଥାପନ ସଭ୍ୟତା ବିକାଶର ଏକ ପ୍ରଧାନ ଅଙ୍ଗ । ମୌର୍ଯ୍ୟ-ଯୁଗରେ ଏପରି ସମ୍ପର୍କ ତା'ର ଶୀର୍ଷସ୍ଥାନ ଲାଭ କରିଥିଲା । ମୌର୍ଯ୍ୟ ଯୁଗର ଅବ୍ୟବହିତ ପୂର୍ବରୁ ଆଲେକ୍‌ଜାଣ୍ଡାର ପ୍ରାଚ୍ୟ ଓ ପାଶ୍ଚାତ୍ୟର ମିଳନ ପଥ ପରିଷ୍କାର କରି ଦେଇ ଯାଇଥିଲେ । ସ୍ଥଳପଥରେ ଗ୍ରୀକ୍ ଜଗତ ସହ ଭାରତର ସମ୍ପର୍କ ସ୍ଥାପିତ ହେବାଦ୍ୱାରା ଦୁଇ ବିରାଟ ସଭ୍ୟତା ମଧ୍ୟରେ ପ୍ରତ୍ୟକ୍ଷ ମିଳନ ପାଇଁ

ସୁବର୍ଣ୍ଣ ସୁଯୋଗ ଆସିଯାଇଥିଲା। ଗ୍ରୀସ୍ ଏବଂ ଭାରତର ମିଳନ ପଥରେ ରହିଥିଲା ପାରସ୍ୟ ସାମ୍ରାଜ୍ୟ। ସୁତରାଂ ପ୍ରାଚୀନ ପାରସ୍ୟର ଉନ୍ନତ ସଭ୍ୟତା ମଧ୍ୟ ଭାରତୀୟ ସଭ୍ୟତା ସହ ହସ୍ତ ମିଳନ ପାଇଁ ସୁଯୋଗ ପାଇଥିଲା। ଆଲେକ୍ଜାଣ୍ଡାରଙ୍କ ଭାରତ ସହ ରାଜନୈତିକ ସମ୍ପର୍କ ଭାରତ ପକ୍ଷରେ କିଛି ବଡ଼ କଥା ନ ଥିଲା କିମ୍ବା ଭାରତୀୟ ଜୀବନ ଉପରେ ସେ ସମ୍ପର୍କର କୌଣସି ପ୍ରଭାବ ପଡ଼ି ନ ଥିଲା। କିନ୍ତୁ ରାଜନୈତିକ ଅଭିଯାନ ପରେ ଯେଉଁ ସାଂସ୍କୃତିକ ସମ୍ବନ୍ଧ ଭାରତବାସୀଙ୍କୁ ଆକର୍ଷଣ କରିଥିଲା ତାହା ଫଳରେ ଭାରତୀୟ ସଭ୍ୟତା ଦୁଇପଦ ଆଗକୁ ଆଗେଇ ଯିବାର ସୁବିଧା ପାଇଥିଲା। ଯେତେବେଳେ ଗୋଟିଏ ଉନ୍ନତ ସଭ୍ୟତା ଅପର ଗୋଟିଏ ଉନ୍ନତ ସଭ୍ୟତା ସହ ପରିଚୟ କରିବାକୁ ସୁବିଧା ପାଏ ସେତେବେଳେ ସେ ସଭ୍ୟତା ନିଜର ବହୁ ଗୁଣ ଅପରକୁ ଦେବା ସଙ୍ଗେ ସଙ୍ଗେ ଅପର ପାଖରୁ ମଧ୍ୟ ବହୁ ଗୁଣ ଗ୍ରହଣ କରିଥାଏ। ଏହା ସ୍ୱାଭାବିକ। ଆଲେକ୍ଜାଣ୍ଡାରଙ୍କ ସମୟରେ ଗ୍ରୀସ୍, ପାରସ୍ୟ ଏବଂ ଭାରତ ପରସ୍ପର ମଧ୍ୟରେ ଏହିପରି ଭାବ ଆଦାନ ପ୍ରଦାନ ଆରମ୍ଭ କରିଥିଲେ। ମୌର୍ଯ୍ୟ ଯୁଗର ଆରମ୍ଭ ବେଳକୁ ଭାରତର ଉତ୍ତର-ପଶ୍ଚିମ ଦ୍ୱାରଦେଶ ପାଶ୍ଚାତ୍ୟ ଏବଂ ମଧ୍ୟ ପ୍ରାଚ୍ୟ ଦିଗକୁ ଉନ୍ମୁକ୍ତ ଥିଲା। ମୌର୍ଯ୍ୟ ସମ୍ରାଟ-ମାନେ ଏ ଦ୍ୱାର ବନ୍ଦ କରିବା ପାଇଁ ଭୁଲକ୍ରମେ ମଧ୍ୟ ଚେଷ୍ଟା କରି ନ ଥିଲେ, ବରଂ ସଦା ସର୍ବଦା ଏ ଦ୍ୱାର ପରିଷ୍କାର ରଖିବା ପାଇଁ ମନଯୋଗ ଦେଇଥିଲେ। ଚନ୍ଦ୍ରଗୁପ୍ତମୌର୍ଯ୍ୟଙ୍କ ସହିତ ଗ୍ରୀକ୍‌ମାନଙ୍କର ସନ୍ଧି ବିଷୟ ଉତ୍ତମରୂପେ ଜଣା। ତାହାଙ୍କର ଗ୍ରୀକ୍ ରାଜକୁମାରୀଙ୍କ ସହ ବିବାହ ଭାରତ ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା। ଭାରତର ଅନ୍ୟ କେହି ହିନ୍ଦୁ କିମ୍ବା ବୌଦ୍ଧ କିମ୍ବା ଜୈନ ସମ୍ରାଟ ଏପରି ଭାବେ ବିଧର୍ମୀୟ ପାଶ୍ଚାତ୍ୟ ରମଣୀଙ୍କର ପାଣିଗ୍ରହଣ କରିଥିବା ବିଷୟ ଏ ପର୍ଯ୍ୟନ୍ତ ଜଣା ଯାଇ ନାହିଁ। ଉଦାରମନା ଚନ୍ଦ୍ରଗୁପ୍ତ ସେପରି ଏକ ବିବାହ ଦ୍ୱାରା ଯେ ଭାରତୀୟ ସାମାଜିକ ଆଦର୍ଶରେ ଏକ ବିପ୍ଳବ ଆଣିଥିଲେ ଏଥିରେ ସନ୍ଦେହ ନାହିଁ। ଗ୍ରୀକ୍ ରାଜକୁମାରୀଙ୍କ ଆଗମନ ସହ ପାଟଳିପୁତ୍ରର ରାଜଭବନ ମଧ୍ୟକୁ ନିଶ୍ଚୟ ଅନେକ ପାରିବାରିକ ଗ୍ରୀକ୍ ରୀତି ନୀତି ପ୍ରବେଶ କରିଥିବ। ବହୁଦିନ ପରେ ଯେତେବେଳେ ମୋଗଲ ଅନ୍ତଃପୁର ମଧ୍ୟକୁ ରାଜପୁତ୍ ରାଜକନ୍ୟାମାନେ ମୋଗଲ ରାଜମହିଷୀରୂପେ ପ୍ରବେଶ କରିଥିଲେ ସେତେବେଳେ ସେମାନଙ୍କ ସହ ଅସଂଖ୍ୟ ହିନ୍ଦୁ ରୀତି ନୀତି ମୋଗଲ ପରିବାର ମଧ୍ୟକୁ ପ୍ରବେଶ କରିଥିଲା। ଏପରିକି ସମ୍ରାଟ ଆକବର ଏବଂ ଜାହାଙ୍ଗୀରଙ୍କର ରାଜପୁତ୍ ପତ୍ନୀମାନେ ମୋଗଲ ହାରେମ ମଧ୍ୟରେ

ହିନ୍ଦୁ ପୂଜା ପଦ୍ଧତି, ଯାଗ ଯଜ୍ଞ ଇତ୍ୟାଦିର ପ୍ରଚଳନ କରାଇଥିଲେ । ବିବାହଦ୍ୱାରା ରୀତି ନୀତିର ଆଦାନ ପ୍ରଦାନ ହେବା ଅତ୍ୟନ୍ତ ସ୍ୱାଭାବିକ ଏବଂ ଚନ୍ଦ୍ରଗୁପ୍ତଙ୍କର ଗ୍ରୀକ୍ ରାଜକନ୍ୟାଙ୍କୁ ବିବାହ କରିବାଦ୍ୱାରା ଭାରତୀୟ ରାଜପରିବାର ଏବଂ ଗ୍ରୀକ୍ ରାଜପରିବାର ମଧ୍ୟରେ ସେପରି ଏକ ଭାବ ବିନିମୟ ସଂଘଟିତ ହୋଇଥିବା ନିଶ୍ଚିତ । ରିସ୍ ଡେଭିସ୍ଙ୍କ ଭାଷାରେ, "ଗ୍ରୀକ୍ ରାଜକୁମାରୀ ଓ ତାହାଙ୍କ ପରିଚାରିକା-ଦଳ, ରାଜଦୂତ ଏବଂ ତାହାଙ୍କର ସାଙ୍ଗୋପାଙ୍ଗ, ତଥା ଯେଉଁ ଗ୍ରୀକ୍ ଶିଳ୍ପୀ ଏବଂ ଚିତ୍ରକାରମାନଙ୍କୁ ରାଜଦରବାରରେ ନିଯୁକ୍ତ କରାଯାଇଥିଲା ସେମାନଙ୍କ ସମେତ ନିଶ୍ଚୟ ଏକ ବୃହତ୍ ଗ୍ରୀକ୍ ସମ୍ପ୍ରଦାୟ ଖ୍ରୀଷ୍ଟଙ୍କ ଜନ୍ମର ସେହି ତିନି ଶତ ବର୍ଷ ପୂର୍ବେ ଗଙ୍ଗା ନଦୀର ଦକ୍ଷିଣ କୂଳରେ ସୁଦୂର ସେହି ନଗରୀ (ପାଟଳିପୁତ୍ର) ରେ ବସତି ସ୍ଥାପନ କରିଥିବେ ......।"[1] ମୌର୍ଯ୍ୟ ସାମ୍ରାଜ୍ୟର ରାଜଧାନୀ ମଧ୍ୟରେ ଏପରି ଏକ ଗ୍ରୀକ୍ ସମ୍ପ୍ରଦାୟର ଅବସ୍ଥାନ ସେଠାକାର ସମାଜ ଉପରେ କିଛି ନା କିଛି ପ୍ରଭାବ ନିଶ୍ଚୟ ବିସ୍ତାର କରିଥିବ । ବିବାହ ବ୍ୟତୀତ, ଚନ୍ଦ୍ରଗୁପ୍ତଙ୍କର ଗ୍ରୀକ୍ ଜଗତ ସହିତ ସମ୍ପର୍କ ଦୂତ ବିନିମୟ ମଧ୍ୟଦେଇ ମଧ୍ୟ ଲାଗି ରହିଥିଲା । ସମ୍ରାଟ ସେଲୁକସ୍ଙ୍କ ପ୍ରେରିତ ଦୂତ ମେଗାସ୍ଥିନିସ୍ ଭାରତବାସୀଙ୍କ ନିକଟରେ ଯଥେଷ୍ଟ ପରିଚିତ । ଦୀର୍ଘକାଳ ମୌର୍ଯ୍ୟ ରାଜଦରବାରରେ ଅବସ୍ଥାନପୂର୍ବକ ସେ ଯେଉଁ ଭାରତ ଇତିହାସ ଲେଖି ଯାଇଥିଲେ ସେଥିପାଇଁ ଏ ଦେଶ ତାହାଙ୍କ ନିକଟରେ ଋଣୀ । ବହୁବର୍ଷ ଯାବତ୍ ଭାରତର ଶିକ୍ଷା ସଂସ୍କୃତି ମଧ୍ୟରେ ଅବସ୍ଥାନ କରି ଶେଷରେ ଏହି ପ୍ରସିଦ୍ଧ ଗ୍ରୀକ୍ ରାଜଦୂତ ଯେତେବେଳେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିଥିବେ ସେତେବେଳେ ତାହାଙ୍କ ସହିତ ଭାରତୀୟ ଚିନ୍ତାଧାରା ଯେ ଗ୍ରୀକ୍ ଦେଶକୁ ଯାଇଥିବ ଏଥିରେ ସନ୍ଦେହ କରାଯାଇ ନ ପାରେ । ଆମେମାନେ ଜାଣୁ ଯେ ଚନ୍ଦ୍ରଗୁପ୍ତ ତାହାଙ୍କ ରାଜତ୍ୱର ପ୍ରଥମ ପର୍ଯ୍ୟାୟରେ ପଞ୍ଚାବଖଣ୍ଡରୁ ଗ୍ରୀକ୍-ମାନଙ୍କୁ ବିତାଡ଼ିତ କରିଥିଲେ । ଏହି ଗ୍ରୀକ୍ମାନେ ଅଲେକ୍ଜାଣ୍ଡାରଙ୍କ ଅଧୀନରେ ଭାରତକୁ ଆସି ତାହାଙ୍କ ଅମଳରୁ ଏଠାରେ ରହି ଯାଇଥିଲେ । ଭାରତ ମାଟିରେ ବହୁଦିନ ଅବସ୍ଥାନ କଲାପରେ ସେମାନଙ୍କୁ ଯେତେବେଳେ ନିଜ ଦେଶକୁ ଫେରି ଯିବାକୁ ବାଧ୍ୟ କରାହୋଇଥିବ ସେମାନେ ନିଶ୍ଚୟ ଭାରତୀୟ ସଭ୍ୟତାର ବହୁ ଅଂଶ ସଙ୍ଗରେ ଧରି ଗ୍ରୀସ୍ ଅଭିମୁଖେ ଯାତ୍ରା କରିଥିବେ । ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ଯେ ପ୍ରାଚୀନ ଗ୍ରୀକ୍ ଚିନ୍ତାଧାରା ଉପରେ ଭାରତୀୟ ସଭ୍ୟତାର ପ୍ରତିବିମ୍ବ ପରିସ୍ଫାର

1. **Buddhist India -- p. 268**

ରୂପେ ପରିଲକ୍ଷିତ ହୁଏ । ଚନ୍ଦ୍ରଗୁପ୍ତମୌର୍ଯ୍ୟଙ୍କ ଶାସନକାଳ ପରେ ଭାରତ ଓ ପାଶ୍ଚାତ୍ୟ ଦେଶମାନଙ୍କ ମଧ୍ୟରେ ଭାବ ବିନିମୟ କୌଣସି କ୍ରମେ କମିଯାଇ ନ ଥିଲା । ଚନ୍ଦ୍ରଗୁପ୍ତଙ୍କ ପୁତ୍ର ବିନ୍ଦୁସାର ଅମିତ୍ରଘାତ ତାହାଙ୍କ ସମସାମୟିକ ଗ୍ରୀକ୍ ସମ୍ରାଟମାନଙ୍କ ସହିତ ବନ୍ଧୁତ୍ୱସୂତ୍ର ଲଗାଇ ରଖିଥିଲେ । ଗ୍ରୀକ୍ ଐତିହାସିକମାନଙ୍କ ଲେଖାରୁ ଜଣାଯାଏ ଯେ ଏଣ୍ଟିଓକ୍ ଏବଂ ଅଲେକ୍‌ଜାଣ୍ଡ୍ରିୟା ପ୍ରଭୃତି ସ୍ଥାନରୁ ରାଜଦୂତମାନେ ପାଟଳିପୁତ୍ର ଅଭିମୁଖେ ଆସୁଥାଆନ୍ତି । ଏହି ରାଜଦୂତମାନଙ୍କ ମଧ୍ୟରୁ ଜଣକର ନାମ ବିଶେଷ ଭାବରେ ଜଣାଯାଏ ଏବଂ ସେ ହେଉଛନ୍ତି ଡାଇମାକାସ୍ । ମିଶରରାଜ ଟୋଲେମି ମଧ୍ୟ ବିନ୍ଦୁସାରଙ୍କ ନିକଟକୁ ସ୍ୱଦୂତ ପ୍ରେରଣ କରିଥିଲେ ଏବଂ ତାହାଙ୍କ ନାମ ଥିଲା ଡାଇଓନିସିୟସ । ଗ୍ରୀକ୍ ବର୍ଣ୍ଣନାମାନଙ୍କରୁ ଆହୁରି ମଧ୍ୟ ଜଣାଯାଏ ଯେ ସମ୍ରାଟ ବିନ୍ଦୁସାର ସମ୍ରାଟ ଏଣ୍ଟିଓକାସ୍‌ଙ୍କ ପାଖରୁ ଦୂତ ପ୍ରେରଣ କରି ଗ୍ରୀସ ଦେଶର ଏକ ପ୍ରକାର ଫଳ, ଉତ୍କୃଷ୍ଟ ଗ୍ରୀକ୍ ମଦ ଏବଂ ଗ୍ରୀସ୍ ଦେଶର ଜଣେ ଦାର୍ଶନିକ, ଏହି ତିନୋଟି ପଦାର୍ଥ ମାଗି ପଠାଇଥିଲେ । ଏଣ୍ଟିଓକାସ୍ ମୌର୍ଯ୍ୟ ସମ୍ରାଟଙ୍କ ପାଇଁ ସାଦରେ ଗ୍ରୀକ୍ ମଦ ଏବଂ ଗ୍ରୀସ୍ ଦେଶର ଫଳ ପଠାଇ ଦେଇଥିଲେ ଏବଂ ନମ୍ରଭାବରେ କହିପଠାଇଥିଲେ ଯେ ଗ୍ରୀକ୍ ଦେଶର ପ୍ରଚଳିତ ନିୟମାନୁଯାୟୀ ସେ ଦେଶରୁ ଦାର୍ଶନିକମାନଙ୍କୁ ବାହାରକୁ ପଠାଯାଇ ପାରିବ ନାହିଁ । ଗ୍ରୀକ୍ ଦାର୍ଶନିକ ପାଇବା ପାଇଁ ବିନ୍ଦୁସାରଙ୍କର ଯେଉଁ ବାସନା ତାହା ପୂର୍ଣ୍ଣ ହୋଇ ପାରି ନ ଥିଲା ସତ୍ୟ, କିନ୍ତୁ ବ୍ୟକ୍ତିଗତ ଭାବରେ ଜଣେ ଦାର୍ଶନିକଙ୍କୁ ନ ପାଇଲେ ସୁଦ୍ଧା ଗ୍ରୀକ୍ ଦର୍ଶନ ଜାଣିବା ଦିଗରେ ତାହାଙ୍କ ପକ୍ଷରେ କଷ୍ଟକର ବ୍ୟାପାର ହୋଇ ନ ଥିବ । ଗ୍ରୀସ୍ ଦେଶର ଦାର୍ଶନିକମାନଙ୍କୁ ପାଇବା ପାଇଁ ଭାରତବାସୀଙ୍କର ଯେପରି ଆଗ୍ରହ ଜନ୍ମିଥିଲା, ଭାରତୀୟ ଦାର୍ଶନିକ ଏବଂ ସନ୍ନ୍ୟାସୀମାନଙ୍କୁ ସ୍ୱଦେଶକୁ ନେବାପାଇଁ ଗ୍ରୀକ୍‌ମାନଙ୍କ ମଧ୍ୟରେ ମଧ୍ୟ ସେହିପରି ଆଗ୍ରହ ପ୍ରକାଶ ପାଇଥିଲା । ଏ ବିଷୟରେ ସ୍ୱୟଂ ଆଲେକ୍‌ଜାଣ୍ଡାରଙ୍କ ଆଗ୍ରହ ବିଶେଷଭାବେ ଉଲ୍ଲେଖଯୋଗ୍ୟ । ଆଲେକ୍‌ଜାଣ୍ଡାରଙ୍କ ଭାରତ ଅଭିଯାନ ବେଳେ ତକ୍ଷଶିଳା ଉପକଣ୍ଠରେ ସେ ପନ୍ଦର ଜଣ ହିନ୍ଦୁ ସନ୍ନ୍ୟାସୀଙ୍କୁ ସାଧନାରତ ଅବସ୍ଥାରେ ଦେଖିବାକୁ ପାଇଥିଲେ ଏବଂ ସେମାନଙ୍କ ନିକଟରୁ ହିନ୍ଦୁଦର୍ଶନ ସମ୍ବନ୍ଧରେ କିଛି ଶୁଣିବାକୁ ଆଗ୍ରହାନ୍ୱିତ ହୋଇପଡ଼ିଥିଲେ । ସେମାନଙ୍କ ଭାଷା ଗ୍ରୀକ୍ ଭାଷାରେ ଅନୁଦିତ କରି ସମ୍ରାଟଙ୍କୁ କହିବା ପାଇଁ ଭାରତୀୟ ଭାଷା ଜାଣିଥିବା ଜନୈକ ଗ୍ରୀକ୍ କର୍ମଚାରୀଙ୍କୁ ଆଦେଶ ଦିଆଯାଇଥିଲା । କିନ୍ତୁ ସନ୍ନ୍ୟାସୀମାନେ

ଏହି କର୍ମଚାରୀଙ୍କ ହାତରେ ଆଲେକ୍‌ଜାଣ୍ଡାରଙ୍କୁ କହିପଠାଇଥିଲେ ଯେ ଜଣେକ ମଧ୍ୟସ୍ଥ ହ୍ୱାରା ହିନ୍ଦୁ ଦର୍ଶନକୁ ବୁଝିବାକୁ ଚେଷ୍ଟା କରିବା ଏବଂ ପଙ୍କ ମଧ୍ୟଦେଇ ଜଳ ଗଡ଼ିବା ଏକ କଥା । ଆଲେକ୍‌ଜାଣ୍ଡାର କିନ୍ତୁ ଏହି ସନ୍ୟାସୀମାନଙ୍କର ଦର୍ଶନ ଜାଣିବା ପାଇଁ ଦୃଢ଼ ସଙ୍କଳ୍ପିତ ହୋଇପଡ଼ିଥିଲେ ଏବଂ ବହୁ କଷ୍ଟରେ ସେମାନଙ୍କ ମଧ୍ୟରୁ ଜଣକୁ ତାଙ୍କ ସଙ୍ଗରେ ଗ୍ରୀସ୍ ଦେଶକୁ ଯିବାପାଇଁ ରାଜି କରାଇଥିଲେ । ଆଲେକ୍‌ଜାଣ୍ଡାରଙ୍କ ସହ ଭାରତ ବାହାରକୁ ଯାଇଥିବା ଏହି ହିନ୍ଦୁ ସନ୍ୟାସୀଙ୍କ ନାମ ଥିଲା 'କଲ୍ୟାଣ' ଯାହାଙ୍କୁ କି ଗ୍ରୀକ୍‌ମାନେ ଡାକୁଥିଲେ 'କାଲ୍ଲନୋସ୍' । ଆଲେକ୍‌ଜାଣ୍ଡାରଙ୍କର ଗ୍ରୀସ୍ ପ୍ରତ୍ୟାବର୍ତ୍ତନ ବେଳେ ବ୍ୟାବିଲୋନ ନଗରୀରେ କଲ୍ୟାଣ ନଶ୍ୱର ଶରୀର ପ୍ରତି ହିନ୍ଦୁ ଦର୍ଶନର ଯେଉଁ ଚରମ ବିତୃଷ୍ଣା ତାହାର ବାସ୍ତବ ପ୍ରମାଣ ଦେବାକୁ ଯାଇ ଅଚମ୍ଭିତ ଗ୍ରୀକ୍ ଜନତା ସମ୍ମୁଖରେ ସେ ନିଜକୁ ନିଜେ ଚିତାଗ୍ନିରେ ଭସ୍ମ କରି ଦେଇଥିଲେ । ଜଣେକ ହିନ୍ଦୁ ସନ୍ୟାସୀର ଏପରି ଅଦ୍ଭୁତ କାଣ୍ଡ ଗ୍ରୀକ୍ ଦର୍ଶନ ଧାରା ଉପରେ କ'ଣ କିଛି ପ୍ରଭାବ ବିସ୍ତାର କରି ନ ଥିବ ? ବହୁବିଧ କାରଣରୁ ଉଭୟ ସଭ୍ୟତା ପରସ୍ପର ପ୍ରତି ଆକୃଷ୍ଟ ହୋଇପଡ଼ିଥିଲେ ଏବଂ ସେପାଇଁ ବ୍ୟକ୍ତି, ଦର୍ଶନ ଓ ପଦାର୍ଥ ବିଶେଷର ଆଦାନ ପ୍ରଦାନ ଚୁହିଁଥିଲେ । ଗ୍ରୀକ୍ ସମ୍ରାଟଙ୍କୁ ବିନ୍ଦୁସାରଙ୍କର ଜଣେ ଦାର୍ଶନିକ ମାଗି ପଠାଇବାର ଗୁରୁତ୍ୱ କିଛି କମ ନୁହେଁ । ମୌର୍ଯ୍ୟ ସମ୍ରାଟ ଯେ ଗ୍ରୀକ୍ ଦର୍ଶନ ପ୍ରତି ଅନୁସନ୍ଧିତ୍ସୁ ହୋଇ ପଡ଼ିଥିଲେ ଏହା ତାହା ପ୍ରମାଣ କରେ । ବିନ୍ଦୁସାରଙ୍କ ସମୟରେ ଜଣେକ ଗ୍ରୀକ୍ ନାବିକ ଭାରତ ଉପକୂଳରେ ତାଙ୍କର ଭୌଗଳିକ ଅଭିଯାନ ଚଳାଇ ଥିବାର ଖବର ମଧ୍ୟ ଗ୍ରୀକ୍ ସମ୍ବାଦମାନଙ୍କରୁ ମିଳେ । ଏ ସବୁ ବ୍ୟତୀତ, ଗ୍ରୀସ୍ ଏବଂ ଭାରତର ରାଜଦରବାରମାନଙ୍କ ମଧ୍ୟରେ ବିନ୍ଦୁସାରଙ୍କ ଅମଳରେ ସଦା ସର୍ବଦା ବନ୍ଧୁତ୍ୱ ପୂର୍ଣ୍ଣ ଚିଠି ପତ୍ରର ଆଦାନ ପ୍ରଦାନ ମଧ୍ୟ ଚୁଲୁଥାଏ । ମୋଟ ଉପରେ ଦ୍ୱିତୀୟ ମୌର୍ଯ୍ୟସମ୍ରାଟଙ୍କ ଅମଳରେ ପ୍ରାଚ୍ୟ ପାଶ୍ଚାତ୍ୟର ବନ୍ଧୁତ୍ୱ ଚନ୍ଦ୍ରଗୁପ୍ତଙ୍କ ସମୟ ପରି ଗାଢ଼ ରହିଥାଏ । ତୃତୀୟ ମୌର୍ଯ୍ୟ ସମ୍ରାଟ ଅଶୋକଙ୍କ ସମୟରେ ଭାରତବର୍ଷର ସଭ୍ୟତାଗତ ସମ୍ପର୍କ କେବଳ ଗ୍ରୀସ୍ ଏବଂ ମଧ୍ୟପ୍ରାଚ୍ୟ ସହିତ ସୀମାବଦ୍ଧ ନ ଥିଲା । କାରଣ ସମ୍ରାଟ ହୋଇସୁଦ୍ଧା ଅଶୋକ ଥିଲେ ପୃଥିବୀର ସର୍ବଶ୍ରେଷ୍ଠ ଧର୍ମପ୍ରଚାରକମାନଙ୍କ ମଧ୍ୟରେ ଅନ୍ୟତମ । ତାହାଙ୍କ ନେତୃତ୍ୱରେ ଭାରତ ତଦାନୀନ୍ତନ ପୃଥିବୀର ଶିକ୍ଷକ ପଦରେ ନିଯୁକ୍ତି ଲାଭ କରିଥିଲା । ସୁଦୂର ଆଫ୍ରିକା, ଗ୍ରୀସ୍, ତିବ୍ବତ, ଚୀନ, ଯାପାନ, ଭାରତୀୟ ଦ୍ୱୀପପୁଞ୍ଜ, ବ୍ରହ୍ମଦେଶ, ଶ୍ୟାମ ଏବଂ

ସିଂହଳ ପ୍ରଭୃତି ପ୍ରାଚ୍ୟ ଓ ପାଶ୍ଚାତ୍ୟର ବିଭିନ୍ନ ଅଞ୍ଚଳ ସହ ଏଶୋକ ଭାରତୀୟ ମଧ୍ୟ ହାର ଯୋଗାଯୋଗ ଲଗାଇ ଦେଇଥିଲେ । ଏ ଯୋଗାଯୋଗଦ୍ୱାରା ଭାରତ ଅପେକ୍ଷା ଅନ୍ୟ ଅଞ୍ଚଳମାନଙ୍କର ଉପକାର ହୋଇଥିଲା ବେଶୀ, ତଥାପି ଭାରତ ମଧ୍ୟ ପୃଥିବୀର ଏତେ ଗୁଡ଼ିଏ ରାଜ୍ୟ ସହିତ ସମ୍ପର୍କରେ ଆସିଥିବା ଯୋଗୁଁ ଭାରତୀ ସଭ୍ୟତାର ବହୁବୃଦ୍ଧି ହୋଇଥିବା ସମ୍ଭବପର । ଅଶୋକଙ୍କ ସମୟରେ ଭାରତବର୍ଷ ପ୍ରାଚ୍ୟ ଓ ପାଶ୍ଚାତ୍ୟର ସଭ୍ୟତା ଉପରେ ଯେତେଦୂର ପ୍ରଭାବ ବିସ୍ତାର କରିଥିଲା ସେପରି ପ୍ରଭାବ ଅନ୍ୟ କୌଣସି ଯୁଗରେ ସମ୍ଭବପର ହୋଇ ନାହିଁ । ଏହା ମୌର୍ଯ୍ୟ-ଯୁଗର ସର୍ବଶ୍ରେଷ୍ଠ ଗୌରବ । ଭାରତୀୟ ସଂସ୍କୃତି ବହନ କରି ଅଶୋକଙ୍କ ରାଜ ପ୍ରତିନିଧିମାନେ ପାଶ୍ଚାତ୍ୟ ଜଗତର ଅନ୍ତିଓକ, ତୁରମୟ, ଅନ୍ତିକିନ, ମାକ ଏବଂ ଅଲିକାସୁନ୍ଦର ( ଏଣ୍ଟିଓକାସ୍, ଟୋଲେମି, ଏଣ୍ଟିଗୋନାସ୍, ମାଗସ୍ ଏବଂ ଆଲେକ୍‌ଜାଣ୍ଡାର ) ନାମଧେୟ ଗ୍ରୀକ୍ ନରପତିମାନଙ୍କ ରାଜ୍ୟମାନଙ୍କୁ ଯାଇଥିଲେ । ସେ ସମସ୍ତ ରାଜ୍ୟମାନଙ୍କରୁ ମଧ୍ୟ ରାଜଦୂତମାନେ ମଗଧ ରାଜଦରବାରକୁ ନିଶ୍ଚୟ ଆସିଥିବେ । ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱପୂର୍ବରୁ ଅଶୋକଙ୍କ ରାଜତ୍ୱର ଶେଷ ପର୍ଯ୍ୟନ୍ତ ଭାରତ ଓ ବହିର୍ଜଗତ ମଧ୍ୟରେ ଏହିପରି ସମ୍ପର୍କ ବିନିଯୋଗ ଲାଗି ରହିଥାଏ । ଦୀର୍ଘ ତିନିଶହରୁ ଊର୍ଦ୍ଧ୍ୱକାଳ ଯାବତ୍ ଗ୍ରୀକ୍ ସଭ୍ୟତା ସହ ଭାରତୀୟ ସଭ୍ୟତାର ମିଳନ ଫଳରେ ଅବଶ୍ୟ ଭାରତ ଗ୍ରୀସ୍ ଦେଶକୁ ଦାନ କରିଥିଲା ଅଧିକ, କିନ୍ତୁ ଗ୍ରୀସ୍ ନିକଟରୁ ସେ ଦାନର ମୂଲ୍ୟ ମଧ୍ୟ କିଛି ପାଇଥିଲା । ଗ୍ରୀକ୍ ସଭ୍ୟତା ଥିଲା ପ୍ରାଚୀନ ଇଉରୋପର ସର୍ବଶ୍ରେଷ୍ଠ ସଭ୍ୟତା । ବିଶେଷତଃ ଭାରତରେ ମୌର୍ଯ୍ୟଯୁଗବେଳେ ଗ୍ରୀକ୍ ସଭ୍ୟତା ତା'ର ଶୀର୍ଷସୀମାରେ ଉପଗତ ହୋଇ ସାରିଥିଲା । ଏପରି ଏକ ସଭ୍ୟତା ନିକଟରୁ କିଛି ନା କିଛି ଗ୍ରହଣ କରିବା ଭାରତ ପକ୍ଷରେ ଅତି ସ୍ୱାଭାବିକ କଥା ଥିଲା । କେତେକ ଐତିହାସିକ ଏ ସମ୍ବନ୍ଧରେ ଅତିଦୂର ଆଗେଇ ଯାଇଥିଲେ ଯେ ମୌର୍ଯ୍ୟଯୁଗ ଗ୍ରୀକ୍ ସଭ୍ୟତା ନିକଟରୁ ସ୍ଥାପତ୍ୟ, କଳା, ଗୃହଶିଳ୍ପ, ଲେଖନ ପ୍ରଣାଳୀ ଇତ୍ୟାଦି ବହୁବିଷୟ ଗ୍ରହଣ କରିଥିଲା ଏବଂ ସେ ସବୁକୁ ମୂଳଦୁଆ କରି ଭାରତୀୟ ସଭ୍ୟତାର ରୂପ ଦେଇଥିଲା । କିନ୍ତୁ ଏପରି ଏକ ଉଗ୍ରମତ ସମ୍ପୂର୍ଣ୍ଣରୂପେ ଭୁଲ ବୋଲି ବିଶେଷଜ୍ଞମାନେ ପ୍ରମାଣ କରିଛନ୍ତି । ପାଶ୍ଚାତ୍ୟ ସ୍ଥାପତ୍ୟ ଓ କଳା-ବିଦ୍ ଫାର୍ଗୁସନ ଏବଂ ହ୍ୟାଭେଲ ଉଭୟେ ଘୋଷଣା କରିଛନ୍ତି ଯେ ବୌଦ୍ଧ-ଯୁଗର ସ୍ଥାପତ୍ୟ, କଳା ଓ ଗୃହଶିଳ୍ପ ଉପରେ ଗ୍ରୀସୀୟ ପ୍ରଭାବ ଆଦୌ ଦେଖାଯାଏ ନାହିଁ । ବରଂ ଭାରତୀୟ ସ୍ଥାପତ୍ୟର ପ୍ରଭାବ ଗ୍ରୀସ୍ ଓ ପାରସ୍ୟର ସ୍ଥାପତ୍ୟ

ଉପରେ ନିଜର ଗୁରୁତ୍ୱପାତ କରିଛି । ଏକ କଥାରେ ଭାରତୀୟ ସ୍ଥାପତ୍ୟ ଏଦେଶର ନିଜସ୍ୱ । ସେହିପରି ଭାରତୀୟ ସଭ୍ୟତାର ବହୁଅଙ୍ଗ ରହିଛି ଯାହାଉପରେ ବାହାରର ପ୍ରଭାବ କୌଣସି ମତେ ପଡ଼ି ନାହିଁ । କିନ୍ତୁ ଠିକ ସେହିପରି ସଭ୍ୟତାର ଅନ୍ୟ କେତେଗୁଡ଼ିଏ ଅଙ୍ଗ ପ୍ରତ୍ୟଙ୍ଗ ରହିଛି ଯେଉଁସବୁ ବହିର୍ଜଗତର ଭାବଧାରା-ଦ୍ୱାରା ଯଥେଷ୍ଟ ଭାବେ ପ୍ରଭାବିତ ହୋଇଛି । ପ୍ରାଚ୍ୟ ସଭ୍ୟତା ଏବଂ ପାଶ୍ଚାତ୍ୟ ସଭ୍ୟତା ମଧ୍ୟରେ ଗୋଟିଏ ବିଶେଷ ପାର୍ଥକ୍ୟ ପରିଲକ୍ଷିତ ହୁଏ ଯେ ପ୍ରାଚ୍ୟ ସଭ୍ୟତା ପ୍ରଧାନତଃ ଆଧ୍ୟାତ୍ମିକ ଏବଂ ପାଶ୍ଚାତ୍ୟ ସଭ୍ୟତା ପ୍ରଧାନତଃ ବସ୍ତୁବାଦୀ । ପୃଥିବୀର ଯେତେ ବଡ଼ ବଡ଼ ଧର୍ମ ଯଥା ହିନ୍ଦୁ, ଜୈନ, ବୌଦ୍ଧ, ଖ୍ରୀଷ୍ଟ, ଇହୁଦି ଓ ମହମ୍ମଦ ଧର୍ମ, ଏ ସମସ୍ତଙ୍କର ଜନ୍ମ ପ୍ରାଚ୍ୟଖଣ୍ଡରେ । ପ୍ରାଚ୍ୟଖଣ୍ଡର ଭାରତ ଓ ଚୀନ ପ୍ରାଚୀନ ଦର୍ଶନ ଓ ଚିନ୍ତାଧାରାର ଜନ୍ମଭୂମି । ଧର୍ମ ଏବଂ ଦର୍ଶନ ଦୃଷ୍ଟିରୁ ପ୍ରାଚ୍ୟଭୂମି ଚିରଦିନ ପାଶ୍ଚାତ୍ୟ ଖଣ୍ଡଠାରୁ ଉତ୍କୃଷ୍ଟ । ଠିକ ସେହିପରି ବସ୍ତୁବାଦୀ ବିଜ୍ଞାନ କ୍ଷେତ୍ରରେ ପାଶ୍ଚାତ୍ୟ ସଭ୍ୟତା ଚିରଦିନ ଉନ୍ନତ । ଏହା ସ୍ୱୀକାର କରିବାକୁ ହେବ ଯେ ଯୁଗେ ଯୁଗେ ପାଶ୍ଚାତ୍ୟ ବିଜ୍ଞାନ ପ୍ରାଚ୍ୟ ବିଜ୍ଞାନ ଉପରେ ସ୍ୱ ପ୍ରଭାବ ବିସ୍ତାର କରିଛି । ମୌର୍ଯ୍ୟ-ଯୁଗରେ ଯେତେବେଳେ ଭାରତ ଓ ଗ୍ରୀସ୍ ମଧ୍ୟରେ ଭାବ ଆଦାନପ୍ରଦାନ ଚାଲିଥିଲା ସେତେବେଳେ ଗ୍ରୀକ୍ ବିଜ୍ଞାନ ଭାରତୀୟ ବିଜ୍ଞାନ ଉପରେ ପ୍ରଭୂତ ପ୍ରଭାବ ବିସ୍ତାର କରିଥିଲା । ପ୍ରାଚୀନ ଗ୍ରୀସ୍‌ଦେଶ ଜ୍ୟାମିତି, ଅଙ୍କ, ଗଣିତ-ଜ୍ୟୋତିଷ ପ୍ରଭୃତି ବିଜ୍ଞାନର ଜନ୍ମଭୂମି । ମୁକ୍ତକଣ୍ଠରେ ଏହା ସ୍ୱୀକାର କରାଯାଇଛି ଯେ ଭାରତୀୟ ସଭ୍ୟତାର ଏହି ସମସ୍ତ ବିଭାଗ ଉପରେ ଗ୍ରୀକ୍‌ମାନଙ୍କର ପ୍ରଭାବ ଅନେକ ମାତ୍ରାରେ ପଡ଼ିଛି । ସେ ପାଇଁ ଭାରତ ଚିରଦିନ ଗ୍ରୀସ୍ ନିକଟରେ ଋଣୀ । ଗ୍ରୀକ୍‌ମାନଙ୍କର ଯୁଦ୍ଧ ପ୍ରଣାଳୀ, ସୈନ୍ୟସଜ୍ଜା ଏବଂ ସାମରିକ ଆଇନ-କାନୁନ ମୌର୍ଯ୍ୟ ସମର ବିଜ୍ଞାନ ଉପରେ ସ୍ୱପ୍ରଭାବ ବିସ୍ତାର କରିଥିବା ସମ୍ଭବ । ଏହାଛଡ଼ା ଗ୍ରୀକମାନଙ୍କର ରୀତିନୀତି, ପୋଷାକ ପରିଚ୍ଛଦ, ପୂଜାପଦ୍ଧତି, ଅଗୁରୁ ବ୍ୟବହାର ଏ ସମସ୍ତରୁ କିଛି କିଛି ଭାରତର ପଶ୍ଚିମ ସୀମାନ୍ତ ଉପରେ ଦୃଢ଼ ରେଖାପାତ କରିଥିଲା । ଏପରିକି ମୌର୍ଯ୍ୟଭାରତର ଗାନ୍ଧାର ଏବଂ ପଞ୍ଜାବ ଇତ୍ୟାଦି ସୀମାନ୍ତବର୍ତ୍ତୀ ପ୍ରଦେଶମାନଙ୍କରେ ଗ୍ରୀକ୍ ଗଠନ ପ୍ରଣାଳୀ ଏବଂ ଗ୍ରୀକ୍ କଳାର ପ୍ରଭାବ ପରିଷ୍କାରରୂପେ ଦେଖିବାକୁ ମିଳେ । ଭାରତୀୟ ଓ ଗ୍ରୀକ୍ ସଭ୍ୟତା ପରସ୍ପର ମଧ୍ୟରେ କେତେଦୂର ଭାବ ଆଦାନ ପ୍ରଦାନ କରିପାରିଥିଲେ ତାହାର ଦୀର୍ଘ ବିବରଣୀ ଦେବା ଏଠାରେ ଉଦ୍ଦେଶ୍ୟ ନୁହେଁ । କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ ପ୍ରାଚୀନ ଭାରତ ଓ ପ୍ରାଚୀନ ଗ୍ରୀସ୍ ଜଗତର ସେହି ମିଳନ ଯୁଗରେ

ମୌର୍ଯ୍ୟ ସଭ୍ୟତା ଭାରତର ଗଣ୍ଡି ମଧ୍ୟରେ ସୀମାବଦ୍ଧ ନ ହୋଇ ନିଜର ବହିର୍ମୁଖୀ ପ୍ରଭାବ ପୃଥିବୀଖଣ୍ଡରେ ବିସ୍ତାରଣ କରିବା ସଙ୍ଗେ ସଙ୍ଗେ ଗ୍ରୀକ୍ ସଭ୍ୟତା ନିକଟରୁ କେତେକ ଲୋଭନୀୟ ବସ୍ତୁ ନିଜ ଅଙ୍ଗକୁ ଟାଣି ନେଇଥିଲା । ପ୍ରାଚ୍ୟ ପାଶ୍ଚାତ୍ୟର ଅଞ୍ଚଳ ଉପରେ ଦୃଷ୍ଟିପାତ କରିପାରିଥିବା ହେତୁ ମୌର୍ଯ୍ୟ ସଭ୍ୟତା ବାସ୍ତବିକ ଅତି ଉଦାର ଏବଂ ଅତି ବିରାଟ ।

ଏ ହେଲା ମୌର୍ଯ୍ୟ ସଭ୍ୟତା ଉପରେ ଗୋଟିଏ ଦିଗରୁ ଦୃଷ୍ଟିପାତ । ଆଭ୍ୟନ୍ତରୀଣ ଶାସନ ଦୃଷ୍ଟିରୁ ଲକ୍ଷ୍ୟ କଲେ ଏହା ସହଜରେ ଅନୁମିତ ହେବ ଯେ ମୌର୍ଯ୍ୟ ଯୁଗର ସମୃଦ୍ଧି, ବିଭବ ଓ ସଂସ୍କୃତି ପାଇଁ ମୌର୍ଯ୍ୟ ଶାସନ ପ୍ରଣାଳୀ ଅନେକାଂଶରେ ଦାୟୀ । ଜନତାର ସୁଖ ଶାନ୍ତିରେ ସଂସ୍କୃତିର ବିକାଶ ହୁଏ । ଦାରିଦ୍ର୍ୟ ପ୍ରପୀଡ଼ିତ, ସଦାସଶଙ୍କିତ ଏବଂ ରାଜ ଅତ୍ୟାଚାରିତ ଜନତା ମଧ୍ୟରେ ସଭ୍ୟତା ବିକାଶ ଅସମ୍ଭବ । ମୌର୍ଯ୍ୟ-ଯୁଗର ଶାସନ ପ୍ରଣାଳୀ ଏପରି ଉନ୍ନତ ଧରଣର ଥିଲା ଯେ ଦେଶ ମଧ୍ୟରେ ବିଶୃଙ୍ଖଳା, ବିଦ୍ରୋହ ଏବଂ ଅଶାନ୍ତି ଖୁବ ବିରଳ ଥିଲା । କେବଳ ସମ୍ରାଟ ବିନ୍ଦୁସାରଙ୍କ ରାଜତ୍ୱକାଳରେ ସାମ୍ରାଜ୍ୟର କୌଣସି ଗୋଟିଏ ଅଞ୍ଚଳରେ ଅଳ୍ପଟିକିଏ ଅସନ୍ତୋଷ ପ୍ରକାଶ ପାଇବା ବ୍ୟତୀତ ଦୀର୍ଘ ମୌର୍ଯ୍ୟଶାସନ ବିରୁଦ୍ଧରେ ପ୍ରଜା ବିଦ୍ରୋହ କୌଣସି ସମୟରେ ହୋଇ ନାହିଁ । ଚନ୍ଦ୍ରଗୁପ୍ତ ଏବଂ ଚାଣକ୍ୟଙ୍କର ଶାସନନୀତି ଅତି ଉତ୍କୃଷ୍ଟ ଧରଣର ଥିଲା ଏଥିରେ ସନ୍ଦେହ ନାହିଁ । ସେମାନଙ୍କର ଦଣ୍ଡନୀତି ଥିଲା ଅତି କଠୋର । ନଗଣ୍ୟ ଅପରାଧ ପାଇଁ ଅପରାଧୀ ପ୍ରତି ଯେଉଁ କଠୋର ଶାସ୍ତି ବିଧାନ କରା ଯାଉଥାଏ ତାହା ମୌର୍ଯ୍ୟଶାସନର ବିଶେଷତ୍ୱ । ଏପରି ଏକ ଶାସ୍ତି ଭୟରେ ମୌର୍ଯ୍ୟଭାରତରେ ଅପରାଧର ସଂଖ୍ୟା ନିଶ୍ଚୟ କମି ଯାଇଥିବ । ଗ୍ରୀକ୍ ରାଷ୍ଟ୍ରଦୂତ ମେଗାସ୍ଥିନିସ୍‌ଙ୍କ ଭାଷାରେ, 'ଉଦାର ସରଳତା ଥିଲା ଭାରତୀୟ ଜାତୀୟ ଚରିତ୍ରର ପ୍ରଧାନ ଲକ୍ଷଣ' ଏବଂ ଅନ୍ୟ ସମସ୍ତ ଗ୍ରୀକ୍ ପରିବ୍ରାଜକ ଏକଥା ମିଳିତ ସ୍ୱରରେ ସ୍ୱୀକାର କରିଯାଇଛନ୍ତି । ସେମାନଙ୍କ ଭାଷାରେ, 'ମିଥ୍ୟାବୋଧରେ କୌଣସି ଭାରତୀୟ କେବେହେଲେ ଦଣ୍ଡିତ ହୋଇ ନାହିଁ ।'[1] ଏପରି ଏକ ନୈତିକ ଉନ୍ନତି ପାଇଁ ମୌର୍ଯ୍ୟ ଶାସକ ସମ୍ପ୍ରଦାୟ ତଥା ମୌର୍ଯ୍ୟଶାସନ ପ୍ରଣାଳୀ ଉଭୟେ ଦାୟୀ । ଅବଶ୍ୟ ମୌର୍ଯ୍ୟ ଦଣ୍ଡନୀତିର କଠୋରତା ସମ୍ରାଟ ଅଶୋକ ଆମୂଳଚୂଳ ପରିବର୍ତ୍ତିତ କରି ଦେଇଥିଲେ । ତାହାଙ୍କ ଦୟାର୍ଦ୍ର ହୃଦୟରେ ନିଷ୍ଠୁରତା ତିଳେମାତ୍ର ସ୍ଥାନ ପାଇ

1. **Rawlinson-- India p. 73.**

ନ ଥିଲା ଏବଂ ତେଣୁ ସମ୍ରାଟଙ୍କର ତୁରନ୍ତ ଆଦେଶରେ କଠିନ ଶାସ୍ତିବିଧାନ ସାମ୍ରାଜ୍ୟରେ ବନ୍ଦ କରାଯାଇଥିଲା । ଦଣ୍ଡନୀତି କୋହଳ କରିବାଦ୍ୱାରା ଦେଶରେ ଅପରାଧ ଓ ବ୍ୟଭିଚାରର ଯେ ପ୍ରଶ୍ରୟ ପାଇଥିଲା ତାହା ନୁହେଁ । କାରଣ, ଧର୍ମପ୍ରଚାରଦ୍ୱାରା ଅଶୋକ ସାରା ଭାରତବର୍ଷରେ ଯେଉଁ ନୈତିକ ବିପ୍ଳବ ଆଣିଥିଲେ ତାହାଦ୍ୱାରା ଦଣ୍ଡନୀତି କୋହଳ ହେଲେ ମଧ୍ୟ ଦେଶରେ କୌଣସି ପ୍ରକାର ନୈତିକ ଅବନତି ଘଟି ପାରି ନ ଥିଲା । ବରଂ, ପ୍ରିୟଦର୍ଶୀ ରାଜାଙ୍କର ଦୟା, ପ୍ରେମ ଓ ପ୍ରଜାବାତ୍ସଲ୍ୟ ଫଳରେ ମୌର୍ଯ୍ୟ ପ୍ରଜାମାନେ ଏକ ପବିତ୍ର ପଥରେ ଜୀବନ ଯାପନ କରିଥିଲେ । ରାଜ୍ୟରେ ଯେତେବେଳେ ଅଶାନ୍ତିର ଲେଶମାତ୍ର ନ ଥିଲା ଏବଂ ଜାତୀୟ ଚରିତ୍ର ଅତି ଉନ୍ନତ ସ୍ତରରେ ପହଞ୍ଚି ପାରିଥିଲା ସେତେବେଳେ ସେ ଯୁଗର ସଭ୍ୟତା ଉତ୍ତରୋତ୍ତର ବୃଦ୍ଧିପ୍ରାପ୍ତ ହୋଇଥିଲା । ସୁଶାସନ ଓ ଶାନ୍ତିର ଛତ୍ରଛାୟାତଳେ ମୌର୍ଯ୍ୟ-ପ୍ରତିଭା ସଭ୍ୟତାର ବିଭିନ୍ନ ରୂପରେଖାରେ ପ୍ରସ୍ଫୁଟିତ ହୋଇ ଉଠିଥିଲା । ମୌର୍ଯ୍ୟ-ଯୁଗର ସ୍ଥାପତ୍ୟ ଓ କଳା ଏହାର ପ୍ରଥମ ପ୍ରମାଣ । ଭାରତୀୟ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ଆଦି ସମୟ କେଉଁ ସୁଦୂର ଅତୀତରେ ପୋଥିତ ଅଛି ସେ ବିଷୟ ନିଶ୍ଚିତଭାବେ କହିବା ଅସମ୍ଭବ । ଖ୍ରୀଷ୍ଟପୂର୍ବ ଚାରି ସହସ୍ର ବର୍ଷ ପୂର୍ବେ ସିନ୍ଧୁ ଉପତ୍ୟକାରେ ଥରେ ଭାରତୀୟ ସ୍ଥାପତ୍ୟ ତା'ର ଚରମ ବିକାଶ ଲାଭ କରିଥିଲା ଏ କଥା ମହେଞ୍ଜୋଦାରୋ ଏବଂ ହରପ୍ପାର ଧ୍ୱଂସାବଶେଷ ପୃଥିବୀ ଆଗରେ ଘୋଷଣା କରେ । ଏତେ ପର୍ଯ୍ୟନ୍ତ ଅତୀତର ଯେତେ ଦୂରକୁ ଆଲୋକପାତ କରାଯାଇଛି ସେଥିରୁ ସିନ୍ଧୁ ଉପତ୍ୟକାର ଧ୍ୱଂସାବଶେଷକୁହିଁ ଭାରତର ପ୍ରାଚୀନତମ ସ୍ଥାପତ୍ୟ ବୋଲି ଧରିବାକୁ ପଡ଼େ । ଖ୍ରୀଷ୍ଟପୂର୍ବର ଆନୁମାନିକ ତିନି ହଜାର ବର୍ଷପୂର୍ବର କୌଣସି ଏକ ସମୟରେ ଭାରତର ସେହି ପ୍ରାଚୀନତମ ସ୍ଥାପତ୍ୟ କଳାର ବିଲୟ ଘଟିଥିଲା । ତାପରେ ଦୀର୍ଘ ଅଢ଼େଇ ହଜାର ବର୍ଷରୁ ଊର୍ଦ୍ଧ୍ୱ ସମୟ ମଧ୍ୟରେ ଭାରତୀୟ ସ୍ଥାପତ୍ୟର ଅନ୍ୟ କୌଣସି ନିଦର୍ଶନ ଏ ପର୍ଯ୍ୟନ୍ତ ଦେଖିବାକୁ ମିଳି ନାହିଁ । ମହେଞ୍ଜୋଦାରୋ ଏବଂ ହରପ୍ପାର ସ୍ଥାପତ୍ୟ ପରେ ଭାରତୀୟ ସ୍ଥାପତ୍ୟବିଦ୍ୟା ଏକାଥରକେ ଲୋପ ପାଇ ଯାଇଥିଲା ବୋଲି କହିବା ସମ୍ପୂର୍ଣ୍ଣ ଅସମ୍ଭବ । ହୁଏତ ମହେଞ୍ଜୋଦାରୋ-ସ୍ଥାପତ୍ୟ ଏବଂ ମୌର୍ଯ୍ୟ-ସ୍ଥାପତ୍ୟର ମଧ୍ୟବର୍ତ୍ତୀ ଯୁଗର ସ୍ଥାପତ୍ୟ ଅଜ୍ଞାତରେ ଭାରତର ବିଶାଳ ଗର୍ଭରେ କେଉଁଠାରେ ପୋତି ପଡ଼ିଛି । ସେ ଯାହା ହେଉ, ସିନ୍ଧୁ ଉପତ୍ୟକାର ସ୍ଥାପତ୍ୟ ପରେ ଆମ୍ଭେମାନେ ଭାରତୀୟ ସ୍ଥାପତ୍ୟ କଳାର ଦ୍ୱିତୀୟ ନିଦର୍ଶନ ଦେଖିବାକୁ

ପାଇଁ ମୌର୍ଯ୍ୟ-ଯୁଗରେ । ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ଚିରଦିନ ଧରି ସଂସ୍କୃତି ଓ ସମୃଦ୍ଧିର ମୂକସାକ୍ଷୀ । ଦେଶର ଦୁର୍ଦ୍ଦିନରେ କୌଣସି ଜାତି ସ୍ଥାପତ୍ୟ ଓ ଶିଳ୍ପକଳାରେ ମୁଗ୍ଧ ରହି ପାରି ନାହିଁ; କିମ୍ବା ଦାରିଦ୍ର୍ୟଗ୍ରସ୍ତ ଦେଶରେ ସ୍ଥାପତ୍ୟ ଓ ଶିଳ୍ପ କୌଶଳକାଳେ ବିକାଶ ଲାଭ କରିପାରି ନାହିଁ । ବିଶ୍ୱ ସ୍ଥାପତ୍ୟର ନିଦର୍ଶନ କେବଳ ସେହି ସ୍ଥାନମାନଙ୍କରେ ଦେଖିବାକୁ ମିଳେ ଯେଉଁଠାରେ ଭୂଗୋଳ ମନୁଷ୍ୟ ଜାତିର ସହାୟତା କରିଛି, ଯେଉଁଠାରେ ଅଭାବଗ୍ରସ୍ତ ମନୁଷ୍ୟକୁ ନିଜର ଖାଦ୍ୟ ବସ୍ତ୍ର ଆହରଣ ପାଇଁ ସାରାଜୀବନ କଷ୍ଟ କରିବାକୁ ପଡ଼ି ନାହିଁ କିମ୍ବା ଯେଉଁଠାରେ ମନୁଷ୍ୟ ମନୁଷ୍ୟର ଭୟରେ ସଦା ସଶଙ୍କିତ ରହି ନାହିଁ । ସାହାରାର ମରୁପ୍ରାନ୍ତର ଉପରେ କିମ୍ବା ସାଇବେରିୟାର ହିମ କାନ୍ତାର ମଧ୍ୟରେ ସ୍ଥାପତ୍ୟର ନିଦର୍ଶନ ମିଳେ ନାହିଁ । ସେହିପରି ପୃଥିବୀର କେତେ ଅଗଣିତ ରାଜ୍ୟମାନଙ୍କରେ ମଧ୍ୟ ସ୍ଥାପତ୍ୟର ନାମଗନ୍ଧ ସୁଦ୍ଧା ନାହିଁ । କାରଣ ସେ ସବୁ ରାଜ୍ୟ ଚିର ଅଭାବ-ଗ୍ରସ୍ତ । ସେମାନଙ୍କର ଇତିହାସରେ ସମୃଦ୍ଧି, ଶାନ୍ତି ଓ ଗୌରବମୟ ଯୁଗ ବୋଲି କିଛି ନାହିଁ । ଅନ୍ୟଥା, ପୃଥିବୀପୃଷ୍ଠର ସମୃଦ୍ଧିଶାଳୀ ରାଜ୍ୟମାନଙ୍କ ଇତିହାସରେ ଯୁଗେ ଯୁଗେ ନୂତନ ନୂତନ ସ୍ଥାପତ୍ୟ ଧାରାର ବିକାଶ ଲାଭ ହୋଇଛି । ଭାରତ ଇତିହାସ ମଧ୍ୟ ଯୁଗେ ଯୁଗେ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ଭିନ୍ନ ଭିନ୍ନ ରୂପଧାରା ଦେଖି ଆସିଛି । ମୌର୍ଯ୍ୟ ସ୍ଥାପତ୍ୟ ଭାରତୀୟ ହିନ୍ଦୁ ସ୍ଥାପତ୍ୟର ଇତିହାସରେ ପ୍ରଥମ ଅଧ୍ୟାୟ ସୃଷ୍ଟି କରିଥିଲା । କାଳକ୍ରମେ ମୌର୍ଯ୍ୟ ସ୍ଥାପତ୍ୟ ବିଦ୍ୟାର ନିଦର୍ଶନମାନ ଧ୍ୱଂସ ମୁଖରେ ବିଲୀନ ହୋଇ ଗଲେଣି, କିନ୍ତୁ ଯେତିକି ଆଜିସୁଦ୍ଧା ଶତ ଶତ ବର୍ଷର ବାତ୍ୟା ମଧ୍ୟଦେଇ ମୁଣ୍ଡ ଟେକି ରହିଛି ସେତିକିରୁ ସେ ଯୁଗର ସଭ୍ୟତାର ଯଥେଷ୍ଟ ପରିଚୟ ମିଳେ । ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କର ବିଶାଳ ରାଜପ୍ରାସାଦର ଅସ୍ତିତ୍ୱ ପର୍ଯ୍ୟନ୍ତ ଆଜି ଦେଖିବାକୁ ମିଳେ ନାହିଁ । କିନ୍ତୁ ସମସାମୟିକ ଗ୍ରୀକ୍ ଐତିହାସିକ ଏବଂ ପରିବ୍ରାଜକମାନଙ୍କର ଲିଖିତ ବିବରଣୀମାନଙ୍କରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ଚନ୍ଦ୍ରଗୁପ୍ତଙ୍କ ରାଜପ୍ରାସାଦ-ଭାସ୍କର୍ଯ୍ୟ ତଦାନୀନ୍ତନ ଗ୍ରୀସ୍ ଏବଂ ପାରସ୍ୟର ପ୍ରାସାଦ-ଭାସ୍କର୍ଯ୍ୟ ଅପେକ୍ଷା ଉତ୍କୃଷ୍ଟତର ଥିଲା । ଚନ୍ଦ୍ରଗୁପ୍ତଙ୍କର ପ୍ରାସାଦରାଜି କାଷ୍ଠ ନିର୍ମିତ ଥିଲା । ଅଳଙ୍କାର ସ୍ତମ୍ଭମାନଙ୍କ ଦେହରେ ସୁନା ରୂପାର ଦ୍ରାକ୍ଷାଲତା ଓ ପକ୍ଷୀ ଇତ୍ୟାଦିର କାରୁକାର୍ଯ୍ୟ ସୁନ୍ଦରରୂପେ ଖଚିତ ହୋଇଥିଲା । କାଷ୍ଠନିର୍ମିତ ହେଲେସୁଦ୍ଧା ରାଜପ୍ରାସାଦର ଆୟତନ ଅତ୍ୟନ୍ତ ବିଶାଳ ଥିଲା ବୋଲି ଗ୍ରୀକ୍ ବର୍ଣ୍ଣନାରୁ ଜଣାଯାଏ । କେହି କେହି ବିଶ୍ୱାସ କରୁଥିଲେ ଯେ ଚନ୍ଦ୍ରଗୁପ୍ତଙ୍କ ପ୍ରାସାଦ ଅଙ୍ଗରେ ପାରସ୍ୟଦେଶୀୟ

ଶିଳ୍ପକଳାର ପ୍ରଭାବ ପଡ଼ିଥିଲା । କିନ୍ତୁ ବିଶେଷଜ୍ଞମାନେ ଏହା ଭୁଲ ବୋଲି ପ୍ରମାଣ କରିଛନ୍ତି । ହ୍ୟାଭେଲଙ୍କ ମତରେ ବରଂ ପାରସ୍ୟର ରାଜପ୍ରାସାଦ ଉପରେ ଭାରତୀୟ ଶିଳ୍ପକଳାର ପ୍ରଭାବ ପଡ଼ିଥିଲା । ସେ ଯାହାହେଉ, ମୌର୍ଯ୍ୟ ଯୁଗର ପ୍ରାରମ୍ଭରେ ଏକ ଉନ୍ନତ ସ୍ଥାପତ୍ୟ ବିଦ୍ୟାର ବିଦ୍ୟମାନ ଚନ୍ଦ୍ରଗୁପ୍ତମୌର୍ଯ୍ୟଙ୍କ ରାଜପ୍ରାସାଦ ବର୍ଣ୍ଣନାରୁ ଜାଣିବାକୁ ମିଳେ । ଚନ୍ଦ୍ରଗୁପ୍ତଙ୍କ କାଷ୍ଠନିର୍ମିତ ଅଟ୍ଟାଳିକା ଅଶୋକଙ୍କ ରାଜତ୍ୱବେଳକୁ ପ୍ରସ୍ତରନିର୍ମିତ ପ୍ରାସାଦରେ ପରିଣତ ହୋଇଯାଇଥିଲା । ଅଶୋକଙ୍କ ମୃତ୍ୟୁର ଦୀର୍ଘ ସାତଶହ ବର୍ଷ ପରେ ଚୀନ୍ ପରିବ୍ରାଜକ ଫାହିୟାନ୍ ଅଶୋକଙ୍କର ସେହି ପ୍ରସ୍ତରନିର୍ମିତ ପ୍ରାସାଦ ଦେଖି କିଂକର୍ତ୍ତବ୍ୟବିମୂଢ଼ ହୋଇ ଯାଇଥିଲେ । ଫାହିୟାନଙ୍କ ବର୍ଣ୍ଣନାନୁଯାୟୀ ପାଟଳିପୁତ୍ରର ସେହି ବିଶାଳ ରାଜପ୍ରାସାଦ ଅଶୋକଙ୍କ ସମୟରେ ଯେପରି ଥିଲା ଠିକ୍ ସେହିପରି ଅବସ୍ଥାରେ ଫାହିୟାନଙ୍କ ସମୟ ପର୍ଯ୍ୟନ୍ତ ଦଣ୍ଡାୟମାନ ରହିଥିଲା । ପ୍ରାସାଦର ଅଲୌକିକ ଗଠନପ୍ରଣାଳୀ ଏବଂ କାରୁକାର୍ଯ୍ୟ ଅବଲୋକନ କରି ଚୀନ୍ ପରିବ୍ରାଜକ ଏତେଦୂର ବିଚଳିତ ହୋଇପଡ଼ିଥିଲେ ଯେ ତାହାଙ୍କ ବିଶ୍ୱାସରେ "ଏପରି ପ୍ରାସାଦ ମନୁଷ୍ୟ ହସ୍ତରେ ନିର୍ମିତ ହୋଇ ନ ଥିଲା, ଏହା ଅଶୋକଙ୍କ ନିଯୁକ୍ତ ଭୂତ ପ୍ରେତମାନେ ନିର୍ମାଣ କରିଥିଲେ ।" ସାତଶହ ବର୍ଷ ପରେ ଅଶୋକଙ୍କ ପ୍ରାସାଦ ପୂର୍ବପରି ଅକ୍ଷୁଣ୍ଣ ରହିଥିଲା ଏହା ବାସ୍ତବିକ ଆଶ୍ଚର୍ଯ୍ୟର ବିଷୟ ଏବଂ ଫାହିୟାନଙ୍କ ବର୍ଣ୍ଣନାରୁ ଯଥେଷ୍ଟ-ରୂପେ ଅନୁମିତ ହୁଏ ଯେ ଅଶୋକଙ୍କ ରାଜପ୍ରାସାଦରେ ମୌର୍ଯ୍ୟ ସ୍ଥାପତ୍ୟ ବିଦ୍ୟାର ଅଦ୍ଭୁତ ନିପୁଣତା ପ୍ରତିଫଳିତ ହୋଇଥିଲା । ଦୁଃଖର ବିଷୟ ଅଶୋକଙ୍କ ରାଜପ୍ରାସାଦ ପରି ଏକ ଶ୍ରେଷ୍ଠ ନିଦର୍ଶନ ଆଜି ଗଙ୍ଗାନଦୀର ଅତଳ ଗର୍ଭ ମଧ୍ୟରେ ବିଲୀନ ହୋଇଯାଇଛି । ସେହିପରି ମୌର୍ଯ୍ୟ ସ୍ଥାପତ୍ୟର ଅନ୍ୟ କେତେ ନିଦର୍ଶନ ଆଜି ସ୍ୱପ୍ନବତ୍ ଉଭେଇ ଯାଇଛି ତା'ର କଳନା ନାହିଁ । ତଥାପି ସମ୍ରାଟ ଅଶୋକ ଥିଲେ ପ୍ରାଚୀନ ଭାରତର ଶ୍ରେଷ୍ଠତମ ନିର୍ମାତା । ମୌର୍ଯ୍ୟ ସାମ୍ରାଜ୍ୟର ଦୈର୍ଘ୍ୟ ପ୍ରସ୍ଥରେ ତାହାଙ୍କ ଆଦେଶ ଅନୁଯାୟୀ ଶତ ଶତ ସ୍ତୂପ, ବିହାର, ଚୈତ୍ୟ, ତୋରଣ ଏବଂ ସ୍ତମ୍ଭ ପ୍ରଭୃତି ନିର୍ମିତ ହୋଇଥିଲା । ସେମାନଙ୍କ ମଧ୍ୟରୁ ଅଧିକାଂଶ ପ୍ରକୃତି ଓ ମନୁଷ୍ୟର ଧ୍ୱଂସଲୀଳାରେ ବହୁଦିନରୁ ଲୋପପାଇ ଯାଇଛି; କେତେକ ଆଜିଯାଏ ଅଦେଖା ଭାବରେ ମାଟିତଳେ ପୋତି ପଡ଼ିଛି; ଅବଶିଷ୍ଟ ମାତ୍ର କେତୋଟି ମୌର୍ଯ୍ୟ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ଶିଳ୍ପର ଜ୍ୱଳନ୍ତ ନିଦର୍ଶନ ବକ୍ଷରେ ଧାରଣ କରି ଏ ଯୁଗ ପର୍ଯ୍ୟନ୍ତ ତିଷ୍ଠି ରହିଛନ୍ତି । କିନ୍ତୁ ସେଉଁ ସ୍ୱଳ୍ପ କେତୋଟି

ଆଜି ଦେଖିବାକୁ ମିଳୁଛି ସେହିମାନେହିଁ ମୌର୍ଯ୍ୟ ଶିଳ୍ପକଳାର ମାପକାଠି ଏବଂ ସେହିମାନଙ୍କ ଅଙ୍ଗରୁ ଭାରତୀୟ ଶିଳ୍ପୀଙ୍କ ପ୍ରତିଭା ତଥା ଗଠନ ପ୍ରଣାଳୀର ଯଥେଷ୍ଟ ସୂଚନା ମିଳେ । ମୌର୍ଯ୍ୟଯୁଗର ବିଶାଳକାୟ ସ୍ତୂପମାନଙ୍କ ମଧ୍ୟରୁ କେବଳ ସାଞ୍ଚି ଓ ଭାରହୁତ୍ ସ୍ତୂପଦ୍ୱୟ ଆଜି ପର୍ଯ୍ୟନ୍ତ ଦଣ୍ଡାୟମାନ । ଏ ଦୁଇଟି ସ୍ତୂପ ଦେହରେ ବୌଦ୍ଧ ଜାତକମାନଙ୍କର ଗଳ୍ପ ଅନୁଯାୟୀ ବୁଦ୍ଧଦେବଙ୍କର ଜୀବନୀ ଖୋଦିତ କରାଯାଇଛି । କଳାନୈପୁଣ୍ୟ ଦୃଷ୍ଟିରୁ ପ୍ରସ୍ତର ଖୋଦିତ ଏହି ଶିଳ୍ପକଳା ଉନ୍ନତ ଧରଣର । କିନ୍ତୁ ଏ ଭାସ୍କର୍ଯ୍ୟ ଅପେକ୍ଷା ଅତି ଉନ୍ନତ ଭାବର ଭାସ୍କର୍ଯ୍ୟ ଦେଖିବାକୁ ମିଳେ ସ୍ତୂପମାନଙ୍କର ତୋରଣଦ୍ୱାରଗୁଡ଼ିକ ଦେହରେ । ସାଞ୍ଚି ସ୍ତୂପର ଚତୁର୍ଦ୍ଦିଗରେ ଯେଉଁ ଚାରିଟି ତୋରଣଦ୍ୱାର ନିର୍ମିତ ହୋଇଛି ସେମାନଙ୍କର କାରୁକାର୍ଯ୍ୟ ଯୁଗ ଯୁଗ ଧରି ପୃଥିବୀର ସହସ୍ର ସହସ୍ର ଦର୍ଶକଙ୍କୁ ଆଚମ୍ବିତ କରି ଆସୁଛି । ବହୁ ପରିଦର୍ଶକ ବହୁ ଭାବରେ ଏହି ତୋରଣ କାରୁକାର୍ଯ୍ୟର ଭୂରି ଭୂରି ପ୍ରଶଂସା କରିଛନ୍ତି । ଅଶୋକଙ୍କ ନିର୍ମିତ ସାରନାଥ ସ୍ତମ୍ଭ ଉପରିସ୍ଥିତ ସିଂହଚୂଡ଼ ମୌର୍ଯ୍ୟଶିଳ୍ପର ଶ୍ରେଷ୍ଠ ନିଦର୍ଶନରୂପେ ପରିଗଣିତ ହୋଇଛି । ଏହି ସିଂହଚୂଡ଼ରେ ଚାରିଟି ଅତ୍ୟୁତ୍କୃଷ୍ଟ ସିଂହ, ଧର୍ମଚକ୍ର ଏବଂ ନୀଚମୁଖୀ ପଦ୍ମ ଏତେଦୂର ସୁଦର୍ଶନ ହୋଇଛି ଯେ ଏହାର ପ୍ରତିଦ୍ୱନ୍ଦୀ ଭାରତୀୟ ଭାସ୍କର୍ଯ୍ୟ ଶିଳ୍ପ ମଧ୍ୟରେ ଆଉ ନାହିଁ । ସାରନାଥ ସିଂହଚୂଡ଼ ସମ୍ବନ୍ଧରେ ସାର୍ ଜନ୍ ମାର୍ଶାଲ୍ ଲେଖିଛନ୍ତି, " କାରୁକାର୍ଯ୍ୟ ଏବଂ ଗଠନ ପ୍ରଣାଳୀ ଉଭୟ ଦିଗରୁ ଏହା ଅତ୍ୟୁତ୍କୃଷ୍ଟ ଏବଂ ଏ ପର୍ଯ୍ୟନ୍ତ ଭାରତବର୍ଷ ମଧ୍ୟରେ ଯେତେ ସବୁ ସୂକ୍ଷ୍ମ ଭାସ୍କର୍ଯ୍ୟ ଶିଳ୍ପ ସୃଷ୍ଟି ହୋଇଛି ତାହା ମଧ୍ୟରେ ଏହା ସର୍ବଶ୍ରେଷ୍ଠ, ଏବଂ ପ୍ରାଚୀନ ଜଗତରେ ଏହାଠାରୁ ଉତ୍କୃଷ୍ଟ କୌଣସି ନିଦର୍ଶନ ସୃଷ୍ଟି ହୋଇ ନାହିଁ ।"[1] ସ୍ମିଥ୍ ମଧ୍ୟ ସାରନାଥ ସିଂହଚୂଡ଼ ସମ୍ବନ୍ଧରେ ଉପର ଲିଖିତ ମତ ପୋଷଣ କରନ୍ତି ଯେ ଏହାର ସମକକ୍ଷ ଏକ କଳା ଅନ୍ୟ କୌଣସି ଦେଶରେ ପାଇବା ଅସମ୍ଭବ । ମାର୍ଶାଲ ଯେ କେବଳ ସାରନାଥ ସିଂହଚୂଡ଼ ସମ୍ବନ୍ଧରେ ଏପରି ପ୍ରଶଂସା କରିଛନ୍ତି ତାହା ନୁହେଁ, ସେ ସମସ୍ତ ମୌର୍ଯ୍ୟ ଶିଳ୍ପକଳାର ଅସାଧାରଣ ସୂକ୍ଷ୍ମ କାରୁକାର୍ଯ୍ୟ ଏବଂ ନିର୍ଭୁଲ ନିର୍ମାଣ ନୀତିର ଭୂୟସୀ ପ୍ରଶଂସା କରିଅଛନ୍ତି । ତାହାଙ୍କ ମତରେ ଏଥେନ୍ସ ନଗରୀର ଶ୍ରେଷ୍ଠ କାରୁକାର୍ଯ୍ୟ ମଧ୍ୟ ମୌର୍ଯ୍ୟ କାରୁକାର୍ଯ୍ୟର ଶ୍ରେଷ୍ଠ ନିଦର୍ଶନମାନଙ୍କୁ ଅତିକ୍ରମ କରିଯାଇ ପାରି ନାହିଁ । ଖ୍ରୀଷ୍ଟ ଜନ୍ମର ଅଢ଼େଇ ଶହ ବର୍ଷ ପୂର୍ବେ ଭାରତରେ ଯେ ଏପରି ଶିଳ୍ପକଳା ପ୍ରସ୍ଫୁଟିତ ହୋଇ ପାରିଥିଲା

1. **Marshall quoted in Rawlinson's India p. 85.**

ଏହାହିଁ ମୌର୍ଯ୍ୟ ସଭ୍ୟତାର ଗୌରବ । ଅଶୋକଙ୍କ ସମୟରେ ମୂଳସ୍ତରୁ ଅଧିକ ସଂଖ୍ୟକ ପ୍ରସ୍ତର ସ୍ତମ୍ଭ ଭାରତର ବିଭିନ୍ନ ଖଣ୍ଡରେ ନିର୍ମିତ ହୋଇଥିଲା । ଏହି ସବୁ ସ୍ତମ୍ଭ ନିର୍ମାଣ କାର୍ଯ୍ୟରେ ମୌର୍ଯ୍ୟଯୁଗର ପ୍ରସ୍ତର ଶିଳ୍ପୀମାନେ ସେମାନଙ୍କର ଆଶ୍ଚର୍ଯ୍ୟ ଶିଳ୍ପ ବିଜ୍ଞାନର ପରାକାଷ୍ଠା ଦେଖାଇ ଯାଇଛନ୍ତି । ପ୍ରକାଣ୍ଡ ପ୍ରସ୍ତରମାନଙ୍କୁ ସ୍ତମ୍ଭାକାରରେ ନିର୍ମାଣ କରି ଏକ ସ୍ଥାନରୁ ସ୍ଥାନାନ୍ତରକୁ ନେଇଯିବା ଏବଂ ସେ ସ୍ଥାନମାନଙ୍କରେ ସେହି ବିଶାଳକାୟ ସ୍ତମ୍ଭମାନଙ୍କୁ ଦଣ୍ଡାୟମାନ କରାଇବା କିଛି ଅଳ୍ପ କଥା ନୁହେଁ । ଏହି ସ୍ତମ୍ଭମାନଙ୍କୁ ଏପରି ଉତ୍କୃଷ୍ଟଭାବେ ମାର୍ଜିତ କରାଯାଇଛି ଯେ ସେମାନଙ୍କର ଉଜ୍ଜ୍ୱଳତା ଦେଖି ବହୁ ପରିବ୍ରାଜକ ସ୍ତମ୍ଭ-ମାନଙ୍କୁ ପ୍ରସ୍ତର ପରିବର୍ତ୍ତେ ଲୌହ କିମ୍ବା ଅନ୍ୟ କୌଣସି ଧାତୁରେ ନିର୍ମିତ ବୋଲି ବିଶ୍ୱାସ କରୁଥିଲେ । ପ୍ରତ୍ୟେକ ସ୍ତମ୍ଭ ଉପରେ ଗୋଟିଏ ଚୂଡ଼ା ଅଛି ଏବଂ ଏହି ଚୂଡ଼ା ଉପରେ ଗୋଟିଏ ଜନ୍ତୁ, ବିଶେଷତଃ ସିଂହର ପ୍ରସ୍ତର ପ୍ରତିକୃତି ରହିଛି । ସ୍ତମ୍ଭଗୁଡ଼ିକର ଉଚ୍ଚତା ଚାଳିଶ କିମ୍ବା ପଚାଶ ଫୁଟ । ସମଗ୍ର ସ୍ତମ୍ଭଟି ଖଣ୍ଡିଏ ମାତ୍ର ପ୍ରସ୍ତରରେ ତିଆରି ଏବଂ ଉପରସ୍ଥିତ ଚୂଡ଼ାଟି ଆଉ ଖଣ୍ଡିଏ ପଥରରେ । ଏପରି ବଡ଼ ବଡ଼ ସ୍ତମ୍ଭମାନଙ୍କର ଓଜନ ମଧ୍ୟ ଚାଳିଶ ପଚାଶ ଟନ୍‌ରୁ କମ ନୁହେଁ । ଏପରି ଭାରୀ ପ୍ରସ୍ତରଖଣ୍ଡମାନଙ୍କୁ ସ୍ଥାନାନ୍ତରକୁ ନେଇଯିବା ଏବଂ ସିଧାଭାବରେ ଠିଆ କରାଇବା ଏବଂ ସେମାନଙ୍କ ଦେହକୁ ପାଲିଶ ଦ୍ୱାରା କାଚପରି ସ୍ୱଚ୍ଛ କରାଇବା ଇତ୍ୟାଦି ବିଷୟ ଚିନ୍ତା କଲେ ମୌର୍ଯ୍ୟ ପ୍ରସ୍ତର ଶିଳ୍ପୀମାନଙ୍କର ଉନ୍ନତ ହସ୍ତ ଏବଂ ସେ ଯୁଗର ଇଞ୍ଜିନିୟାରମାନଙ୍କର ବୈଜ୍ଞାନିକ ବୁଦ୍ଧିର ପ୍ରଶଂସା ନ କରି ରହି ହୁଏ ନାହିଁ । ଅଶୋକଙ୍କର ଏହି ପ୍ରସ୍ତର ସ୍ତମ୍ଭମାନଙ୍କ ମଧ୍ୟରୁ ଅନେକେ କାଳକ୍ରମେ ଲୋପ ପାଇ ଗଲେଣି । ଏପରି ଏକ ଲୁପ୍ତ ଅଶୋକ ସ୍ତମ୍ଭର ଧ୍ୱଂସାବଶେଷ ଭୁବନେଶ୍ୱର ନିକଟରେ ଓଡ଼ିଶାର ପ୍ରତ୍ନତତ୍ତ୍ୱବିତ୍‌ମାନେ ଅଧୁନା ଆବିଷ୍କାର କରିଛନ୍ତି ।

ମୌର୍ଯ୍ୟଯୁଗୀୟ ପ୍ରସ୍ତର ଶିଳ୍ପର ଆଉ ଏକ ନିଦର୍ଶନ ଦେଖିବାକୁ ମିଳେ ଅଶୋକଙ୍କ ପ୍ରସ୍ତର ଖୋଦିତ ଅନୁଶାସନମାନଙ୍କରେ । କଠିନ ପ୍ରସ୍ତର ଅଙ୍ଗ ସମତଳ କରି ସେଥିରେ ସୁନ୍ଦରଭାବେ ଲିପି ଖୋଦନ କରିବା କାର୍ଯ୍ୟରେ ଅଶୋକଙ୍କ ଶିଳ୍ପୀମାନେ ଅଦ୍ଭୁତ ନିପୁଣତା ଲାଭ କରିଥିଲେ । ଶହ ଶହ ବର୍ଷ ଧରି ଅଶୋକଙ୍କ ଶିଳାଲିପିମାନ ସ୍ପଷ୍ଟଭାବେ ପଠିତ ହୋଇ ପାରୁଛି । ଓଡ଼ିଶାର ଧଉଳି ଓ ଜଉଗଡ଼ ଶିଳାଲିପିମାନ ଆଜିସୁଦ୍ଧା ଦେଶବାସୀଙ୍କର ଦର୍ଶନୀୟ ବସ୍ତୁ । ଧଉଳି

ଶିଳାଲିପି ଉପରେ ଯେଉଁ ସୁନ୍ଦର ପ୍ରସ୍ତରନିର୍ମିତ ହସ୍ତୀ ମୂର୍ତ୍ତି ଦେଖିବାକୁ ମିଳେ ତାହା ଉତ୍କଳରେ ମୌର୍ଯ୍ୟ ସ୍ଥାପତ୍ୟର ଧ୍ୱଂସାବଶେଷ ।

ମୌର୍ଯ୍ୟ ସ୍ଥାପତ୍ୟର ଏହି କ୍ଷୀଣ ଆଭାସ ଦେଲା ପରେ ବର୍ତ୍ତମାନ ମୌର୍ଯ୍ୟ ଶିକ୍ଷା ସାହିତ୍ୟ ଦିଗରୁ ମୌର୍ଯ୍ୟ ସଭ୍ୟତାର ମହାମୂଲ୍ୟ ରୂପ ପ୍ରତି ଦୃଷ୍ଟିପାତ କରିବୁଁ । ଶିକ୍ଷା ଦୃଷ୍ଟିରୁ ଭାରତବର୍ଷ ଯୁଗେ ଯୁଗେ ଉନ୍ନତ । ବୈଦିକ ଏବଂ ପୌରାଣିକ ଯୁଗର ଶିକ୍ଷା ବିଷୟରେ ପ୍ରାଚୀନ ଭାରତୀୟ ମୁନି ଋଷିମାନଙ୍କ ଲେଖାରୁ, ବେଦ, ବେଦାଙ୍ଗ, ଉପନିଷଦ, ମହାଭାରତ, ରାମାୟଣ ଏବଂ ଅପରାପର ଅଗଣିତ ଧର୍ମ ଓ ଦର୍ଶନଶାସ୍ତ୍ର-ମାନଙ୍କରୁ ବିଶଦଭାବେ ଜାଣିବାକୁ ମିଳେ । ପ୍ରାଗ୍-ଐତିହାସିକ ସେହି ପ୍ରାଚୀନ ଭାରତର ଶିକ୍ଷା ସମ୍ବନ୍ଧରେ କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ ସେହି ଶିକ୍ଷା ଚିରଦିନବ୍ୟାପୀ ଭାରତୀୟ ନୈତିକ ଜୀବନର ମେରୁଦଣ୍ଡରୂପେ ରହି ଆସିଛି ଏବଂ ଚିରଦିନ ମଧ୍ୟ ରହିବ । ଐତିହାସିକ ଯୁଗର ଆରମ୍ଭରେ ଯେତେବେଳେ ବୌଦ୍ଧ ଓ ଜୈନ ବିପ୍ଳବର ପ୍ରଖର ସ୍ରୋତରେ ଭାରତ ଭାସି-ଯାଇଥିଲା ସେତେବେଳେ ଭାରତୀୟ ଶିକ୍ଷାର ମଧ୍ୟ ପ୍ରଭୂତ ବିସ୍ତାର ହୋଇଥିଲା । ଧର୍ମପ୍ରଚାର ମୁଖ୍ୟତଃ ଶିକ୍ଷାର ଗୋଟିଏ ଅଙ୍ଗ ଏବଂ ଜୈନ ଓ ବୌଦ୍ଧପ୍ରଚାର ଦ୍ୱାରା ମଧ୍ୟ ଶିକ୍ଷାର ଯେତିକି ଉନ୍ନତି ହେବାର କଥା ତାହା ହୋଇଥିଲା । ବରଂ ଏ ଦୁଇଟି ଧର୍ମ ପ୍ରଚାରମୁଖୀ ଧର୍ମ ହୋଇଥିବାରୁ ବୌଦ୍ଧ ଓ ଜୈନ ପ୍ରଚାରକମାନେ ପ୍ରଚାର ଦିଗରେ ଅତି ବିଶେଷ ଦୃଷ୍ଟି ଦେଇଥିଲେ ଏବଂ ତାହା ଫଳରେ ଏକ ଉନ୍ନତ ଧର୍ମ ଶିକ୍ଷା ଭାରତବର୍ଷରେ ତଡ଼ିତ୍ ଗତିରେ ପ୍ରସାର ଲାଭ କରିଯାଇଥିଲା । ସେ ଯୁଗରେ ପ୍ରତ୍ୟେକ ବୌଦ୍ଧ ଓ ଜୈନ ବିହାର ଥିଲା ଗୋଟିଏ ଗୋଟିଏ ଶିକ୍ଷା କେନ୍ଦ୍ର ଯେଉଁଥିରେ ଧର୍ମଚର୍ଚ୍ଚା ବ୍ୟତୀତ ଦର୍ଶନ, ବିଜ୍ଞାନ, ଜ୍ୟୋତିଷ, ଚିକିତ୍ସା ଏବଂ ଶିକ୍ଷାର ଅପରାପର ଯେତେ ସବୁ ବିଭାଗ ସେ'ସବୁ ଉପରେ ଶିକ୍ଷାଦାନ କରାଯାଉଥାଏ । ଏ ସବୁ ବିହାରମାନଙ୍କ ବ୍ୟତୀତ ପ୍ରାଚୀନ ଭାରତରେ କତି-ପୟ ଖ୍ୟାତ ସମୃଦ୍ଧିଶାଳୀ ବିଶ୍ୱବିଦ୍ୟାଳୟ ଉଚ୍ଚଶିକ୍ଷା ବିସ୍ତାର ପାଇଁ ପ୍ରସିଦ୍ଧ ଥିଲା । ସେହି ବିଶ୍ୱବିଦ୍ୟାଳୟମାନଙ୍କ ମଧ୍ୟରୁ ତକ୍ଷଶିଳା, ଉଜ୍ଜୟିନୀ, ନାଳନ୍ଦା, କାଶୀ, ପୁଷ୍ପଗିରି, ଅମରାବତୀ, ମଦୁରା, ବିକ୍ରମଶୀଳା ପ୍ରଭୃତି ବିଶ୍ୱବିଦ୍ୟାଳୟମାନଙ୍କର ନାମ ଭାରତବାସୀଙ୍କ ନିକଟରେ ଅତି ପରିଚିତ । ତକ୍ଷଶିଳା ବିଶ୍ୱବିଦ୍ୟାଳୟ ଥିଲା ଭାରତବର୍ଷର ପ୍ରାଚୀନତମ ବିଶ୍ୱବିଦ୍ୟାଳୟ । ଜାତି-ଧର୍ମ-ନିର୍ବିଶେଷରେ କି ଭାରତବାସୀ

କ ବିଦେଶୀ ଶତସହସ୍ର ଛାତ୍ର ଏହି ବିଶ୍ୱବିଦ୍ୟାଳୟ ଗୃହରେ ମନୁଷ୍ୟତା ଲାଭପୂର୍ବକ ଭାରତ ତଥା ପୃଥିବୀର ଜନତାକୁ ଆଲୋକ ଦାନ କରିବା ଦିଗରେ ଚେଷ୍ଟାକରି ଯାଇଛନ୍ତି । ମୌର୍ଯ୍ୟଯୁଗରେ ତକ୍ଷଶିଳା ଖ୍ୟାତିର ଶୀର୍ଷ ସୀମାରେ ପହଞ୍ଚିଥିଲା । ଅର୍ଥଶାସ୍ତ୍ର-ପ୍ରଣେତା ବିଖ୍ୟାତ ମୌର୍ଯ୍ୟ ମନ୍ତ୍ରୀ ସ୍ୱୟଂ ଚାଣକ୍ୟ ଥିଲେ ଏହି ବିଶ୍ୱବିଦ୍ୟାଳୟର ଜନୈକ କୃତୀଛାତ୍ର ଏବଂ ପରେ ଜଣେ ପୃଷ୍ଠପୋଷକ । ମୌର୍ଯ୍ୟ ସମ୍ରାଟମାନେ ଯେ ବିଶ୍ୱବିଦ୍ୟାଳୟ ଏବଂ ବିହାରମାନଙ୍କର ଯଥେଷ୍ଟ ପୃଷ୍ଠପୋଷକତା କରିଥିବେ ଏଥିରେ ସନ୍ଦେହ ନାହିଁ । ଶିକ୍ଷାର ପ୍ରସାର ପାଇଁ ଏବଂ ଉନ୍ନତ ଧରଣର ଶିକ୍ଷା ପ୍ରଣାଳୀ ପାଇଁ ଏ ଯୁଗର ସାହିତ୍ୟ ମଧ୍ୟ ଉନ୍ନତ ଥିଲି । ଚାଣକ୍ୟ ଏହି ଯୁଗରେ ଅର୍ଥଶାସ୍ତ୍ର ପ୍ରଣୟନ କରିଥିଲେ ଏବଂ ସେଥିରେ ଭାରତର ରାଜନୀତି ଏବଂ ଅର୍ଥନୀତିର ରୂପ ଚିତ୍ରଣ କରିଥିଲେ । ଅର୍ଥଶାସ୍ତ୍ର ଭାରତ ତଥା ପୃଥିବୀର ସାହିତ୍ୟ କ୍ଷେତ୍ରରେ ଏକ ସୁପ୍ରସିଦ୍ଧ ଗ୍ରନ୍ଥ । ଚାଣକ୍ୟଙ୍କର ଅନେକଗୁଡ଼ିଏ ନାମ ବା ଉପାଧି ଥିଲା ଯଥା କୌଟିଲ୍ୟ, ବିଷ୍ଣୁଗୁପ୍ତ, ଦ୍ରାମିଳ, ପକ୍ଷିଳସ୍ୱାମୀ, ମଲ୍ଲନାଗ ଏବଂ ବାତ୍ସ୍ୟାୟନ । ବିଭିନ୍ନ ନାମରେ ଚାଣକ୍ୟ ବିଭିନ୍ନ ପୁସ୍ତକ ପ୍ରଣୟନ କରିଥିଲେ ବୋଲି କଥିତ ଅଛି । କୌଟିଲ୍ୟ ନାମରେ ସେ ଲେଖିଥିଲେ ଅର୍ଥଶାସ୍ତ୍ର; ପକ୍ଷିଳସ୍ୱାମୀ ନାମରେ ସେ ଲେଖିଥିଲେ ନ୍ୟାୟଭାଷ୍ୟ ; ଏବଂ ବାତ୍ସ୍ୟାୟନ ନାମରେ ଲେଖିଥିଲେ କାମଶାସ୍ତ୍ର । ଚାଣକ୍ୟଙ୍କ ଗ୍ରନ୍ଥମାନଙ୍କ ବ୍ୟତୀତ ମୌର୍ଯ୍ୟ-ଯୁଗରେ ଅନ୍ୟାନ୍ୟ ବହୁ ଗ୍ରନ୍ଥ ପ୍ରଣୀତ ହୋଇଥିଲା । ଏହି ଯୁଗରେ ବୌଦ୍ଧ ଏବଂ ଜୈନଧର୍ମ ସମ୍ବନ୍ଧୀୟ ଗ୍ରନ୍ଥମାନଙ୍କର ବହୁଳ ପ୍ରଚାର ହୋଇଥିଲା । ଏବଂ ସେହି ଧର୍ମମାନଙ୍କ ସମ୍ବନ୍ଧରେ ବହୁ ପୁସ୍ତକ ମଧ୍ୟ ଲିଖିତ ହୋଇଥିଲା । ବୌଦ୍ଧ 'ତ୍ରିପିଟକ' ଏହି ସମୟରେ ତାହାର ଆଧୁନିକ ରୂପ ଧାରଣ କରିଥିଲା ଏବଂ ଏହି ଯୁଗରେ 'କଥାବସ୍ତୁ' ମଧ୍ୟ ରଚିତ ହୋଇଥିଲା । ଜୈନଧର୍ମ ସମ୍ବନ୍ଧୀୟ ନିୟମାବଳୀ ଏହି ଯୁଗରେ ବିଶେଷଭାବରେ ଆଲୋଚିତ ହୋଇଥିଲା ଏବଂ ସେ ସବୁକୁ ସାହିତ୍ୟ ମଧ୍ୟରେ ରୂପ ଦିଆଯାଇଥିଲା । ଜୈନ ବିହାରମାନଙ୍କରେ ସଂସ୍କୃତ ପାଣ୍ଡିତ୍ୟ ଅତି ଉନ୍ନତ ସ୍ତରରେ ପହଞ୍ଚିଥିଲା ।[1] ଏହି ସମୟରେ ପ୍ରସିଦ୍ଧ 'ତନ୍ତ୍ରାଖ୍ୟାୟିକା' ରଚନା କରାଯାଇଥିଲା ଏବଂ ଏହି ଗ୍ରନ୍ଥ ପରବର୍ତ୍ତୀ ଯୁଗରେ ପଞ୍ଚତନ୍ତ୍ର ନାମରେ ପ୍ରସିଦ୍ଧି ଲାଭ କରି ବିଶ୍ୱର ବହୁ ବୃଦ୍ଧି କରିଥିଲା ।

1. Prof. S. Iyengar-- Advanced History of India (Hindu Period) p. 183.

ମୌର୍ଯ୍ୟ-ଯୁଗରେ ସମାଜର ସବୁ ସମ୍ପ୍ରଦାୟର ଲୋକଙ୍କ ପାଇଁ ଶିକ୍ଷାର ସୁବ୍ୟବସ୍ଥା ଥିଲା । ରାଜକୁମାରମାନଙ୍କୁ ବେଦ ତଥା ସାଂଖ୍ୟ, ଯୋଗ ପ୍ରଭୃତି ଦର୍ଶନ, କୃଷି, ବାଣିଜ୍ୟ ଏବଂ ପଶୁପାଳନ ଓ ଦଣ୍ଡନୀତି ପ୍ରଭୃତି ବିଭିନ୍ନ ବିଷୟ ଅଧ୍ୟୟନ କରିବାକୁ ପଡ଼ୁଥିଲା । ଯୁଦ୍ଧବିଦ୍ୟା କ୍ଷତ୍ରିୟ ସମ୍ପ୍ରଦାୟର ପ୍ରଧାନ ଶିକ୍ଷା ଥିଲା । ବୈଶ୍ୟ ସମ୍ପ୍ରଦାୟ ବେଦ ପଢ଼ିବା ଛଡ଼ା, ଧନ ରତ୍ନ, ମଣି ମୁକ୍ତା, ଧାତୁ ଓ ବସ୍ତ୍ର, ପ୍ରମୋଦ ସାମଗ୍ରୀ, ଶସ୍ୟ ଇତ୍ୟାଦିର ମୂଲ୍ୟ ସମ୍ବନ୍ଧରେ ଶିକ୍ଷାଲାଭ କରୁଥିଲେ ଏବଂ ବାଣିଜ୍ୟ-ବ୍ୟବସାୟର ସୁବିଧାର୍ଥେ ବିଭିନ୍ନ ସ୍ଥାନର କଥିତ ଭାଷା ମଧ୍ୟ ଜାଣୁଥିଲେ । ଅନ୍ୟାନ୍ୟ ଜାତିର ଲୋକେ ସେମାନଙ୍କ ଜାତିଗତ କାର୍ଯ୍ୟ ସମ୍ବନ୍ଧରେ ଜନ୍ମରୁ ଶିକ୍ଷାଲାଭ କରୁଥିଲେ । ସେମାନଙ୍କୁ ସେମାନଙ୍କର କାର୍ଯ୍ୟ ସମ୍ବନ୍ଧୀୟ ବହି ପଢ଼ିବାକୁ ହେଉଥିଲା ଏବଂ ତା ସଙ୍ଗେ ସଙ୍ଗେ ପୁରାଣ, ମହାଭାରତ, ରାମାୟଣ ଇତ୍ୟାଦି ଧର୍ମଗ୍ରନ୍ଥ ମଧ୍ୟ ପଢ଼ିବାକୁ ପଡ଼ୁଥିଲା ।[1] ମୌର୍ଯ୍ୟ-ଯୁଗର ବିଶେଷତ୍ୱ ହେଉଛି ଯେ ଏହି ଯୁଗରେ ଏକ ଗଣଶିକ୍ଷାର ଆନ୍ଦୋଳନ ଆରମ୍ଭ ହୋଇଥିଲା । ଅଶୋକଙ୍କ ସମୟରେ ସାରା ଭାରତବ୍ୟାପୀ ଏହି ଆନ୍ଦୋଳନ ତା'ର ଶୀର୍ଷ ସୀମାରେ ପହଞ୍ଚିଥିଲା । ବୈଦିକ ଏବଂ ପୌରାଣିକ ଯୁଗର ସଂସ୍କୃତ ଭାଷା ଜନତା ପକ୍ଷରେ କଷ୍ଟସାଧ୍ୟ କଷ୍ଟକର ଥିଲା । ମୌର୍ଯ୍ୟ-ଯୁଗରେ ସର୍ବସାଧାରଣଙ୍କର ସହଜଗମ୍ୟ ଏକ ଭାଷାର ପ୍ରଚାର ପାଇଁ ଏକ ସମ୍ୟକ୍ ଚେଷ୍ଟା ହୋଇଥିଲା । ବିଶେଷଜ୍ଞମାନଙ୍କ ମତରେ ପାଲି ଭାଷା ହେଉଛି ସଂସ୍କୃତ ଭାଷାର ଜ୍ୟେଷ୍ଠା ଦୁହିତା । ପାଲି ସହଜ ଏବଂ ସରଳ ଓ ଏକ କଥିତ ଭାଷାରୂପେ ପ୍ରଚଳିତ ହେବା ପାଇଁ ଯଥେଷ୍ଟ ଉପଯୋଗୀ । ପ୍ରାଚୀନ ଭାରତରେ ସଂସ୍କୃତହିଁ ପ୍ରଥମେ ଥିଲା କଥିତ ଏବଂ ଲିଖିତ ଭାଷା । କାଳକ୍ରମେ ସଂସ୍କୃତ ଗର୍ଭରୁ ଜନତାର ଉପଯୋଗୀ ଏକ ସହଜ ଭାଷା ଜାତହୋଇଥିଲା ଏବଂ ତାହା ହେଉଛି ପାଲି । ଅଶୋକଙ୍କ ସମୟରେ ଏହି ପାଲି ଭାଷାକୁ କେନ୍ଦ୍ରକରି ଏକ ଗଣ-ଶିକ୍ଷାର ପ୍ରସାର ଆରମ୍ଭ ହୋଇଥିଲା । ଅବଶ୍ୟ ଏଦ୍ୱାରା ସଂସ୍କୃତ ଭାଷା ମ୍ଳାନ ହୋଇ ପଡ଼ି ନ ଥିଲା କିମ୍ବା ସଂସ୍କୃତ-ପାଣ୍ଡିତ୍ୟ ଉପରେ ବାଧା ଆସି ନ ଥିଲା । ଅଥଚ ସର୍ବସାଧାରଣଙ୍କ ମଧ୍ୟରେ ପାଲିର ପ୍ରସାରଦ୍ୱାରା ସେ ଯୁଗର ଶିକ୍ଷା ପ୍ରସାର ଲାଭକରି ଯାଇଥିଲା । ଯେତେବେଳେ ଗୌତମ ବୁଦ୍ଧ ଭାରତବାସୀ ଜନ-ସାଧାରଣଙ୍କ ମଧ୍ୟରେ ଜାଗୃତି ଆଣୁଥିଲେ ସେତେବେଳେ ସେ ସଂସ୍କୃତ ଭାଷାରେ

1. Prof. S. Iyengar-- Advanced History of India p. 183.

ନିଜର ପ୍ରଚାର କାର୍ଯ୍ୟ ଆରମ୍ଭ ନ କରି ଏକ ସରଳ ଭାଷାର ଆଶ୍ରୟ ନେଇଥିଲେ । ସେହି ସରଳ ଭାଷା ହେଉଛି ପାଲିର ଆଦିରୂପ । ଅଶୋକଙ୍କ ସମୟରେ ସେହି ପାଲିର ବହୁଳ ପ୍ରସାର ହୋଇଥିଲା । କେବଳ ଭାରତବର୍ଷରେ ଏ ଭାଷା ସୀମାବଦ୍ଧ ନ ହୋଇ ସିଂହଳ ଦ୍ୱୀପକୁ ମଧ୍ୟ ଏ ଭାଷା ଅଶୋକଙ୍କ ରାଜତ୍ୱ କାଳରେ ମାଡ଼ି ଯାଇଥିଲା ଏବଂ ସେଠାରେ ମୁଖ୍ୟ ଭାଷାରୂପେ ପରିଗଣିତ ହୋଇଥିଲା । ଅଶୋକ ପାଲି ଭାଷାର ପ୍ରଚାର ପାଇଁ ନିଜେ ଯେଉଁ ଅକ୍ଲାନ୍ତ ପରିଶ୍ରମ କରିଥିଲେ ତାହା ତାହାଙ୍କ ଲିଖିତ ଅନୁଶାସନମାନଙ୍କୁ ଦେଖିଲେ ଜଣାଯାଏ । ଭାରତର ସ୍ଥାନେ ସ୍ଥାନେ ଜନତାର ବୋଧଗମ୍ୟ ହେବ ବୋଲି ସେ ତାହାଙ୍କ ନିର୍ଦ୍ଦେଶମାନ ପାଲି ଭାଷାରେ ଖୋଦିତ କରିଯାଇଥିଲେ । ହୁଏତ ସେହିସବୁ ଅନୁଶାସନ ସଂସ୍କୃତ ଭାଷାରେ ସୁନ୍ଦର କବିତା ଛନ୍ଦରେ ଲିଖିତ ହୋଇଥିଲେ ଅଧିକ ଲାଳିତ୍ୟପୂର୍ଣ୍ଣ ହୋଇ ଥାଆନ୍ତା । କିନ୍ତୁ ଭାଷାର ଲାଳିତ୍ୟ ଦ୍ୱାରା ଅଶୋକ କେବଳ ଭାରତର ଅଭିଜାତ ସମ୍ପ୍ରଦାୟକୁ ମୁଗ୍ଧ କରିବା ପରିବର୍ତ୍ତେ ଭାଷାର ସରଳତା ଦ୍ୱାରା ଜନ-ସାଧାରଣଙ୍କୁ ଶିକ୍ଷିତ କରିବା ପାଇଁ ଅଧିକ ବ୍ୟଗ୍ର ଥିଲେ । ଏକ କଥାରେ ଭାରତୀୟ ଗଣଶିକ୍ଷା ଆନ୍ଦୋଳନର ପ୍ରଥମ ନେତା ଥିଲେ ସ୍ୱୟଂ ବୁଦ୍ଧ ଏବଂ ତାହାଙ୍କ ପରେ ଅଶୋକ । ଏ ଦୁହିଙ୍କ ପ୍ରଚାର ଫଳରେ ଏ ଦେଶର ପୁରପଲ୍ଲୀରେ ଯେଉଁ ଜ୍ଞାନ ପ୍ରସାର ହୋଇଥିଲା ସେପାଇଁ ଭାରତୀୟ ଶିକ୍ଷା ସଂସ୍କୃତି ଚିରଦିନ ସେମାନଙ୍କ ନିକଟରେ ଋଣୀ । ମୌର୍ଯ୍ୟ ସଭ୍ୟତା ଯେ ଏକ ସର୍ବାଙ୍ଗୀନ ସଭ୍ୟତାରେ ପରିଣତ ହୋଇପାରିଥିଲା ତାହାର ଅନ୍ୟତମ କାରଣ ହେଉଛି ଜନସମ୍ରାଟ ଅଶୋକଙ୍କର ପାଲି ପରି ଏକ ଗଣଭାଷା ପ୍ରଚାର ଏବଂ ତାହାର ପୃଷ୍ଠପୋଷକତା । ଏଠାରେ ଏହା ବିଶେଷ ଦ୍ରଷ୍ଟବ୍ୟ ଯେ ଅଶୋକଙ୍କ ଅମଳରେ ପାଲି ଭାଷା କଳିଙ୍ଗରେ ବହୁଳ ପ୍ରସାର ଲାଭ କରିଥିଲା ଏବଂ ଓଲ୍‌ଡେନ୍‌ବାର୍ଗ ପ୍ରମୁଖ ପଣ୍ଡିତମାନଙ୍କ ମତରେ ଏହି କଳିଙ୍ଗ ଦେଶରୁହିଁ ପାଲି ଭାଷା ସିଂହଳ ଦ୍ୱୀପକୁ ଯାଇଥିଲା ଓ ସେଠାରେ ପ୍ରସାର ଲାଭ କରିଥିଲା ।

କେତେକ ଐତିହାସିକ ଏପରି ଏକ ମତ ପୋଷଣ କରୁଥିଲେ ଯେ ଅଶୋକ ପାଲି ଭାଷାର ପୃଷ୍ଠପୋଷକତା କରିବାଦ୍ୱାରା ଭାରତରେ ବ୍ରାହ୍ମଣ୍ୟଧର୍ମର ବିରୁଦ୍ଧତା କରାଯାଇଥିଲା ଏବଂ ସଂସ୍କୃତ ଭାଷାର ଅଧୋଗତି ପାଇଁ ରାସ୍ତା ପରିଷ୍କାର ହୋଇ ଯାଇଥିଲା । ବୌଦ୍ଧଧର୍ମ ଯେ ମୂଳତଃ ବ୍ରାହ୍ମଣ୍ୟଧର୍ମର ପୂଜାପଦ୍ଧତି ଓ ମନ୍ତ୍ର ତନ୍ତ୍ରର

ବିରୁଦ୍ଧବାଦୀ ଥିଲା ଏଥିରେ ସନ୍ଦେହ ନାହିଁ । ସୁତରାଂ ବୌଦ୍ଧଧର୍ମର ପ୍ରସାର ବଳରେ ବ୍ରାହ୍ମଣ୍ୟଧର୍ମର ପ୍ରଭୃତପରିରେ କିଛିଟା ବାଧା ପଡ଼ିଥିଲା ଏହା ନିଶ୍ଚିତ । ବ୍ରାହ୍ମଣ୍ୟଧର୍ମ ଓ ସଂସ୍କୃତ ଭାଷା ଏ ଦୁଇ ମଧ୍ୟରେ ଯେଉଁ ମୌଳିକ ସମ୍ପର୍କ ଥିଲା ତାହା ଫଳରେ ବ୍ରାହ୍ମଣ୍ୟଧର୍ମର ହ୍ରାସଲାଭ ସଙ୍ଗେ ସଙ୍ଗେ ସଂସ୍କୃତ ଭାଷା ମଧ୍ୟ ମ୍ଳାନ ହୋଇ ଆସିଥିବା ସମ୍ଭବ । ହୁଏତ ପରୋକ୍ଷଭାବରେ ଅଶୋକ ଏ ସବୁ ପାଇଁ ଦାୟୀ । କିନ୍ତୁ ଅଶୋକ ପ୍ରତ୍ୟକ୍ଷଭାବରେ କେବେହେଲେ ବ୍ରାହ୍ମଣ୍ୟଧର୍ମ କିମ୍ବା ସଂସ୍କୃତ ଭାଷାର ବିରୁଦ୍ଧତା କରି ନାହାନ୍ତି । ପ୍ରାଚୀନ ହିନ୍ଦୁ ସମ୍ରାଟମାନେ ଥିଲେ ଚିରକାଳ ଉଦାର । ଧର୍ମଦ୍ୱେଷ ଚିରଦିନ ଭାରତୀୟ ସଂସ୍କୃତିର ବାହାରେ । ଅଶୋକ ନିଜେ ବୌଦ୍ଧ ଥିଲେ ମଧ୍ୟ ଏବଂ ବୌଦ୍ଧଧର୍ମ ପ୍ରଚାର ପାଇଁ ଅକ୍ଲାନ୍ତ ପରିଶ୍ରମ କରିଥିଲେ ମଧ୍ୟ ମୁହୂର୍ତ୍ତି ପାଇଁ ସେ ହିନ୍ଦୁଧର୍ମ କିମ୍ବା ଜୈନଧର୍ମ ବିରୁଦ୍ଧରେ ପ୍ରଚାର କରି ନ ଥିଲେ । ବରଂ ବ୍ରାହ୍ମଣ, ଜୈନ ଏବଂ ବୌଦ୍ଧମାନଙ୍କ ପ୍ରତି ତାହାଙ୍କର ସମବ୍ୟବହାର ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଦିଏ । ନିଜେ ବ୍ରାହ୍ମଣମାନଙ୍କୁ ଅକାତରେ ଦାନ କରୁଥିଲେ ଏବଂ ସମସ୍ତେ ଯେପରି ଉଦାର ଭାବରେ ଏପରି ଦାନ କରନ୍ତି ସେଥିପାଇଁ ଅଶୋକ ଅନୁଶାସନମାନଙ୍କରେ ବାରମ୍ବାର ଉପଦେଶ ଦେଇ ଯାଇଥିଲେ । ଏପରି ସମ୍ରାଟ ଯେ କେବେ ବ୍ରାହ୍ମଣ୍ୟଧର୍ମ ବିରୁଦ୍ଧରେ ନିଜର ଅପରିସୀମ ଶକ୍ତିର ଅଣୁମାତ୍ର ବ୍ୟୟ କରିଥିବେ ଏହା ଅସମ୍ଭବ । ଠିକ୍ ସେହିପରି ଅଶୋକଙ୍କ ପରି ଉଦାରଚେତା ସମ୍ରାଟ ଯେ ଭାରତୀୟ ସଂସ୍କୃତିର ଜନନୀ-ରୂପିଣୀ ଯେଉଁ ସଂସ୍କୃତ ଭାଷା ତାହା ପ୍ରତି କୌଣସି କ୍ରମେ ଈର୍ଷା ପରବଶ ହୋଇଥିବେ ଏହା ସମ୍ପୂର୍ଣ୍ଣ ଅସମ୍ଭବ । ଜନତାର ଶିକ୍ଷା ପାଇଁ ସେ ପାଲି ଭାଷାର ପ୍ରଚାର କରିଥିଲେ, କିନ୍ତୁ ତାହାର ଅର୍ଥ ନୁହେଁ ଯେ ସଂସ୍କୃତ ଭାଷା ବିରୁଦ୍ଧରେ ଅଭିଯାନ ଆରମ୍ଭ କରି ଦେଇଥିଲେ । ମୋଟ ଉପରେ, ମୌର୍ଯ୍ୟଯୁଗରେ ସଂସ୍କୃତର ପ୍ରତିଭା କୌଣସି କ୍ରମେ ହ୍ରାସ ନ ପାଇ ମଧ୍ୟ ପାଲି ଭାଷାର ବହୁଳ ପ୍ରସାର ହୋଇ ପାରିଥିଲା । ଭାରତୀୟ ପଣ୍ଡିତ ସମାଜରେ, ତଥା ବିଶ୍ୱ-ବିଦ୍ୟାଳୟ ଏବଂ ଶିକ୍ଷାନୁଷ୍ଠାନମାନଙ୍କରେ, ଦେଶର ସାହିତ୍ୟ ଏବଂ ଦର୍ଶନ ଅଙ୍ଗରେ, ରାଜଦରବାର ଏବଂ ରାଜକୀୟ ବ୍ୟାପାରମାନଙ୍କରେ, ସର୍ବତ୍ର ସଂସ୍କୃତ ଭାଷାହିଁ ଥିଲା ମୁଖ୍ୟ ଭାଷା । କେବଳ ଯେଉଁ ଲକ୍ଷ ଲକ୍ଷ ମନୁଷ୍ୟଙ୍କ ନିକଟରେ ସଂସ୍କୃତ ସହଜବୋଧ୍ୟ ନ ଥିଲା ସେହିମାନଙ୍କ ନିକଟରେ ପାଲି ଭାଷା ପ୍ରଚାରିତ ହୋଇଥିଲା । ଏହିପରି ମୌର୍ଯ୍ୟଯୁଗର ଭାରତରେ ଏକ ସର୍ବାଙ୍ଗୀନ ଶିକ୍ଷା ଧର୍ମ ନିର୍ବିଶେଷରେ, ଜାତି-ଧର୍ମ-ନିର୍ବିଶେଷରେ ବିସ୍ତାର ଲାଭ କରି ପାରିଥିଲା ।

ମୌର୍ଯ୍ୟଭାରତର ଉନ୍ନତ ସାମାଜିକ ଓ ଅର୍ଥନୈତିକ ଅବସ୍ଥା ମୌର୍ଯ୍ୟ ସଭ୍ୟତାର ଅପର ଏକ ପ୍ରମାଣ । ସଭ୍ୟତା କେବଳ ଶିକ୍ଷା ଓ ସ୍ଥାପତ୍ୟ ମଧ୍ୟଦେଇ ନିଜର ରୂପ ବିକାଶ କରେ ନାହିଁ । ଯେଉଁ ସଭ୍ୟତା ବାସ୍ତବରେ ସର୍ବାଙ୍ଗୀନ ତାହା ଦେଶର ଆର୍ଥିକ ଅବସ୍ଥା ଓ ସାମାଜିକ ରୀତି ନୀତି-ମଧ୍ୟଦେଇ ମଧ୍ୟ ନିଜର ପରିଚୟ ଦିଏ । ମୌର୍ଯ୍ୟଯୁଗର ସାମାଜିକ ଓ ଅର୍ଥନୈତିକ ଅବସ୍ଥା ଇତିହାସ ପୃଷ୍ଠାରେ ଅତ୍ୟନ୍ତ ଉଜ୍ଜ୍ୱଳ ; କାରଣ ସେ ଯୁଗର ଦୁଇଜଣ ପ୍ରତ୍ୟକ୍ଷ ଦ୍ରଷ୍ଟା ସାକ୍ଷୀ ମୌର୍ଯ୍ୟ ଭାରତର ସମାଜ ଓ ଅର୍ଥନୈତିକ ଜୀବନ ଉପରେ ଗଭୀର ଅନୁସନ୍ଧାନ କରି ସେମାନଙ୍କ ଅନୁଭୂତି ଓ ଅନୁସନ୍ଧାନ ଇତିହାସ ପୃଷ୍ଠାରେ ଲିପିବଦ୍ଧ ପାଇଁ ଲେଖି ଦେଇ ଯାଇଛନ୍ତି । ମୌର୍ଯ୍ୟଭାରତର ଏହି ଦୁଇ ସାକ୍ଷୀ ମଧ୍ୟରୁ ଜଣେ ହେଉଛନ୍ତି ମହାମତି କୌଟିଲ୍ୟ ଏବଂ ଅପର ଜଣେ ହେଉଛନ୍ତି ଗ୍ରୀକ୍ ରାଜଦୂତ ମେଗାସ୍ଥିନିସ୍ । ଉଭୟ ସେ ଯୁଗର ବିଚକ୍ଷଣ ବ୍ୟକ୍ତି ଏବଂ ସେମାନଙ୍କ ଲେଖନୀ ନିକଟରେ ଭାରତ ଇତିହାସ ଋଣୀ । ସେମାନଙ୍କ ବିବରଣୀ ଏତେ ସୁଦୀର୍ଘ ଯେ ସେ ବିବରଣୀର କିୟଦଂଶ ମଧ୍ୟ ଉଲ୍ଲେଖ କରିବା ସ୍ଥାନ ଦୃଷ୍ଟିରୁ ଏଠାରେ ଅସମ୍ଭବ । ତଥାପି ସେମାନଙ୍କ ବିବରଣୀରୁ ଯତ୍‌କିଞ୍ଚିତ ଉଲ୍ଲେଖ ନ କଲେ ମୌର୍ଯ୍ୟ ସଭ୍ୟତାର ବର୍ଣ୍ଣନା ଅପୂର୍ଣ୍ଣାଙ୍ଗ ରହିଯିବ । କୌଟିଲ୍ୟଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ ମୌର୍ଯ୍ୟ ଭାରତରେ ଜାତିପ୍ରଥା ବିଦ୍ୟମାନ ଥିଲେହେଁ ତାହା ପରବର୍ତ୍ତୀ ଯୁଗର ଜାତିପ୍ରଥା ପରି ଅତିଶୟ ନୀଚ ସ୍ତରକୁ ଖସି ଯାଇ ନ ଥିଲା । କୌଟିଲ୍ୟ ତାହାଙ୍କ ଅର୍ଥଶାସ୍ତ୍ରରେ ହିନ୍ଦୁର ଚତୁର୍ଜାତି ବିଷୟ ଉଲ୍ଲେଖ କରିଛନ୍ତି, ଯଥା ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଏବଂ ଶୂଦ୍ର । ମେଗାସ୍ଥିନିସ୍ ମଧ୍ୟ ଭାରତବାସୀଙ୍କୁ ମୁଖ୍ୟତଃ ଚାରି ଭାଗରେ ବିଭକ୍ତ କରିଛନ୍ତି ଯଥା, ଦାର୍ଶନିକ, ସୈନ୍ୟ, ପଶୁପାଳକ ଓ କର୍ମୀ । ଅନ୍ୟ କେତେ ଶ୍ରେଣୀର ଲୋକଙ୍କ କଥା ମେଗାସ୍ଥିନିସ୍ ଉଲ୍ଲେଖ କରିଛନ୍ତି କିନ୍ତୁ ସେ ଶ୍ରେଣୀଗୁଡ଼ିକ ଉପରଲିଖିତ ଚାରି ଶ୍ରେଣୀ ମଧ୍ୟରେ ସ୍ଥାନ ପାଇ ପାରିବେ । ମୋଟ ଉପରେ ଦେଶରେ ମୁଖ୍ୟକର୍ମମାନଙ୍କ ଅନୁସାରେ କେତୋଟିମାନ ମୁଖ୍ୟ ଜାତି ଗଠିତ ହୋଇଥିଲା । ଅବଶ୍ୟ ଅନ୍ୟ ଉପଜାତିମାନଙ୍କର ସୃଷ୍ଟି ବୌଦ୍ଧଯୁଗ ଆରମ୍ଭର ବହୁପୂର୍ବରୁ ଆରମ୍ଭ ହୋଇ ଯାଇଥିଲା, କିନ୍ତୁ ସେ ସବୁ ଅଗଣିତ ଉପଜାତି ଏପର୍ଯ୍ୟନ୍ତ ଭାରତୀୟ ସାମାଜିକ ଜୀବନରେ ସ୍ଥାୟୀ ସ୍ଥାନ ଅଧିକାର କରି ନ ଥିଲେ । ବୋଧହୁଏ ବୌଦ୍ଧ ଓ ଜୈନ ଧର୍ମର ପାଇଁ ଉପଜାତିମାନଙ୍କର ସୃଷ୍ଟିକାର୍ଯ୍ୟ କଷ୍ଟକର ହୋଇ ପଡ଼ିଥିଲା । ମୌର୍ଯ୍ୟ ସମ୍ରାଟମାନଙ୍କ ମଧ୍ୟରୁ ଚନ୍ଦ୍ରଗୁପ୍ତ ଥିଲେ ଜୈନ ଏବଂ ଅଶୋକ ଥିଲେ ବୌଦ୍ଧ ।

ସେମାନଙ୍କର ଶିକ୍ଷଣ ଦୃଷ୍ଟିରେ ଜାତିପ୍ରଥା ଜଟିଳତର ହୋଇ ପାରି ନ ଥିବ । ଏହିପରିଭାବରେ, ବୈଦିକ ଯୁଗର ଶେଷ ସମୟରୁ ଭାରତୀୟ ସମାଜ ଶତ ଖଣ୍ଡରେ ବିଭକ୍ତ ହେବାକୁ ଚେଷ୍ଟା କରୁଥିଲେ ମଧ୍ୟ ବହୁବିଧ କାରଣରୁ ତାହା ହୋଇ ପାରୁ ନ ଥିଲା । ସୁତରାଂ ମୌର୍ଯ୍ୟ ସମାଜ ପରବର୍ତ୍ତୀ କାଳର ସମାଜ ପରି ଶତ-ସହସ୍ର ଭାଗରେ ବିଭକ୍ତ ହେବାର ସୁଯୋଗ ପାଇ ନ ଥିଲା, ଯେହେତୁ ଏହି ଯୁଗରେ ଗୃହିଥିଲା ଉଦାର ବୌଦ୍ଧ ଓ ଜୈନ ସଂସ୍କାର ଏବଂ ଏହି ସଂସ୍କାରର ପୃଷ୍ଠପୋଷକ ଥିଲେ ନିଜେ ମୌର୍ଯ୍ୟ ସମ୍ରାଟମାନେ । ଏହା ଥିଲା ମୌର୍ଯ୍ୟ ସମାଜର ଗୋଟିଏ ଗୌରବ । ମେଗାସ୍ଥିନିସ୍ ଏବଂ କୌଟିଲ୍ୟ ଉଭୟଙ୍କ ବର୍ଣ୍ଣନାନୁଯାୟୀ ମୌର୍ଯ୍ୟ-ଯୁଗରେ ବହୁ ବିବାହ ପ୍ରଥା ପ୍ରଚଳିତ ଥିଲାବୋଲି ଜଣାଯାଏ । କିନ୍ତୁ କୌଟିଲ୍ୟଙ୍କ ଲେଖାରୁ ଏହା ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ କୌଣସି ବ୍ୟକ୍ତି ଦ୍ୱିତୀୟ ସ୍ତ୍ରୀ ଗ୍ରହଣ କରୁଥିଲା କେବଳ ସେହି କ୍ଷେତ୍ରରେ ଯେତେବେଳେ ତାହାର ପ୍ରଥମା ସ୍ତ୍ରୀ ପାଖରୁ ପୁତ୍ର ଜନ୍ମ ହେଉ ନ ଥିଲା । ହିନ୍ଦୁମାନଙ୍କ ବିଶ୍ୱାସରେ ପୁତ୍ରହୀନର ନରକବାସ ଅବଶ୍ୟମ୍ଭାବୀ । ସେଥିପାଇଁ ବିବାହର ମୁଖ୍ୟ ଉଦ୍ଦେଶ୍ୟ ଥିଲା ପୁତ୍ରଲାଭ । ଏପରି-ସ୍ଥଳେ ଯଦି ପ୍ରଥମା ସ୍ତ୍ରୀ ନିକଟରୁ ପୁତ୍ରଲାଭ ହେଉ ନ ଥିଲା ତେବେ ସ୍ୱାମୀର ଦ୍ୱିତୀୟ ଦାର ପରିଗ୍ରହ ଏକାନ୍ତ ଆବଶ୍ୟକ ଥିଲା । ବହୁ ବିବାହ ପ୍ରଥା ପୃଥିବୀର ପ୍ରାୟ ସବୁ ଜାତି ଏବଂ ସବୁ ଦେଶରେ ଆଦିମ କାଳରୁ ପ୍ରଚଳିତ ଅଛି । କିନ୍ତୁ ନିର୍ଦ୍ଦିଷ୍ଟ କାରଣ ପାଇଁ ଯେଉଁ ବହୁବିବାହ ତାହା ସମୀଚୀନ, ଅନ୍ୟଥା ନୁହେଁ । ପରବର୍ତ୍ତୀ ଭାରତରେ ପୁତ୍ର ଥିଲେ ମଧ୍ୟ ଜଣେ ବହୁ ପତ୍ନୀ ଗ୍ରହଣ କରିବା ପାଇଁ ସମର୍ଥ ଥିଲା ଏବଂ ସେ ପାଇଁ ଦେଶର ଆଇନଦ୍ୱାରା ସେ ଦଣ୍ଡନୀୟ ହେଉ ନ ଥିଲା । ଆଜିବୁଦ୍ଧା ଏପରି ଅସଙ୍ଗତ ବିବାହ ଅର୍ଥାତ୍ ସନ୍ତାନ ସନ୍ତତି ଥିବା ସତ୍ତ୍ୱେ ଏବଂ ପ୍ରଥମା ସ୍ତ୍ରୀର ବିଦ୍ୟମାନରେ ଅପର ସ୍ତ୍ରୀର ପାଣିଗ୍ରହଣ ଭାରତରେ ବହୁ ପ୍ରଚଳିତ । ଏହା ଭାରତୀୟ ସମାଜର ଗୋଟିଏ କଳଙ୍କ । କିନ୍ତୁ ସୁଦୂର ସେହି ମୌର୍ଯ୍ୟଯୁଗରେ ବହୁ ବିବାହ ପ୍ରଥା ଅବାରିତ ଭାବରେ ସମାଜକୁ କଳଙ୍କିତ କରୁ ନ ଥିଲା । କେବଳ ଯଥାଯୋଗ୍ୟ କାରଣ ଦର୍ଶାଇ ଅର୍ଥାତ୍ ପୁତ୍ରର ଅଭାବରେ ଅପର ଏକ ସ୍ତ୍ରୀର ପାଣିଗ୍ରହଣ ପ୍ରଥା ପ୍ରଚଳିତ ଥିଲା । ଏହା ମୌର୍ଯ୍ୟ ସମାଜର ଏକ ପ୍ରଶଂସନୀୟ ରୀତି । ମୌର୍ଯ୍ୟ ସମାଜର ଅପର ଏକ ଉଲ୍ଲେଖଯୋଗ୍ୟ ରୀତି ଥିଲା ବିଧବା ବିବାହ । କୌଟିଲ୍ୟ ଏ ବିଷୟରେ ଅତି ସ୍ପଷ୍ଟଭାବରେ ଲେଖି ଯାଇଛନ୍ତି । ପରବର୍ତ୍ତୀ ଭାରତରେ ବିଧବା ବିବାହ ଲୋପ ପାଇ ଯାଇଥିଲା ଏବଂ ବିଧବାମାନଙ୍କୁ ଏକେ

ଅଗ୍ନିରତାରେ ଜୀବନ ଦାନ କରିବାକୁ ପଡ଼ୁଥିଲା ନଚେତ୍ ସାରା ଜୀବନ ଅଶ୍ରୁ-ସ୍ନାନରୂପେ ଅଶାନ୍ତି ମଧ୍ୟରେ ଦଗ୍ଧୀଭୂତ ହେବାକୁ ପଡ଼ୁଥିଲା । କିନ୍ତୁ ମୌର୍ଯ୍ୟ ସମାଜରେ ବିଧବା ବିବାହ ପରି ଅନୁଷ୍ଠାନ ପ୍ରଚଳିତ ଥିବାରୁ ସେ ଯୁଗର ନାରୀ ସମାଜ ଯେ ବହୁ ମାତ୍ରାରେ ଉପକୃତ ହୋଇଥିଲେ ଏଥିରେ ସନ୍ଦେହ ନାହିଁ । ଐତିହାସିକମାନଙ୍କ ମତରେ ମୌର୍ଯ୍ୟ ଭାରତରୁ ସତୀଦାହ ପରି ଅମାନୁଷିକ ପ୍ରଥା ଆଦୌ ଜଣା ନ ଥିଲା । ଯେଉଁ ସମାଜରେ ସ୍ୱାମୀର ମୃତ୍ୟୁ ପରେ ବିଧବା ସ୍ତ୍ରୀକୁ ଅପର ଏକ ସ୍ୱାମୀ ଗ୍ରହଣ କରିବା ପାଇଁ ଅନୁମତି ଦିଆଯାଇଥିଲା ସେପରି ସମାଜରେ ସ୍ୱାମୀର ମୃତ୍ୟୁଚିତାରେ ବିଧବା ସ୍ତ୍ରୀର ସହମରଣର ପ୍ରଶ୍ନ ଉଠି ନ ପାରେ । ମୌର୍ଯ୍ୟ ଯୁଗର ପରେ ପରେ କିନ୍ତୁ ସତୀଦାହ ପ୍ରଥା ହିନ୍ଦୁ ସମାଜ ମଧ୍ୟରେ ପ୍ରବେଶ କରି ଯାଇଥିଲା ଏବଂ ଶହ ଶହ ବର୍ଷ ଧରି ହିନ୍ଦୁଧର୍ମର ସର୍ବଶ୍ରେଷ୍ଠ କଳଙ୍କରୂପେ ଏ ଦେଶରେ ବ୍ୟାପୀ ରହିଥିଲା ।

ମେଗାସ୍ଥିନିସ୍‌ଙ୍କ ବର୍ଣ୍ଣନାନୁଯାୟୀ ଦାସତ୍ୱ ପ୍ରଥା ଭାରତବାସୀଙ୍କ ଜଣା ନ ଥିଲା । କିନ୍ତୁ ଅର୍ଥଶାସ୍ତ୍ରରେ ଦାସତ୍ୱ ପ୍ରଥା ବିଷୟରେ ଉଲ୍ଲେଖ ଅଛି । ମେଗାସ୍ଥିନିସ୍ ଏବଂ କୌଟିଲ୍ୟଙ୍କ ମଧ୍ୟରେ ଏ ଯେଉଁ ମତ ପାର୍ଥକ୍ୟ ଏଥିରୁ ଐତିହାସିକମାନେ ଅନୁମାନ କରନ୍ତି ଯେ ମୌର୍ଯ୍ୟଯୁଗର ଭାରତରେ ଦାସତ୍ୱ ପ୍ରଥା ପ୍ରଚଳିତ ଥିଲା ସତ୍ୟ, କିନ୍ତୁ ସେ ପ୍ରଥା ଏତେଦୂର ନଗଣ୍ୟ ଥିଲା ଯେ ଗ୍ରୀକ୍ ରାଜଦୂତଙ୍କ ଦୃଷ୍ଟିରେ ତାହା ପଡ଼ି ପାରି ନ ଥିଲା । କୌଟିଲ୍ୟଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ ଆର୍ଯ୍ୟ ସମାଜ ବାହାରେ ଯେଉଁ ମ୍ଳେଚ୍ଛମାନେ ବସବାସ କରୁଥିଲେ ସେମାନେ ସ୍ୱଇଚ୍ଛାରେ ନିଜର ସନ୍ତାନ ସନ୍ତତିମାନଙ୍କୁ ଦାସ ଦାସୀ ରୂପେ ବିକ୍ରୟ କରି ପାରୁଥିଲେ । ଭାରତରେ ଏପରି ଇଚ୍ଛାକୃତ ଦାସତ୍ୱ ପ୍ରଥା ଅବହେଳିତଭାବେ ପ୍ରଚଳିତ ଥିଲାବେଳେ ଗ୍ରୀକ୍ ଜଗତରେ ଏ ପ୍ରଥା ଅତି ପ୍ରବଳ ହୋଇ ଉଠିଥିଲା । ତେଣୁ ଗ୍ରୀକ୍ ଜଗତର ଦାସତ୍ୱ ପ୍ରଥା ତୁଳନାରେ ଭାରତର ଦାସତ୍ୱ ପ୍ରଥା ଅତିଶୟ ନଗଣ୍ୟ ଥିବାହେତୁ ମେଗାସ୍ଥିନିସ୍ ଭାରତରେ ଦାସତ୍ୱ ପ୍ରଥା ନାହିଁ ବୋଲି ଲେଖି ଯାଇଥିଲେ ।

ସେ ଯୁଗର ଭାରତବାସୀଙ୍କର ନୈତିକ ଚରିତ୍ର ସମ୍ବନ୍ଧରେ ମେଗାସ୍ଥିନିସ୍ ବିଶଦଭାବେ ବର୍ଣ୍ଣନା କରି ଯାଇଛନ୍ତି । ଭାରତୀୟମାନଙ୍କର ସରଳ ଏବଂ ସାଧୁ ଜୀବନ ଯାପନ, ସେମାନଙ୍କର ସତ୍ ଚରିତ୍ର ଓ ଉଦାରତା ଗ୍ରୀକ୍ ରାଜଦୂତଙ୍କ

ଆଶ୍ଚର୍ଯ୍ୟ କରି ଦେଇଥିଲା । ସ୍ୱଏତ ତତ୍‌କାଳୀନ ଗ୍ରୀକ୍ ସମାଜରେ ଏପରି ଏକ ନୈତିକତାର ଅଭାବ ଥିଲା । ମେଗାସ୍ଥିନିସ୍‌ଙ୍କ ଭାଷାରେ ଭାରତୀୟମାନେ ରାଜଦରବାରରେ କ୍ୱଚିତ୍ ବିଚାରପ୍ରାର୍ଥୀ ହେଉଥିଲେ ଏବଂ ସାଧାରଣତଃ ସେମାନେ ସେମାନଙ୍କର ଘରଦ୍ୱାର ଓ ଧନସମ୍ପତ୍ତି ଜଗି ରଖିବା ପାଇଁ ପ୍ରହରୀ ନିଯୁକ୍ତ କରୁ ନ ଥିଲେ । ଅର୍ଥାତ୍ ଦେଶରେ ଚୋରି ଇତ୍ୟାଦି ପ୍ରାୟ ନ ଥିଲା ଏବଂ ଅପରାଧୀମାନଙ୍କ ସଂଖ୍ୟା ଅତି ଅଳ୍ପ ଥିଲା । ଯେଉଁ ଦେଶରେ ଅଭାବ ଥାଏ ସେହି ଦେଶରେହିଁ ଅପରାଧର ସଂଖ୍ୟା ଅଧିକ ହେବା ସ୍ୱାଭାବିକ । ମୌର୍ଯ୍ୟ ଭାରତରେ ଅଭାବ ନ ଥିଲା ତେଣୁ ଅପରାଧ ମଧ୍ୟ ପ୍ରାୟ ନ ଥିଲା । ମେଗାସ୍ଥିନିସ୍‌ଙ୍କ ଲେଖାରୁ ଆହୁରି ମଧ୍ୟ ଜଣାଯାଏ ଯେ ମଦ୍ୟପାନ ଭାରତୀୟମାନଙ୍କ ମଧ୍ୟରେ କେବଳ ବଳିଦାନ ପ୍ରଭୃତି ଧର୍ମାନୁଷ୍ଠାନ ପରେ ଦେଖିବାକୁ ମିଳୁଥିଲା, ଅନ୍ୟ ସମୟରେ ନୁହେଁ । ମେଗାସ୍ଥିନିସ୍‌ଙ୍କ ପରେ ଯେତେବେଳେ ଅଶୋକ ଭାରତରେ ବଳିଦାନ ପ୍ରଥା ବନ୍ଦ କରି ଦେଇଥିଲେ ସେତେବେଳେ ମଦ୍ୟପାନ ମଧ୍ୟ ବନ୍ଦ ହୋଇ ଯାଇଥିବ । ଅଧିକନ୍ତୁ, ଅଶୋକ ମଦ୍ୟପାନ ବିରୁଦ୍ଧରେ ଯଥେଷ୍ଟ ପ୍ରଚାର ମଧ୍ୟ କରିଥିଲେ । ମଦ୍ୟପାୟୀହୀନ ମୌର୍ଯ୍ୟ ସମାଜ ଯେ ନିଶ୍ଚୟ ଏକ ଉନ୍ନତ ନୈତିକତା ବଜାୟ ରଖିଥିଲା ଏଥିରେ ସନ୍ଦେହ କରାଯାଇ ନ ପାରେ ।

ମୌର୍ଯ୍ୟ ଭାରତର ଅର୍ଥନୈତିକ ଅବସ୍ଥା ସମ୍ବନ୍ଧରେ କୌଟିଲ୍ୟ ତାହାଙ୍କର ପ୍ରସିଦ୍ଧ ଅର୍ଥଶାସ୍ତ୍ରରେ ବହୁ ବିଷୟ ବର୍ଣ୍ଣନା କରିଯାଇଛନ୍ତି ଏବଂ ସେହି ସମସ୍ତ ବର୍ଣ୍ଣନାରୁ ସେ ଯୁଗର ବିଭିନ୍ନ ବିଷୟ ଜଣାଯାଏ । ଭାରତ ଅତି ପ୍ରାଚୀନ କାଳରୁ କୃଷିପ୍ରଧାନ ଦେଶ । କୌଟିଲ୍ୟ ତାହାଙ୍କ ସମୟର କୃଷି ପ୍ରଣାଳୀ ଓ ଶସ୍ୟମାନଙ୍କ ବିଷୟରେ ଯେପରି ଲେଖିଛନ୍ତି ସେଥିରୁ ଜଣାଯାଏ ଯେ କୃଷିବିଦ୍ୟା କ୍ରମେ କ୍ରମେ ଉନ୍ନତ ଦିଗକୁ ଗତି କରୁଥିଲା । ମେଗାସ୍ଥିନିସ୍‌ଙ୍କ ବିବରଣୀରୁ ମଧ୍ୟ ଏହି ଉନ୍ନତି କୃଷିର ବିଷୟ ଜଣାଯାଏ । କୃଷି କ୍ଷେତ୍ରରେ ସୁନ୍ଦର ଜଳ ସେଚନର ବ୍ୟବସ୍ଥା ଥିଲା ଏବଂ ଏହି ଜଳସେଚନ ବ୍ୟବସ୍ଥା ଯୋଗୁଁ ମାଟିରୁ ବିବିଧ ପ୍ରକାରର ଶସ୍ୟ ଉତ୍ପାଦନ କରାଯାଉଥିଲା । ତେଣୁ ଗ୍ରୀକ୍ ରାଜଦୂତଙ୍କ ଲେଖାନୁଯାୟୀ, ଭାରତରେ କେବେହେଲେ ଦୁର୍ଭିକ୍ଷର ଦେଖା ନ ଥିଲା ଏବଂ ଦେଶରେ କୌଣସି କାଳେ ସ୍ୱାଭାବିକ ଖାଦ୍ୟର ଅଭାବ ମଧ୍ୟ ଉପଲବ୍ଧି ହେଉ ନ ଥିଲା । କୃଷି ଏ ଦେଶର ପ୍ରଧାନ ଶିଳ୍ପ ଥିଲେ ମଧ୍ୟ ଅନ୍ୟାନ୍ୟ ଶିଳ୍ପ ମଧ୍ୟ ଯଥେଷ୍ଟ ଉନ୍ନତ ସ୍ତରରେ

ପଡ଼ୁଥିଲା । କୃଷି ପରେ ଦେଶର ବୃତ୍ତିଗୁଡ଼ିକ ପ୍ରଧାନ ଶିଳ୍ପ ଥିଲା ବସ୍ତ୍ରବୟନ । ଭାରତୀୟ ସୂକ୍ଷ୍ମ ବସ୍ତ୍ର ପ୍ରାଚୀନ ପୃଥିବୀର ଦେଶ ଦେଶାନ୍ତରରେ ବହୁ ପ୍ରଶଂସିତ ହେଉଥିଲା ଏବଂ ବହୁ ମୂଲ୍ୟରେ ପାଶ୍ଚାତ୍ୟ ନଗରୀମାନଙ୍କରେ ବିକ୍ରିତ ହେଉଥିଲା । ମେଗାସ୍ଥିନିସ୍ ଏହି ସୂକ୍ଷ୍ମବସ୍ତ୍ରମାନଙ୍କର ଅତୀବ ପ୍ରଶଂସା କରିଯାଇଛନ୍ତି । ବସ୍ତ୍ର ଦେହରେ ଯେଉଁ ସୁନାର ତାରକସି କାର୍ଯ୍ୟ ହେଉଥିଲା ତାହା ଦେଖି ମେଗାସ୍ଥିନିସ୍ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ । କୌଟିଲ୍ୟ ଏହି ଶିଳ୍ପର ବିଭିନ୍ନ ବିଭାଗ ସମ୍ବନ୍ଧରେ ଦୀର୍ଘ ବର୍ଣ୍ଣନା କରିଯାଇଛନ୍ତି । ଅର୍ଥଶାସ୍ତ୍ରରୁ ଜଣାଯାଏ ଯେ ଭାରତର ଏହି ପ୍ରସିଦ୍ଧ ଶିଳ୍ପ-କୁଟୀର ଶିଳ୍ପରୂପେ ପ୍ରଚଳିତ ଥିଲା ଏବଂ ଦେଶର ଗୃହେ ଗୃହେ ନାରୀ-ମାନେହିଁ ଏହି ଶିଳ୍ପର ପୃଷ୍ଠପୋଷକ ଥିଲେ । କାଶୀ, ବଙ୍ଗ, କଳିଙ୍ଗ ଏବଂ ମଦୁରାରେ ଏହି ଶିଳ୍ପର ପ୍ରଭୂତ ପ୍ରସାର ଥିଲା ବୋଲି ଅର୍ଥଶାସ୍ତ୍ରରୁ ଜଣାଯାଏ । ମୌର୍ଯ୍ୟ ଯୁଗରେ ଖଣିଜ ଶିଳ୍ପ ବହୁଦୂର ଆଗେଇ ଯାଇଥିଲା । କୌଟିଲ୍ୟଙ୍କ ଭାଷାରେ ଖଣି ହେଉଛି ଦେଶର ଅର୍ଥ ଭଣ୍ଡାର । ମୂଲ୍ୟବାନ ପ୍ରସ୍ତର ଏବଂ ବିବିଧ ପ୍ରକାରର ଧାତୁ-ମାନଙ୍କର ଖଣି ଦେଶର ବିଭିନ୍ନ ଅଞ୍ଚଳରେ ବିଦ୍ୟମାନ ଥିଲା । ଅର୍ଥଶାସ୍ତ୍ରରୁ ସ୍ୱର୍ଣ୍ଣ ରୌପ୍ୟ, ଲୌହ, ତାମ୍ର, ସିସା, ଅଭ୍ରକ ପ୍ରଭୃତି ଧାତୁମାନଙ୍କର ଖଣି ସମ୍ବନ୍ଧରେ ବର୍ଣ୍ଣନା ଦେଖିବାକୁ ମିଳେ । ମେଗାସ୍ଥିନିସ୍ ଭାରତର ଖଣିଜ ସମ୍ପଦ ସମ୍ବନ୍ଧରେ କହିଛନ୍ତି ଯେ, 'ଯେତେବେଳେ ମାଟି ଉପରେ ସମସ୍ତ ପ୍ରକାର ଫୁଲ ଫଳର ଉତ୍ପାଦନ ହେଉଛି ସେତେବେଳେ ମାଟି ତଳେ ମଧ୍ୟ ସୁନା, ରୁପା, ତମା, ଲୁହା ପ୍ରଭୃତି ବହୁ ପ୍ରକାର ଧାତୁ ପଦାର୍ଥ ବହୁ ମାତ୍ରାରେ ଗଚ୍ଛିତ ରହିଛି ଯେଉଁ ସବୁଥିରୁ କି ଅଳଙ୍କାର ତଥା ଯୁଦ୍ଧସାମଗ୍ରୀ ପ୍ରଭୃତି ନିର୍ମିତ ହେଉଛି ।' ଏହି ଯୁଗରେ ଭାରତରେ ସ୍ୱର୍ଣ୍ଣର ପରିମାଣ ଏତେ ଅଧିକ ଥିଲା ଯେ ବିଦେଶୀମାନଙ୍କ ବିଶ୍ୱାସରେ ଭାରତରେ ସ୍ୱର୍ଣ୍ଣ ଖନନକାରୀ ଏକ ପ୍ରକାର ପିମ୍ପୁଡ଼ିକା ସଦା ସର୍ବଦା ସ୍ୱର୍ଣ୍ଣ ଖନନ କାର୍ଯ୍ୟରେ ନିଯୁକ୍ତ ଥାଆନ୍ତି ।

ମୌର୍ଯ୍ୟ ଯୁଗର ବାଣିଜ୍ୟ ବ୍ୟବସାୟ ଅତ୍ୟନ୍ତ ସମୃଦ୍ଧିଶାଳୀ ଥିଲା । ଭାରତର କେତେକ ଅଞ୍ଚଳ କେତେକ ପ୍ରକାର ନିର୍ଦ୍ଦିଷ୍ଟ ବାଣିଜ୍ୟରେ ଅତ୍ୟନ୍ତ ପ୍ରସିଦ୍ଧି ଲାଭ କରିଥିଲା । ଦକ୍ଷିଣ ଭାରତ ହୀରା, ମୁକ୍ତା ଏବଂ ସ୍ୱର୍ଣ୍ଣ ବ୍ୟବସାୟ ପାଇଁ ଅତ୍ୟନ୍ତ ଖ୍ୟାତି ଅର୍ଜନ କରି ପାରିଥିଲା ବୋଲି ଅର୍ଥଶାସ୍ତ୍ରରୁ ଜଣାପଡ଼େ । ଭାରତୀୟ ବାଣିଜ୍ୟ କେବଳ ଭାରତ ମଧ୍ୟରେ ସୀମାବଦ୍ଧ ନ ଥିଲା । ଏପରିକି ମୌର୍ଯ୍ୟଯୁଗ ପୂର୍ବରୁ

ମଧ୍ୟ ଭାରତର ବାଣିଜ୍ୟ ବ୍ୟବସାୟ ମିଶର, ବ୍ୟାବିଲୋନ ଇତ୍ୟାଦି ରାଜ୍ୟମାନଙ୍କ ସହିତ ଲାଗି ରହିଥାଏ ଏବଂ ଏହି ବାଣିଜ୍ୟ ମୌର୍ଯ୍ୟ ଯୁଗରେ ଅଧିକତର ସରଗରମ ହୋଇ ଉଠିଥିଲା କାରଣ ଜଳପଥ ଓ ସ୍ଥଳପଥ ଉଭୟ ରାସ୍ତାରେ ମୌର୍ଯ୍ୟ ବାଣିଜ୍ୟ ବିଦେଶକୁ ଗତି କରିବାର ସୁବିଧା ପାଇଥିଲା । ଏହାଦ୍ୱାରା ଜନପଦ ଭାରତ ମଧ୍ୟକୁ ମଧ୍ୟ ଆସୁଥିଲା । କୌଟିଲ୍ୟ ତାହାଙ୍କ ଅର୍ଥଶାସ୍ତ୍ରରେ ଚୀନ ଦେଶୀୟ ସିଲ୍କ ଲୁଗାର ପ୍ରଶଂସା କରିଛନ୍ତି । ଏଥିରୁ ଅନୁମିତ ହୁଏ ଯେ ଭାରତ ସହିତ ଚୀନ ଦେଶର ମଧ୍ୟ ବାଣିଜ୍ୟଗତ ସମ୍ପର୍କ ଥିଲା ।

ପରିଶେଷରେ ଏତିକି କହି ଶେଷ କରାଯିବ ଯେ ମୌର୍ଯ୍ୟ ସଭ୍ୟତା ଥିଲା ଏକ ଭାରତବ୍ୟାପୀ ସଭ୍ୟତା । ଇତିହାସରେ ପ୍ରଥମଥର ପାଇଁ ଏହି ଉନ୍ନତ ସଭ୍ୟତା ସାରା ଭାରତ ଉପରେ ନିଜର ଆଲୋକ ବିସ୍ତାର କରିଥିଲା । ଏହି ବିକାଶୋନ୍ମୁଖୀ ସଭ୍ୟତା ଦ୍ୱାରା ଉଦ୍ଭାସିତ ହୋଇ କଳିଙ୍ଗ ଦେଶ ଧନ୍ୟ । ଏ ଦେଶ ମାଟିରେ କେତେ ସଭ୍ୟତାର ଖରସ୍ରୋତ ବହିଯାଇଛି ଏବଂ ସେହି ସ୍ରୋତ-ମାନଙ୍କର ଉର୍ବର ପଟୁମାଟି ଉପରେ ଏ ଦେଶର ଧର୍ମ, ସଂସ୍କୃତି,ଶିକ୍ଷା, ସାହିତ୍ୟ କଳା, ସ୍ଥାପତ୍ୟ, ଅର୍ଥ ଓ ସମାଜନୀତି ଇତ୍ୟାଦିର ମୂଳ ପତ୍ତନ ହୋଇଛି । ମୌର୍ଯ୍ୟ ସଭ୍ୟତାର ଉର୍ବର ପଟୁସ୍ତର ଉତ୍କଳୀୟ ସଭ୍ୟତା ସୌଧର ଭିତ୍ତିଦେଶରେ ଅବସ୍ଥିତ ଥିବାରୁ ସେ ସଭ୍ୟତାର ମହିମା ଏ ଦେଶର ଚିରସ୍ମରଣୀୟ । ଆଜି ମୌର୍ଯ୍ୟ-ତୋଷଳୀର ଅସ୍ଥିକଙ୍କାଳ ଶିଶୁପାଳଗଡ଼ର ଧ୍ୱଂସ ସ୍ତୂପ ମଧ୍ୟରେ ସୁଷୁପ୍ତ; ଆଜି ଧଉଳିର ନିର୍ଜନ ବକ୍ଷରେ ମୌର୍ଯ୍ୟ ସ୍ଥାପତ୍ୟର ନିଦର୍ଶନ ସାକ୍ଷୀ ନିରବଭାବେ ଦଣ୍ଡାୟମାନ; ଏବଂ, ଆଜି ମୌର୍ଯ୍ୟ ଶାସନ ରୀତି ଓ ଧର୍ମନୀତିର ଅମର କାହାଣୀ ଜଉଗଡ଼ ଏବଂ ଧଉଳିର ଶିଳାଖଣ୍ଡରେ ବିଶ୍ରାମରତ । କିନ୍ତୁ ଏହିମାନେ ହେଉଛନ୍ତି ସେହି ସୁଦୂର ମୌର୍ଯ୍ୟ ଯୁଗର ସ୍ମାରକ ଚିହ୍ନ ଏବଂ ଏହିମାନଙ୍କ ପଶ୍ଚାତରେ ରହିଛି ସୁମହାନ୍ ସେହି ମୌର୍ଯ୍ୟ ସଭ୍ୟତାର ଶାନ୍ତିପ୍ରଦ ଛାୟା ।



# ସମ୍ରାଟ ଖାରବେଳ ଓ ଜୈନଧର୍ମ

ଖ୍ରୀଷ୍ଟପୂର୍ବ ୨୩୨ ରେ ପ୍ରିୟଦର୍ଶୀ ସମ୍ରାଟ ଅଶୋକ ଇହଜଗତରୁ ବିଦାୟ ନେଲେ ଏବଂ ତାହାଙ୍କର ମୃତ୍ୟୁ ମୌର୍ଯ୍ୟ ସାମ୍ରାଜ୍ୟର ପତନ ବାଣୀ ଘୋଷଣା କଲା । ପୃଥିବୀରେ କୌଣସି ସାମ୍ରାଜ୍ୟ ଚିରସ୍ଥାୟୀରୂପେ ତିଷ୍ଠି ରହି ନାହିଁ ; ମନୁଷ୍ୟର ଜନ୍ମ-ମୃତ୍ୟୁ ପରି ସାମ୍ରାଜ୍ୟମାନଙ୍କର ମଧ୍ୟ ଉତ୍ଥାନ ପତନ ହୋଇଛି । ମୌର୍ଯ୍ୟ ସାମ୍ରାଜ୍ୟର ପତନ ଭାରତ ଇତିହାସର ଏକ କରୁଣତମ ଘଟଣା । ଅଶୋକଙ୍କ ମୃତ୍ୟୁର ଅବ୍ୟବହିତ ପରେ ପରେ ଭାରତର ବିଭିନ୍ନ ଅଞ୍ଚଳ ନିଜ ନିଜର ସ୍ୱାଧୀନତା ଘୋଷଣା କରିଥିଲେ । ଅଶୋକଙ୍କ ଦୁର୍ବଳ ବଂଶଧରମାନେ ପତନୋନ୍ମୁଖୀ ସାମ୍ରାଜ୍ୟକୁ କୌଣସି ପ୍ରକାରେ ରକ୍ଷା କରିପାରି ନ ଥିଲେ । ମୌର୍ଯ୍ୟ ସାମ୍ରାଜ୍ୟର ଏହି ମୃତ୍ୟୁବେଳରେ କଳିଙ୍ଗ ମଧ୍ୟ ନିଜର ସ୍ୱାଧୀନତା ଘୋଷଣା କରିଥିଲା । ଶକ୍ତିଶାଳୀ କଳିଙ୍ଗ ସାମ୍ରାଜ୍ୟ ଅଶୋକଙ୍କ ଦ୍ୱାରା ବିଜିତ ହେଲାପରେ କଳିଙ୍ଗର ରାଜନୈତିକ ସ୍ୱାଧୀନତା ଲୋପ ପାଇଥିଲା ସତ୍ୟ, କିନ୍ତୁ ତାହା ସତ୍ତ୍ୱେ ମଧ୍ୟ କଳିଙ୍ଗବାସୀଙ୍କ ମନରୁ ସ୍ୱାଧୀନତାର ମୋହ ଟିକିଏ ନିଃଶେଷ ହୋଇ ନ ଥିଲା । ହୁଏତ ସ୍ୱାଧୀନତା ଲୋପ ପରେ କଳିଙ୍ଗବାସୀମାନେ ଯଦି ଅଶୋକଙ୍କ ପରି ଜଣେ ମହାମନା ସମ୍ରାଟଙ୍କୁ ନିଜର ଶାସକରୂପେ ନ ପାଇ ଥାଆନ୍ତେ ତାହାହେଲେ ମୌର୍ଯ୍ୟ ରାଜଦଣ୍ଡ ବିରୁଦ୍ଧରେ ସେମାନେ ବିଦ୍ରୋହ ଘୋଷଣା କରିବାକୁ ପଶ୍ଚାଦ୍‌ପଦ ହୋଇ ନ ଥାନ୍ତେ । କିନ୍ତୁ ଅଶୋକଙ୍କ ଧର୍ମ ଏବଂ ସୁଶାସନ ପାଇଁ ସ୍ୱାଧୀନତା-ଲିପ୍ସୁ କଳିଙ୍ଗବାସୀ ତାହାଙ୍କ ଶାସନଚକ୍ରତଳେ ମସ୍ତକାବନତ କରିଥିଲେ । ଅଶୋକଙ୍କର ଦୁଇ ବିଶେଷ କଳିଙ୍ଗ ଅନୁଶାସନରୁ ସ୍ପଷ୍ଟ ଜଣାଯାଏ ଯେ କଳିଙ୍ଗ ଖଣ୍ଡରେ ମୌର୍ଯ୍ୟ ଶାସନ ପ୍ରଣାଳୀ ଅତି ସୁନ୍ଦରଭାବରେ ପ୍ରତିଷ୍ଠିତ ହୋଇଥିଲା ଏବଂ ସମ୍ରାଟଙ୍କର ଦୃଷ୍ଟି ଭାରତର ଅନ୍ୟ ଅଞ୍ଚଳମାନଙ୍କ ଅପେକ୍ଷା ଏହି ଦେଶ ଉପରେ ଅଧିକତରଭାବେ ନିବଦ୍ଧ ହୋଇଥିଲା । ଅଶୋକ ସ୍ୱକୃତ

ମହାଯୁଦ୍ଧର ପରିଣାମ ଉତ୍ତମରୂପେ ଉପଲବ୍ଧି କରିଥିଲେ ଏବଂ ସେଥିପାଇଁ ବିଧ୍ୱସ୍ତ ଜାତିର ପୁନରୁତ୍ଥାନ ପାଇଁ ସଦା ଚେଷ୍ଟିତ ଥିଲେ । କଳିଙ୍ଗବାସୀଙ୍କ ମନରୁ ଦୁଃଖ ନିବାରଣ କରିବା ପାଇଁ ପ୍ରିୟଦର୍ଶୀ ରାଜା ବହୁକଷ୍ଟ ବଦାନ୍ୟତା ଦେଖାଇଥିଲେ ଏବଂ କଳିଙ୍ଗର ସମସ୍ତ ରାଜକର୍ମଚାରୀଙ୍କୁ ଦୟାପରବଶ ତଥା କର୍ତ୍ତବ୍ୟପରାୟଣ ରହି କାର୍ଯ୍ୟ କରିବାକୁ ବାରମ୍ବାର ନିର୍ଦ୍ଦେଶ ଦେଇଥିଲେ । ଏପରିକି ଏହି କଳିଙ୍ଗ ମାଟିରେହିଁ ସମ୍ରାଟ ଘୋଷଣା କରିଥିଲେ ଯେ 'ସମସ୍ତ ମନୁଷ୍ୟ ମୋର ସନ୍ତାନ' । ଏକଥା ନିଶ୍ଚୟ ଯେ ଅଶୋକଙ୍କ ଶାସନ ତଳେ କଳିଙ୍ଗବାସୀ ମହାଯୁଦ୍ଧର ସ୍ମୃତି ପାସୋରି ପକାଇଥିଲେ ଏବଂ ମଗଧ ସିଂହାସନ ପ୍ରତି ଅନୁରକ୍ତ ହୋଇପଡ଼ିଥିଲେ । ଏହାପରି ମହାଯୁଦ୍ଧର ଶେଷ ପାଖରୁ ଅଶୋକଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଦୀର୍ଘ ଚରିଶବର୍ଷକାଳ କଳିଙ୍ଗ ଅଶୋକଙ୍କ ଶାସନ ତଳେ ଆନନ୍ଦରେ ଦିନାତିପାତ କରିଥିଲା । କିନ୍ତୁ ଅଶୋକଙ୍କ ମୃତ୍ୟୁ ପରେ ସ୍ୱାଧୀନତା-ପିପାସୁ କଳିଙ୍ଗ-ଜାତିକୁ ମୌର୍ଯ୍ୟଶାସନ ତଳେ ବାନ୍ଧି ରଖିବାକୁ ଅନ୍ୟ କୌଣସି ଶକ୍ତି ନ ଥିଲା । ପ୍ରିୟଦର୍ଶୀ ସମ୍ରାଟଙ୍କର ସୁମହାନ୍ ବ୍ୟକ୍ତିତ୍ୱ ଏବଂ ତାହାଙ୍କର ଉଦାର ନୀତିହିଁ ଥିଲା ମୌର୍ଯ୍ୟଶାସନ ଦଣ୍ଡର ଆକର୍ଷଣୀ ଶକ୍ତି । କିନ୍ତୁ ସେହି ଚୁମ୍ବକର ଅନ୍ତର୍ଦ୍ଧାନରେ ମୌର୍ଯ୍ୟ ସାମ୍ରାଜ୍ୟ ଅଙ୍ଗରୁ କଳିଙ୍ଗ ସଙ୍ଗେ ସଙ୍ଗେ ଖସି ପଡ଼ିଥିଲା ଏବଂ କଳିଙ୍ଗବାସୀ ପୁନର୍ବାର ସ୍ୱାଧୀନ ହୋଇ ଯାଇଥିଲେ ।

କଳିଙ୍ଗ ଇତିହାସର ଏହା ଏକ ଆଶ୍ଚର୍ଯ୍ୟପ୍ରଦ ଘଟଣା ଯେ ଏପରି ଏକ ଅଳ୍ପ ସମୟ ମଧ୍ୟରେ କପରି କଳିଙ୍ଗ ଜାତି ପୁନର୍ବାର ନିଜର ମସ୍ତକ ଉତ୍ତୋଳନ କରିବାକୁ ସମର୍ଥ ହୋଇଥିଲା । ଅଶୋକଙ୍କ ଅଭିଯାନ ଦ୍ୱାରା କଳିଙ୍ଗ ଜାତିର ମେରୁଦଣ୍ଡ ଭଙ୍ଗି ଯାଇଥିଲା, ଶତ ସହସ୍ର ସଂଖ୍ୟାରେ କଳିଙ୍ଗର ତରୁଣବୃନ୍ଦ ଯୁଦ୍ଧ-କ୍ଷେତ୍ରରେ ଜୀବନ ହାରିଥିଲେ ଏବଂ ଯୁଦ୍ଧଜନିତ ଦୁର୍ଭିକ୍ଷ ଓ ମହାମାରୀ ଫଳରେ କଳିଙ୍ଗର ଆବାଳ-ବୃଦ୍ଧ-ବନିତା ଅଗଣିତ ସଂଖ୍ୟାରେ ମୃତ୍ୟୁପ୍ରାପ୍ତ ହୋଇଥିଲେ । ଚଣ୍ଡାଶୋକଙ୍କ କ୍ରୋଧ ତଳେ ସତେ ଯେପରି କଳିଙ୍ଗ ଜାତିର ଶେଷ ନିଶ୍ୱାସ ବାହାରି ଆସିଥିଲା । ତଥାପି ଅତିଶୟ ଆଶ୍ଚର୍ଯ୍ୟର ବିଷୟ ଯେ ଏପରି ଏକ ପ୍ରଳୟଙ୍କର କେବଳ ମାତ୍ର ଚରିଶ ବର୍ଷ ପରେ କଳିଙ୍ଗ ଜାତି ପୁନର୍ବାର ନିଜର ସ୍ୱାଧୀନତା ଘୋଷଣା କରି ଭାରତ ବକ୍ଷରେ ଏକ ସର୍ବଶ୍ରେଷ୍ଠ ଶକ୍ତିରୂପେ ଦଣ୍ଡାୟମାନ ହୋଇ ପାରିଥିଲା । ଗୋଟିଏ ଜାତିର ଜୀବନରେ ଏକ ଚରମ ପତନ

ପରେ ଏପରି ଏକ ତଡ଼ିତ୍ ଅଭ୍ୟୁତ୍ଥାନ ବାସ୍ତବିକ ଚମତ୍କପ୍ରଦ । ଅଶୋକଙ୍କ ମୃତ୍ୟୁ ସଙ୍ଗେ ସଙ୍ଗେ କଳିଙ୍ଗ ସ୍ୱାଧୀନ ହୋଇଥିଲା ; ଏବଂ ଏ ଘଟଣାର କେବଳ ସାତବର୍ଷ ମଧ୍ୟରେ କଳିଙ୍ଗଖଣ୍ଡରେ ଏକ ଶକ୍ତିଶାଳୀ ସ୍ୱାଧୀନ ରାଜବଂଶର ଅଭ୍ୟୁତ୍ଥାନ ହୋଇଥିଲା । କଳିଙ୍ଗର ଏହି ନୂତନ ରାଜବଂଶର ନାମ ଥିଲା ଚେତ ରାଜବଂଶ ଏବଂ ଏହି ବଂଶର ରାଜତ୍ୱ ଆରମ୍ଭ ହେଲା ଖ୍ରୀଷ୍ଟପୂର୍ବ ୨୨୫ ରେ । କଳିଙ୍ଗଦେଶ ତଥା ଭାରତକୁ ଏହି ରାଜବଂଶର ସର୍ବଶ୍ରେଷ୍ଠ ଦାନ ହେଉଛି ଖାରବେଳଙ୍କ ପରି ଭାରତର ଜଣେ ବିଖ୍ୟାତ ନରପତିଙ୍କୁ ଜନ୍ମ ପ୍ରଦାନ କରିବା । ଇତିହାସ ଖାରବେଳଙ୍କୁ କଳିଙ୍ଗର ସର୍ବଶ୍ରେଷ୍ଠ ସମ୍ରାଟରୂପେ ଗ୍ରହଣ କରିଛି ଏବଂ ଭାରତର ଶ୍ରେଷ୍ଠତମ ନରପତି-ମାନଙ୍କ ମଧ୍ୟରୁ ଅନ୍ୟତମ ବୋଲି ଘୋଷଣା କରିଛି । ମୌର୍ଯ୍ୟ ସାମ୍ରାଜ୍ୟର କବର ଭୂମି ଉପରେ ଦଣ୍ଡାୟମାନ ହୋଇ ଏହି ସମ୍ରାଟ ବିକ୍ଷିପ୍ତ ଭାରତ ବକ୍ଷରେ ପୁନର୍ବାର ଏକ ବିରାଟ ସାମ୍ରାଜ୍ୟ ନିର୍ମାଣ କରିଥିଲେ ଏବଂ ଚନ୍ଦ୍ରଗୁପ୍ତମୌର୍ଯ୍ୟଙ୍କ ପରି ପୁଣି ଥରେ ଭାରତବାସୀଙ୍କୁ ବୈଦେଶିକ ଗ୍ରୀକ୍ ଆକ୍ରମଣରୁ ରକ୍ଷା କରିଥିଲେ । ଏହାହିଁ ଥିଲା ଖାରବେଳଙ୍କର କୃତୀତ୍ୱ ଏବଂ ଏହାପାଇଁ ସେ ଇତିହାସ ପ୍ରସିଦ୍ଧ ।

।

ଭାରତୀୟ ରାଜନୀତିର ଏକ ଘଡ଼ିସନ୍ଧି ବେଳେ ଖାରବେଳଙ୍କର ଜନ୍ମ । ଅଶୋକଙ୍କ ମୃତ୍ୟୁ ସଙ୍ଗେ ସଙ୍ଗେ ଭାରତ ଉପରକୁ ରାଜନୈତିକ ଦୁଃଖ ଦୁର୍ଦ୍ଦଶା, ଅନୈକ୍ୟ ଏବଂ ଅରାଜକତା ଇତ୍ୟାଦି ବିପଦମାନ ତଡ଼ିତ୍ ଗତିରେ ମାଡ଼ିଆସିଥିଲା । ମୌର୍ଯ୍ୟ ସାମ୍ରାଜ୍ୟର ପତନଜନିତ ଦୁଃଖରେ ଭାରତବାସୀ ମ୍ରିୟମାଣ ହୋଇ ପଡ଼ିଥିଲେ । ବିଶାଳ ଭାରତୀୟ ଉପମହାଦେଶର ପ୍ରଥମ ମହାସାମ୍ରାଜ୍ୟ, ପ୍ରଥମ ଶାସନ ଶୃଙ୍ଖଳା, ପ୍ରଥମ ଅର୍ଥନୈତିକ ଏକତା, ଏବଂ ପ୍ରଥମ ସାଂସ୍କୃତିକ ବନ୍ଧନ ଏ ସମସ୍ତ ଦ୍ରୁତ ଗତିରେ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ଯାଉଥିଲା । ଅଶୋକଙ୍କ ଅକର୍ମଣ୍ୟ ବଂଶଧରମାନଙ୍କ ପକ୍ଷରେ ଏପରି ଏକ ବିରାଟ ସାମ୍ରାଜ୍ୟକୁ ପତନ ମୁଖରୁ ରକ୍ଷାକରିବା ଅସମ୍ଭବ ହୋଇ ପଡ଼ିଥିଲା । ମୌର୍ଯ୍ୟ ସମର ଶକ୍ତି କଳିଙ୍ଗ ଯୁଦ୍ଧ ପରଠାରୁ କ୍ରମେ କ୍ରମେ ଅବଶ ହୋଇ ଶେଷରେ ଜରାଜୀର୍ଣ୍ଣ ଅବସ୍ଥାରେ ପଡ଼ିରହିଥିଲା । କାରଣ ଅଶୋକ ଦିଗ୍ବିଜୟ ପରିବର୍ତ୍ତେ ଧର୍ମବିଜୟ ଉପରେ ନିଜର ବିଶ୍ୱାସ ସ୍ଥାପନ କରିଥିଲେ । ରାଜଶକ୍ତି ଯେଉଁ ସୈନ୍ୟବାହିନୀ ଉପରେ ନିର୍ଭର କରେ ସେ ସୈନ୍ୟବାହିନୀ ଅଶୋକଙ୍କ ଧର୍ମଯୁଗରେ କ୍ରମେ ଭାଙ୍ଗିଯାଇ ଯାଇଥିଲା । ଯେତେବେଳେ ଦେଶର ସୈନ୍ୟବଳ ଏପରିଭାବରେ ମୃତ୍ୟୁମୁଖୀ ହୋଇଆସିଥିଲା ସେତେବେଳେ ସେ

ସୁଯୋଗର ସୁବିଧା ନେଇ ସାମ୍ରାଜ୍ୟର ଭିନ୍ନ ଭିନ୍ନ ପ୍ରଦେଶ ସ୍ୱାଧୀନ ହୋଇ ଯାଇଥିଲେ । ଭାରତ ଇତିହାସର ଏକ ଚିରନ୍ତନ କଳଙ୍କ ହେଉଛି ଭାରତର ପ୍ରତ୍ୟେକ ଗୌରବମୟ ଯୁଗ ପରେ ଏ ଦେଶକୁ ଖଣ୍ଡ ବିଖଣ୍ଡ ଅବସ୍ଥାରେ ଦେଖିବାକୁ ମିଳେ । ଗୌରବାନ୍ୱିତ ମୌର୍ଯ୍ୟଯୁଗ ପରେ ମଧ୍ୟ ସେହି କଳଙ୍କ ଭାରତକୁ ଗ୍ରାସ କରିଥିଲା । ଏପରି ଅବସ୍ଥାରେ ଯେତେବେଳେ ମୌର୍ଯ୍ୟସାମ୍ରାଜ୍ୟ ସୌଧ ଖଣ୍ଡ ଖଣ୍ଡ ହୋଇ ଧୂଳିସାତ୍ ହେଉଥିଲା ଠିକ୍ ସେତିକବେଳେ ସାମ୍ରାଜ୍ୟର ମୃତ୍ୟୁଯନ୍ତ୍ରଣାକୁ ଅଧିକତର କଷ୍ଟଦାୟକ କରିବା ପାଇଁ ଭାରତ ବାହାରୁ ବୈଦେଶିକ ଆକ୍ରମଣ-କାରୀଙ୍କର କ୍ରମାଗତ ସ୍ରୋତ ଦେଶମଧ୍ୟକୁ ମାଡ଼ି ଆସିଥିଲା । ଯେଉଁ ଦିନରୁ ଦିଗ୍‌ବିଜୟୀ ଆଲେକ୍‌ଜାଣ୍ଡାର ଝେଲମ୍ କୂଳରେ ନିଜର ପଦାଙ୍କପାତ୍ କରିଥିଲେ ସେହି ଦିନରୁ ମଧ୍ୟ ପ୍ରାଚ୍ୟର ଗ୍ରୀକ୍‌ମାନେ ଆଲେକ୍‌ଜାଣ୍ଡାରଙ୍କର ସେହି ପଦାଙ୍କକୁ ଲକ୍ଷ୍ୟ କରି ଭାରତ ମଧ୍ୟକୁ ଲୋଲୁପ ଦୃଷ୍ଟିରେ ଅନାଇ ବସିଥିଲେ । ହିମାଦ୍ରି ଓ ସାଗର ପରିବେଷ୍ଟିତ ଭାରତର ଦୁର୍ବଳତା ଦେଖିବାକୁ ମିଳେ କେବଳ ସେହି ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶର ଗିରିବର୍ତ୍ମମାନଙ୍କ ନିକଟରେ ଯେଉଁ ପଥରେ ବୈଦେଶିକ ଆକ୍ରମଣକାରୀମାନେ ବାରମ୍ବାର ଏ ଦେଶମଧ୍ୟକୁ ପ୍ରବେଶ କରିଛନ୍ତି । ଭାରତର ଏହି ଅଞ୍ଚଳକୁ କୁମ୍ଭୀରର ନାସାଦେଶ ସହ ତୁଳନା କରା-ଯାଇଛି ଯେହେତୁକି କୁମ୍ଭୀରର ନାସାଦେଶ ଉପରେ ଆକ୍ରମଣ କରି ସେହି ଦୁର୍ଦ୍ଦାନ୍ତ ଜନ୍ତୁକୁ ଯେପରି ଅନାୟାସରେ କରାୟତ୍ତ କରାଯାଇପାରେ ସେହିପରି ଭାରତର ସୀମାନ୍ତ ପ୍ରଦେଶ ଉପରେ ଆକ୍ରମଣ କରି ଏ ଦେଶ ଉପରେ ସହଜରେ ରାଜନୈତିକ ପ୍ରଭାବ ବିସ୍ତାର କରାଯାଇପାରେ । ପ୍ରାଚୀନ ଏବଂ ମଧ୍ୟଯୁଗର ଭାରତ ଉପରେ ଯେତେ ବୈଦେଶିକ ଆକ୍ରମଣ ହୋଇଛି ସେ ସମସ୍ତ ସେହି ସୀମାନ୍ତ ଗିରିବର୍ତ୍ମ ପଥରେହିଁ ହୋଇଛି । ତେଣୁ ଭାରତବାସୀଙ୍କ ପକ୍ଷରୁ ସେ ଅଞ୍ଚଳ ଉପରେ ଯେତିକି ଦୃଷ୍ଟି, ବିଦେଶୀମାନଙ୍କ ପକ୍ଷରୁ ମଧ୍ୟ ଠିକ୍ ସେତିକି । ଭାରତର ପ୍ରତ୍ୟେକ ସମୃଦ୍ଧିଶାଳୀ ଯୁଗରେ ଯେତେବେଳେ ଶକ୍ତିଶାଳୀ ସମ୍ରାଟମାନେ ଭାରତର ଭାଗ୍ୟ ବିଧାନ କରିଛନ୍ତି ସେତେବେଳେ ସେମାନେ ସୀମାନ୍ତର ସେହି ଦୁର୍ବଳ ସ୍ଥାନଟିକୁ ଉତ୍ତମରୂପେ ନିରାପଦ ରଖିବାର ବନ୍ଦୋବସ୍ତ କରିଛନ୍ତି । କିନ୍ତୁ ଭାରତୀୟ ରାଜଶକ୍ତିର ଦୁର୍ବଳ ଦିନମାନଙ୍କରେ ସେହି ପଥଦେଇ ବହିରାକ୍ରମଣର ସ୍ରୋତ ବାରମ୍ବାର ମାଡ଼ିଆସିଛି ଏବଂ ପରିଣାମରେ ଏ ଦେଶକୁ ବହୁବାର ବିଦେଶୀର ପଦାନତ ହେବାକୁ ପଡ଼ିଛି । ଭାରତ ଇତିହାସରେ ପ୍ରାୟ କୌଣସି କାଳରେ

ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ ଏପରିଭାବେ ସୁସଂରକ୍ଷିତ ରହି ନାହିଁ ଯେପରିକି ମୌର୍ଯ୍ୟମାନଙ୍କ ଶାସନକାଳରେ ଥିଲା । ଚନ୍ଦ୍ରଗୁପ୍ତ ସୀମାନ୍ତ ପ୍ରଦେଶ ବାହାରେ ବହୁଦୂର ପର୍ଯ୍ୟନ୍ତ ପଶ୍ଚିମକୁ ନିଜର ସାମ୍ରାଜ୍ୟ ବିସ୍ତାର କରିଯାଇଥିଲେ ଏବଂ ନିଜର ବିଶାଳ ବାହିନୀ ସାହାଯ୍ୟରେ ବୈଦେଶିକ ଆକ୍ରମଣକାରୀଙ୍କ କବଳରୁ ଭାରତକୁ ରକ୍ଷା କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ପରାଜିତ ଏବଂ ଅପମାନିତ କରି ଏପରି ଶିକ୍ଷା ଦେଇଥିଲେ ଯେ ଆଉ କେବେହେଲେ ଗ୍ରୀକ୍‌ମାନେ ମୌର୍ଯ୍ୟଯୁଗରେ ଭାରତ ପ୍ରବେଶ କରିବାକୁ ସାହସ କରି ନ ଥିଲେ । ମୌର୍ଯ୍ୟଯୁଗରେ ରାଜ୍ୟର ସାମରିକ ଶକ୍ତି ଥିଲା ପ୍ରବଳ ଏବଂ ରାଜାମାନଙ୍କର ବୈଦେଶିକ ନୀତି ମଧ୍ୟ ଥିଲା ଉଦାର । ଫଳରେ ପ୍ରଥମ ତିନି ମୌର୍ଯ୍ୟ ସମ୍ରାଟଙ୍କ ଶାସନକାଳରେ ଭାରତ ଉପରେ ବୈଦେଶିକ ଆକ୍ରମଣର ପ୍ରଶ୍ନ କୌଣସି ପ୍ରକାରେ ଉଠି ପାରି ନ ଥିଲା ଏବଂ ବିଦେଶୀମାନେ ମଧ୍ୟ ଏପରି ଏକ କଳ୍ପନା ସ୍ୱପ୍ନରେ ସୁଦ୍ଧା ଭାବି ପାରି ନ ଥିଲେ । କିନ୍ତୁ ଯେଉଁ ମୁହୂର୍ତ୍ତରେ ମୌର୍ଯ୍ୟସାମ୍ରାଜ୍ୟର ମୃତ୍ୟୁବାଣୀ ଘୋଷଣା କରି ଅଶୋକଙ୍କ ସବଳ ହସ୍ତ ନିସ୍ପନ୍ଦ ହୋଇ ପଡ଼ିଥିଲା ସେହି ମୁହୂର୍ତ୍ତରୁ ବିଦେଶୀମାନେ ଭାରତ ଆକ୍ରମଣ କରିବାର ଲୋଭନୀୟ କଳ୍ପନାରେ ଅଧୀର ହୋଇ ପଡ଼ିଥିଲେ । ପ୍ରାଦେଶିକମାନଙ୍କର ସ୍ୱାଧୀନତା ଘୋଷଣା, ବୈଦେଶିକ ଶକ୍ତିର ଆକ୍ରମଣ, ମଗଧ ସିଂହାସନରେ ଅକର୍ମଣ୍ୟମାନଙ୍କର ଶାସନ ଏବଂ ସାମରିକ ଶକ୍ତିର ବିଲୟ, ଏହି ଚାରି ମୁଖ୍ୟ କାରଣ ପାଇଁ ଚନ୍ଦ୍ରଗୁପ୍ତ ଏବଂ ଅଶୋକଙ୍କର ସାମ୍ରାଜ୍ୟ-ଦ୍ରୁତ ଗତିରେ ଭାରତ ପୃଷ୍ଠରୁ ଲୋପ ପାଇଗଲା । ଦକ୍ଷିଣରେ କଳିଙ୍ଗ, ମଧ୍ୟାଞ୍ଚଳରେ ବିଦର୍ଭ, ପଶ୍ଚିମରେ କାବୁଲ ଉପତ୍ୟକା ଏବଂ ସୁଦୂର ଦକ୍ଷିଣରେ ଦାକ୍ଷିଣାତ୍ୟର ପ୍ରଦେଶମାନ ସଙ୍ଗେ ସଙ୍ଗେ ସ୍ୱାଧୀନ ହୋଇଯାଇଥିଲେ । ଯେତେବେଳେ ମୌର୍ଯ୍ୟ ସାମ୍ରାଜ୍ୟର ଅଧିକାଂଶ ପ୍ରଦେଶ ସ୍ୱାଧୀନତା ଘୋଷଣା କରି ସାରିଥିଲେ ସେତେବେଳେ ସିରିଆ ସାମ୍ରାଜ୍ୟର ଗ୍ରୀକ୍ ସମ୍ରାଟ ଏଣ୍ଟିଓକାସ୍ ଖ୍ରୀଷ୍ଟପୂର୍ବ ୨୦୬ ରେ ଉତ୍ତର-ପଶ୍ଚିମ ସୀମାନ୍ତ ପଥରେ ଭାରତ ଆକ୍ରମଣ କରିଥିଲେ । କାବୁଲ ଉପତ୍ୟକା ଆଗରୁ ସ୍ୱାଧୀନ ହୋଇଯାଇ-ଥିଲା, ବର୍ତ୍ତମାନ ସେହି ପ୍ରଦେଶ ମଧ୍ୟଦେଇ ଏଣ୍ଟିଓକାସ ହିନ୍ଦୁକୁଶ୍ ଅତିକ୍ରମ କରି ଭାରତ ଭୂମିରେ ପୁନର୍ବାର ଗ୍ରୀକ୍ ପ୍ରଭାବ ବିସ୍ତାର କରିବାକୁ ଆରମ୍ଭ କଲେ । ଯେତେବେଳେ ଏହିପରି ବିପଦ ଉପରେ ବିପଦ ଭାରତ ଉପରକୁ ମାଡ଼ି ଆସୁଥାଏ ସେତେବେଳେ ରାଜଧାନୀ ପାଟଳିପୁତ୍ରରେ ବିଶୃଙ୍ଖଳାର ସୀମା ନ ଥାଏ । ଏହି ଚରମ ବିଶୃଙ୍ଖଳାର ସୁବିଧା ନେଇ ଅଶୋକଙ୍କ ଶେଷ ବଂଶଧର ବୃହଦ୍ରଥ ମୌର୍ଯ୍ୟଙ୍କୁ ହତ୍ୟାକରି

ଶେଷରେ ସେନାପତି ପୁଷ୍ୟମିତ୍ର ମୌର୍ଯ୍ୟବଂଶର ଶେଷ ସମାଧି ନିର୍ମାଣ କଲେ ଏବଂ ପାଟଳିପୁତ୍ରରେ ଏକ ନୂତନ ରାଜବଂଶର ପ୍ରତିଷ୍ଠା କଲେ । ଏହି ରାଜବଂଶର ନାମ ହେଉଛି ସୁଙ୍ଗ ବଂଶ ଏବଂ ପୁଷ୍ୟମିତ୍ର ଏ ବଂଶର ପ୍ରଥମ ରାଜା। କିନ୍ତୁ ରାଜବଂଶର ପରିବର୍ତ୍ତନ ଫଳରେ ଭାରତରେ ଦୁର୍ଦ୍ଦିନର ଅବସାନ ହେଲା ନାହିଁ । କାରଣ ସୁଙ୍ଗ ବଂଶ ଅସ୍ତମିତ ମୌର୍ଯ୍ୟ ସାମ୍ରାଜ୍ୟର ଗୌରବ ଓ ଶକ୍ତି ଫେରାଇ ଆଣିବା ପାଇଁ ସମ୍ପୂର୍ଣ୍ଣ ଅସମର୍ଥ ଥିଲା । ରାଜନୈତିକ ଅନୈକ୍ୟ ଏବଂ ବୈଦେଶିକ ଆକ୍ରମଣ ଭାରତୀୟ ଜାତୀୟ-ଜୀବନ ମୂଳରେ କୁଠାରାଘାତ କରିବାରେ ଲାଗିରହିଥିଲା । ଭାରତର ଏହି ଦାରୁଣ ଦୁର୍ଦ୍ଦିନରେ ଏ ଦେଶ ଆବଶ୍ୟକ କରିଥିଲା ଏକ ବରିଷ୍ଠ ବ୍ୟକ୍ତିତ୍ୱ ଏବଂ ଏକ ବିଶାଳ ସାମ୍ରାଜ୍ୟ । ଭାରତ ଇତିହାସ ଚିରଦିନ ଧରି ଏକ ଅଖଣ୍ଡ ଭାରତର ଆକାଂକ୍ଷା ଉପଲବ୍ଧି କରି ଆସିଛି ଏବଂ ଭାରତର ପ୍ରତ୍ୟେକ ଯୁଗ ମହାମାନବର ନେତୃତ୍ୱ ପାଇଁ ଉତ୍କଣ୍ଠିତ ହୋଇଛି । ଏହା ଏ ଦେଶର ପରମ୍ପରା । ଅଖଣ୍ଡ ଭାରତର ସ୍ୱପ୍ନ ଚିରଦିନ ପରିପୂରଣ ହୋଇ ନ ଥିଲେ ମଧ୍ୟ ଯୁଗେ ଯୁଗେ ଭାରତର ବିଭିନ୍ନ ସ୍ଥାନରେ ବିଶାଳ ସାମ୍ରାଜ୍ୟମାନ ଗଠିତ ହୋଇଛି ଯେଉଁ ସାମ୍ରାଜ୍ୟମାନଙ୍କୁ କେନ୍ଦ୍ର କରି ସାରା ଭାରତର ରାଜନୀତି ଏବଂ ସଂସ୍କୃତି ଅଗ୍ରସର ହେବାର ସୁବିଧା ପାଇଛି । ନେତୃତ୍ୱ ବିନା ଜାତୀୟଜୀବନ ଊର୍ଦ୍ଧ୍ୱଗାମୀ ହୋଇ ପାରେ ନାହିଁ । ସେଥିପାଇଁ ଯୁଗେ ଯୁଗେ ନେତୃତ୍ୱ ପାଇଁ ଭାରତ ନିଜ ସନ୍ତାନମାନଙ୍କୁ ଆହ୍ୱାନ କରିଛି ଏବଂ ଯୁଗେ ଯୁଗେ ମଧ୍ୟ ଏ ଦେଶ ମହାପୁରୁଷମାନଙ୍କର ନେତୃତ୍ୱ ପାଇ ଆଗେଇ ଚାଲିଛି । ଅଶୋକଙ୍କ ମୃତ୍ୟୁ ଏବଂ ମୌର୍ଯ୍ୟସାମ୍ରାଜ୍ୟର ପତନ ପରେ ଯେତେବେଳେ ଭାରତରେ ନ ଥିଲା ବ୍ୟକ୍ତିତ୍ୱ ନ ଥିଲା ସାମ୍ରାଜ୍ୟ ଠିକ୍ ସେହି ଚରମ ମୁହୂର୍ତ୍ତରେ ଭାରତକୁ ଏକ ବରିଷ୍ଠ ବ୍ୟକ୍ତିତ୍ୱ ଏବଂ ଏକ ବିଶାଳ ସାମ୍ରାଜ୍ୟ ଦାନ କରି ଭାରତର ଅଭାବ ଦୂର କରିଥିଲା ଏହି କଳିଙ୍ଗ ଦେଶ ।

ଖ୍ରୀଷ୍ଟପୂର୍ବ ୨୦୨ ରେ କଳିଙ୍ଗର ଚୈତ୍ର, ଚେତ ବା ଚେଦି ରାଜବଂଶରେ ଖାରବେଳଙ୍କର ଜନ୍ମ । ଭାରତୀୟ ରାଜନୈତିକ ଆକାଶର ଅନ୍ଧକାରଚ୍ଛନ୍ନ ମୁହୂର୍ତ୍ତରେ ଖାରବେଳ ଆବିର୍ଭୂତ ହୋଇଥିଲେ ଏକ ଉଜ୍ଜ୍ୱଳ ତାରକାରୂପେ । ଦୁର୍ଭାଗ୍ୟ ବଶତଃ ଚେତ ବଂଶର ପ୍ରଥମ ରାଜାମାନଙ୍କ ବିଷୟରେ ଏପର୍ଯ୍ୟନ୍ତ ଇତିହାସ ନୀରବ । ଅଶୋକଙ୍କ ମୃତ୍ୟୁ ପରେ ଏହି ରାଜାମାନେହିଁ କଳିଙ୍ଗ ଇତିହାସରେ ଏକ ନୂଆ ଅଧ୍ୟାୟ ରଚନା କରିଥିଲେ । ସେମାନଙ୍କ ସମ୍ବନ୍ଧରେ କୌଣସି ବିଷୟ

ଇତିହାସ ପୃଷ୍ଠାରୁ ଜାଣିବାକୁ ନ ମିଳିଲେ ମଧ୍ୟ ଏତିକି କଥା ଅନୁମାନ କରାଯାଇ ପାରିବ ଯେ ସେମାନେ ଗୋଟିଏ ଶକ୍ତିଶାଳୀ ସାମ୍ରାଜ୍ୟଗଠନର ସୂତ୍ରପାତ କରିଥିଲେ । ଖାରବେଳ ଚେଡି ବଂଶର ତୃତୀୟ ରାଜା ବୋଲି ପ୍ରକାଶ । ଅତଏବ ସୁଖର ବିଷୟ ଯେ ଏହି ସମ୍ରାଟଙ୍କର ଜୀବନୀ ଏବଂ କୃତୀତ୍ୱ ସମ୍ବନ୍ଧରେ ବହୁ ବିଷୟ ଏହାଙ୍କର ସୁପ୍ରସିଦ୍ଧ ହାତିଗୁମ୍ଫା ଶୈଳ ପ୍ରଶସ୍ତି ଦେହରୁ ଜଣାଯାଏ । ଭାରତର ଅନ୍ୟ କୌଣସି ସ୍ଥାନରେ ଏପରି ଏକ ଶିଳାଲିପିର ଦୃଷ୍ଟାନ୍ତ ନାହିଁ ଯେଉଁଥିରେ ଜଣେ ଦିଗ୍‌ବିଜୟୀ ସମ୍ରାଟଙ୍କର ବିଜୟ କାହାଣୀ ଏବଂ ରାଜ୍ୟଶାସନ ସମ୍ବନ୍ଧରେ ଏପରି ଧାରାବାହିକ ହିସାବରେ ଅତି ସୁନ୍ଦର ଛନ୍ଦରେ ଲିଖିତ ହୋଇଛି । ହାତିଗୁମ୍ଫା ଶିଳାଲିପି ଖାରବେଳ ଏବଂ ତାହାଙ୍କ କଳିଙ୍ଗ ସାମ୍ରାଜ୍ୟର ଇତିହାସ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଯଦିଓ ବିବରଣୀଟି ସଂକ୍ଷିପ୍ତ ତଥାପି ତାହାର ପ୍ରତ୍ୟେକ ଶବ୍ଦର ଅର୍ଥରୁ ସେ ଯୁଗର ବହୁ ବିଷୟ ଜଣାଯାଏ । ଖାରବେଳଙ୍କ କଳିଙ୍ଗର ରାଜନୈତିକ, ଅର୍ଥନୈତିକ ଏବଂ ସାମାଜିକ ଛବି ଏହି ଶିଳାଲିପି ଅଙ୍ଗରେ ଅଙ୍କିତ ହୋଇଛି । ଏବଂ ସର୍ବୋପରି, ଏହି ଶିଳାଲିପିରୁ ତଦାନୀନ୍ତନ କଳିଙ୍ଗର ଜୈନଧର୍ମର ପ୍ରସାର ବିଷୟରେ ବହୁ ତଥ୍ୟ ଜଣାଯାଇଛି । ଏକ କଥାରେ, ହାତିଗୁମ୍ଫା ପ୍ରଶସ୍ତିରେ କଳିଙ୍ଗର ଏହି ଅଦ୍ୱିତୀୟ ସମ୍ରାଟଙ୍କର ଜୀବନୀ ଲିପିବଦ୍ଧ ହୋଇ ନ ଥିଲେ କଳିଙ୍ଗ ଇତିହାସର ସର୍ବଶ୍ରେଷ୍ଠ ଅଧ୍ୟାୟ ଆଜି ଅନ୍ଧକାର ମଧ୍ୟରେ ବୁଡ଼ି ରହିଥାଆନ୍ତା । ସନ ୧୮୨୨ ସାଲରେ ଖଣ୍ଡଗିରିର ଏକ ନିର୍ଜନ ଗୁମ୍ଫା ଗର୍ଭରେ ସୁପ୍ରସିଦ୍ଧ ଇଉରୋପୀୟ ଐତିହାସିକ ଷ୍ଟାର୍ଲିଂ ପ୍ରଥମଥର ପାଇଁ ଖାରବେଳଙ୍କର ଏହି ଶିଳାଲିପି ଆବିଷ୍କାର କରିଥିଲେ ଏବଂ ଏହି ଆବିଷ୍କାର ଦ୍ୱାରା ଭାରତର ଏକ ଗୌରବମୟ ଅତୀତ ଉପରେ ଆଲୋକପାତ କରିଥିଲେ । ତଦବଧି ଖଣ୍ଡଗିରି ଏବଂ ଉଦୟଗିରିର ସେହି ଅରଣ୍ୟାଚ୍ଛାଦିତ ଅଂଶ ଐତିହାସିକମାନଙ୍କର ଏକ ତୀର୍ଥସ୍ଥଳୀ ରୂପେ ପରିଗଣିତ ହୋଇ ଆସୁଛି ଏବଂ ଶତ ଶତ ବିଖ୍ୟାତ ଐତିହାସିକ ହାତିଗୁମ୍ଫା ପ୍ରତି ଆକୃଷ୍ଟ ହୋଇ ସେ ସ୍ଥାନ ପରିଦର୍ଶନ କରୁଛନ୍ତି । ଏ ପର୍ଯ୍ୟନ୍ତ ଯେଉଁମାନେ ବିଶେଷଜ୍ଞ ଖାରବେଳଙ୍କ ହାତିଗୁମ୍ଫା ଉପରେ ଗବେଷଣା କରି-ସାରିଲେଣି ସେମାନଙ୍କ ମଧ୍ୟରୁ କଟୋ, ଜେମସ୍ ପ୍ରିନ୍‌ସେପ୍, ଜେନେରାଲ କାନିଙ୍ଗହାମ୍, ପଣ୍ଡିତ ଭଗବାନଲାଲ ଇନ୍ଦ୍ରାଜୀ, ମିଷ୍ଟାର ଲକ୍, ବାବୁ ରାଜେନ୍ଦ୍ରଲାଲ ମିତ୍ର, ଡକ୍ଟର ରାଖାଲ ଦାସ ବେନାର୍ଜି, ମିଷ୍ଟାର କାଶୀପ୍ରସାଦ ଜୟସ୍ୱାଲ, ଏବଂ ଶ୍ରୀଯୁକ୍ତ ବେଣୀମାଧବ ବରୁଆ ପ୍ରମୁଖଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ ।

ଏହି ଐତିହାସିକମାନେ ତଥା ଅନ୍ୟ ଅନେକେ ସେମାନଙ୍କର ଭକ୍ତି ପରିଶ୍ରମ ଦ୍ୱାରା ଅକ୍ଷରେ ଅକ୍ଷରେ ହାତିଗୁମ୍ଫା ପ୍ରଶସ୍ତିର ପାଠୋଦ୍ଧାର କରିଛନ୍ତି ଏବଂ ଭାରତ ଇତିହାସକୁ ଜଣେ ଅଭ୍ୟୁତକର୍ମା ସମ୍ରାଟଙ୍କର ଜୀବନ-କାହାଣୀ ଦାନ କରି ଯାଇଛନ୍ତି । ଖାରବେଳଙ୍କର ପୂର୍ବପୁରୁଷମାନଙ୍କ ସମ୍ବନ୍ଧରେ ଏବଂ ସମ୍ରାଟଙ୍କର ଶୈଶବ ବୟସରେ କୌଣସି ସମ୍ବାଦ ହାତିଗୁମ୍ଫା ଲିପିରେ ନାହିଁ । କିନ୍ତୁ ରାଜକୁମାର ଖାରବେଳଙ୍କର ଶିକ୍ଷାପ୍ରାପ୍ତି ପାଖରୁ ଆରମ୍ଭ କରି ତାହାଙ୍କ ଜୀବନର ପ୍ରାୟ ଶେଷ ସମୟ ପର୍ଯ୍ୟନ୍ତ ଯେତେ କିଛି ବିଖ୍ୟାତ ଘଟଣା ଘଟିଥିଲା ସେ ସବୁର ସାରାଂଶ ହାତିଗୁମ୍ଫା ଦେହରେ ଖୋଦିତ ହୋଇଛି । ସମ୍ରାଟଙ୍କର ଶୈଶବ ସମ୍ବନ୍ଧରେ କେବଳ ଏତିକିମାତ୍ର ଜଣାଯାଏ ଯେ କୁମାର ଅବସ୍ଥାରେ ସେ ପଞ୍ଚଦର୍ଶ ବର୍ଷ ବୟସ ପର୍ଯ୍ୟନ୍ତ କ୍ରୀଡ଼ାରତ ଥିଲେ । ଏଥିରୁ ତାହାଙ୍କର ଲାଳନ ପାଳନ ସମ୍ବନ୍ଧରେ ଅବଶ୍ୟ କିଛି ଜଣାଯାଏ ନାହିଁ । ପଞ୍ଚଦଶ ବର୍ଷ ବୟସବେଳେ ତାହାଙ୍କର ଶିକ୍ଷା ଆରମ୍ଭ ହେଲା । ଅତୀତ ଭାରତର ରାଜପୁତ୍ରମାନଙ୍କର ଶିକ୍ଷାର ଗୋଟିଏ ଜ୍ୱଳନ୍ତ ଉଦାହରଣ ଦେଖିବାକୁ ମିଳେ ଏହିଠାରେ । ଖାରବେଳଙ୍କୁ ମାତ୍ର ପଞ୍ଚଦଶ ବର୍ଷ ବୟସରେ 'ଲେଖ, ରୂପ, ଗଣନା, ବ୍ୟବହାର, ବିଧି' ପ୍ରଭୃତି ସମସ୍ତ ବିଦ୍ୟାରେ ପାରଦର୍ଶିତା ଲାଭ କରିବାକୁ ହୋଇଥିଲା । ବିଶେଷଜ୍ଞମାନଙ୍କ ସିଦ୍ଧାନ୍ତରେ ଲେଖ ଶବ୍ଦର ଅର୍ଥ ରାଜ୍ୟଶାସନ ସମ୍ବନ୍ଧୀୟ ଯେତେ ପ୍ରକାର ଲେଖା ଲେଖି, ଚିଟି-ପତ୍ର ଇତ୍ୟାଦିର ଆଦବ କାୟଦା ; ରୂପ ଶବ୍ଦର ଅର୍ଥ ମୁଦ୍ରାନୀତି ; ଗଣନ ଶବ୍ଦର ଅର୍ଥ ରାଜକୀୟ ଅର୍ଥନୀତିର ହିସାବ କିତାବ; ବ୍ୟବହାର ଶବ୍ଦର ଅର୍ଥ ରାଜ୍ୟର ସମସ୍ତ ପ୍ରକାର ଲୋକଙ୍କ ପ୍ରତି ସମୟୋଚିତ ବ୍ୟବହାର; ଏବଂ ବିଧି ଶବ୍ଦର ଅର୍ଥ ରାଜ୍ୟର ଆଇନ୍ କାନୁନ୍, ଶାସନ ପଦ୍ଧତି ଇତ୍ୟାଦି ଇତ୍ୟାଦି । ହିନ୍ଦୁଯୁଗର ରାଜପୁତ୍ରମାନଙ୍କର ଜୀବନ ବିଳାସ ବ୍ୟସନ ମଧ୍ୟରେ ବୁଡ଼ି ରହିବାକୁ ଅବକାଶ ପାଉ ନ ଥିଲା । ଭାରତ ଇତିହାସରେ ଅନେକ ଜ୍ୱଳନ୍ତ ଉଦାହରଣ ରହିଛି ଯେଉଁଥିରୁ ଜାଣିବାକୁ ମିଳେ ଯେ ଉପଯୁକ୍ତ ଶିକ୍ଷା ବିନା ରାଜସିଂହାସନ ପ୍ରତି ଆଶା କରିବା ବୃଥା ଥିଲା । ମୌର୍ଯ୍ୟଯୁଗ ତଥା ଗୁପ୍ତଯୁଗରେ ରାଜକୁମାର-ମାନଙ୍କର ଶିକ୍ଷା ସମ୍ବନ୍ଧରେ ଅତ୍ୟନ୍ତ ତୀକ୍ଷ୍ଣ ଦୃଷ୍ଟି ଦିଆଯାଉଥିଲା । ସାଧାରଣତଃ ଯେଉଁ ରାଜପୁତ୍ର ଏକ ସର୍ବାଙ୍ଗସୁନ୍ଦର ଶିକ୍ଷା ଲାଭ କରି ଅପର ରାଜପୁତ୍ରମାନଙ୍କ ଅପେକ୍ଷା ଅଧିକ ବିଦ୍ୱାନ ବୋଲି ପ୍ରମାଣିତ ହେଉଥିଲେ ସେହି ରାଜପୁତ୍ରହିଁ ଭବି ସମ୍ରାଟ ହେବା ପାଇଁ ଉପଯୁକ୍ତ ବୋଲି ଆଗରୁ ମନୋନୀତ ହୋଇ ପାରୁଥିଲେ ।

ଅଶୋକ, ସମୁଦ୍ରଗୁପ୍ତ ପ୍ରଭୃତି ହିନ୍ଦୁଯୁଗର ଶ୍ରେଷ୍ଠ ନରପତିମାନଙ୍କୁ ପ୍ରତିଯୋଗିତା ମଧ୍ୟ ଦେଇ ନିଜର ବିଦ୍ୟା ଏବଂ ଯୋଗ୍ୟତାର ପରିଚୟ ଦେଇ ସିଂହାସନ ପର୍ଯ୍ୟନ୍ତ ଆସିବାକୁ ପଡ଼ିଥିଲା । ଖାରବେଳ ମଧ୍ୟ ପ୍ରାଚୀନ ଭାରତର ଜଣେ ହିନ୍ଦୁ ରାଜପୁତ୍ର । ତେଣୁ ତାହାଙ୍କର ଶିକ୍ଷା ମଧ୍ୟ ଥିଲା ସେହିପରି କଠିନ । ମାତ୍ର ପନ୍ଦର ବର୍ଷ ବୟସରେ ରାଜ୍ୟର ଆଇନ୍ କାନୁନ୍, ରାଜନୀତି ଏବଂ ଅର୍ଥନୀତି ଇତ୍ୟାଦି ଅଧ୍ୟୟନ କରିବା ଏବଂ ସେଥିରେ ପାରଦର୍ଶିତା ଲାଭ କରିବା କେବଳ ଖାରବେଳଙ୍କ ପକ୍ଷରେହିଁ ସମ୍ଭବପର ହୋଇ ପାରିଥିଲା । ହୁଏତ ଏପରି ଏକ ଶିକ୍ଷା ବିନା ଭବିଷ୍ୟତରେ ଏକ ବିଶାଳ ସାମ୍ରାଜ୍ୟର ଅଧିକାରୀ ରୂପେ ଖ୍ୟାତି ଅର୍ଜନ କରିବା ଅସମ୍ଭବ ହୋଇ ପଡ଼ିଥାନ୍ତା । ଉପରଲିଖିତ ଶିକ୍ଷା ବ୍ୟତୀତ ପ୍ରତ୍ୟେକ ହିନ୍ଦୁ ରାଜପୁତ୍ରଙ୍କୁ ଯୁଦ୍ଧବିଦ୍ୟା ଏବଂ ଧର୍ମନୀତିରେ ମଧ୍ୟ ପାରଦର୍ଶିତା ଲାଭ କରିବାକୁ ହେଉଥିଲା । କାରଣ ଯୁଦ୍ଧବିଦ୍ୟା ବିନା ରାଜଦଣ୍ଡ ଗ୍ରହଣ କରିବା ଅସମ୍ଭବ ଏବଂ ଧର୍ମଜ୍ଞାନ ବିନା ଦେଶବାସୀଙ୍କର ଶ୍ରଦ୍ଧା ଆକର୍ଷଣ କରିବା ଅତୀବ କଷ୍ଟକର । ଖାରବେଳ ଯେ ଶୈଶବରୁ ଯୁଦ୍ଧବିଦ୍ୟା ପ୍ରତି ଆକୃଷ୍ଟ ଥିଲେ ତାହା ତାହାଙ୍କର ଭବିଷ୍ୟତ ଜୀବନ ପ୍ରମାଣ କରେ । ସେହିପରି ପ୍ରଥମରୁ ତାହାଙ୍କର ଯେଉଁ ଧର୍ମାନୁରାଗ ତାହା ପରବର୍ତ୍ତୀ କାଳରେ ତାହାଙ୍କର ଧର୍ମକାର୍ଯ୍ୟମାନଙ୍କରୁ ଯଥେଷ୍ଟ ଭାବେ ଜଣାଯାଏ । ମୋଟ ଉପରେ ଏକ ବିରାଟ ଭବିଷ୍ୟତ ପାଇଁ ଖାରବେଳଙ୍କର ପ୍ରାଥମିକ ଶିକ୍ଷା ବହୁପରିମାଣରେ ଦାୟୀ । ପଞ୍ଚଦଶ ବର୍ଷ ବୟସ ପରଠାରୁ ଚତୁର୍ବିଂଶତି ବର୍ଷ ବୟସ ପର୍ଯ୍ୟନ୍ତ ଖାରବେଳ କଳିଙ୍ଗର ଯୁବରାଜ ପଦରେ ଅଭିଷିକ୍ତ ଥିଲେ । ଭାବୀ ସମ୍ରାଟ ରୂପେ ଜଣେ ଯୁବରାଜଙ୍କର ଦାୟିତ୍ୱ କିଛି କମ୍ ନ ଥିଲା । ଦୀର୍ଘ ନବମ ବର୍ଷ କାଳ ଖାରବେଳ ପିତାଙ୍କର ଦକ୍ଷିଣ ହସ୍ତ ରୂପେ ରାଜ୍ୟର ସମସ୍ତ ବିଷୟ ଦେଖାଶୁଣା କରିଥିବେ ଏବଂ ଶାସନକାର୍ଯ୍ୟ ଉପରେ ଦକ୍ଷତା ଲାଭ କରିବା ପାଇଁ ଯଥେଷ୍ଟ ସୁଯୋଗ ପାଇଥିବେ । ଭାରତର ସମସ୍ତ ବଡ଼ ବଡ଼ ସମ୍ରାଟଙ୍କୁ ଯୁବରାଜ ହିସାବରେ ବହୁ ବିପଦ, ବହୁ ଝଞ୍ଜା ଏବଂ ବହୁ ଅଭିଜ୍ଞତା ମଧ୍ୟଦେଇ ଗତି କରିବାକୁ ହୋଇଛି । ଅଶୋକ, ସମୁଦ୍ରଗୁପ୍ତ, ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ, ରାଜ୍ୟବର୍ଦ୍ଧନ ଏବଂ ଶ୍ରୀହର୍ଷ, ଏମାନେ ସମସ୍ତେ ସମ୍ରାଟ ହେବା ପୂର୍ବରୁ ସାମ୍ରାଜ୍ୟର ଯୁବରାଜ ରୂପେ ବହୁ ଅଭିଜ୍ଞତା ହାସଲ କରିଥିଲେ ଏବଂ ସେଥିପାଇଁ ଭବିଷ୍ୟତ କାଳରେ ସୁଦକ୍ଷ ସମ୍ରାଟ ରୂପେ ଖ୍ୟାତିଲାଭ କରିଥିଲେ । କଳିଙ୍ଗର ଅଭ୍ୟୁତ୍ଥାନ ଯୁଗରେ ଖାରବେଳ ସେ ରାଜ୍ୟର ଯୁବରାଜ ଥିଲେ ।

ଯୁବରାଜ ଖାରବେଳଙ୍କୁ ମୌର୍ଯ୍ୟୋତ୍ତର ଭାରତର ଦୁଃଖ ଦୁର୍ଦ୍ଦଶା ବିଷୟ ଉପଲବ୍ଧି କରିବାକୁ ଅଧିକ ବିଳମ୍ବ ହୋଇ ନ ଥିବ। ଭାରତର ଦୁର୍ଦ୍ଦିନରେ ସେହି ଦେଶର ଏକ ଉତ୍‌ଥାନମୁଖୀ ପ୍ରଦେଶ ଉପରେ ଦଣ୍ଡାୟମାନ ହୋଇ ଯୁବକ ଖାରବେଳ ମୌର୍ଯ୍ୟ ସାମ୍ରାଜ୍ୟ ପରି ଅନ୍ୟ ଏକ ସାମ୍ରାଜ୍ୟ ଗଠନ କରିବା ପାଇଁ ପରିକଳ୍ପନା କରିଥିବେ। ଯୁବରାଜ ଖାରବେଳଙ୍କର ଏହି ସ୍ୱପ୍ନ ବାସ୍ତବତାରେ ପରିଣତ ହେବାକୁ ଆରମ୍ଭ କଲା ଯେତେବେଳେ ସେ ଖ୍ରୀଷ୍ଟପୂର୍ବ ୮୩ ରେ ସମ୍ରାଟ ରୂପେ କଳିଙ୍ଗ ସିଂହାସନ ଆରୋହଣପୂର୍ବକ ସମୃଦ୍ଧିଶାଳୀ କଳିଙ୍ଗ ସାମ୍ରାଜ୍ୟର ଶାସନଭାର ଗ୍ରହଣ କଲେ। ସେତେବେଳେ ତାହାଙ୍କର ବୟସ ମାତ୍ର ଚବିଶ ବର୍ଷ।

ଖାରବେଳଙ୍କ ରାଜତ୍ୱକାଳ ଏକ ନିରବଚ୍ଛିନ୍ନ ଦିଗ୍‌ବିଜୟର କାହାଣୀ। ଖଣ୍ଡ ବିଖଣ୍ଡିତ ଭାରତକୁ ପୁନର୍ବାର ଏକତା ସୂତ୍ରରେ ବାନ୍ଧି ଦେବାପାଇଁ ଏ ଥିଲା ଅପର ଏକ ଉଦ୍ୟମ। ପରିତାପର ବିଷୟ ଭାରତର ଅନ୍ୟାନ୍ୟ ସ୍ୱନାମଧନ୍ୟ ସମ୍ରାଟଙ୍କର ରାଜତ୍ୱକାଳ ପରି ଖାରବେଳଙ୍କ ରାଜତ୍ୱକାଳ ଦୀର୍ଘ ନ ଥିଲା। ଅତି ଅଳ୍ପ ସମୟ ପାଇଁ ରାଜତ୍ୱ କରିବାର ସୁଯୋଗ ପାଇ ତାହାରି ମଧ୍ୟରେହିଁ ଖାରବେଳ ତାହାଙ୍କର ଭାରତ ଦିଗ୍‌ବିଜୟ ଶେଷ କରିଥିଲେ। ଭାରତର ଅନ୍ୟ କୌଣସି ସମ୍ରାଟ ଏତେ ଅଳ୍ପକାଳ ମଧ୍ୟରେ ଏପରି ଦୂର ଦୂରାନ୍ତରକୁ ନିଜର ଦିଗ୍‌ବିଜୟ ପରିଚାଳନ କରି ପାରି ନାହାନ୍ତି। ଏ ବିଷୟରେ ଖାରବେଳ ଭାରତରେ ଅପ୍ରତିଦ୍ୱନ୍ଦୀ। ସମୁଦ୍ରଗୁପ୍ତ, କନିଷ୍କ, ହର୍ଷବର୍ଦ୍ଧନ ପ୍ରଭୃତି ଦିଗ୍‌ବିଜୟୀମାନେ ସେମାନଙ୍କର ଦିଗ୍‌ବିଜୟ ପାଇଁ ଦୀର୍ଘ ସମୟ ପାଇଥିଲେ। କିନ୍ତୁ ଖାରବେଳ ରାଜତ୍ୱ କରିଥିଲେ ମାତ୍ର ଚଉଦ ବର୍ଷ ପାଇଁ। ଏହାରି ମଧ୍ୟରେ ତାହାଙ୍କ ଦିଗ୍‌ବିଜୟ, ଶାସନକାର୍ଯ୍ୟ, ଲୋକହିତକର ଅନୁଷ୍ଠାନ, ଯାଗଯଜ୍ଞ, ଧର୍ମକୀର୍ତ୍ତି ଇତ୍ୟାଦି ସମସ୍ତ କାର୍ଯ୍ୟ ସମ୍ପାଦିତ ହୋଇଥିଲା। ସିଂହାସନ ଆରୋହଣ ସଙ୍ଗେ ସଙ୍ଗେ ଏହି ଅକ୍ଳାନ୍ତ ପରିଶ୍ରମୀ ରାଜା ତାହାଙ୍କର ଲକ୍ଷ୍ୟସିଦ୍ଧି ଉଦ୍ଦେଶ୍ୟରେ ତତ୍ପର ହୋଇ ପଡ଼ିଥିଲେ। ରାଜତ୍ୱର ପ୍ରଥମ ବର୍ଷରେ ଖାରବେଳ ତୁରନ୍ତ ଗତିରେ ବାତ୍ୟାଧ୍ୱସ୍ତ ରାଜଧାନୀର ପୁନଃ ସଂସ୍କାର କରିଥିଲେ। ଭଗ୍ନ ତୋରଣମାନଙ୍କ ସ୍ଥାନରେ ନୂତନ ତୋରଣମାନ ନିର୍ମିତ ହୋଇଥିଲା; ନଗରୀର ବିଭିନ୍ନ ସ୍ଥାନରେ ପ୍ରାଚୀର ଏବଂ ଅଟ୍ଟାଳିକା ଇତ୍ୟାଦି ନିର୍ମାଣ କରାଯାଇଥିଲା; ରାଜଧାନୀର ଜଳପଥ ଏବଂ ପୁଷ୍କରିଣୀମାନଙ୍କୁ ଘାଟଦ୍ୱାରା ବନ୍ଧା ଯାଇଥିଲା; ଏବଂ ରାଜଧାନୀର ସ୍ଥାନେ ସ୍ଥାନେ

ପ୍ରମୋଦ ଉଦ୍ୟାନ ତିଆରି କରି ନଗରୀର ସୌନ୍ଦର୍ଯ୍ୟ ବୃଦ୍ଧି କରାଯାଇଥିଲା । ଏହି ସମସ୍ତ କାର୍ଯ୍ୟ ପାଇଁ ଖାରବେଳଙ୍କ ଅର୍ଥାଗାରରୁ ପଞ୍ଚତ୍ରିଂଶ ଲକ୍ଷ ମୁଦ୍ରା ବ୍ୟୟିତ ହୋଇଥିଲା । ରାଜତ୍ୱର ପ୍ରଥମ ବର୍ଷରେ ଏପରି ପ୍ରଜାରଞ୍ଜନ କରିବାଦ୍ୱାରା ଖାରବେଳଙ୍କ ଶାସନ ପ୍ରତି କଳିଙ୍ଗବାସୀଙ୍କର ଅନୁରକ୍ତି ପ୍ରଗାଢ଼ ହୋଇ ପଡ଼ିଥିବ । ପ୍ରାଚୀନ ଭାରତର ସୁଶାସକ ରାଜାମାନଙ୍କର ଖାରବେଳ ହେଉଛନ୍ତି ଏକ ଆଦର୍ଶ ପ୍ରତିନିଧି ।

ରାଜତ୍ୱର ଦ୍ୱିତୀୟ ବର୍ଷରେ ଆରମ୍ଭ ହେଲା ଖାରବେଳଙ୍କର ଦିଗ୍‌ବିଜୟ ଯାତ୍ରା । ଏତେବେଳକୁ କଳିଙ୍ଗର ସାମରିକ ଶକ୍ତି ପୁନର୍ଜୀବନ ଲାଭ କରି ସାରିଥିଲା । ଖାରବେଳ କଳିଙ୍ଗକୁ କେନ୍ଦ୍ରକରି ଏକ ଭାରତୀୟ ସାମ୍ରାଜ୍ୟର ଯେଉଁ ସ୍ୱପ୍ନ ଦେଖିଥିଲେ ସେହି ସ୍ୱପ୍ନକୁ ପ୍ରକୃତ ରୂପ ଦେବା ପାଇଁ ସେ ଚାହିଁଥିଲେ ଦିଗ୍‌ବିଜୟ ଏବଂ ରାଜ୍ୟାଧିକାର । ମଗଧର ପତନ ପରେ ହୁଏତ ଭାରତୀୟ ସାମ୍ରାଜ୍ୟବାଦ କଳିଙ୍ଗରେହିଁ ଆଶ୍ରୟପ୍ରାପ୍ତ ହୋଇଥିଲା । ଖାରବେଳଙ୍କ ଦିଗ୍‌ବିଜୟ ସମ୍ବନ୍ଧରେ ଆଲୋଚନା କରିବା ପୂର୍ବରୁ ଏଠାରେ ଦେଖିବା ଉଚିତ ଖାରବେଳଙ୍କ ଅଧୀନରେ କଳିଙ୍ଗ ସାମ୍ରାଜ୍ୟର ସାମରିକ ଶକ୍ତି ଥିଲା କ'ଣ ? ଦୁଃଖର ବିଷୟ ହାତିଗୁମ୍ଫା ପ୍ରଶସ୍ତିରୁ ଖାରବେଳଙ୍କର ସୈନ୍ୟବଳ ଏବଂ ଯୁଦ୍ଧସଜ୍ଜା ବିଷୟରେ କୌଣସି ପ୍ରକାର ସଠିକ୍ ସଂଖ୍ୟା ମିଳେ ନାହିଁ । ତଥାପି ଖାରବେଳଙ୍କ ଭାରତ ଅଭିଯାନ ପୂର୍ବରୁ ତାହାଙ୍କର ସୈନ୍ୟବଳ କେତେ ଥିଲା ସେ ବିଷୟରେ ଐତିହାସିକମାନେ ଏକ-ପ୍ରକାର ଅନୁମାନକ ସିଦ୍ଧାନ୍ତ ଗ୍ରହଣ କରିଛନ୍ତି । ଖାରବେଳଙ୍କ ବହୁବର୍ଷ ପୂର୍ବେ ଯେଉଁତେବେଳେ ଗ୍ରୀକ୍ ରାଜଦୂତ ମେଗାସ୍ଥିନିସ୍ ଭାରତ ଇତିହାସ ଲେଖୁଥିଲେ ସେତେବେଳେ ସେ ଦେଖିଥିଲେ ଯେ କଳିଙ୍ଗ ରାଜାଙ୍କର ଷଷ୍ଟିସହସ୍ର ପଦାତିକ, ଏକ ସହସ୍ର ଅଶ୍ୱାରୋହୀ ଏବଂ ସପ୍ତଶତ ହସ୍ତୀ ସମ୍ବଳିତ ଏକ ସୈନ୍ୟବଳ ଥିଲା । ହୁଏତ ସୁଦୂର ମୌର୍ଯ୍ୟ ଦରବାରରୁ ମେଗାସ୍ଥିନିସ୍ ଆଶ୍ଚର୍ଯ୍ୟଭାବେ ଅବଲୋକନ କରିଥିଲେ ଯେ କଳିଙ୍ଗର ଏହି ସୈନ୍ୟବଳ ଚନ୍ଦ୍ରଗୁପ୍ତମୌର୍ଯ୍ୟଙ୍କର ବିଶାଳ ସେନାବାହିନୀକୁ କଳିଙ୍ଗସୀମା ପାଖରୁ ଦୂରରେ ରଖି ପାରିଥିଲା । ଆମ୍ଭେମାନେ ଜାଣୁଁ ଯେ ଚନ୍ଦ୍ରଗୁପ୍ତଙ୍କର ଛଅଲକ୍ଷ ସୁସଜ୍ଜିତ ସୈନ୍ୟ ତାହାଙ୍କୁ ମୌର୍ଯ୍ୟ ସାମ୍ରାଜ୍ୟ ନିର୍ମାଣରେ ସାହାଯ୍ୟ କରିଥିଲେ । ଏହି ଛଅଲକ୍ଷ ସୈନ୍ୟ ସମ୍ମୁଖରେ କଳିଙ୍ଗର ମାତ୍ର ଷଷ୍ଟିସହସ୍ର ସୈନ୍ୟ ଯେ ମାତୃଭୂମିର ସ୍ୱାଧୀନତା ରକ୍ଷା କରିବାକୁ ସମର୍ଥ

ଥିଲେ ଏହା ବିଶ୍ୱାସ କରାଯାଇପାରୁ ନାହିଁ । ହୁଏତ ମେଗାସ୍ଥିନିସ୍ ଯେଉଁ ସୈନ୍ୟବାହିନୀ କଥା ଶୁଣିଥିଲେ ତାହା କଳିଙ୍ଗ ବାହିନୀର କେବଳ ଗୋଟିଏ ମାତ୍ର ଅଂଶ ଯେଉଁ ଅଂଶଟି ମୌର୍ଯ୍ୟ ଆକ୍ରମଣ ବିରୁଦ୍ଧରେ ସଦା ସତର୍କ ଥିଲା । କଳିଙ୍ଗ ସାମ୍ରାଜ୍ୟର ଷଷ୍ଠି ସହସ୍ରରୁ ଅଧିକ ଏକ ସୈନ୍ୟଶକ୍ତି ଥିବାର ଯଥେଷ୍ଟ ପ୍ରମାଣ ମିଳେ ଅଶୋକଙ୍କ କଳିଙ୍ଗ ଯୁଦ୍ଧରୁ । କାରଣ କଳିଙ୍ଗ ଯୁଦ୍ଧରେ କେବଳ ମୃତ, ଆହତ ଏବଂ ବନ୍ଦୀମାନଙ୍କର ସଂଖ୍ୟା ଥିଲା ଅନ୍ୟୂନ ତିନିଲକ୍ଷ । ଯେଉଁ ଦେଶର ତିନିଲକ୍ଷ ସୈନ୍ୟ କେବଳ ହତାହତ ଏବଂ ବନ୍ଦୀସଂଖ୍ୟା ପୂରଣ କରିଥିଲେ ସେ ଦେଶର ପ୍ରକୃତ ସୈନ୍ୟବଳ ଯେ ଏହି ସଂଖ୍ୟାଠାରୁ ଊର୍ଦ୍ଧ୍ୱ ଥିଲା ଏଥିରେ ସନ୍ଦେହ ନାହିଁ । ଯଦିଚ ମେଗାସ୍ଥିନିସ୍‌ଙ୍କୁ ବିଶ୍ୱାସ କରି ଆମ୍ଭେମାନେ ତାହାଙ୍କ କଥା ଗ୍ରହଣ କରୁଁ ଯେ ଚନ୍ଦ୍ରଗୁପ୍ତଙ୍କ ସମୟରେ କଳିଙ୍ଗର ଷଷ୍ଠି ସହସ୍ର ସଂଖ୍ୟକ ଏକ ସୈନ୍ୟବଳ ଥିଲା, ତେବେ ଏକଥା ମଧ୍ୟ ଗ୍ରହଣ କରିବାକୁ ହେବ ଯେ ଏହି ସୈନ୍ୟବଳ ତତ୍ପର୍ବର୍ତ୍ତୀ ଗତିରେ ବୃଦ୍ଧିପ୍ରାପ୍ତ ହୋଇଯାଇଥିଲା ଏବଂ ଚନ୍ଦ୍ରଗୁପ୍ତଙ୍କ ପୌତ୍ର ଅଶୋକଙ୍କ ସମୟ ବେଳକୁ ଷଷ୍ଠି ସହସ୍ର ସ୍ଥାନରେ ପାଞ୍ଚ ଛଅ ଲକ୍ଷ କଳିଙ୍ଗ ସୈନ୍ୟ ଦେଖିବାକୁ ମିଳିଥିଲା । କଳିଙ୍ଗଯୁଦ୍ଧରେ ଏହି ବିଶାଳ ସୈନ୍ୟବାହିନୀ ଧ୍ୱଂସପ୍ରାପ୍ତ ହୋଇଥିଲା । ଅଶୋକଙ୍କ ରାଜତ୍ୱକାଳରେ ଏହି ବାହିନୀର ପୁନରୁତ୍‌ଥାନ ସମ୍ଭବ ହୋଇ ନ ଥିଲା । କିନ୍ତୁ ମୌର୍ଯ୍ୟୋତ୍ତର ଯୁଗରେ କଳିଙ୍ଗ ଯେତେବେଳେ ସ୍ୱାଧୀନତା ଲାଭ କରି ନିଜର ବିଗତ ଶକ୍ତିର ପୁନରୁତ୍ଥାନ ଚାହିଁଥିଲା ସେତେବେଳେ ପୁନର୍ବାର ଏକ ବିଶାଳ ସୈନ୍ୟଶକ୍ତି ଆବଶ୍ୟକ ହୋଇପଡ଼ିଥିଲା । ଖାରବେଳଙ୍କ ପୂର୍ବବର୍ତ୍ତୀ ଚେଦି ରାଜମାନେ କଳିଙ୍ଗର ସୈନ୍ୟଶକ୍ତି ବୃଦ୍ଧି ପାଇଁ ନିଶ୍ଚୟ ପ୍ରାଣପଣ ଚେଷ୍ଟା କରିଥିଲେ । ତା' ନ ହୋଇଥିଲେ ରାଜତ୍ୱର ମାତ୍ର ଦ୍ୱିତୀୟ ବର୍ଷରେ ଖାରବେଳ ତାହାଙ୍କର ଭାରତବ୍ୟାପୀ ଅଭିଯାନ ଆରମ୍ଭ କରି ପାରି ନ ଥାନ୍ତେ । ଅଶୋକଙ୍କ ମହାଯୁଦ୍ଧବେଳେ କଳିଙ୍ଗର ଯେପରି ସୈନ୍ୟବଳ ଥିଲା ସେହିପରି ଏକ ସୈନ୍ୟବଳ ଖାରବେଳଙ୍କ ସମୟକୁ ଗଠିତ ହୋଇ ସାରିଥିଲା ବୋଲି ବିଶ୍ୱାସ କରାଯାଇ ପାରେ । କାରଣ ସେହିପରି ଏକ ବିରାଟ ବାହିନୀ ବିନା ଦ୍ୱାଦଶ ବର୍ଷବ୍ୟାପୀ କ୍ରମାଗତ ଅଭିଯାନ ଓ ରାଜ୍ୟ ଅଧିକାର ସମ୍ଭବପର ହୋଇ ନ ଥାନ୍ତା । ଚନ୍ଦ୍ରଗୁପ୍ତମୌର୍ଯ୍ୟ ଛଅଲକ୍ଷ ସୈନ୍ୟ ସାହାଯ୍ୟରେ ଭାରତ ବିଜୟ କରିଥିଲେ । ସେହିପରି ଏକ ସୈନ୍ୟବଳ ସାହାଯ୍ୟରେ ଖାରବେଳ ଉତ୍ତରାପଥ, ଦକ୍ଷିଣାପଥ ଏବଂ ମଧ୍ୟଦେଶ ଅଧିକାର କରିବାକୁ ସମର୍ଥ ହୋଇଥିବେ । ଅଶୋକଙ୍କ ସମୟରେ ଏକ ଅଞ୍ଚଳର

ଶକ୍ତିରୂପେ କଳିଙ୍ଗ ଯଦି ପ୍ରାୟ ଛଅଲକ୍ଷ ସୈନ୍ୟ ରଖି ପାରିଥିଲା ତେବେ ଖାରବେଳଙ୍କ ସମୟରେ ଯେତେବେଳେ କଳିଙ୍ଗ ଏକ ଭାରତବ୍ୟାପୀ ସାମ୍ରାଜ୍ୟ-ବାଦ ପାଇଁ ଲାଳାୟିତ ହୋଇପଡ଼ିଥିଲା ସେତେବେଳେ କଳିଙ୍ଗ ରାଜଶକ୍ତିକୁ ସେହିପରି ଏକ ସୈନ୍ୟଶକ୍ତି ଗଠନ କରିବାକୁ ପଡ଼ିଥିବ । ସମସ୍ତ ବିଷୟ ବିବେଚନା କରି ଐତିହାସିକମାନେ [1] ଖାରବେଳଙ୍କ ସୈନ୍ୟସଂଖ୍ୟା ସାଢ଼େ ପାଞ୍ଚଲକ୍ଷରୁ ଊର୍ଦ୍ଧ୍ୱ ଥିଲା ବୋଲି ମତ ପ୍ରକାଶ କରିଛନ୍ତି ।

ଏହିପରି ଏକ ବିରାଟ ସୈନ୍ୟଶକ୍ତି ପଶ୍ଚାତରେ ରଖି ଖାରବେଳ ତାହାଙ୍କ ରାଜତ୍ୱର ଦ୍ୱିତୀୟ ବର୍ଷରେ ତାହାଙ୍କର ପ୍ରଥମ ଅଭିଯାନ ଆରମ୍ଭ କରିଥିଲେ । ରାଜତ୍ୱର ଏହି ପ୍ରଥମ ଅଭିଯାନ ଦାକ୍ଷିଣାତ୍ୟ ଅଭିମୁଖରେ ଚାଳିତ ହୋଇଥିଲା । ତାହାଁକ ପ୍ରଥମେ ଉତ୍ତରାପଥ ଅଭିମୁଖରେ ଦିଗ୍‌ବିଜୟ ଯାତ୍ରା ଆରମ୍ଭ ନ କରି ଖାରବେଳ ଦକ୍ଷିଣ ଆଡ଼କୁ ଅଗ୍ରସର ହୋଇଥିଲେ ତାହା ନିଶ୍ଚିତରୂପେ କହି-ହେବ ନାହିଁ । ଏହା ସମ୍ଭବ ହୋଇ ପାରେ ଯେ ତଦାନୀନ୍ତନ ଦାକ୍ଷିଣାତ୍ୟର ହର୍ବଶ୍ରେଷ୍ଠ ସମ୍ରାଟ ଶ୍ରୀ ସାତକର୍ଣ୍ଣୀ କଳିଙ୍ଗର ଦକ୍ଷିଣ ସୀମାରେ ଅତ୍ୟଧିକ ପ୍ରବଳ ହୋଇ ଉଠିଥିଲେ ଏବଂ ତାହାଙ୍କ ପରି ସମ୍ରାଟଙ୍କୁ ପଶ୍ଚାତରେ ରଖି ଖାରବେଳ ଉତ୍ତରାପଥ ଦିଗକୁ ଅଗ୍ରସର ହେବା ବୁଦ୍ଧିହୀନତାର କାର୍ଯ୍ୟ ହେବ ବୋଲି ଭାବିଥିଲେ । ଯେ କୌଣସି କାରଣ ବଶତଃ ହେଉ ଖାରବେଳ ପ୍ରଥମେ ଅତର୍କିତ ଭାବରେ ଶ୍ରୀ ସାତକର୍ଣ୍ଣୀଙ୍କୁ ଆକ୍ରମଣ କରିଥିଲେ । ଏହି ଅଭିଯାନରେ କଳିଙ୍ଗବାହିନୀ ନର, ହୟ, ଗଜ ଏବଂ ରଥ ଏହି ଚତୁର୍ଭାଗରେ ବିଭକ୍ତ ହୋଇ ଯୁଦ୍ଧ କରିଥିବାର ଜଣାଯାଏ । ଆନ୍ଧ୍ର ସାତବାହନ ରାଜବଂଶର ତୃତୀୟ ନରପତି ଶ୍ରୀ ସାତକର୍ଣ୍ଣୀ ଖାରବେଳଙ୍କ ଆକ୍ରମଣ ବିରୁଦ୍ଧରେ ଦଣ୍ଡାୟମାନ ହୋଇପାରି ନ ଥିଲେ । ତାହାଙ୍କୁ ପରାଜିତ କରି ଖାରବେଳ ସୁଦୂର କୃଷ୍ଣାନଦୀ ପର୍ଯ୍ୟନ୍ତ କଳିଙ୍ଗର ବିଜୟୀ ବାହିନୀକୁ ନେଇଯାଇଥିଲେ । କୃଷ୍ଣାନଦୀ କୂଳରେ ପହଞ୍ଚି ଖାରବେଳ ସେ ଅଞ୍ଚଳ ଅଧିବାସୀ ମୂଷିକ ନାମଧେୟ ଦାକ୍ଷିଣାତ୍ୟର ଏକ ଜାତିବିଶେଷ ଉପରେ ଆକ୍ରମଣ ଚଳାଇ ସେମାନଙ୍କର ରାଜନଗରୀକୁ ତ୍ରାସ ଦେଇଥିଲେ । ଏହି ମୂଷିକମାନେ ଅତୀତ କାଳର ଏକ ଉନ୍ନତ ଜାତି । କୃଷ୍ଣାନଦୀର ଉର୍ବର ଉପତ୍ୟକାରେ ବସବାସ କରି ସେମାନେ ଅତ୍ୟନ୍ତ ସମୃଦ୍ଧିଶାଳୀ ଥିଲେ । ପୁରାଣମାନଙ୍କରୁ ଏମାନଙ୍କର ଶକ୍ତି ସମ୍ବନ୍ଧରେ

1. Prof. Radha Kumud Mukherji and Beni Madhab Barua.

ବହୁ ବିଷୟ ଜଣାଯାଏ । ଏପରି ଏକ ଶକ୍ତିଶାଳୀ ଜାତିକୁ ପରାଜିତ କରି ଖାରବେଳ କୃଷ୍ଣାବେଣୀ ପର୍ଯ୍ୟନ୍ତ ନିଜର ପ୍ରଭୁତ୍ୱ ବିସ୍ତାର କରିପାରିଥିଲେ । ଏକ ବର୍ଷ କାଳ ସୁଦୂର ଦାକ୍ଷିଣାତ୍ୟରେ ଅଭିଯାନ ଚଳାଇ ଶେଷରେ ଖାରବେଳ ନିଜ ରାଜଧାନୀକୁ ଫେରି ଆସିଥିଲେ ।

ଦାକ୍ଷିଣାତ୍ୟ ପ୍ରତ୍ୟାଗତ ସମ୍ରାଟ ରାଜତ୍ୱର ତୃତୀୟ ବର୍ଷରେ ଅନ୍ଧ୍ର ସାତବାହନ ଏବଂ ମୂସିକମାନଙ୍କ ଉପରେ ତାହାଙ୍କର ଯେଉଁ ବିଜୟ ଲାଭ ହୋଇଥିଲା କଳିଙ୍ଗ ରାଜଧାନୀରେ ତାହାର ଉତ୍ସବ ଯଥାଯୋଗ୍ୟଭାବରେ ପାଳନ କରିଥିଲେ । ସଙ୍ଗୀତ ନୃତ୍ୟ ଓ ବାଦ୍ୟ ଭାରତୀୟ ସଂସ୍କୃତିର ଏକ ପ୍ରଧାନ ଅଙ୍ଗ । ପ୍ରାଚୀନ ଭାରତର ରାଜା ସମ୍ରାଟମାନେ ଚିରଦିନ ଏହି କଳାର ପୃଷ୍ଠପୋଷକତା କରୁଥିଲେ । ହାତି-ଗୁମ୍ଫା ଲେଖାରୁ ଜଣାଯାଏ ଯେ ଖାରବେଳ ନିଜେ ଗନ୍ଧର୍ବ ବିଦ୍ୟାରେ ନିପୁଣ ଥିଲେ । ଭାରତର ଅନ୍ୟ ଜଣେ ନରପତି ଗୁପ୍ତସମ୍ରାଟ ସମୁଦ୍ରଗୁପ୍ତ ମଧ୍ୟ ଗନ୍ଧର୍ବ-ବିଦ୍ୟାରେ ନିଜେ ଧୁରନ୍ଧର ଥିଲେ । ଖାରବେଳ ଏବଂ ସମୁଦ୍ରଗୁପ୍ତଙ୍କର ଏହି କଳା ସେମାନଙ୍କର ବହୁମୁଖୀ ପ୍ରତିଭା ଓ ସଂସ୍କୃତିର ପରିଚୟ ଦିଏ । ଯେ ଯାହାହେଉ, ରାଜନଗରୀର ତଥା ସୈନ୍ୟସାମନ୍ତଙ୍କର ପରିତୃପ୍ତି ପାଇଁ ଖାରବେଳ ନାନା ପ୍ରକାର ଉତ୍ସବ ନୃତ୍ୟ ଗୀତ ଇତ୍ୟାଦିର ଆୟୋଜନ କରିଥିଲେ ଏବଂ ରାଜତ୍ୱର ତୃତୀୟ ବର୍ଷ ସର୍ବସାଧାରଣଙ୍କ ଆମୋଦ ପ୍ରମୋଦ ମଧ୍ୟରେ କଟାଇଥିଲେ ।

ରାଜତ୍ୱର ଚତୁର୍ଥ ବର୍ଷ ଆରମ୍ଭରେ ସଙ୍ଗୀତ ବାଦ୍ୟ ପରିବର୍ତ୍ତେ ଯୁଦ୍ଧଭେରୀ ବାଜି ଉଠିଥିଲା । ବର୍ଷର ପ୍ରଥମରେ ସମ୍ରାଟ ବିଦ୍ୟାଧରମାନଙ୍କ ରାଜ୍ୟରେ ଚିରନ୍ତନ ଭେଦ ଶାସନ ପ୍ରଣାଳୀ ପ୍ରଚଳନ କରାଇଥିଲେ । ତା'ପରେ ବିନ୍ଧ୍ୟ ପର୍ବତ ଶ୍ରେଣୀର ଦୁର୍ଗମ ଅଞ୍ଚଳମାନଙ୍କ ଉଦ୍ଦେଶ୍ୟରେ ଖାରବେଳଙ୍କ ଯୁଦ୍ଧଯାତ୍ରା ପରିଚାଳିତ ହୋଇ-ଥିଲା । ବିନ୍ଧ୍ୟ ପାର୍ବତ୍ୟାଞ୍ଚଳରେ ବାସ କରୁଥିବା ରାଷ୍ଟ୍ରିକ ଏବଂ ଭୋଜକମାନେହିଁ ଥିଲେ ସମ୍ରାଟଙ୍କର ଲକ୍ଷ୍ୟବସ୍ତୁ । ରାଷ୍ଟ୍ରିକ ଏବଂ ଭୋଜକମାନେ ମହାରଥୀ ଏବଂ ମହାଭୋଜ ନାମରେ ମଧ୍ୟ ଖ୍ୟାତ । ଏହି ଜାତିଦ୍ୱୟ ଦାକ୍ଷିଣାତ୍ୟର ଅତି ଶକ୍ତିଶାଳୀ ଜାତି ଥିଲେ ଏବଂ ଏମାନଙ୍କର ନାମ ପୁରାଣମାନଙ୍କରେ ତଥା ଅଶୋକଙ୍କ ଅନୁଶାସନମାନଙ୍କରେ ବହୁବାର ଉଲ୍ଲିଖିତ ହୋଇଥିବାର ଦେଖିବାକୁ ମିଳେ । ଏହି ଦୁଇ ଜାତିକୁ ଯୁଦ୍ଧରେ ପରାଜିତ କରି ସେମାନଙ୍କର ଶକ୍ତିକୁ ସମ୍ପୂର୍ଣ୍ଣରୂପେ

ଧ୍ୱଂସ କରିବା ଦ୍ୱାରା ଖାରବେଳ ସ୍ୱଶକ୍ତିର ଅଦ୍ଭୁତ ପରିଚୟ ଦେଇଥିଲେ । ହାତିଗୁମ୍ଫା ପ୍ରଶସ୍ତିରେ ରଥ୍ତିକ ଏବଂ ଭୋଜକମାନଙ୍କର ପରାଜୟ ବିଷୟ ଯେପରି-ଭାବେ ବର୍ଣ୍ଣିତ ହୋଇଅଛି ସେଥିରୁ ସହଜରେ ଅନୁମାନ କରାଯାଇ ପାରେ ଯେ ସେ ଦୁଇଟି ଜାତିର ଶକ୍ତି ସମ୍ପୂର୍ଣ୍ଣରୂପେ ଧ୍ୱସ୍ତ ବିଧ୍ୱସ୍ତ କରି ଦିଆଯାଇଥିଲା । ଉଭୟହସ୍ତ ସେ ଜାତିଦ୍ୱୟକୁ ଯୁଦ୍ଧରେ ଛିନ୍ନ ଭିନ୍ନ କରିଦିଆଯାଇଥିଲା, ସେମାନଙ୍କର ସମସ୍ତ ଧନରତ୍ନ ଅପହୃତ ହୋଇଥିଲା ଏବଂ ଶେଷରେ ସେମାନଙ୍କୁ ମହାରାଜା ଖାରବେଳଙ୍କ ଚରଣ ବନ୍ଦନା କରିବାକୁ ହୋଇଥିଲା ।

ରାଜତ୍ୱର ପଞ୍ଚମ ବର୍ଷରେ ଯୁଦ୍ଧଶ୍ରାନ୍ତ ସୈନ୍ୟ ସେନାମାନଙ୍କୁ ବିଶ୍ରାମ ଦିଆ-ଯାଇଥିଲା । ଭାରତର ଅନ୍ୟ ଅଞ୍ଚଳମାନଙ୍କୁ ଦିଗ୍‌ବିଜୟ ପରିଚାଳନା ନ କରି ଏହି ବର୍ଷ ଖାରବେଳ ରାଜ୍ୟ ମଧ୍ୟରେ ଲୋକହିତକର କାର୍ଯ୍ୟ କରିବାରେ ସମୟ ବ୍ୟୟ କରିଥିଲେ । ବହୁବର୍ଷ ପୂର୍ବେ କଳିଙ୍ଗରେ ମହାରାଜନନ୍ଦଙ୍କ ଦ୍ୱାରା ଖୋଳା ଯାଇଥିବା କେନାଲଟିର ମରାମତି କରାଯାଇଥିଲା ଏବଂ ସେ କେନାଲକୁ କଳିଙ୍ଗର ରାଜଧାନୀ ପର୍ଯ୍ୟନ୍ତ ବିସ୍ତାର କରାଯାଇଥିଲା । ଏହି ଖନନ କାର୍ଯ୍ୟରେ ରାଜସ୍ୱରୁ ଏକ ଲକ୍ଷ ମୁଦ୍ରା ବ୍ୟୟିତ ହୋଇଥିଲା ।

ରାଜତ୍ୱର ଷଷ୍ଠ ବର୍ଷରେ ଖାରବେଳ ରାଜସୂୟ ଯଜ୍ଞ ସମ୍ପାଦନ କରିଥିଲେ । ପ୍ରାଚୀନ ଭାରତରେ କେବଳ ଦିଗ୍‌ବିଜୟୀ ମହାବୀରମାନେହିଁ ରାଜସୂୟ ପର୍ବ ଉତ୍ସବ ପାଳନ କରିବାକୁ ସମର୍ଥ ହେଉଥିଲେ । ଯେଉଁ ନରପତି ଏ ଉତ୍ସବ ପାଳନ କରିପାରୁଥିଲେ ସେ ନିଶ୍ଚୟ ଅନ୍ୟାନ୍ୟ ବହୁ ନରପତିଙ୍କୁ ଯୁଦ୍ଧରେ ପରାଜୟ କରି ସେମାନଙ୍କର ବଶ୍ୟତା ଗ୍ରହଣ କରିଥିବାର ନିଶ୍ଚିତ । କାରଣ ରାଜସୂୟ ଉତ୍ସବର ଅର୍ଥ ନିଜ ବିଜୟବାର୍ତ୍ତା ପୃଥିବୀ ପୃଷ୍ଠରେ ଘୋଷଣା କରିବା ଏବଂ ବିଜିତ ରାଜା-ମାନଙ୍କ ପାଖରୁ ସମ୍ରାଟୋଚିତ ସମ୍ମାନ ଗ୍ରହଣ କରିବା । ଦାକ୍ଷିଣାତ୍ୟ ଏବଂ ବିନ୍ଧ୍ୟା-ଚଳର ବହୁ ନରପତିଙ୍କୁ ପରାଜିତ କରିଥିବା ହେତୁ ଖାରବେଳ ବର୍ତ୍ତମାନ ରାଜରାଜେଶ୍ୱର ହୋଇ ପାରିଥିଲେ ଏବଂ ସେଥିପାଇଁ ଏକ ରାଜସୂୟ ଉତ୍ସବ ପାଳନ କରିବାକୁ ସମର୍ଥ ଥିଲେ । ଖାରବେଳଙ୍କର ରାଜସୂୟ ଉତ୍ସବ ତାହାଙ୍କର ଶକ୍ତି ଏବଂ ଖ୍ୟାତିର ଅପର ଏକ ଜ୍ୱଳନ୍ତ ନିଦର୍ଶନ । ରାଜସୂୟ ଉତ୍ସବ ପରେ ଖାରବେଳ ପ୍ରଜାରଞ୍ଜନ ପାଇଁ ବର୍ଷର ଅବଶିଷ୍ଟ ସମୟ ବ୍ୟୟ କରିଥିଲେ । ପ୍ରଜାମାନଙ୍କୁ ବହୁ

ପ୍ରକାରର ଗୃହଦ୍ୱାର ଓ ପଥ ଇତ୍ୟାଦିକୁ ଅବ୍ୟାହତ ଦିଆଯାଇଥିଲା ଏବଂ ଏପରି କାର୍ଯ୍ୟଦ୍ୱାରା ରାଜସ୍ୱରୁ ଶତ ସହସ୍ର ମୁଦ୍ରାର କ୍ଷତି ସ୍ୱୀକାର କରାଯାଇଥିଲା ।

ରାଜତ୍ୱର ସପ୍ତମ ବର୍ଷରେ ଖାରବେଳ ତାହାଙ୍କ ଦେଶବାସୀଙ୍କ ଦର୍ଶନାର୍ଥେ ଏକ ବିରାଟ ସମର ପ୍ରଦର୍ଶନୀ ଅନୁଷ୍ଠିତ କରିଥିଲେ । ଏହି ପ୍ରଦର୍ଶନୀରେ ଯୁଦ୍ଧ-ବିଦ୍ୟାର ବିଭିନ୍ନ କଳା କୌଶଳ, ସୈନ୍ୟ ଚାଳନା, ଅସିଯୁଦ୍ଧ, ଏବଂ ହସ୍ତୀ, ଗଜ, ରଥ ପୃଷ୍ଠରେ ଯୁଦ୍ଧ ଇତ୍ୟାଦି ଲୋକମାନଙ୍କୁ ଦେଖାଇଥିଲେ । ରାଜ୍ୟର ସାମରିକ ଶକ୍ତିର ଏପରି ଏକ ପ୍ରଦର୍ଶନୀ ଦେଖାଇବା କେବଳ ଖାରବେଳଙ୍କ ପରି ଜଣେ ମହା-ବୀରଙ୍କ ପକ୍ଷରେ ସମ୍ଭବ ହୋଇଥିଲା । ଏତଦ୍ଦ୍ୱାରା ତାହାଙ୍କର ଶକ୍ତି ଉପରେ ଦେଶ-ବାସୀଙ୍କର ସମ୍ପୂର୍ଣ୍ଣ ଆସ୍ଥା ଆସିଥିବ ଏବଂ କଳିଙ୍ଗର ବହିଃଶତ୍ରୁମାନଙ୍କ ମନରେ ଆତଙ୍କ ସୃଷ୍ଟି ହୋଇଥିବ ।

ରାଜତ୍ୱର ଅଷ୍ଟମ ବର୍ଷ କଳିଙ୍ଗ ଇତିହାସରେ ଚିରସ୍ମରଣୀୟ । ଏହିବର୍ଷ କଳିଙ୍ଗର ଯୁଦ୍ଧଭେରୀ ଉତ୍ତରାପଥମୁଖେ ଗର୍ଜନ କରିଉଠିଥିଲା । ଯେଉଁ ଦିନରୁ ନନ୍ଦବଂଶ ଏବଂ ମୌର୍ଯ୍ୟବଂଶ ଅଧୀନରେ ମଗଧୀୟ ସାମ୍ରାଜ୍ୟବାଦ କଳିଙ୍ଗର ସୁଖ ସମୃଦ୍ଧି ସ୍ୱାଧୀନତା ଉପରେ ଲୋଲୁପ ଦୃଷ୍ଟିପାତ କରିଥିଲା ସେହି ଦିନରୁ ମଗଧ ବିରୁଦ୍ଧରେ କଳିଙ୍ଗ-ବାସୀଙ୍କର ଈର୍ଷା ଏକ ଐତିହାସିକ ସତ୍ୟରେ ପରିଣତ ହୋଇ ରହିଥିଲା । ଅଶୋକଙ୍କ ଅଧୀନରେ ମଗଧବାସୀମାନଙ୍କ ଦ୍ୱାରା କଳିଙ୍ଗ ବକ୍ଷରେ ଯେଉଁ ରକ୍ତପାତ ସୃଷ୍ଟି କରାଯାଇଥିଲା ତାହା କଳିଙ୍ଗବାସୀଙ୍କ ହୃଦୟରେ ଚିରଦିନ ଏକ ଅଲିଭା ସ୍ମୃତିରୂପେ ରହିଯାଇଥିଲା । ଅବଶ୍ୟ ଅଶୋକଙ୍କ ପ୍ରତି କଳିଙ୍ଗବାସୀମାନେ ଅନୁରକ୍ତ ହୋଇ ପଡ଼ିଥିଲେ କିନ୍ତୁ ମଗଧବାସୀଙ୍କ ପ୍ରତି ନୁହେଁ । ଅଶୋକଙ୍କ ମୃତ୍ୟୁପରେ କଳିଙ୍ଗ ଏବଂ ମଗଧ ମଧ୍ୟରେ ଈର୍ଷା ଭାବ ଶତଗୁଣେ ବଢ଼ିଉଠିଥିଲା ଏଥିରେ ସନ୍ଦେହ ନାହିଁ । ପ୍ରଥମେ ଦୁଇ ଶକ୍ତିଶାଳୀ ରାଜ୍ୟ ପରସ୍ପର ସୀମାସ୍ପର୍ଶ କରି ରହିବା ଅର୍ଥ ପରସ୍ପର ପ୍ରତି ଈର୍ଷାପରବଶ ହେବା । ଦ୍ୱିତୀୟରେ, କଳିଙ୍ଗ ମଗଧ ସାମ୍ରାଜ୍ୟରୁ ସ୍ୱାଧୀନ ହେବାଦ୍ୱାରା ମଗଧୀୟମାନେ କଳିଙ୍ଗବାସୀଙ୍କ ପ୍ରତି ଅଧିକ ଈର୍ଷାପରାୟଣ ହୋଇ ପଡ଼ିଥିବେ । ତୃତୀୟରେ, ଠିକ୍ ସେହିପରି ପରାଧୀନତାର ପ୍ରତିଶୋଧ ନେବା ପାଇଁ କଳିଙ୍ଗବାସୀମାନେ ସ୍ୱତଃ ମଗଧୀୟମାନଙ୍କ ବିରୁଦ୍ଧରେ ଈର୍ଷାପୋଷଣ କରିଥିଲେ । କଳିଙ୍ଗରେ ଚେତ ରାଜବଂଶର ଅଭ୍ୟୁତ୍ଥାନଦ୍ୱାରା କଳିଙ୍ଗବାସୀଙ୍କର ମଗଧ ପ୍ରତି

ପ୍ରତିଶୋଧର ଇଚ୍ଛା ପ୍ରବଳ ହୋଇ ଉଠିଥିବ । ଖାରବେଳଙ୍କର ଅଭିଯାନ ଯେ ଦିନେ ମଗଧ ଅଭିମୁଖରେ ନିଶ୍ଚୟ ପରିଚାଳିତ ହେବ, ଏହା ସ୍ୱତଃସିଦ୍ଧ ଥିଲା । ଅଶୋକଙ୍କ ମୃତ୍ୟୁପରଠାରୁ ଖାରବେଳଙ୍କ ରାଜତ୍ୱ ପର୍ଯ୍ୟନ୍ତ କଳିଙ୍ଗ ସତେ ଯେପରି କେବଳ ପ୍ରତିଶୋଧ ପାଇଁ ପ୍ରସ୍ତୁତ ହେଉଥିଲା ଏବଂ ନବୀନ ଉଦ୍ୟମରେ ନିଜର ଶକ୍ତି ବୃଦ୍ଧି କରୁଥିଲା । ଯେତେବେଳେ କଳିଙ୍ଗର ଏହିପରି ଉତ୍ଥାନ, ସେତେବେଳେ ମଗଧ ଥିଲା ଅଧୋଗତି ମୁଖରେ । ମଗଧର ଅଧଃପତନ କଳିଙ୍ଗ ପକ୍ଷରେ ସୁବର୍ଣ୍ଣ ସୁଯୋଗ ସୃଷ୍ଟି କରିଥିଲା । ଖାରବେଳଙ୍କ ସିଂହାସନାରୋହଣ ସଙ୍ଗେ ସଙ୍ଗେ ମଗଧ ବିରୁଦ୍ଧରେ କଳିଙ୍ଗର ଯୁଦ୍ଧଯାତ୍ରା ଆରମ୍ଭ ହୋଇ ଥାଆନ୍ତା । କିନ୍ତୁ ଦାକ୍ଷିଣାତ୍ୟରେ ଆନ୍ଧ୍ର-ସାତବାହନ ଶକ୍ତି ପ୍ରବଳ ହୋଇ ଉଠିଥିବା ଯୋଗୁଁ ପ୍ରଥମେ ଖାରବେଳଙ୍କ ଦୃଷ୍ଟି ଦକ୍ଷିଣକୁ ଆକର୍ଷିତ ହୋଇଥିଲା । ତେଣୁ ମଗଧ ବିରୁଦ୍ଧରେ ଯୁଦ୍ଧଯାତ୍ରା କିଛିଦିନ ପାଇଁ ସ୍ଥଗିତ ହୋଇଥିଲା । ଆନ୍ଧ୍ରସାତବାହନ ଶକ୍ତି ନଷ୍ଟ କରି ଖାରବେଳ ସଙ୍ଗେ ସଙ୍ଗେ ଉତ୍ତରକୁ ଆସିପାରି ନ ଥିଲେ, କାରଣ ଦକ୍ଷିଣରେ ଅନ୍ୟ ଶକ୍ତିମାନଙ୍କ ସହିତ ତାହାଙ୍କର ସଂଘର୍ଷ ଅବଶ୍ୟମ୍ଭାବୀ ହୋଇ ପଡ଼ିଥିଲା । ରାଜତ୍ୱର ପ୍ରଥମ ସାତ ବର୍ଷ ଏହିପରି ଭାବରେ କଳିଙ୍ଗର ରାଜଶକ୍ତି ସୁଦୂର ଦକ୍ଷିଣରେ ଯୁଦ୍ଧରତ ରହିଲା । ଏହି ସମୟ ମଧ୍ୟରେ ଦକ୍ଷିଣର ବଡ଼ ବଡ଼ ଶକ୍ତିମାନଙ୍କୁ କଳିଙ୍ଗ ରାଜଦଣ୍ଡ ତଳେ ମସ୍ତକ ନତ କରିବାକୁ ହୋଇଥିଲା ଏବଂ ଏହା ଫଳରେ ଖାରବେଳ ଦକ୍ଷିଣର ସର୍ବଶ୍ରେଷ୍ଠ ସମ୍ରାଟରୂପେ ପରିଗଣିତ ହୋଇଥିଲେ । ଦକ୍ଷିଣରେ ବିଜୟ ହାସଲ କରି ଖାରବେଳ ଯେତେବେଳେ ନିଶ୍ଚିତ ହୋଇ ପାରିଥିଲେ ଯେ ଭାରତର ସେହି ଦିଗରୁ ତାହାଙ୍କ ବିରୁଦ୍ଧରେ କୌଣସି ବିପଦର ଆଉ ଆଶଙ୍କା ନ ଥିଲା ସେତେବେଳେ ସେ ତାହାଙ୍କର ବିଜୟ ବାର୍ତ୍ତା ଭାରତକୁ ଜଣାଇ ଦେବା ପାଇଁ ମହାସମାରୋହରେ ରାଜସୂୟ ଉତ୍ସବ ସମ୍ପାଦନ କରିଥିଲେ । ଏହାପରେ ସ୍ୱସମରଶକ୍ତିର ପ୍ରକୃତ ପରିଚୟ ଦେବା ଉଦ୍ଦେଶ୍ୟରେ ହୁଏତ ସମ୍ରାଟ ଏକ ସାମରିକ ପ୍ରଦର୍ଶନୀର ବନ୍ଦୋବସ୍ତ କରିଥିଲେ । ଏହିପରି ସବୁଦିଗରୁ ନିଶ୍ଚିନ୍ତ ହୋଇ ଏବଂ ସ୍ୱଶକ୍ତିର ଯଥେଷ୍ଟ ପରିଚୟ ପାଇ ରାଜତ୍ୱର ଅଷ୍ଟମ ବର୍ଷର ଆରମ୍ଭରେ କଳିଙ୍ଗ ସମ୍ରାଟ ମହାମେଘବାହନ ଖାରବେଳ ତାହାଙ୍କର ଯୁଦ୍ଧ ପିପାସୁ ସୈନ୍ୟବାହିନୀ ଉତ୍ତରାପଥ ଅଭିମୁଖରେ ଚାଳିତ କରାଇଥିଲେ । ଅତୀତର ଜଣେ କ୍ରୋଧାନ୍ୱିତ ଅଶୋକଙ୍କ ପରି ଯିଏ ମୌର୍ଯ୍ୟ ସାମ୍ରାଜ୍ୟର ବିରାଟ ଶକ୍ତି ସହ କଳିଙ୍ଗ ଅଭିମୁଖରେ ଧ୍ୱଂସଯାତ୍ରା ଚଳାଇଥିଲେ, ଦୁର୍ଦ୍ଧର୍ଷ ଖାରବେଳ ବର୍ତ୍ତମାନ କଳିଙ୍ଗର

ଅଗଣିତ ସୈନ୍ୟସହ ମଗଧ ବକ୍ଷରେ ସନ୍ତ୍ରାସ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଆଗେଇ ଯାଇଥିଲେ । ସତେ ଯେପରି ଅଶୋକଙ୍କ କଳିଙ୍ଗ ଯୁଦ୍ଧ ବର୍ତ୍ତମାନ ବିପରୀତ ଗତିରେ ଯାତ୍ରା କରିଥିଲା । ଇତିହାସର ନିଷ୍ଠୁର ନିର୍ଦ୍ଦେଶରେ ମଗଧ ବର୍ତ୍ତମାନ କଳିଙ୍ଗ ଦେଶର ଆକ୍ରମଣ ପାଇଁ ସମୟ ଅପେକ୍ଷା କରିଥିଲା ମାତ୍ର । ଯେଉଁ ବିଜୟୀ ମଗଧ ସମ୍ମୁଖରେ ଦିନେ ବିଜିତ କଳିଙ୍ଗ ଏକ ଅଧୀନ ପ୍ରଦେଶରୂପେ ଅବସ୍ଥାନ କରୁଥିଲା ସେହି କଳିଙ୍ଗ ସମ୍ମୁଖରେ ଆଜି ମଗଧ ଥିଲା ଆକ୍ରମଣର ବସ୍ତୁ । ଅନତି-ବିଳମ୍ବେ ମହାମେଘବାହନ ସମ୍ରାଟଙ୍କର ସୈନ୍ୟସେନା ମଗଧର ସୀମା ମଧ୍ୟରେ ପ୍ରବେଶ କରିଥିଲେ । ମଗଧୀୟ ବାହିନୀ ଗୋରଥଗିରି ନାମକ ସ୍ଥାନରେ (ଗୟା ଜିଲ୍ଲାର ବାରବାର ପର୍ବତ) କଳିଙ୍ଗ ସେନାକୁ ଅପେକ୍ଷା କରିଥିଲେ । ଗୋରଥଗିରି ଥିଲା ମଗଧ ସୀମାନ୍ତର ଏକ ସୁଦୃଢ଼ ଦୁର୍ଗ ଏବଂ ଏହି ଦୁର୍ଗ ମଗଧର ପ୍ରାଚୀନ ରାଜଧାନୀ ରାଜଗୃହ ନଗରୀର ଦ୍ୱାରଦେଶରେ ଅବସ୍ଥିତ ରହି ସେହି ନଗରୀକୁ ସଦାସର୍ବଦା ଜଗି ରହିଥିଲା । ଖାରବେଳ ପ୍ରଥମେ ମଗଧୀୟ ସୈନ୍ୟବଳ ଉପରେ ଏହି ଗୋରଥଗିରି ନିକଟରେ ଆକ୍ରମଣ ଚଳାଇଥିଲେ । ଅଳ୍ପ ସମୟ ମଧ୍ୟରେ ଗୋରଥଗିରି ଅଧିକୃତ ହୋଇଥିଲା ଏବଂ ମଗଧସେନା ଛତ୍ରଭଙ୍ଗ ହୋଇଥିଲେ । ଗୋରଥଗିରି ଅଧିକାର ପରେ ମଗଧର ପ୍ରାଚୀନ ରାଜଧାନୀ ରାଜଗୃହ ଉଦ୍ଦେଶ୍ୟରେ ବିଜୟୀଙ୍କ ପାଇଁ ପଥ ଉନ୍ମୁକ୍ତ ହୋଇଯାଇଥିଲା । ଏହି ରାଜଗୃହ ବହୁକାଳ ଧରି ପ୍ରାଚୀନ ମଗଧର ରାଜଧାନୀ ଥିଲା ଏବଂ ଏହି ମହା-ନଗରୀରେ ମଗଧର କେତେ କେତେ ପୌରାଣିକ ଏବଂ ଐତିହାସିକ ରାଜା ସମ୍ରାଟ ରାଜତ୍ୱ କରି ଯାଇଥିଲେ । ମଗଧ ସାମ୍ରାଜ୍ୟର ଏପରି ଏକ ବିଖ୍ୟାତ ନଗରୀ ଅଧିକାର କରିବା ଦ୍ୱାରା ଖାରବେଳ ପ୍ରମାଣ କରିଥିଲେ ଯେ ସୁଙ୍ଗରାଜବଂଶ ସେ ସାମ୍ରାଜ୍ୟ ରକ୍ଷା କରିବା ପାଇଁ ସମ୍ପୂର୍ଣ୍ଣ ଅନୁପଯୁକ୍ତ ଥିଲା । ଆମ୍ଭେମାନେ ଜାଣୁ ନାହିଁ ତତ୍କାଳୀନ ସୁଙ୍ଗ ସମ୍ରାଟ ଖାରବେଳଙ୍କ ଅଗ୍ରଗତିରେ ବାଧା ଦେବା ପାଇଁ ରାଜଗୃହଠାରେ ପ୍ରବଳ ଯୁଦ୍ଧ କରିଥିଲେ କି ନାହିଁ । ବୋଧହୁଏ ମଗଧ ସେନା ସେପରି ଏକ ପ୍ରବଳ ପ୍ରତିରୋଧ କରି ନ ଥିଲେ ଏବଂ ତେଣୁ ରାଜଗୃହ ଅନାୟାସରେ ଅଧିକୃତ ହୋଇଥିଲା । ରାଜଗୃହର ପତନ ଦ୍ୱାରା ମଗଧର ଦୁର୍ବଳତା ନିଃସନ୍ଦେହରୂପେ ପ୍ରମାଣିତ ହୋଇଥିଲା ଏବଂ ଏହା ପରେ ଖାରବେଳଙ୍କ ସମ୍ମୁଖରେ ତତ୍କାଳୀନ ମଗଧ-ରାଜଧାନୀ ପାଟଳିପୁତ୍ର ପ୍ରତି ରାସ୍ତା ପରିଷ୍କାର ଦେଖା ଯାଇଥିଲା । କିନ୍ତୁ ମଗଧ ରାଜଧାନୀ ପାଟଳିପୁତ୍ରର ଦ୍ୱାରଦେଶରେ କଳିଙ୍ଗ-

ବାହିନୀ ଉପନୀତ ହେବା ପୂର୍ବରୁ ଖାରବେଳଙ୍କ ସମ୍ମୁଖରେ ଅପର ଏକ ବିରାଟ ସମସ୍ୟା ଉପସ୍ଥିତ ହୋଇଥିଲା । ଏହା ହେଉଛି ଭାରତ ଉପରେ ବୈଦେଶିକ ଗ୍ରୀକ୍ ଆକ୍ରମଣ । ଯେତେବେଳେ ପାଟଳିପୁତ୍ରର ପୂର୍ବ ଦିଗରୁ ଖାରବେଳ ଉତ୍ତର ଭାରତର ସେହି ମହାନଗରୀ ଅଭିମୁଖରେ ଅଗ୍ରସର ହେଉଥିଲେ ଠିକ୍ ସେତିକବେଳେ ପାଟଳିପୁତ୍ରର ପଶ୍ଚିମ ଦିଗରୁ ଗ୍ରୀକ୍ ସମ୍ରାଟ ଡେମିଟ୍ରିୟୁସ୍ ମଧ୍ୟ ସେହି ନଗରୀ ଅଭିମୁଖରେ ମାଡ଼ିଆସୁଥିଲେ । ଡେମିଟ୍ରିୟୁସ ତଦାନୀନ୍ତନ ମଧ୍ୟ-ପ୍ରାଚ୍ୟର ସର୍ବଶ୍ରେଷ୍ଠ ଗ୍ରୀକ୍ ନରପତି । ସେ ଥିଲେ ସୁପ୍ରସିଦ୍ଧ ଗ୍ରୀକ୍ ସମ୍ରାଟ ଇଉଥିଡେମସ୍‌ଙ୍କ ବଂଶଧର ଏବଂ ତାହାଙ୍କ ଅଧୀନରେ ମଧ୍ୟ-ଏସିଆର ଅଗଣିତ ଗ୍ରୀକ୍ ଏବଂ ପାରସ୍ୟବାସୀମାନେ ସୈନ୍ୟରୂପେ କାର୍ଯ୍ୟ କରୁଥିଲେ । ଏହାଙ୍କ ଶକ୍ତି ବିଷୟରେ ବହୁକଥା ପ୍ରାଚୀନ ଗ୍ରନ୍ଥମାନଙ୍କରୁ ଜଣାଯାଏ । ଏପରି ଏକ ବୈଦେଶିକ ଆକ୍ରମଣକାରୀ ଭାରତର ଉତ୍ତର-ପଶ୍ଚିମାଞ୍ଚଳ ଅଧିକାର କରି ଏବଂ ସମଗ୍ର ସିନ୍ଧୁ ଉପତ୍ୟକା ଉପରେ ଅଧିକାର ବିସ୍ତାର କରି ସୁଦୂର ପାଟଳିପୁତ୍ର ପର୍ଯ୍ୟନ୍ତ ମାଡ଼ି ଆସିଥିଲେ । ଏ ଥିଲା ଏକ ଘଡ଼ିସନ୍ଧିବେଳ ଯେତେବେଳେ ଏକ ଲକ୍ଷ୍ୟସ୍ଥଳୀ ଉଦ୍ଦେଶ୍ୟରେ ସେ ଯୁଗର ଦୁଇଜଣ ଶ୍ରେଷ୍ଠ ଦିଗ୍‌ବିଜୟୀ ବିପରୀତ ଦିଗରୁ ଦ୍ରୁତଗତିରେ ଅଗ୍ରସର ହେଉଥିଲେ । ଏପରି ଏକ ଘଟଣାର ଗୁରୁତ୍ୱ ଖାରବେଳଙ୍କୁ ହୃଦୟଙ୍ଗମ କରିବାକୁ ଅଧିକ ସମୟ ଲାଗି ନ ଥିଲା । ସହସା ପାଟଳିପୁତ୍ର ଅଭିମୁଖରେ ଯାତ୍ରା ବନ୍ଦ କରି କଳିଙ୍ଗ ସମ୍ରାଟ ଗ୍ରୀକ୍‌ବାହିନୀ ଉପରେ ଆକ୍ରମଣ ଚଳାଇବାର ସିଦ୍ଧାନ୍ତ କରିଥିଲେ । ବୈଦେଶିକ ଆକ୍ରମଣ ମୁଖରେ ଖାରବେଳ ଅନୁଭବ କରିଥିଲେ ଯେ ସେ ମୁହୂର୍ତ୍ତରେ ତାହାଙ୍କର ଏକମାତ୍ର କର୍ତ୍ତବ୍ୟ ଥିଲା ଭାରତର ଶତ୍ରୁ ବିରୁଦ୍ଧରେ ଯୁଦ୍ଧ କରିବା ଏବଂ ନିଜ ନିଜ ମଧ୍ୟରେ ନୁହେଁ । ଭାରତୀୟ ଜାତୀୟତା ଦ୍ୱାରା ଅନୁପ୍ରାଣିତ ହୋଇ ଖାରବେଳ ପାଟଳିପୁତ୍ର ଅଭିମୁଖରେ ସହସା ଅଭିଯାନ ବନ୍ଦ କରିଥିଲେ ଏବଂ ଦ୍ରୁତଗତିରେ ଗ୍ରୀକ୍‌ମାନଙ୍କ ଉଦ୍ଦେଶ୍ୟରେ ସୈନ୍ୟ ଚାଳନା କରିଥିଲେ । ଭାରତ ଇତିହାସରେ ପୁଣି ଥରେ ଗ୍ରୀକ୍ ଏବଂ ଭାରତୀୟଙ୍କ ମଧ୍ୟରେ ଶକ୍ତି ପରୀକ୍ଷାର ବେଳ ଆସିଯାଇଥିଲା । କିନ୍ତୁ ଏପରି ଏକ ଚରମ ମୁହୂର୍ତ୍ତରେ ଗ୍ରୀକ୍ ସମ୍ରାଟ ଉପଲବ୍ଧି କରିପାରିଥିଲେ ଯେ ଦାକ୍ଷିଣାତ୍ୟର ଶ୍ରେଷ୍ଠ ସମ୍ରାଟ ଏବଂ ମଗଧବିଜୟୀ ଖାରବେଳଙ୍କ ସହ ଶକ୍ତି ପରୀକ୍ଷା କରିବା ସହଜ କଥା ନୁହେଁ । ସୁତରାଂ କାଳବିଳମ୍ବ ନ କରି ଡେମିଟ୍ରିୟୁସ ଅଧିକ ସମୟ ବ୍ୟୟ ନ କରି ସଙ୍ଗେ ସଙ୍ଗେ ପାଟଳିପୁତ୍ରର ପଶ୍ଚିମ ଦ୍ୱାରଦେଶରୁ ପଛଘୁଞ୍ଚା ଦେଇ

ଉତ୍ତର ଦିଗକୁ ଅପସରି ଯାଇଥିଲେ । ଏହାପରେ ଖାରବେଳଙ୍କ ପକ୍ଷରୁ ପ୍ରଥମ ଶର ନିକ୍ଷେପ ପାଇଁ ମଧ୍ୟ ଅପେକ୍ଷା କରିବାକୁ ଗ୍ରୀକ୍‌ମାନେ ସାହସ କରି ନ ଥିଲେ ଏବଂ ତୁରନ୍ତ ଗତିରେ ଉତ୍ତରକୁ ବହୁଦୂର ପର୍ଯ୍ୟନ୍ତ ପଳାୟନ କରିଥିଲେ । ହୁଏତ ଡେମିଟ୍ରିୟସଙ୍କ ମନରେ ତାହାଙ୍କ ପୂର୍ବପୁରୁଷ ସେଲିଉକାସଙ୍କର ଚନ୍ଦ୍ରଗୁପ୍ତଙ୍କ ହସ୍ତରେ ପରାଜୟ ଲାଭ କଥା ଉଦିତ ହୋଇଥିଲା । ଅଦୂର ଅତୀତର ସେପରି ଏକ ପରାଜୟ ଗ୍ରୀକ୍‌ମାନଙ୍କ ଭାଗ୍ୟରେ ପୁନର୍ବାର ନ ଘଟୁ, ଏଥି-ପାଇଁ ହୁଏତ ବୁଦ୍ଧିମାନ ଡେମିଟ୍ରିୟସ ଚତୁରତା ସହ ଖାରବେଳଙ୍କ ସହି ଶକ୍ତି ପରୀକ୍ଷା ପାଇଁ ଇଚ୍ଛା କରି ନ ଥିଲେ । ଦିନେ ଦିଗ୍‌ବିଜୟୀ ଅଲେକ୍‌ଜାଣ୍ଡାର ମଧ୍ୟ ଏହାପରି ଚତୁରତା ସହ ସମସାମୟିକ ନନ୍ଦ ସାମ୍ରାଜ୍ୟ ଆକ୍ରମଣ ନ କରି ଝେଲମ୍ କୂଳରୁ ସ୍ୱଦେଶକୁ ଫେରି ଯାଇଥିଲେ । କାରଣ ଅଲେକ୍‌ଜାଣ୍ଡର ଉତ୍ତମରୂପେ ଉପଲବ୍ଧି କରିପାରି ଥିଲେ ଯେ ଯଦି ପୁରୁଙ୍କ ଭଳି ଜଣେ ନଗଣ୍ୟ ଭାରତୀୟ ରାଜାଙ୍କର ଏତେ ଦର୍ପ, ଏତେ ସାହସ ଏବଂ ଏତେ ବୀରତ୍ୱ, ତେବେ ସେହି ଅନୁପାତରେ ସେ କାଳର ଭାରତ ସମ୍ରାଟ ନନ୍ଦଙ୍କର କେତେ ଶକ୍ତି ନ ଥିବ । ଗ୍ରୀକ୍ ଐତିହାସିକମାନେ କହନ୍ତି ଯେ ଅଲେକ୍‌ଜାଣ୍ଡାର ନନ୍ଦ ସାମ୍ରାଜ୍ୟ ଆକ୍ରମଣ କରିବାକୁ ଇଚ୍ଛୁକ ଥିଲେ, ମାତ୍ର ତାହାଙ୍କ ସୈନ୍ୟମାନେ ଅଧିକ ଦୂର ଅଗ୍ରସର ହେବାକୁ ଅନିଚ୍ଛା ପ୍ରକାଶ କରିବାରୁ ବାଧ୍ୟହୋଇ ତାହାଙ୍କୁ ଫେରିଯିବାକୁ ହୋଇଥିଲା । ସୈନ୍ୟଙ୍କ ଉପରେ ଦୋଷାରୋପ କରି ଅଲେକ୍‌ଜାଣ୍ଡାର ଭାରତରୁ ପଛଘୁଞ୍ଚା ଦେଇଛନ୍ତି; କିନ୍ତୁ ତାହାଙ୍କ ପରି ପ୍ରତାପଶାଳୀ ସେନାପତିଙ୍କ ଇଚ୍ଛା ବିରୁଦ୍ଧରେ ଯେ ଗ୍ରୀକ୍ ସୈନ୍ୟମାନେ ଦଣ୍ଡାୟମାନ ହେବାକୁ ସାହସ କରିଥିଲେ ଏହା ବିଶ୍ୱାସଯୋଗ୍ୟ ନୁହେଁ । ସେ ଯଦି ନନ୍ଦ ସାମ୍ରାଜ୍ୟ ଅଭିମୁଖେ ଅଗ୍ରସର ହେବାକୁ ଚାହିଁଥାଆନ୍ତେ ତେବେ ନିଶ୍ଚୟ ଅଗ୍ରସର ହୋଇ ପାରିଥାଆନ୍ତେ; କିନ୍ତୁ ଚତୁରତା ସହ ସେ ତାହା ଚାହିଁ ନ ଥିଲେ, କାରଣ ନନ୍ଦ ସମ୍ରାଟଙ୍କ ସହ ଯୁଦ୍ଧକରି ଏକ ଅନିଶ୍ଚିତ ଫଳଦ୍ୱାରା ନିଜ ସୁନାମ ଉପରକୁ କଳଙ୍କ ଆଣିବାକୁ ତାଙ୍କର ଇଚ୍ଛା ନ ଥିଲା । ଝେଲମ୍ କୂଳରୁ ଅଲେକ୍‌ଜାଣ୍ଡାରଙ୍କର ଅପ୍ରତ୍ୟାଶିତ ପ୍ରତ୍ୟା-ବର୍ତ୍ତନର ଐତିହାସିକ ପ୍ରହେଳିକା ମଧ୍ୟରୁ ଅନ୍ତତଃ ଏତିକି ଅନୁମାନ କରିବା ନିତାନ୍ତ ଅସଙ୍ଗତ ନୁହେଁ ବୋଲି ମୋର ଧାରଣା । ଏହା ସତ୍ୟ ହୋଇ ନ ପାରେ, କିନ୍ତୁ ଏହା ଅନୁମେୟ । ସେ ଯାହାହେଉ ଡେମିଟ୍ରିୟସ ମଧ୍ୟ ଯେ କୌଣସି କାରଣରୁ ହେଉ ଖାରବେଳଙ୍କ ସହ ଶକ୍ତି ପରୀକ୍ଷା କରିବା ପାଇଁ ଅଗ୍ରସର ହୋଇ

ନ ଥିଲେ । ପରନ୍ତୁ, ବୃହତରଙ୍ଗରେ ପଶ୍ଚାଦ୍‌ଗାମୀ ହୋଇ ସେ ସୁଦୂର ମଥୁରା ପର୍ଯ୍ୟନ୍ତ ଚାଲିଯାଇଥିଲେ ଏବଂ ସେଠାରେ ଆଶ୍ରୟ ନେଇଥିଲେ । କିନ୍ତୁ ଶତ୍ରୁର ଏପରି ଅପସରଣରେ ଖାରବେଳଙ୍କର କର୍ତ୍ତବ୍ୟ ଶେଷ ହୋଇ ନ ଥିଲା, କିମ୍ବା ତାହାଙ୍କ ପରି ପ୍ରକୃତ ମହାବୀରଙ୍କ ପକ୍ଷରେ ଶତ୍ରୁର ଅନୁସରଣ ନ କରିବା ମଧ୍ୟ ଅନ୍ୟାୟ ଥିଲା । ମଥୁରାର ବେଦୀ କକ୍ଷରେ ଭାରତ ଶତ୍ରୁ ଗ୍ରୀକ୍ ସମ୍ରାଟଙ୍କର ଅବସ୍ଥାନ ଖାରବେଳଙ୍କ ପକ୍ଷରେ ଅସହ୍ୟ ହୋଇ ପଡ଼ିଥିଲା । ସୁତରାଂ ଗଙ୍ଗା ଏବଂ ଯମୁନା କୂଳେ କୂଳେ କଳିଙ୍ଗ ବାହିନୀ ଆଗେଇ ଯାଇଥିଲେ ମଥୁରା ପର୍ଯ୍ୟନ୍ତ, କିନ୍ତୁ ମଥୁରାର ତୋରଣ ଦେଶରେ ଖାରବେଳଙ୍କ ଯୁଦ୍ଧଭେରୀ ବାଜି ଉଠିବା ପୂର୍ବରୁ ଗ୍ରୀକ୍‌ମାନେ ସେ ନଗରୀ ପରିତ୍ୟାଗ କରି ସିନ୍ଧୁନଦୀ ପଶ୍ଚିମକୁ ଚାଲିଯାଇଥିଲେ । ସମଗ୍ର ଉତ୍ତରାପଥରୁ ବୈଦେଶିକ ଆକ୍ରମଣକାରୀଙ୍କ ଚିହ୍ନ ଲୋପ ପାଇଯାଇଥିଲା । ଏହାପରେ ଭାବରେ ଖାରବେଳଙ୍କ ହସ୍ତରେ ଇଉଥିଡେମସ୍‌ଙ୍କ ପୁତ୍ର ଓ ଏଣ୍ଟିଓକାସ୍‌ଙ୍କ ଜାମାତା, ଗ୍ରୀକ୍ ଜଗତର ଜଣେ ଖ୍ୟାତନାମା ବୀର ଡେମିଟ୍ରିୟୁସଙ୍କୁ ଲାଞ୍ଛିତ ହେବାକୁ ହୋଇଥିଲା । ଶତ୍ରୁ ମଥୁରାରୁ ଆଗରୁ ଅପସରି ଯାଇଥିଲା ଏବଂ ତାହା ପରେ ପରେ ଖାରବେଳ ସେହି ନଗରୀ ମଧ୍ୟରେ ପ୍ରବେଶ କରିଥିଲେ । ବର୍ତ୍ତମାନ ସମଗ୍ର ଉତ୍ତରାପଥ ଖାରବେଳଙ୍କ ରାଜଦଣ୍ଡ ତଳେ ଆଶ୍ରୟ ନେଇଥିଲା । ଭାରତରେ ଖାରବେଳଙ୍କ ବ୍ୟତୀତ ଅପର କେହି ସମ୍ରାଟ ଏ ବେଳରେ ନ ଥିଲେ ଯାହାଙ୍କୁ ସେ ଯୁଗର ଶ୍ରେଷ୍ଠତମ ବ୍ୟକ୍ତି ବୋଲି ଇତିହାସ ଗ୍ରହଣ କରିପାରି ଥାଆନ୍ତା । ବିଜୟର ଏହି ଗୌରବ ବେଳେ ଖାରବେଳ ମଥୁରା ନଗରୀରେ ତାହାଙ୍କ ଉଦାରତା ଅଶ୍ଚର୍ଯ୍ୟ ଆଦର୍ଶ ଦେଖାଇଥିଲେ । ଉତ୍ତରାପଥର ସେହି ସୁପ୍ରସିଦ୍ଧ ନଗରୀରେ ଖାରବେଳ ବିଦେଶୀମାନଙ୍କ ଉପରେ ତାହାଙ୍କର ଯେଉଁ ବିଜୟ ହାସଲ ହୋଇଥିଲା ତାହା ମହାସମାରୋହରେ ପାଳନ କରିଥିଲେ । ହାତୀଗୁମ୍ଫା ଶିଳା ଲେଖରୁ ଜଣାଯାଏ ଯେ ମଥୁରାର ସମସ୍ତ ଗୃହସ୍ଥ, ସନ୍ନ୍ୟାସୀ, ବ୍ରାହ୍ମଣ, ଶ୍ରମଣ ଇତ୍ୟାଦିଙ୍କୁ ଜାତି-ଧର୍ମ-ନିର୍ବିଶେଷରେ ଖାରବେଳ ଖାଦ୍ୟ ପଦାର୍ଥ ଦ୍ୱାରା ପରିତୃପ୍ତ କରିଥିଲେ । ଏପରି ବଦାନ୍ୟତା ଇତିହାସରେ ବିରଳ । ମଥୁରାର ଅଗଣିତ ଲୋକଙ୍କୁ ଖାଦ୍ୟଦ୍ୱାରା ତୃପ୍ତ କରିବାକୁ ଯାଇ ଖାରବେଳ କଳିଙ୍ଗ ଅର୍ଥାଗାରରୁ ବହୁ ଅର୍ଥ ବ୍ୟୟ କରିଥିବେ । କିନ୍ତୁ ସୁଦୂର ମଥୁରାରେ ସେପରି କାର୍ଯ୍ୟ ଭାରତବାସୀଙ୍କ ମନରେ ତାହାଙ୍କପ୍ରତି ପ୍ରଗାଢ଼ ସ୍ନେହ ଏବଂ ଭକ୍ତି ସୃଷ୍ଟି କରିଥିବ । ମଥୁରାରେ ବିଜୟଉତ୍ସବ ପାଳନ କରିସାରିଲା ପରେ ଖାରବେଳ କଳିଙ୍ଗ ଅଭିମୁଖେ ପ୍ରତ୍ୟାବର୍ତ୍ତନ ପାଇଁ

ପ୍ରସ୍ତୁତ ହୋଇଥିଲେ । ପୂର୍ଣ୍ଣ ଏକବର୍ଷ ପର୍ଯ୍ୟନ୍ତ ଖାରବେଳ ରାଜଧାନୀ ନିକଟରୁ ଦୂରରେ ଥିଲେ । ବର୍ତ୍ତମାନ ଉତ୍ତର ଭାରତରେ ସ୍ୱ କର୍ତ୍ତବ୍ୟ ଶେଷକରି ବିଜୟୀ ସମ୍ରାଟ ମହାସମାରୋହରେ ସ୍ୱ ରାଜଧାନୀକୁ ଫେରିଥିଲେ । ପ୍ରତ୍ୟାବର୍ତ୍ତନ ପରେ ମଥୁରାରେ ଯେପରି ଆନନ୍ଦ ଉତ୍ସବ ପାଳନ କରାଯାଇଥିଲା କଳିଙ୍ଗ ରାଜଧାନୀରେ ମଧ୍ୟ ସେହିପରି ଉତ୍ସବର ଆୟୋଜନ କରାଯାଇଥିଲା । ଏହି ଉତ୍ସବରେ ଶତ ସହସ୍ର ମୁଦ୍ରା ବ୍ୟୟିତ ହୋଇଥିଲା ଏବଂ କଳିଙ୍ଗ ରାଜଧାନୀର ସମସ୍ତ ଗୃହସ୍ଥ, ରାଜକର୍ମଚାରୀ, ବ୍ରାହ୍ମଣ, ଅର୍ହତ ଏବଂ ଶ୍ରମଣମାନଙ୍କୁ ଭୋଜିଦ୍ୱାରା ଆପ୍ୟାୟିତ କରାଯାଇଥିଲା ।

ରାଜତ୍ୱର ନବମ ବର୍ଷରେ ଖାରବେଳ ଦାନାଦି ପୁଣ୍ୟ କର୍ମରେ ରତ ରହିଥିଲେ । ହସ୍ତୀ, ଗଜ, ରଥ ଇତ୍ୟାଦି ବହୁ ସଂଖ୍ୟାରେ ଦାନ ଦିଆଯାଇଥିଲା । ରାଜ୍ୟର ବ୍ରାହ୍ମଣମାନଙ୍କୁ ରାଜକରରୁ ଅବ୍ୟାହତି ଦିଆଯାଇଥିଲା । ଏହି ବର୍ଷ ସମ୍ରାଟ ବହୁଅର୍ଥ ବ୍ୟୟରେ ଏକ ଅତି ସୁନ୍ଦର ରାଜପ୍ରାସାଦ ନିର୍ମାଣ କରାଇଥିଲେ । ଏହି ପ୍ରାସାଦର ନାମ ଦିଆ ଯାଇଥିଲା 'ମହାବିଜୟ' । ଏହାକୁ ନିର୍ମାଣ କରିବାରେ ଖାରବେଳଙ୍କର ଅଠତିରିଶ ଲକ୍ଷ ମୁଦ୍ରା ଖର୍ଚ୍ଚ ହୋଇଥିଲା । ଆଜି ଖାରବେଳଙ୍କର ଏହି ବିରାଟ ସ୍ଥାପତ୍ୟ କାଳଗର୍ଭରେ ବିଲୀନ, କିନ୍ତୁ ଦିନ ଥିଲା ଯେତେବେଳେ କଳିଙ୍ଗ ରାଜଧାନୀ ବକ୍ଷରେ ସଗର୍ବେ ଦଣ୍ଡାୟମାନ ରହି ଏହି ମହାବିଜୟ ପ୍ରାସାଦ ଏକ ମହାବିଜୟୀଙ୍କର ବିଜୟ-କୀର୍ତ୍ତି ଜଗତ ଆଗରେ ଘୋଷଣା କରିଥିଲା ।

ନବମ ବର୍ଷ ଅନ୍ତେ ରାଜତ୍ୱର ଦଶମ ବର୍ଷ ଆସିଯାଇଥିଲା । କିନ୍ତୁ ଖାରବେଳଙ୍କର ଦିଗ୍‌ବିଜୟ ଏ ପର୍ଯ୍ୟନ୍ତ ଶେଷ ହୋଇ ନ ଥିଲା । ଏହି ବର୍ଷ କଳିଙ୍ଗସେନା ପୁନର୍ବାର ଉତ୍ତରାପଥ ଅଭିମୁଖରେ ଚାଳିତ ହୋଇଥିଲା । କାରଣ ମଗଧର ସୁଙ୍ଗବଂଶ ହୃଏତ ଖାରବେଳଙ୍କ ନିକଟରେ ବଶ୍ୟତା ସ୍ୱୀକାର କରି ନ ଥିଲା । ସଙ୍ଗେ ସଙ୍ଗେ ଅପର ଏକ କଳିଙ୍ଗ ସେନା ଦାକ୍ଷିଣାତ୍ୟ ଅଭିମୁଖରେ ପ୍ରେରିତ ହୋଇଥିଲା । କାରଣ ଦକ୍ଷିଣରେ ମୁଷଳ ନାମକ ଜାତି କଳିଙ୍ଗ ସାମ୍ରାଜ୍ୟ ବିରୁଦ୍ଧରେ ଷଡ଼ଯନ୍ତ୍ର ଆରମ୍ଭ କରିଥିଲା । ରାଜତ୍ୱର ଏକାଦଶ ବର୍ଷରେ ଦାକ୍ଷିଣାତ୍ୟରେ ଖାରବେଳଙ୍କ ଯୁଦ୍ଧ ଅତି ଭୟଙ୍କର ଆକାର ଧାରଣ କରିଥିଲା । ସମ୍ରାଟଙ୍କର ସମସ୍ତ କ୍ରୋଧ ପ୍ରଥମେ ମୁଷଳମାନଙ୍କ ବିରୁଦ୍ଧରେ ନିକ୍ଷେପ କରାଯାଇଥିଲା ଏବଂ ସେମାନଙ୍କ ରାଜଧାନୀ ପିଥୁଣ୍ଡ ନଗରୀକୁ ଧୂଳିସାତ୍ କରି ଦିଆଯାଇଥିଲା । ଖାରବେଳଙ୍କ କ୍ରୋଧ

ଏପରି ସୀମାରେ ପହଞ୍ଚିଥିଲା ଯେ ଧ୍ୱଂସପ୍ରାପ୍ତ ପିଥୁଣ୍ଡ ନଗର ଉପରେ ସେ ଗର୍ଦ୍ଦଭମାନଙ୍କ ଦ୍ୱାରା ହଳ କରିବା ପାଇଁ ଆଦେଶ ଦେଇଥିଲେ । ଏପରି ଏକ ପ୍ରତିଶୋଧ ନେଇସାରିଲା ପରେ ଉତ୍‌କ୍ତ ସମ୍ରାଟ ଦାକ୍ଷିଣାତ୍ୟର କେତେକ ବିଦ୍ରୋହୀ ରାଜାମାନଙ୍କର ସମ୍ମିଳିତ ଶକ୍ତି ଉପରେ ପ୍ରଚଣ୍ଡ ଆକ୍ରମଣ କରିଥିଲେ । ତାମିଲ ଦେଶର ଏପରି ଏକ ସମ୍ମିଳିତ ରାଜଶକ୍ତି ବିଗତ ଏକଶହ ତେର ବର୍ଷ ଧରି ଦାକ୍ଷିଣାତ୍ୟର ଏକ ଶକ୍ତିଶାଳୀ ରାଜନୈତିକ ଅନୁଷ୍ଠାନରୂପେ ଅବସ୍ଥାନ କରୁଥିଲା । ଖାରବେଳଙ୍କ ଅଭ୍ୟୁତ୍‌ଥାନ ପରେ ଏବଂ ତାହାଙ୍କ ହସ୍ତରେ ଶ୍ରୀସାତକର୍ଣ୍ଣୀ ଓ ଅନ୍ୟାନ୍ୟ ଦାକ୍ଷିଣାତ୍ୟ ଜାତିମାନଙ୍କର ପରାଜୟ ପରେ ଏହି ତାମିଲ ରାଜବର୍ଗ ଖାରବେଳଙ୍କ ବିରୁଦ୍ଧରେ ତତ୍ପର ହୋଇ ଉଠିଥିବେ ଏବଂ ଖାରବେଳଙ୍କର ଉତ୍ତର ଭାରତ ଅଭିଯାନ ବେଳେ ଦାକ୍ଷିଣାତ୍ୟରେ ତାହାଙ୍କ ବିରୁଦ୍ଧରେ ବିଦ୍ରୋହ ସୃଷ୍ଟିର ଆୟୋଜନ କରିଥିବେ । ଏହି ରାଜବର୍ଗଙ୍କୁ ଉପଯୁକ୍ତ ଶାସ୍ତି ଦେବା ପାଇଁ ଖାରବେଳ ବର୍ତ୍ତମାନ ଦୃଢ଼ପରିକର ହୋଇଥିଲେ ଏବଂ ଏକ ପ୍ରଚଣ୍ଡ ଆକ୍ରମଣ ଦ୍ୱାରା ତାମିଲ ରାଜାମାନଙ୍କୁ ପରାଜିତ କରି ସେମାନଙ୍କର ମିଳିତ ଶକ୍ତିର ଧ୍ୱଂସ ସାଧନ କରିଥିଲେ । ତାମିଲ ରାଜାମାନଙ୍କୁ ପରାଜିତ କରିବା ଦ୍ୱାରା ଦାକ୍ଷିଣାତ୍ୟରେ ଖାରବେଳଙ୍କ ସମ୍ମାନ ତା'ର ଶୀର୍ଷ ସୀମାରେ ଉପନୀତ ହୋଇଥିଲା । ବର୍ତ୍ତମାନ ତାହାଙ୍କର ସାମ୍ରାଜ୍ୟ ସୁଦୂର କାବେରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ହୋଇଯାଇଥିଲା । ସାତକର୍ଣ୍ଣୀଙ୍କ ରାଜ୍ୟର ଆନ୍ଧ୍ର ସାତବାହନମାନେ, କୃଷ୍ଣାତୀରର ମୂଷିକମାନେ, ବିନ୍ଧ୍ୟାବର୍ତ୍ତିର ରଷ୍ଟ୍ରିକ ଓ ଭୋଜକ ଜାତିଦ୍ୱୟ, ଗୋଦାବରୀ ଓ କୃଷ୍ଣା ମଧ୍ୟସ୍ଥ ତେଲେଗୁ ଅଞ୍ଚଳର ମୁଷଳ ଜାତି, କୃଷ୍ଣା-କାବେରୀ ଉପତ୍ୟକାରେ ତାମିଲ ରାଜ୍ୟମାନଙ୍କର ଅଧିବାସୀମାନେ ଏବଂ ଦାକ୍ଷିଣାତ୍ୟର ବିଦ୍ୟାଧର ଇତ୍ୟାଦି ଅପର କେତେକ ଜାତି ବର୍ତ୍ତମାନ ଖାରବେଳଙ୍କ ସୁବିସ୍ତୃତ କଳିଙ୍ଗ ସାମ୍ରାଜ୍ୟର ପ୍ରଜାରୂପେ ପରିଗଣିତ ହୋଇ ପାରିଥିଲେ । ଦାକ୍ଷିଣାତ୍ୟର ବୃହତ୍‌ତାଂଶ କଳିଙ୍ଗ ସାମ୍ରାଜ୍ୟର ଏକ ପ୍ରଦେଶରେ ପରିଣତ ହୋଇଥିଲା ।

ଦାକ୍ଷିଣାତ୍ୟ ବିଜୟ ଶେଷ ହେଲା ପରେ ଖାରବେଳ ଉତ୍ତରରେ ତାହାଙ୍କର ଚୂଡ଼ାନ୍ତ ବିଜୟ ପାଇଁ ପ୍ରସ୍ତୁତ ହୋଇଥିଲେ । ତାହାଙ୍କର ପ୍ରଥମ ମଗଧ ଅଭିଯାନ ବେଳେ ଗ୍ରୀକ୍ ସମ୍ରାଟ ଡେମିଟ୍ରିୟସଙ୍କ ପାଟଳିପୁତ୍ର ପ୍ରବେଶ ପୂର୍ବରୁ ତାହାଙ୍କୁ ମଥୁରା ଅଭିମୁଖେ ଅଗ୍ରସର ହେବାକୁ ହୋଇଥିଲା । ତାହାଙ୍କର ଦ୍ୱିତୀୟ

ମଗଧ ଅଭିଯାନ ବେଳେ ଦାକ୍ଷିଣାତ୍ୟରେ ତାମିଲ ରାଜାମାନଙ୍କର ଷଡ଼ଯନ୍ତ୍ର ଯୋଗୁଁ ଖାରବେଳଙ୍କୁ ଦାକ୍ଷିଣାତ୍ୟ ଦିଗକୁ ସମସ୍ତ ଶକ୍ତି ଚାଳିତ କରିବାକୁ ହୋଇଥିଲା । ଏହାପରି ଦୁଇଥର ଉତ୍ତର ଅଭିଯାନରେ ଖାରବେଳ ମଗଧ ରାଜଧାନୀ ପାଟଳିପୁତ୍ର ଅଧିକାର କରିବାକୁ ସୁଯୋଗ ପାଇ ନ ଥିଲେ ଏବଂ ସୁଙ୍ଗବଂଶକୁ ସ୍ୱ ବଶ୍ୟତା ସ୍ୱୀକାର କରିବାକୁ ବାଧ୍ୟ କରି ପାରି ନ ଥିଲେ । ରାଜତ୍ୱର ଦ୍ୱାଦଶ ବର୍ଷ ଆରମ୍ଭ ହେଲାବେଳକୁ ଦକ୍ଷିଣରେ ଖାରବେଳଙ୍କ ରାଜନୈତିକ କର୍ତ୍ତବ୍ୟ ଶେଷ ହୋଇ-ଯାଇଥିଲା । ଏହି ସମୟରେ ତାହାଙ୍କର ଶକ୍ତି ଏବଂ ସମ୍ମାନ ମଧ୍ୟ ଭାରତୀୟ ରାଜନୀତି କ୍ଷେତ୍ରରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିଥିଲା । ସୁତରାଂ ରାଜତ୍ୱର ଦ୍ୱାଦଶ ବର୍ଷରେ ଖାରବେଳ ତାହାଙ୍କର ଶେଷ ଏବଂ ପ୍ରାୟ ସର୍ବଶ୍ରେଷ୍ଠ ଉତ୍ତର ଅଭିଯାନ ପାଇଁ ପ୍ରସ୍ତୁତ ହୋଇଥିଲେ । ଏହି ଅଭିଯାନ ଉତ୍ତରାପଥର ବହୁ ରାଜାଙ୍କ ବିରୁଦ୍ଧରେ ଚାଳିତ ହୋଇଥିଲା ଏବଂ ସେମାନଙ୍କ ମଧ୍ୟରେ ମଗଧର ସୁଙ୍ଗ ରାଜା ଥିଲେ ପ୍ରଥମ । ସମ୍ଭବତଃ ଖାରବେଳ ଯେତେବେଳେ ଦକ୍ଷିଣଖଣ୍ଡରେ ଯୁଦ୍ଧରତ ଥିଲେ ସେତେବେଳେ ଉତ୍ତରାପଥର ରାଜନ୍ୟମଣ୍ଡଳୀ ମଧ୍ୟ ତାହାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ରଲିପ୍ତ ଥିଲେ । ତାହାର ପ୍ରତିଶୋଧ ନେବା ପାଇଁ ଏବଂ ମଗଧର ଦର୍ପଚୂର୍ଣ୍ଣ କରିବା ପାଇଁ ଖାରବେଳ ତାହାଙ୍କ ଦିଗ୍‌ବିଜୟୀ ଜୀବନର ଶେଷ ଯୁଦ୍ଧଯାତ୍ରା ଆରମ୍ଭ କରିଥିଲେ । ଭାଗ୍ୟ ଏବେ ବି ତାହାଙ୍କ ସପକ୍ଷରେ ଥିଲା ।

ହାତୀଗୁମ୍ଫା ପ୍ରଶସ୍ତିରେ ସମ୍ରାଟଙ୍କର ଏହି ଶେଷ ଅଭିଯାନ ବିଶଦଭାବେ ବର୍ଣ୍ଣିତ ଅଛି । ରାଜତ୍ୱର ଦ୍ୱାଦଶ ବର୍ଷରେ ଶତ ସହସ୍ର ସୈନ୍ୟସହ ସେ ଉତ୍ତରାପଥର ରାଜାମାନଙ୍କୁ ଆକ୍ରମଣ କରି ସେମାନଙ୍କ ମଧ୍ୟରେ ସନ୍ତ୍ରାସ ସୃଷ୍ଟି କରିଥିଲେ । ଏହି ଆକ୍ରମଣରେ ମଗଧବାସୀଙ୍କ ମନରେ ଆତଙ୍କ ଏବଂ ଭୟ ସଞ୍ଚାର କରି ଖାରବେଳ ପାଟଳିପୁତ୍ର ଅଧିକାର କରିଥିଲେ ଏବଂ ସେହି ସୁଙ୍ଗ ରାଜଧାନୀର ସୁବିଖ୍ୟାତ ସୁଗାଙ୍ଗ ଅଟ୍ଟାଳିକା ମଧ୍ୟରେ ନିଜର ହସ୍ତୀମାନଙ୍କୁ ରଖାଇ-ଥିଲେ । ପାଟଳିପୁତ୍ରର ପତନ ପରେ ଖାରବେଳ ତଦାନୀନ୍ତନ ସୁଙ୍ଗ ସମ୍ରାଟ ବୃହସ୍ପତି ମିତ୍ରଙ୍କୁ ତାହାଙ୍କ ନିକଟରେ ବଶ୍ୟତା ସ୍ୱୀକାର କରିବା ପାଇଁ ବାଧ୍ୟ କରିଥିଲେ । ଭୟତ୍ରସ୍ତ ଅଙ୍ଗ ଓ ମଗଧବାସୀମାନେ ମଧ୍ୟ ଖାରବେଳଙ୍କ ପାଦ ବନ୍ଦନା କରିଥିଲେ । ଏହାପରି ଭାବରେ ଅଙ୍ଗ-ମଗଧବାସୀଙ୍କୁ ଅପମାନିତ କରାଇବା ଏବଂ ସେମାନଙ୍କର ରାଜାଙ୍କ ନିକଟରୁ ବଶ୍ୟତା ଗ୍ରହଣ କଲାପରେ ଖାରବେଳ କଳିଙ୍ଗ ପ୍ରତ୍ୟାଗମନ ପାଇଁ

ପ୍ରସ୍ତୁତ ହୋଇଥିଲେ । କିନ୍ତୁ ପାଟଳିପୁତ୍ର ପରିତ୍ୟାଗ ପୂର୍ବରୁ ବହୁଦିନ ଆଗରୁ ମଗଧର ନନ୍ଦରାଜଙ୍କଦ୍ୱାରା କଳିଙ୍ଗରୁ ଅପହୃତ ହୋଇଥିବା କଳିଙ୍ଗ ଜୀନାସନଙ୍କୁ ଖାରବେଳ ପୁନର୍ବାର ମହାସମାରୋହରେ ମଗଧରୁ କଳିଙ୍ଗକୁ ଫେରାଇ ଆଣିଥିଲେ । ଦିଗ୍‌ବିଜୟୀଙ୍କର ପ୍ରତ୍ୟାଗମନବେଳକୁ କଳିଙ୍ଗ ତାହାଙ୍କୁ ଗ୍ରହଣ କରିବା ପାଇଁ ଯଥାଯୋଗ୍ୟ ଆୟୋଜନ କରିଥିଲା । ସମ୍ରାଟ ମଧ୍ୟ ସ୍ୱଦେଶକୁ ଫେରିଲାପରେ ବିସ୍ତୃତ କଳିଙ୍ଗର ବିଭିନ୍ନ ସ୍ଥାନରେ ରାଜପଥ, ମନ୍ଦିର, ତୋରଣ, ବିଜୟସ୍ତମ୍ଭ ଇତ୍ୟାଦି ନିର୍ମାଣ କରି କଳିଙ୍ଗ ବକ୍ଷରେ ନିଜର ବିଜୟ ଘୋଷଣା କରିଥିଲେ । ଏହିପରି ଭାବରେ ଖାରବେଳଙ୍କର ଶେଷ ଦିଗ୍‌ବିଜୟ ସମାପ୍ତ ହୋଇଥିଲା । ବହୁଦିନରୁ କଳିଙ୍ଗ ପକ୍ଷରୁ ମଗଧ ବିଗରେ ଯେଉଁ ପ୍ରତିଶୋଧ ବହ୍ନି ଧୀରେ ଧୀରେ ଜ୍ୱଳି ଆସୁଥିଲା ତାହାର ଶୀର୍ଷ ପରିଣତି ଖାରବେଳଙ୍କ ଦିଗ୍‌ବିଜୟଦ୍ୱାରା ସମ୍ପାଦିତ ହୋଇଥିଲା । ମଗଧ ଖଣ୍ଡରେ ଖାରବେଳ ଯାହା କରିଥିଲେ ତାହା ମଗଧ ଏବଂ କଳିଙ୍ଗ ମଧ୍ୟରେ ଯେଉଁ ଯୁଗବ୍ୟାପୀ ପ୍ରତିଦ୍ୱନ୍ଦ୍ୱିତା ଲାଗିରହିଥିଲା ତାହାର ପ୍ରମାଣ ଦେଉଥିଲା । ଗଙ୍ଗାନଦୀର ତୀରେ ତୀରେ ବିଜୟ ଗର୍ବରେ କଳିଙ୍ଗବାହିନୀ ମଗଧ ଅଭିମୁଖେ ଆଗେଇ ଯାଇଥିବେ ଏବଂ ସେହି ପ୍ରାଚୀନ ସାମ୍ରାଜ୍ୟର ନଗରୀ ପରେ ନଗରୀ, ଦୁର୍ଗ ପରେ ଦୁର୍ଗ ଅଧିକାରପୂର୍ବକ ଶେଷରେ ପାଟଳିପୁତ୍ର ମଧ୍ୟରେ ପ୍ରବେଶ କରିଥିବେ । ଖାରବେଳଙ୍କର ଯୁଦ୍ଧଯାତ୍ରା ମଗଧ ଏବଂ ଅଙ୍ଗବାସୀଙ୍କ ମନରେ ତୁମୁଳ ଆତଙ୍କ ସୃଷ୍ଟି କରିଥିଲା କାରଣ ଦୂର ଅତୀତରେ କଳିଙ୍ଗ ଉପରେ ମଗଧ-ବାସୀଙ୍କର ଯେଉଁ ଆକ୍ରମଣ ତାହା ମଗଧବାସୀମାନେ ସ୍ମରଣ କରିପାରିଥିବେ ଏବଂ କଳିଙ୍ଗ ତରଫରୁ ପ୍ରତିଶୋଧର ସମୟ ଆସିଛି ଜାଣି ବ୍ୟତିବ୍ୟସ୍ତ ହୋଇ ଉଠିଥିବେ । ଉତ୍ତର ଭାରତର ରାଜନ୍ୟମଣ୍ଡଳୀ ଶେଷଥର ପାଇଁ ଦାକ୍ଷିଣାତ୍ୟର ଦିଗ୍‌ବିଜୟୀ ବୀରଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ପ୍ରୟାସୀ ହୋଇଥିବେ, କିନ୍ତୁ ଖାରବେଳଙ୍କ ସୈନ୍ୟଦଳ ଆଗରେ ପରାଜିତ ହୋଇ ଛତ୍ରଭଙ୍ଗ ଦେବାକୁ ବାଧ୍ୟ ହୋଇଥିବେ । ମଗଧ ସମ୍ରାଟ ବୃହସ୍ପତି ମିତ୍ର ଶୁଙ୍ଗବଂଶର ସମ୍ମାନ ରକ୍ଷାର୍ଥେ ତଥା ମଗଧର ସ୍ୱାଧୀନତା ରକ୍ଷା ଉଦ୍ଦେଶ୍ୟରେ ଖାରବେଳଙ୍କ ସହ ପ୍ରାଣପଣ ଯୁଦ୍ଧ କରିଥିବେ, କିନ୍ତୁ ଉତ୍ତେଜିତ କଳିଙ୍ଗ ସମ୍ରାଟଙ୍କ ସମ୍ମୁଖରେ ତାହାଙ୍କର ସମସ୍ତ ଚେଷ୍ଟା ବିଫଳ ହୋଇଥିବ ଏବଂ ସେ ଶେଷରେ ବିଜୟୀଙ୍କ ସମ୍ମୁଖରେ ମସ୍ତକ ନତ କରିଥିବେ । ପାଟଳିପୁତ୍ରର ରାଜପଥରେ ଖାରବେଳଙ୍କର ବିଜୟଯାତ୍ରା ଏକ ଅପୂର୍ବ ଦୃଶ୍ୟ ସୃଷ୍ଟି କରିଥିବ । ଗର୍ବୋତ୍‌ଫୁଲ୍ଲ କଳିଙ୍ଗ ସେନାଙ୍କ ସମରବାଦ୍ୟଦ୍ୱାରେ

କଳିଙ୍ଗ ସମ୍ରାଟ ନନ୍ଦ, ମୌର୍ଯ୍ୟ ଏବଂ ସୁଙ୍ଗବଂଶର ସେହି ସମୃଦ୍ଧିଶାଳୀ ରାଜଧାନୀ ମଧ୍ୟଦେଇ ବିଜୟଯାତ୍ରା କରିଥିବେ ଏବଂ ରାଜମାର୍ଗର ଉଭୟ ପଥରେ ମଗଧର ଆବାଳବୃଦ୍ଧବନିତା ଅବନତ ମୁଖରେ କଳିଙ୍ଗର ଏହି ବିଜୟ ଉତ୍ସବ ଅବଲୋକନ କରିଥିବେ । ଖାରବେଳଙ୍କ ମଗଧ ଅଧିକାର ଏବଂ ବୃହସ୍ପତି ମିତ୍ରଙ୍କ ଉପରେ ବିଜୟଲାଭ ତାହାଙ୍କର ଉତ୍ତର ଅଭିଯାନର ଶେଷ ଅଧ୍ୟାୟ ଥିଲା । ସତେ ଯେପରି କଳିଙ୍ଗବକ୍ଷରେ ନନ୍ଦ ସମ୍ରାଟ ଏବଂ ମୌର୍ଯ୍ୟ ସମ୍ରାଟମାନଙ୍କର ବିଜୟସଂହାର ଶେଷ ସ୍ମୃତି ଚିହ୍ନକ ଏତେଦିନ ପରେ ସେ ଯୁଗର କଳିଙ୍ଗବାସୀଙ୍କ ମନରୁ ଚିରତରେ ଉଭେଇ ଯାଇଥିବ ।

ଉତ୍ତରରୁ ପ୍ରତ୍ୟାଗମନ ପରେ ଖାରବେଳ ଦାକ୍ଷିଣାତ୍ୟର ଶେଷ ସୀମାରେ ଅବସ୍ଥିତ ପାଣ୍ଡ୍ୟ ରାଜ୍ୟର ବଶ୍ୟତା ଗ୍ରହଣ କରିଥିଲେ । ପାଣ୍ଡ୍ୟରାଜ ବହୁବିଧ ମଣି, ମୁକ୍ତା, ଧନ, ରତ୍ନ ଇତ୍ୟାଦି ଉପହାର ସ୍ୱରୂପ କଳିଙ୍ଗ ସମ୍ରାଟଙ୍କ ନିକଟକୁ ପଠାଇଥିଲେ । ପାଣ୍ଡ୍ୟରାଜାଙ୍କ ବଶ୍ୟତା ସ୍ୱୀକାର ପରେ ଖାରବେଳଙ୍କ ସାମ୍ରାଜ୍ୟ ସୀମା ସୁଦୂର କନ୍ୟାକୁମାରୀ ପର୍ଯ୍ୟନ୍ତ ବିସ୍ତୃତି ଲାଭ କରିଥିଲା । କିନ୍ତୁ ଗୌରବର ଏହି ଶୀର୍ଷ ସୀମାରେ ଖାରବେଳ ଅପ୍ରତ୍ୟାଶିତ ଭାବରେ ତାହାଙ୍କର ଦିଗ୍‌ବିଜୟ ଚିରଦିନ ପାଇଁ ସମାପ୍ତ କରିଥିଲେ । ହୁଏତ ଜୀବନର ଲକ୍ଷ୍ୟସିଦ୍ଧି ପରେ ଯୁଦ୍ଧକ୍ଳାନ୍ତ ସମ୍ରାଟ ହଠାତ୍ ଏକ ନୂତନ ମାର୍ଗର ପଥିକ ହେବା ପାଇଁ ମନସ୍ଥ କରିଥିଲେ । ଦୀର୍ଘ ଦ୍ୱାଦଶ ବର୍ଷବ୍ୟାପୀ ଭାରତର ଦୀର୍ଘ ପ୍ରସ୍ଥରେ ଯୁଦ୍ଧ ପରେ ଏବଂ କେତେ ଅଗଣିତ ଯୁଦ୍ଧକ୍ଷେତ୍ରରେ ବିଜୟ ଲାଭ ପରେ ଶେଷରେ ହୁଏତ ଖାରବେଳଙ୍କ ମନରେ ସ୍ୱତଃ ପରିବର୍ତ୍ତନ ଆସିଥିଲା---ନଶ୍ୱର ସଂସାରରେ ଏ ସମସ୍ତ ଧ୍ୱଂସାତ୍ମକ ଲୀଳା ବାସ୍ତବରେ ମୂଲ୍ୟହୀନ । କଳିଙ୍ଗର ରକ୍ତ-ମାଟି ଉପରେ ଅଶୋକଙ୍କ ପରିବର୍ତ୍ତନ ଆସିଲା ପରି ଶତ ଶତ ରକ୍ତାକ୍ତ ଯୁଦ୍ଧକ୍ଷେତ୍ରର କରୁଣ ସ୍ମୃତି ଖାରବେଳଙ୍କ ମାନସ ପଟରେ ମଧ୍ୟ ସେହିପରି ଏକ ବିପ୍ଳବ ବାତ୍ୟା ସୃଷ୍ଟି କରିଥିବ । ତେଣୁ ଜୀବନର ଅବଶିଷ୍ଟାଂଶ କାଳ ଖାରବେଳ ଧର୍ମପଥରେ ନିଜକୁ ନିୟୋଜିତ ରଖିବା ପାଇଁ ଶେଷ ସିଦ୍ଧାନ୍ତ କରିଥିଲେ । ରାଜତ୍ୱର ତ୍ରୟୋଦଶ ବର୍ଷ ଆରମ୍ଭ ହୋଇ ଯାଇଥିଲା । କିନ୍ତୁ ଏ ବର୍ଷରେ କିମ୍ବା ଏହାପରେ ସମ୍ରାଟଙ୍କୁ ଭାରତର କୌଣସି ଯୁଦ୍ଧକ୍ଷେତ୍ରରେ ଆଉ ଦେଖିବାକୁ ମିଳି ନାହିଁ । ଯୁଦ୍ଧକ୍ଷେତ୍ର ପରିବର୍ତ୍ତେ କଳିଙ୍ଗ ନଗରୀର ଦୂର ଚକ୍ରବାଳ ତଳେ ଖଣ୍ଡଗିରି-ଉଦୟଗିରିର

ନିର୍ଜନ ନିବିଡ଼ ଶୈଳ କାନ୍ତାର ବକ୍ଷରେ ବର୍ତ୍ତମାନ ରଚିତ ହୋଇଥିଲା ବିଜୟ କାହ୍ନଡ଼ା ପରେ ଖାରବେଳଙ୍କର ବିଶ୍ରାମ ଭବନ । ସମ୍ରାଟଙ୍କର ଏହି ପରିବର୍ତ୍ତିତ ଉତ୍କଳୀୟ ସଭ୍ୟତାର ଇତିହାସରେ ମଧ୍ୟ ସୃଷ୍ଟି କରିଥିଲା ଏକ ନୂତନ ଅଧ୍ୟାୟ । ଭାରତୀୟ ରାଜନୈତିକ କ୍ଷେତ୍ରରେ ରାଜତ୍ୱର ଦୀର୍ଘ ଦ୍ୱାଦଶ ବର୍ଷକାଳ ଖାରବେଳ ଯାହାକିଛି କରିଗଲେ ତାହା କଳିଙ୍ଗ ଇତିହାସରେ ଅଦ୍ୱିତୀୟ । ଏହାପରେ ଜୀବନର ଅବଶିଷ୍ଟ ଯେ କେତେଦିନ ରହିଥିଲା ତାହାମଧ୍ୟରେ ସେ ଯାହାକିଛି କରିଗଲେ ତାହା ଉତ୍କଳୀୟ ଧର୍ମ, ସଂସ୍କୃତି ଏବଂ ସ୍ଥାପତ୍ୟର ଇତିହାସରେ ମଧ୍ୟ ଅଦ୍ୱିତୀୟ ।

ଖାରବେଳଙ୍କ ରାଜତ୍ୱକାଳ ଉତ୍କଳ ଖଣ୍ଡରେ ଜୈନଧର୍ମ ଓ ଜୈନସଂସ୍କୃତିର ଚରମ ବିକାଶର ସମୟ । ଆଦିମ, ଦ୍ରାବିଡ଼ ଏବ ବୈଦିକ ଆର୍ଯ୍ୟଧର୍ମ ପରେ ଉତ୍କଳ ଖଣ୍ଡରେ ଜୈନ ମତବାଦ ପ୍ରଥମେ ପ୍ରଚୁରିତ ହୋଇଥିଲା । ଇତିହାସ ଯୁଗର ଆରମ୍ଭରେ ଜୈନଧର୍ମକୁହିଁ ଉତ୍କଳର ମୁଖ୍ୟଧର୍ମରୂପେ ଦେଖିବାକୁ ମିଳେ । ସେ ଯୁଗର ଭାରତରେ ଉତ୍କଳ ଜୈନଧର୍ମର ଏକ କେନ୍ଦ୍ରସ୍ଥଳୀ ରୂପେ ପରିଗଣିତ ହେଉଥିଲା ଏହା ଜୈନଧର୍ମଗ୍ରନ୍ଥମାନଙ୍କରୁ ଜଣାଯାଏ । ମହାବୀର ଜୀନଙ୍କର ପୂର୍ବବର୍ତ୍ତୀ ଅନେକ ତୀର୍ଥଙ୍କର କଳିଙ୍ଗର କୌଣସି ସ୍ଥାନରେ ଜନ୍ମ ଗ୍ରହଣ କରିଥିଲେ । ମହାବୀର ସ୍ୱୟଂ କଳିଙ୍ଗରେ ସ୍ୱମତ ପ୍ରଚାର କରି ବୁଲିଥିଲେ । ତାହାଙ୍କ ମୃତ୍ୟୁ ପରେ ତାହାଙ୍କ ମରଶରୀରର ଧ୍ୱଂସାବଶେଷ କଳିଙ୍ଗର କୁମାରୀ ବା ଉଦୟଗିରି ପାହାଡ଼ ଉପରେ ସଂରକ୍ଷିତ ହୋଇଥିଲା । ତଦବଧି ସେହି ପୁଣ୍ୟପୀଠ ଭାରତୀୟ ଜୈନମାନଙ୍କର ଏକ ତୀର୍ଥସ୍ଥଳୀରେ ପରିଣତ ହୋଇଥିଲା । ଏହିପରି ଭାବରେ ବହୁ ପ୍ରାଚୀନ କାଳରୁ ଅର୍ଥାତ୍ ଖାରବେଳଙ୍କ ଜନ୍ମର ବହୁବର୍ଷ ପୂର୍ବରୁ କଳିଙ୍ଗରେ ଜୈନଧର୍ମ ସ୍ୱପ୍ରତିପତ୍ତି ବିସ୍ତାର କରିଥିଲା । ଅନୁମାନ କରାଯାଇ-ପାରେ ଯେ ସମସାମୟିକ ଭାରତର ଅନ୍ୟାନ୍ୟ ସ୍ଥଳରେ ବୈଦ୍ଧଧର୍ମର ପ୍ରଭାବ ପ୍ରଖରତର ହୋଇ ପଡ଼ିଥିଲେ ସୁଦ୍ଧା କଳିଙ୍ଗରେ ଜୈନଧର୍ମ ମୁଖ୍ୟଧର୍ମରୂପେ ତିଷ୍ଠି ରହିଥିଲା । କିନ୍ତୁ ଅଶୋକଙ୍କ ଅଧୀନରେ ଯେତେବେଳେ ବୌଦ୍ଧଧର୍ମ କଳିଙ୍ଗ ବକ୍ଷକୁ ପ୍ରବଳ ଭାବରେ ମାଡ଼ିଆସିଥିଲା ସେତେବେଳେ ଜୈନଧର୍ମ ଯେ କିଛିସୁ ମ୍ଳାନ ହୋଇ ଆସିଥିଲା ଏଥିରେ ସନ୍ଦେହ ନାହିଁ । କଳିଙ୍ଗର ପୁରପଲ୍ଲୀରେ ଅଶୋକଙ୍କ ଧର୍ମ ମହାମାତ୍ରମାନେ ବୌଦ୍ଧଧର୍ମ ପ୍ରଚାର କରିଥିଲେ । ବୌଦ୍ଧଯୁଗର

ଅନେକ ସୁବିଖ୍ୟାତ ଭିକ୍ଷୁ ଏବଂ ଧର୍ମ ପ୍ରବର୍ତ୍ତକ ସନ୍ନ୍ୟାସୀ ଉପଗୁପ୍ତ ଉତ୍କଳଖଣ୍ଡରେ ବୁଦ୍ଧଙ୍କ ବାଣୀ ପ୍ରଚାର କରିଥିବାର ଜଣାଯାଏ । ଉତ୍କଳର ଜନସାଧାରଣଙ୍କ ମଧ୍ୟରେ ଧର୍ମ ପ୍ରଚାର ଉଦ୍ଦେଶ୍ୟରେ ଅଶୋକଙ୍କର ଯେଉଁ ଅକ୍ଳାନ୍ତ ଚେଷ୍ଟା ତାହା ପୂର୍ବରୁ ଆଲୋଚିତ ହୋଇଛି । ବହୁବିଧ କାରଣରୁ ଏହା ନିଃସନ୍ଦେହରୂପେ ଧରି ନିଆଯାଇପାରେ ଯେ ଅଶୋକଙ୍କ ଅମଳରେ ଉତ୍କଳର ରାଜକୀୟ ଧର୍ମ ଥିଲା ବୌଦ୍ଧଧର୍ମ ଏବଂ ଏହି ଯୁଗରେ ବୌଦ୍ଧଧର୍ମର ବହୁଳ ପ୍ରଚାର ହେତୁ ବ୍ରାହ୍ମଣ୍ୟଧର୍ମ ଓ ଜୈନଧର୍ମ ମ୍ଳାନ ହୋଇପଡ଼ିଥିଲା । କିନ୍ତୁ ଅଶୋକଙ୍କ ପରେ ଏବଂ ଚେତବଂଶର ଅଭ୍ୟୁତ୍ଥାନରେ ଉତ୍କଳରେ ପୁନର୍ବାର ଜୈନଧର୍ମର ପ୍ରତିପତ୍ତି ବଢ଼ି ଉଠିଥିଲା । ଖାରବେଳଙ୍କ ଅଧୀନରେ ଉତ୍କଳରେ ଜୈନଧର୍ମ ରାଜକୀୟ ଧର୍ମରେ ପରିଣତ ହୋଇଥିଲା ଏବଂ ଏହା ଫଳରେ ଏ ଦେଶରେ ଏକ ଜୈନଯୁଗର ଆରମ୍ଭ ହୋଇଥିଲା । କଳିଙ୍ଗର ଚେତ ରାଜବଂଶ ଜୈନଧର୍ମାବଲମ୍ବୀ ଥିଲେ । ଖାରବେଳଙ୍କ ହାତୀଗୁମ୍ଫା ପ୍ରଶସ୍ତିର ଆରମ୍ଭରେ ଜୈନ ଅର୍ହତ ଓ ସିଦ୍ଧମାନଙ୍କ ଉଦ୍ଦେଶ୍ୟରେ ପ୍ରାର୍ଥନା ଉତ୍ସର୍ଗ କରାଯାଇଥିବାରୁ ଏହା ଅତି ସହଜରେ ଅନୁମେୟ ଯେ ଖାରବେଳଙ୍କର ଧର୍ମ ଥିଲା ଜୈନଧର୍ମ । ଦୀର୍ଘ ଦୁଇହଜାର ଦୁଇଶହ ବର୍ଷ ପୂର୍ବେ ଖାରବେଳ ଜୈନଧର୍ମର ପ୍ରସାର ପାଇଁ ଉତ୍କଳଖଣ୍ଡରେ କ'ଣ କରିଥିଲେ ତାହାର ବିଶଦ ବିବରଣୀ ଇତିହାସ ଗର୍ଭରୁ ଭାସି ଆସି ନାହିଁ । କିନ୍ତୁ ହାତୀଗୁମ୍ଫା ଅଙ୍ଗରୁ ଯେଉଁ ଅଳ୍ପ ଆଭାସ ମିଳେ ସେଥିରୁ ଖାରବେଳଙ୍କ ଧର୍ମ ପ୍ରଚାର ଏବଂ ଧର୍ମକୀର୍ତ୍ତି ସମ୍ବନ୍ଧରେ ଯଥେଷ୍ଟ ପରିଚୟ ମିଳେ । ରାଜତ୍ୱର ଦ୍ୱାଦଶ ବର୍ଷରେ ଯେତେବେଳେ ପାଟଳିପୁତ୍ର ମହାନଗରୀ ମଧ୍ୟରେ ବିଜୟୀ ଖାରବେଳଙ୍କର ଜୟଯାତ୍ରା ଚାଲିଥିଲା ସେତେବେଳେ କଳିଙ୍ଗ ଇତିହାସର ଏକ ପ୍ରାଚୀନ ଘଟଣା ତାହାଙ୍କ ମାନସପଟରେ ଜାଗରିତ ହୋଇଥିଲା । ବହୁବର୍ଷ ପୂର୍ବେ ଦିନେ ମଗଧର ନନ୍ଦ ସମ୍ରାଟ କଳିଙ୍ଗ ଦେଶରୁ କଳିଙ୍ଗଜିନଙ୍କର ମୂର୍ତ୍ତିଟିକୁ ଅପହରଣ କରି ନେଇ ଯାଇଥିଲେ । ମଗଧରେ ନନ୍ଦମାନଙ୍କ ରାଜତ୍ୱକାଳେ କଳିଙ୍ଗରେ ଜୈନଧର୍ମର ପ୍ରତିପତ୍ତି ଯଥେଷ୍ଟ ଥିଲା । ହୁଏତ କଳିଙ୍ଗବିଜୟ ପରେ ନନ୍ଦ ସମ୍ରାଟ ତାହାଙ୍କର ବିଜୟ ଚିହ୍ନ ସ୍ୱରୂପ କଳିଙ୍ଗଜିନଙ୍କ ମୂର୍ତ୍ତି ନେଇଯିବା ପାଇଁ ମନସ୍ଥ କରିଥିଲେ । ଏହି କଳିଙ୍ଗଜିନଙ୍କ ମୂର୍ତ୍ତି ନିଶ୍ଚୟ କଳିଙ୍ଗ ଧର୍ମଜଗତର ଏକ ଶ୍ରେଷ୍ଠ ସନ୍ତକରୂପେ ବିରାଜମାନ ଥିଲା ଏଥିରେ ସନ୍ଦେହ ନାହିଁ । ତା ନ ହୋଇଥିଲେ କଳିଙ୍ଗରୁ ଅପର କୌଣସି ପଦାର୍ଥ ଅପହରଣ ନ କରି ନନ୍ଦ ସମ୍ରାଟ ଏହି ଜିନମୂର୍ତ୍ତିକୁ ନେଇ ଯାଇ ନ ଥାନ୍ତେ ।

କଳିଙ୍ଗର କେଉଁ ପ୍ରସିଦ୍ଧ ମନ୍ଦିର ମଧ୍ୟରୁ ସେହି ବିଖ୍ୟାତ ଜୀନମୂର୍ତ୍ତିକୁ ନେଇଯିବାଦ୍ୱାରା ନନ୍ଦ ସମ୍ରାଟ ନିଶ୍ଚୟ କଳିଙ୍ଗବାସୀଙ୍କ ପ୍ରାଣରେ ଆଘାତ ପ୍ରଦାନ କରିଥିଲେ । ଏ ଘଟଣା ପରେ ବହୁବର୍ଷ ବିତି ଯାଇଥିଲା, କିନ୍ତୁ ନନ୍ଦରାଜଙ୍କର ଜୀନମୂର୍ତ୍ତି ନେଇ ଯାଇଥିବା କଥା କଳିଙ୍ଗବାସୀ ଭୁଲି ପାରି ନଥିଲେ । ରାଜତ୍ୱର ଦ୍ୱାଦଶ ବର୍ଷରେ ସେହି ନନ୍ଦ ସମ୍ରାଟଙ୍କର ରାଜଧାନୀ ବକ୍ଷରେ ଖାରବେଳ ଯେତେବେଳେ ସଗର୍ବେ ଦଣ୍ଡାୟମାନ ହୋଇଥିଲେ ସେତେବେଳେ ପ୍ରାଚୀନ କାଳର ସେହି ଜୀନମୂର୍ତ୍ତି କଥା ତାହାଙ୍କ ମନରେ ଜାଗ୍ରତ ହୋଇଥିଲା । ଖାରବେଳ ଭାବିଥିଲେ କଳିଙ୍ଗଜୀନ ମୂର୍ତ୍ତିକୁ ସ୍ୱଦେଶକୁ ଫେରାଇ ନେବା ଥିଲା ତାହାଙ୍କର ପ୍ରଥମ କର୍ତ୍ତବ୍ୟ । କଳିଙ୍ଗର ପ୍ରକୃତ ଜୈନ ସମ୍ରାଟ ହିସାବରେ ଖାରବେଳ ତାହାଙ୍କର ଏହି କର୍ତ୍ତବ୍ୟ ଯଥାଯୋଗ୍ୟ ଭାବରେ ପାଳନ କରିଥିଲେ । ହାତୀଗୁମ୍ଫା ଏ ବିଷୟର ସାକ୍ଷୀ । ବିଜୟର ସର୍ବଶ୍ରେଷ୍ଠ ଗୌରବ ଚିହ୍ନରୂପେ ଖାରବେଳ କଳିଙ୍ଗ ଜୀନମୂର୍ତ୍ତିକୁ କଳିଙ୍ଗ ଫେରାଇ ନେବା ପାଇଁ ବିରାଟ ଆୟୋଜନ କରିଥିଲେ । ପାଟଳିପୁତ୍ରର ଦ୍ୱାରଦେଶରୁ ଶତ ସହସ୍ର ସୈନ୍ୟ, ହସ୍ତୀ, ଗଜ, ରଥମାନଙ୍କୁ ନେଇ ଏକ ସୁଦୀର୍ଘ ଶୋଭାଯାତ୍ରାର ଆୟୋଜନ କରାଯାଇଥିଲା ଏବଂ ଜୀନମୂର୍ତ୍ତିକୁ ଏହି ଶୋଭାଯାତ୍ରା ମଧ୍ୟରେ କଳିଙ୍ଗ ନଗର ପର୍ଯ୍ୟନ୍ତ କିଆଯାଇଥିଲା । ପାଟଳିପୁତ୍ରଠାରୁ କଳିଙ୍ଗନଗରୀ ପର୍ଯ୍ୟନ୍ତ ଏହି ବହୁଦୂରବ୍ୟାପୀ ରାସ୍ତା ମଧ୍ୟଦେଇ ଏପରି ଏକ ଧର୍ମଶୋଭାଯାତ୍ରା ଲକ୍ଷ ଲକ୍ଷ ନରନାରୀଙ୍କଦ୍ୱାରା ପର୍ଯ୍ୟବେକ୍ଷିତ ହୋଇଥିବ । କଳିଙ୍ଗ ଦେଶରେ ଜୀନମୂର୍ତ୍ତିଙ୍କର ପ୍ରତ୍ୟାବର୍ତ୍ତନ ଏକ ତୁମୁଳ ଆନନ୍ଦର ସୃଷ୍ଟି କରିଥିବ । ଖାରବେଳଙ୍କର ଏହି କୀର୍ତ୍ତି ନିଶ୍ଚୟ କଳିଙ୍ଗବାସୀଙ୍କ ମନ ଜୈନଧର୍ମ ପ୍ରତି ଅନେକ ପରିମାଣରେ ଆକୃଷ୍ଟ କରାଇ ପାରିଥିବ । ରାଜଧାନୀ କଳିଙ୍ଗନଗରର କେଉଁ ଅଜଣା ମନ୍ଦିରରେ ଏହି କଳିଙ୍ଗ ଜୀନ ମୂର୍ତ୍ତିଙ୍କର ପ୍ରତିଷ୍ଠାନ କରାଯାଇଥିବା ଏବଂ ଜୈନଧର୍ମର ସେହି ଗୌରବାନ୍ୱିତ ଦିବସରେ ଏହି ମୂର୍ତ୍ତି କଳିଙ୍ଗବାସୀଙ୍କର ଶ୍ରେଷ୍ଠ ଆରାଧ୍ୟ ମୂର୍ତ୍ତିରୂପେ ପୂଜିତ ହୋଇଥିବ ।

ରାଜତ୍ୱର ଦ୍ୱାଦଶ ବର୍ଷ ଶେଷରେ ଖାରବେଳ ତାହାଙ୍କର ରାଜନୈତିକ ଜୀବନ ଉପରେ ଯବନିକାପାତ କରିଥିଲେ । ଏବିଷୟ ଆଗରୁ ଉଲ୍ଲେଖ କରାଯାଇଛି । ରାଜନୈତିକ ଜୀବନର ଝଡ଼ଝଞ୍ଜା ପାଖରୁ ଦୂରରେ ରହି ବର୍ତ୍ତମାନ ଖାରବେଳ ଜୈନଧର୍ମର ଉନ୍ନତି ସାଧନ ପାଇଁ ପ୍ରାଣପାତ ପରିଶ୍ରମ ଆରମ୍ଭ କରିଥିଲେ ।

ଏକାମ୍ରକାନନର ନିର୍ଜନତା ମଧ୍ୟରେ ଆଜି ଯେପରି ଖଣ୍ଡଗିରି ଉଦୟଗିରି ପାହାଡ଼ଦ୍ୱୟ ନୀରବ ନିସ୍ପନ୍ଦରୂପେ ଛିଡ଼ାହୋଇ ରହିଛନ୍ତି, ଆଜିଠାରୁ ସୁଦୀର୍ଘ ଦୁଇ-ହଜାର ଦୁଇଶହ ବର୍ଷ ପୂର୍ବେ ମଧ୍ୟ ସେମାନେ ସେହିପରି ଦଣ୍ଡାୟମାନ ରହିଥିଲେ । ଏହି ଦୁଇ ପବିତ୍ର ପାହାଡ଼ ଉପରେ ଶେଷ ମହାବୀର ବର୍ଦ୍ଧମାନ ସ୍ୱଧର୍ମ ପ୍ରଚାର କରିଥିଲେ ଏବଂ ତାହାଙ୍କର ନଶ୍ୱର ଶରୀର ଏହି ସ୍ଥାନରେ ସଂରକ୍ଷିତ କରାଯାଇଥିଲା । ଏହି ଦୁଇ କାରଣରୁ ଖଣ୍ଡଗିରି ଉଦୟଗିରି ଜୈନମାନଙ୍କର ଏକ ପବିତ୍ର ପୀଠ । ରାଜତ୍ୱର ତ୍ରୟୋଦଶ ବର୍ଷ ଆରମ୍ଭରେ ଖାରବେଳ ରାଜଧାନୀ କଳିଙ୍ଗନଗର ପରିତ୍ୟାଗପୂର୍ବକ ଏହି ପବିତ୍ର ପୀଠସ୍ଥାନକୁ ଧର୍ମକାର୍ଯ୍ୟ ସମ୍ପାଦନାର୍ଥେ ଆଗମନ କରିଥିଲେ । ବୋଧହୁଏ ରାଜଧାନୀରୁ ସମ୍ରାଟଙ୍କର ଏହି ଥିଲା ଶେଷ ବିଦାୟ । ଖଣ୍ଡଗିରି ଉଦୟଗିରିରେ ଉପସ୍ଥିତ ହୋଇ ପ୍ରଥମେ ସମ୍ରାଟ ସେ ସ୍ଥାନର ଜୈନ ସନ୍ନ୍ୟାସୀମାନଙ୍କୁ ଶ୍ୱେତ ବସ୍ତ୍ର ଦାନ କରିଥିଲେ । ବୋଧହୁଏ ଖାରବେଳ ଶ୍ୱେତାମ୍ବର ଜୈନମାନଙ୍କପ୍ରତି ଅଧିକ ଅନୁରକ୍ତ ଥିଲେ ଏବଂ ହୁଏତ ଖଣ୍ଡଗିରି ଉଦୟଗିରିଠାରେ ଶ୍ୱେତାମ୍ବରମାନଙ୍କର ଅଧିକ ପ୍ରଭାବ ଥିଲା । ବସ୍ତ୍ରଦାନ ପରେ ଖାରବେଳ ଅନ୍ୟ କେତେ ପ୍ରକାର ପଦାର୍ଥ ମଧ୍ୟ ଦାନ କରିଥିଲେ । ସମ୍ଭବତଃ ସାରାବର୍ଷ ଏହିପରି ଦାନାଦି ଧର୍ମକାର୍ଯ୍ୟରେ ବ୍ୟୟିତ ହୋଇଥିଲା । ଉଦୟଗିରିର ପବିତ୍ର ଜୈନପୀଠରେ ଖାରବେଳଙ୍କ ପରି ଜୈନସମ୍ରାଟଙ୍କର ଅବସ୍ଥିତି ଜୈନଜଗତରେ ଚାଞ୍ଚଲ୍ୟ ସୃଷ୍ଟି କରିଥିବ । ଭାରତର ଚତୁର୍ଦ୍ଦିଗରୁ ଜୈନ ସାଧୁମାନେ ସନ୍ନ୍ୟାସୀ ଖାରବେଳଙ୍କର ଦର୍ଶନାର୍ଥେ ବହୁସଂଖ୍ୟାରେ ଆସିଥିବେ । ଦିନ ପରେ ଦିନ ଏହି ଜୈନସାଧୁମାନଙ୍କ ମୁଖରୁ ଧର୍ମ ବ୍ୟାଖ୍ୟା ଶ୍ରବଣ କରି ରାଜର୍ଷି ଖାରବେଳ ଆତ୍ମ ବିସ୍ମୃତ ହୋଇ ଯାଇଥିବେ । ଧର୍ମ ସମ୍ବନ୍ଧୀୟ ଦୀର୍ଘ ସମାଲୋଚନା ଦ୍ୱାରା ଉଦୟଗିରିର ନିର୍ଜନ ପ୍ରାନ୍ତର ସତେ ଯେପରି ମୁଖରିତ ହୋଇ ଉଠିଥିବ । ଏହିପରି ବହୁଦିନ ଅତିବାହିତ ହେଲାପରେ ଶେଷରେ ତ୍ରୟୋଦଶ ବର୍ଷର ଶେଷ ଭାଗରୁ ଖାରବେଳ ଉଦୟଗିରି ଶିଖରରେ ଜୈନମାନଙ୍କର ଏକ ଧର୍ମ ମହାସଭା ଆହ୍ୱାନ କରିବା ପାଇଁ ମନସ୍ଥ କରିଥିଲେ । ଭାରତର ସବୁସ୍ଥାନରୁ, ବହୁଦୂରରୁ ଏବଂ ନିକଟରୁ, ଜୈନ ସାଧୁ ସନ୍ନ୍ୟାସୀ ଏବଂ ପଣ୍ଡିତମାନେ ଏହି ମହାସଭାରେ ଯୋଗ ଦେବାପାଇଁ ଆସିଥିଲେ । ଉଦୟଗିରି ବା କୁମାରୀ ପାହାଡ଼ ଉପରେ ଏହି ମହାସଭା ବସିଥିଲା । ଖାରବେଳଙ୍କର ଏହି ଜୈନ ମହା-ସଭା ଭାରତର ଶ୍ରେଷ୍ଠତମ କୁଶାନ ସମ୍ରାଟ କନିଷ୍କଙ୍କ ଦ୍ୱାରା କାଶ୍ମୀର ଉପତ୍ୟକାରେ

ଅଦ୍ଭୁତ ହୋଇଥିବା ବୌଦ୍ଧ ମହାସଭା କଥା ମନେ ପକାଇ ଦିଏ । ଏପରି ଏକ ଧର୍ମ ମହାସଭା ବୌଦ୍ଧସମ୍ରାଟ ହର୍ଷବର୍ଦ୍ଧନଙ୍କ ଦ୍ୱାରା ମଧ୍ୟ କନୌଜ ନଗରୀରେ ଅନୁଷ୍ଠିତ ହୋଇଥିଲା । ଜୈନଧର୍ମର ଇତିହାସରେ ଖାରବେଳଙ୍କର ଧର୍ମ ମହାସଭା ଅଦ୍ୱିତୀୟ । ଏହି ସଭାରେ ଜୈନଧର୍ମର ଲୁପ୍ତ ଅଙ୍ଗମାନଙ୍କର ପୁନରୁଦ୍ଧାର କରାଯାଇଥିଲା । ଅଶୋକଙ୍କ ସମୟରେ ଭାରତବ୍ୟାପୀ ଯେଉଁ ବୌଦ୍ଧଉତ୍ଥାନ ହୋଇଥିଲା ତାହା ଫଳରେ ଜୈନଧର୍ମର କୌଣସି କୌଣସି ଅଙ୍ଗ ଲୁପ୍ତ ହୋଇ ଯାଇଥିଲା ବୋଲି ଜୈନ ଜନଶ୍ରୁତି ଘୋଷଣା କରେ । ଖାରବେଳଙ୍କ ଉଦୟଗିରି ଧର୍ମମହାସଭାରେ ସେହି ଅଙ୍ଗମାନଙ୍କର ପୁନରୁଦ୍ଧାର ହୋଇଥିଲା । ଏହାଦ୍ୱାରା ଭାରତ ଖଣ୍ଡରେ ଜୈନଧର୍ମ ପୁନର୍ବାର ସତେଜ ହୋଇ ଉଠିଥିବ । ଅଶୋକଙ୍କ ନେତୃତ୍ୱରେ ବୌଦ୍ଧଧର୍ମ ତାହାର ଶୀର୍ଷ ସୀମାରେ ପହଞ୍ଚିଥିଲା । ସ୍ୱାଭାବିକ ଭାବରେ ଏତଦ୍ୱାରା ଜୈନଧର୍ମର ପ୍ରଭୂତ ବଳକ୍ଷୟ ଘଟିଥିଲା । ଅଶୋକଙ୍କ ପରେ ଯଦି ଖାରବେଳ ଜୈନଧର୍ମର ପୃଷ୍ଠପୋଷକତା କରି ନ ଥାନ୍ତେ ତାହାହେଲେ ହୁଏତ ପତନୋନ୍ମୁଖୀ ଜୈନଧର୍ମ ଦ୍ରୁତଗତିରେ ବଳକ୍ଷୟ ଭଜି ଥାଆନ୍ତା । କିନ୍ତୁ ଖାରବେଳ ହ୍ରାସମୁଖୀ ଜୈନଧର୍ମ ପିଣ୍ଡରେ ନୂଆ ଜୀବନ ସଞ୍ଚାର କରିଥିଲେ । ଭାରତର ଅନ୍ୟ କୌଣସି ସମ୍ରାଟ ଜୈନଧର୍ମ ପାଇଁ ଏତେଦୂର ପରିଶ୍ରମ କରି ନ ଥିବେ ଯାହା ଖାରବେଳ କରି ଥିଲେ । ଭାରତ ଇତିହାସରେ ଅପର ଏକ ବିଖ୍ୟାତ ଜୈନସମ୍ରାଟ ହେଉଛନ୍ତି ଚନ୍ଦ୍ରଗୁପ୍ତମୌର୍ଯ୍ୟ । ଜୈନମାନଙ୍କ ବିଶ୍ୱାସରେ ଚନ୍ଦ୍ରଗୁପ୍ତ ପ୍ରଥମେ ହିନ୍ଦୁ ଥିଲେ କିନ୍ତୁ ଜୀବନର ସାୟାହ୍ନରେ ଜୈନଧର୍ମ ଗ୍ରହଣ କରିଥିଲେ ଏବଂ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଏକ ନୈଷ୍ଠିକ ଜୈନ ହିସାବରେ ଜୀବନ ଯାପନ କରିଥିଲେ । ଜୈନ ଗ୍ରନ୍ଥମାନଙ୍କର ଏହି ଉକ୍ତି ଐତିହାସିକ ସତ୍ୟରୂପେ ଗ୍ରହଣ କରାଯାଇପାରେ, କାରଣ ଏ ଉକ୍ତିର ବିରୁଦ୍ଧବାଦୀ ମତ ଅନ୍ୟ କୌଣସି ତରଫରୁ ଆସି ନାହିଁ । କିନ୍ତୁ ଚନ୍ଦ୍ରଗୁପ୍ତଙ୍କୁ ଇତିହାସ ଯୁଗର ପ୍ରଥମ ଜୈନ ସମ୍ରାଟରୂପେ ଗ୍ରହଣ କରାଯାଇ ପାରିଲେ ମଧ୍ୟ ତାହାଙ୍କୁ ଜୈନଧର୍ମର ଶ୍ରେଷ୍ଠ ପୃଷ୍ଠପୋଷକ ବୋଲି ସ୍ୱୀକାର କରାଯାଇ ପାରିବ ନାହିଁ । କାରଣ ଜୈନଧର୍ମର ଉନ୍ନତିକଳେ ଚନ୍ଦ୍ରଗୁପ୍ତ କ କରିଥିବାର ପ୍ରମାଣ ନାହିଁ । ଚନ୍ଦ୍ରଗୁପ୍ତଙ୍କ ପରେ ଭାରତର ଦ୍ୱିତୀୟ ପ୍ରସିଦ୍ଧ ଜୈନ ସମ୍ରାଟ ହେଉଛନ୍ତି ଖାରବେଳ । ଜୈନଧର୍ମ ସମ୍ବନ୍ଧରେ ଏହାଙ୍କ କୀର୍ତ୍ତି ସୁବିଦିତ । ଏହାଙ୍କ ପରେ ଅପର କେହି ସମ୍ରାଟ ଜୈନ-ଧର୍ମର ପୃଷ୍ଠପୋଷକତା କରିଥିବାର ଉଲ୍ଲେଖଯୋଗ୍ୟ ଘଟଣା କିଛି ଜଣାଯାଏ ନାହିଁ । ଚନ୍ଦ୍ରଗୁପ୍ତ ଏବଂ ଖାରବେଳଙ୍କ ବ୍ୟତୀତ ଭାରତରେ ଅପର ଯେତେସବୁ

ଖ୍ୟାତନାମା ନରପତି ରାଜତ୍ୱ କରିଥିଲେ ସେମାନଙ୍କ ମଧ୍ୟରୁ କେତେକ ଥିଲେ ବୌଦ୍ଧ ଏବଂ ଅପର କେତେକ ହିନ୍ଦୁ । ଜୈନ ନରପତିମାନଙ୍କର ସଂଖ୍ୟା ଅତି ଅଳ୍ପ ଏବଂ ତନ୍ମଧ୍ୟରୁ ନିଃସନ୍ଦେହରୂପେ ଖାରବେଳହିଁ ଜୈନଧର୍ମର ସର୍ବଶ୍ରେଷ୍ଠ ରାଜ-ପୃଷ୍ଠପୋଷକ ।

କେବଳ ଉଦୟଗିରି ଧର୍ମମହାସଭା ଦ୍ୱାରା ଜୈନଧର୍ମ ପ୍ରତି ଖାରବେଳ ତାହାଙ୍କ କର୍ତ୍ତବ୍ୟ ଶେଷ କରି ନ ଥିଲେ । ଯେଉଁ ବର୍ଷ ଧର୍ମମହାସଭା ଆହୂତ ହୋଇଥିଲା ସେହିବର୍ଷ ବହୁ ଅର୍ଥ ବ୍ୟୟପୂର୍ବକ ଖାରବେଳ ଖଣ୍ଡଗିରି-ଉଦୟଗିରି ପାଷାଣ ଗାତ୍ରରେ ଜୈନ ତାପସମାନଙ୍କର ବିଶ୍ରାମ ପାଇଁ ଏକଶହ ସତର ଗୋଟି ଗୁମ୍ଫା ନିର୍ମାଣ କରାଇଥିଲେ । ବହୁଦିନ ଧରି ଉଦୟଗିରି ଶିଖରରେ ବାସକରି ଖାରବେଳ ଜୈନ ଯତିମାନଙ୍କର ବିଶ୍ରାମସ୍ଥଳୀ ବିନା ଯେଉଁ ଅସୁବିଧା ତାହା ଉତ୍ତମରୂପେ ହୃଦୟଙ୍ଗମ କରିଥିବେ । ଗ୍ରୀଷ୍ମର ପ୍ରଚଣ୍ଡ ଉତ୍ତାପ, ବର୍ଷାର ମୂଷଳ ଧାର, ଶୀତର ପ୍ରବଳ ପ୍ରକମ୍ପନ ଏବଂ ହିଂସ୍ରଜନ୍ତୁମାନଙ୍କର ଆକ୍ରମଣ ଭିତରେ ମଧ୍ୟ ନିର୍ଜନ ସେହି ପାର୍ବତ୍ୟାଞ୍ଚଳରେ ଶତ ଶତ ଜୈନସାଧୁ ନିର୍ବିଘ୍ନରେ ବିନା ଆଶ୍ରୟରେ ବସବାସ କରିଥିବେ । ଏ ଦୃଶ୍ୟ ଖାରବେଳଙ୍କ ହୃଦୟରେ ଦୁଃଖ ଏବଂ ଦୟା ଜାତ କରାଇ-ଥିବ ଏବଂ ଏହା ଫଳରେ ଶତଶତ ଆଶ୍ରୟହୀନ ଜୈନଙ୍କ ପାଇଁ ଆଶ୍ରୟସ୍ଥଳୀ ନିର୍ମାଣ କରିଦେବା ପାଇଁ ସମ୍ରାଟଙ୍କର ଦୃଢ଼ ବାସନା ଜାଗରିତ ହୋଇଥିବ । ତାହାଙ୍କ ଆହ୍ୱାନରେ ବିଶାଳ କଳିଙ୍ଗର ବିଭିନ୍ନ ସ୍ଥାନରୁ ଶତ ଶତ ପ୍ରସ୍ତର ଶିଳ୍ପୀ ଖଣ୍ଡଗିରି-ଉଦୟଗିରି ତଳେ ଉପସ୍ଥିତ ହୋଇଥିବେ ଏବଂ ଅକ୍ଳାନ୍ତ ପରିଶ୍ରମ ଦ୍ୱାରା ପ୍ରସ୍ତର ଗାତ୍ରରେ ବହୁଗୁମ୍ଫା, ବହୁସ୍ତମ୍ଭ, ପୂଜାବେଦୀ, କାରୁକାର୍ଯ୍ୟ ଶୋଭିତ ତୋରଣମାନଙ୍କର ନିର୍ମାଣ କାର୍ଯ୍ୟ ଶେଷ କରିଥିବେ । ହାତୀଗୁମ୍ଫା ଲେଖରୁ ଜଣାଯାଏ ଯେ ଏକଶତ ସତରଗୋଟି ଗୁମ୍ଫା କେବଳ ଜୈନଯତିମାନଙ୍କର ଆଶ୍ରୟସ୍ଥଳୀରୂପେ ବ୍ୟବହୃତ ହେବାପାଇଁ ନିର୍ମିତ ହୋଇଥିଲା । ଏହି ଗୁମ୍ଫାମାନଙ୍କ ବ୍ୟତୀତ ସମ୍ରାଟଙ୍କ ଆଶ୍ରୟ ପାଇଁ ତଥା ରାଜମହିଷୀ ଏବଂ ରାଜ-ସନ୍ତାନ ସନ୍ତତିଙ୍କ ବିଶ୍ରାମ ପାଇଁ ସୁରମ୍ୟ ପ୍ରାସାଦମାନ ମଧ୍ୟ ନିର୍ମିତ ହୋଇଥିଲା । ଏ ସମସ୍ତ ପରେ ୭୫ ଲକ୍ଷ ମୁଦ୍ରା ବିନିମୟରେ ସେହି ପାହାଡ଼ ଉପରେ ଏକ ଅତି ବୃହତ୍ ମନ୍ଦିର ମଧ୍ୟ ନିର୍ମାଣ କରାଯାଇଥିଲା । ସମ୍ରାଟଙ୍କର ଏହି ଅକ୍ଳାନ୍ତ ନିର୍ମାଣ କାର୍ଯ୍ୟ ଦେଖି ତାହାଙ୍କର ରାଣୀ, ପୁତ୍ର, ମନ୍ତ୍ରୀ, ବନ୍ଧୁ ଏବଂ ସେନାପତିମାନେ ମଧ୍ୟ ସ୍ୱ ସ୍ୱ ଶକ୍ତି

ଅନୁସାରେ ସମ୍ରାଟଙ୍କର ସେହି ନୂତନ ବାସସ୍ଥାନରେ ବହୁ ପ୍ରକାରର ଗୁମ୍ଫା ଏବଂ ଅଟ୍ଟାଳିକାମାନ ନିର୍ମାଣ କରାଇଥିଲେ । ଏହାପରେ ମାତ୍ର ବର୍ଷକ ମଧ୍ୟରେ ଖଣ୍ଡଗିରି ଏବଂ ଉଦୟଗିରିର ଅରଣ୍ୟାଚ୍ଛାଦିତ ଅଙ୍ଗ ଶତ ଶତ ଗୁମ୍ଫା, ପ୍ରାସାଦ ଏବଂ ମନ୍ଦିର-ଦ୍ୱାରା ସୁଶୋଭିତ ହୋଇ ଉଠିଥିଲା । ମହାବୀର ବର୍ଦ୍ଧମାନଙ୍କର ସ୍ମୃତିପୀଠକୁ କେନ୍ଦ୍ର କରି ସତେ ଯେପରି ଏକ ନୂତନ ଧର୍ମନଗରୀ ଉତ୍କଳର ସେହି ପୁଣ୍ୟକ୍ଷେତ୍ରରେ ନିର୍ମିତ ହୋଇଥିଲା । ସାଧୁ ସନ୍ନ୍ୟାସୀମାନଙ୍କର ହିତ ଉଦ୍ଦେଶ୍ୟରେ ପୃଥିବୀରେ ଅତି ଅଳ୍ପ ସଂଖ୍ୟକ ରାଜା ଏପରି କାର୍ଯ୍ୟ କରିଯାଇଛନ୍ତି ।

ରାଜତ୍ୱର ଚତୁର୍ଦ୍ଦଶ ବର୍ଷ ଆରମ୍ଭ ହୋଇଥିଲା । କିନ୍ତୁ ସମ୍ରାଟଙ୍କର ଧର୍ମକୀର୍ତ୍ତି ଶେଷ ହୋଇ ନ ଥିଲା । ପୂର୍ବବର୍ଷ ପରି ଏହିବର୍ଷ ମଧ୍ୟ ଖାରବେଳଙ୍କୁ ଉଦୟଗିରି ଉପରେ ବ୍ୟସ୍ତ ଥିବାର ଦେଖାଯାଏ । ଜୈନ ତାପସମାନଙ୍କର ସେବାକାର୍ଯ୍ୟ ଏ ପର୍ଯ୍ୟନ୍ତ ଶେଷ ହୋଇ ନ ଥିଲା । ହୁଏତ ଏତେବେଳକୁ ଖାରବେଳ ସମ୍ପୂର୍ଣ୍ଣରୂପେ ନିଜକୁ ଜଣେ ଜୈନ ସାଧୁରୂପେ ପରିଣତ କରିସାରିଥିଲେ ଏବଂ ରାଜକାର୍ଯ୍ୟ ବ୍ୟାପାର ସହ ସମ୍ପର୍କ ତୁଟାଇ ଦେଇଥିଲେ । ହାତୀଗୁମ୍ଫା ଶିଳାଲିପିରୁ ଜଣାଯାଏ ଯେ ଜୈନସାଧୁଙ୍କ ଗହଣରେ ଖାରବେଳ ପରିଶେଷରେ ନଶ୍ୱର ଶରୀର ସହ ଅତ୍ମାର ଯେଉଁ ସମ୍ବନ୍ଧ ତାହା ବୁଝି ପାରିଥିଲେ । ଏହାପରେ ଖାରବେଳ ହୁଏତ ଆଉ ନିଜକୁ କଳିଙ୍ଗ ସମ୍ରାଟରୂପେ ପରିଚୟ ଦେଇ ନ ଥିଲେ ଏବଂ ନିଷ୍କାମ ଜୈନ ଜୀବନ ଯାପନ କରୁଥିଲେ । ଏହିବର୍ଷ ଭାରତର ଶତ ସ୍ଥାନରୁ ଆସୁଥିବା ଜୈନସାଧୁ, ସନ୍ନ୍ୟାସୀ ଏବଂ ଶ୍ରମଣମାନଙ୍କ ନିମିତ୍ତ ଏକ ଅତି ପ୍ରଶସ୍ତ ଗୁମ୍ଫା ଖନନ କରାଯାଇଥିଲା । ଏହା ବ୍ୟତୀତ, ଖଣ୍ଡଗିରି, ଉଦୟଗିରି ଚତୁଃପାର୍ଶ୍ୱସ୍ଥ ଖଣି ମାନଙ୍କରୁ ପଞ୍ଚତ୍ରିଂଶ ଲକ୍ଷ ପ୍ରସ୍ତରଖଣ୍ଡ ଖନନ କରାହୋଇଥିଲା ଏବଂ ଏହି ପ୍ରସ୍ତରମାନଙ୍କ ଦ୍ୱାରା ବିରାଟ ଚୈତ୍ୟମାନ ନିର୍ମାଣ କରାଯାଇଥିଲା । ଜୈନଧର୍ମର ସମୃଦ୍ଧି ଉନ୍ନତି ଉଦ୍ଦେଶ୍ୟରେ ଖାରବେଳ ଏହି ସମସ୍ତ କାର୍ଯ୍ୟ ଦ୍ୱାରା ରାଜତ୍ୱର ଚତୁର୍ଦ୍ଦଶ ବର୍ଷ ସମାପନ କରିଥିଲେ ।

ଅପ୍ରତ୍ୟାଶିତ ଭାବରେ ଏହି ବର୍ଷ ଶେଷ ପାଖରୁ ଖାରବେଳଙ୍କୁ ଆଉ ଦେଖିବାକୁ ମିଳି ନାହିଁ । ରାଜତ୍ୱର ଚତୁର୍ଦ୍ଦଶ ବର୍ଷରେ ସମ୍ରାଟଙ୍କର ଜୀବନଚରିତ ଶେଷ ହୋଇଛି । ଅନୁମାନ କରାଯାଇ ପାରେ ଯେ ଏହି ବର୍ଷ ଏହି ଭାରତବିଖ୍ୟାତ

ସମ୍ରାଟଙ୍କର ମହାପ୍ରୟାଣ ହୋଇଥିଲା । କିନ୍ତୁ ହାତିଗୁମ୍ଫା ଗାତ୍ରରେ ଲିପିବଦ୍ଧ ହୋଇଥିବା 'ଖାରବେଳ ଚରିତ'ରେ ତାହାଙ୍କ ମୃତ୍ୟୁ ବିଷୟ ଉଲ୍ଲିଖିତ ହୋଇ ନାହିଁ । ହୁଏତ ଉଦୟଗିରିର ନିରବ ବକ୍ଷରେ ଖାରବେଳ ରାଜପରିଚ୍ଛଦ ପରିତ୍ୟାଗପୂର୍ବକ ଜନୈକ ଅଜଣା ଅମୁଣ୍ଡା ସାଧୁରୂପେ ଅଗଣିତ ଜୈନମାନଙ୍କ ସହ ନିଜକୁ ମିଶାଇ ଦେଇଥିବେ ଏବଂ ସେହି ଭ୍ରାମ୍ୟମାଣ ସାଧୁମାନଙ୍କ ଗହଣରେ କଳିଙ୍ଗସୀମା ପରିତ୍ୟାଗ କରି ବିଶାଳ ଭାରତର କେଉଁ ଅଜଣା ଦିଗକୁ ଚାଲି-ଯାଇଥିବେ । ପ୍ରାଚୀନ ଭାରତର ଅପର ଜଣେ ଜୈନସମ୍ରାଟ ଖାରବେଳଙ୍କ ପୂର୍ବରୁ ଠିକ୍ ଏହାହିଁ କରିଥିଲେ । ଚନ୍ଦ୍ରଗୁପ୍ତମୌର୍ଯ୍ୟ ରାଜସିଂହାସନ ପରିତ୍ୟାଗ ପୂର୍ବକ ସାଧୁବେଶରେ ଭାରତର ବିଭିନ୍ନ ସ୍ଥାନ ପରିଭ୍ରମଣ କରି ଶେଷରେ ସୁଦୂର ମହୀଶୂର ଅନ୍ତର୍ଗତ ଶ୍ରାବଣ ବେଲ୍‌ଗୋଲାଠାରେ ଏକ ନୈଷ୍ଠିକ ଜୈନରୂପେ ଜୈନଧର୍ମର ନିୟମାନୁଯାୟୀ ଉପବାସ ଦ୍ୱାରା ଜୀବନର ଅନ୍ତିମ ନିଶ୍ୱାସ ତ୍ୟାଗ କରିଥିଲେ । ଖାରବେଳଙ୍କ ମୃତ୍ୟୁ ସମ୍ବନ୍ଧରେ ହାତିଗୁମ୍ଫା ପ୍ରଶସ୍ତି ନୀରବ ରହିଥିବାରୁ ଏହା ଅନୁମାନ କରାଯାଇପାରେ ଯେ ଚନ୍ଦ୍ରଗୁପ୍ତଙ୍କ ପରି ଖାରବେଳ ମଧ୍ୟ ସନ୍ନ୍ୟାସ ଜୀବନ ଯାପନ ଦ୍ୱାରା ନିଜର ଅନ୍ତିମ ସମୟ ଅତିବାହିତ କରିଥିବେ ଏବଂ ଭାରତର କେଉଁ ଅଜଣା ସ୍ଥାନରେ ପ୍ରକୃତ ଜୈନରୂପେ ଜୈନ ଉପାୟରେ ନିଜର ଜୀବନାନ୍ତ କରିଥିବେ ।

ଏହାହିଁ ଥିଲା କଳିଙ୍ଗର ସର୍ବଶ୍ରେଷ୍ଠ ସମ୍ରାଟ ଖାରବେଳଙ୍କର ସଂକ୍ଷିପ୍ତ ଜୀବନୀ । ମୌର୍ଯ୍ୟ ସାମ୍ରାଜ୍ୟର ପତନ ପରେ ଯେତେବେଳେ ଭାରତର ରାଜନୈତିକ ତଥା ସାଂସ୍କୃତିକ ପରମ୍ପରା ମ୍ଳାନ ହୋଇ ଆସିଥିଲା ସେତିକିବେଳେ ଖାରବେଳ ହୋଇଥିଲେ ଭାରତର ଏକ ବିଶାଳ ଅଞ୍ଚଳର ଭାଗ୍ୟବିଧାତା । କ୍ରମାନ୍ୱୟ ଭାବରେ ଯୁଦ୍ଧ ଚାଳନା କରି ଅତି ଅଳ୍ପ ସମୟ ମଧ୍ୟରେ ସେ ସମଗ୍ର ଦାକ୍ଷିଣାତ୍ୟ ଏବଂ ଉତ୍ତରରେ ମଥୁରା ପର୍ଯ୍ୟନ୍ତ ଏହି ସୁବିଶାଳ ଭୂଖଣ୍ଡ ସ୍ୱ ଅଧୀନକୁ ଆଣିଥିଲେ ଏବଂ ରାଜଧାନୀ କଳିଙ୍ଗ ନଗରରୁ ଉତ୍ତରରେ ମଥୁରା ଓ ଦକ୍ଷିଣରେ କୁମାରିକା ପର୍ଯ୍ୟନ୍ତ ରାଜଦଣ୍ଡ ପରିଚାଳନ କରି ଖାରବେଳ ଭାରତର ଐତିହାସିକ ଏକତା ବଜାୟ ରଖିଥିଲେ । ପ୍ରାଚୀନ ଭାରତର କୌଣସି ସମୟରେ ଆର୍ଯ୍ୟାବର୍ତ୍ତର କୌଣସି ସମ୍ରାଟ ସୁଦୂର ଦକ୍ଷିଣର କନ୍ୟାକୁମାରୀ ପର୍ଯ୍ୟନ୍ତ ସ୍ୱ ଶକ୍ତି ବିସ୍ତାର କରି ପାରି ନ ଥିଲେ । ଏପରିକି ଚନ୍ଦ୍ରଗୁପ୍ତମୌର୍ଯ୍ୟଙ୍କର ସାମ୍ରାଜ୍ୟ ସୀମା ମଧ୍ୟ କୁମାରିକା ପର୍ଯ୍ୟନ୍ତ ବିସ୍ତୃତି ଲାଭ କରି

ନ ଥିଲା । କିନ୍ତୁ ପାଣ୍ଡ୍ୟ ରାଜ୍ୟ ଉପରେ ଶକ୍ତି ବିସ୍ତାର କରି କେବଳ ଖାରବେଳ ହିଁ ନିଜ ସାମ୍ରାଜ୍ୟର ଦକ୍ଷିଣ ସୀମାକୁ କୁମାରିକା ସ୍ପର୍ଶ କରାଇଥିଲେ । ଠିକ୍ ସେହିପରି ପ୍ରାଚୀନ ଭାରତର କୌଣସି କାଳରେ ଦାକ୍ଷିଣାତ୍ୟର କୌଣସି ସମ୍ରାଟ ଆର୍ଯ୍ୟାବର୍ତ୍ତ ବକ୍ଷରେ ସୁଦୂର ମଥୁରା ପର୍ଯ୍ୟନ୍ତ ସ୍ୱ ପ୍ରଭାବ ବିସ୍ତାର କରି ନ ଥିଲେ । କିନ୍ତୁ କେବଳ କରିଥିଲେ ତାହା ଖାରବେଳ । ସୁଦୂର ଦକ୍ଷିଣରେ ପାଣ୍ଡ୍ୟ ଏବଂ ତାମିଲମାନଙ୍କ ଚକ୍ଷୁରେ ଖାରବେଳ ଥିଲେ ଜଣେ ଆର୍ଯ୍ୟାବର୍ତ୍ତର ଆକ୍ରମଣକାରୀ ; ଏବଂ ମଗଧ ଓ ମଥୁରାବାସୀଙ୍କ ଚକ୍ଷୁରେ ଖାରବେଳ ଜଣେ ଦାକ୍ଷିଣାତ୍ୟର ଦିଗ୍‌ବିଜୟୀ । ଉତ୍ତରରୁ ଆସି ଖାରବେଳ ଦାକ୍ଷିଣାତ୍ୟର ଶେଷ ସୀମାରେ ନିଜର ପତାକା ଉତ୍ତୋଳନ କରିଥିଲେ ଏବଂ ଦକ୍ଷିଣରୁ ଯାଇ ସେ ଉତ୍ତରରେ ଗଙ୍ଗା-ଯମୁନା କୂଳରେ ନିଜର ପଦଚିହ୍ନ ରଖିଥିଲେ । ଭାରତର ଐକ୍ୟ ପ୍ରଶ୍ନ ଦିଗରେ ଖାରବେଳଙ୍କର ଏହା ହିଁ ଥିଲା ଶ୍ରେଷ୍ଠ ଦାନ । ତାହାଙ୍କର ସୁଦୃଢ଼ ବାହୁ ଉତ୍ତରାପଥ ଓ ଦକ୍ଷିଣାବର୍ତ୍ତ ମଧ୍ୟରେ ଜାତୀୟ ଏକତାର ବନ୍ଧନ ରଜ୍ଜୁରୂପେ କାର୍ଯ୍ୟ କରିଥିଲା ଏବଂ ତାହାଙ୍କର ଶାସନ-ଦଣ୍ଡ ଭାରତୀୟ ସାମ୍ରାଜ୍ୟବାଦର ଜ୍ୱଳନ୍ତ ପ୍ରତୀକରୂପେ ବିରାଜମାନ କରିଥିଲା । ଭାରତ ଇତିହାସରେ ଖୁବ୍ ଅଳ୍ପ ସଂଖ୍ୟକ ସମ୍ରାଟ ଭାରତର ଉଭୟଖଣ୍ଡ ଉପରେ ରାଜତ୍ୱ କରି ପାରିଛନ୍ତି ଏବଂ ସେହି ଦୃଷ୍ଟିରୁ ଖାରବେଳଙ୍କ ସ୍ଥାନ ମହାପଦ୍ମନନ୍ଦ, ଚନ୍ଦ୍ରଗୁପ୍ତମୌର୍ଯ୍ୟ ଏବଂ ସମୁଦ୍ରଗୁପ୍ତଙ୍କ ସମସ୍ଥାନରେ ।

ସଦା ସର୍ବଦା ଦୂର ଦୂରାନ୍ତର ସ୍ଥାନମାନଙ୍କରେ ଯୁଦ୍ଧରତ ରହିଥିଲେ ମଧ୍ୟ ଏହି ସୈନିକ-ସମ୍ରାଟ କେବେହେଲେ ସାମ୍ରାଜ୍ୟର ଶାସନ କାର୍ଯ୍ୟରେ ଅବହେଳା କରି ନାହାନ୍ତି । ଯୁଦ୍ଧରତ ମହାବୀରମାନଙ୍କୁ ଉତ୍ତମ ଶାସକରୂପେ ଇତିହାସରେ କ୍ୱଚିତ୍ ଦେଖାଯାଏ । କିନ୍ତୁ ସେହି ଦୁଇ ବିପରୀତଧର୍ମୀ ଗୁଣ ଖାରବେଳଙ୍କ ନିକଟରେ ମିଳିତ ହେବାର ଦେଖାଯାଇଥିଲା ଏବଂ ସେ ଯୁଦ୍ଧରେ ଯେପରି ତେଜଃଶାଳୀ ଶାସନ-କାର୍ଯ୍ୟରେ ମଧ୍ୟ ସେହିପରି ସୁଦକ୍ଷ ଥିଲେ । ଶାସନ କ୍ଷେତ୍ରରେ ଖାରବେଳ ଅଶୋକଙ୍କ ପଦାଙ୍କ ଅନୁସରଣ କରିଥିଲେ ଏବଂ ସେହି ପ୍ରିୟଦର୍ଶୀ ସମ୍ରାଟଙ୍କ ପରି ପ୍ରଜା-ମାନଙ୍କର ସୁଖ ଶାନ୍ତିକୁ ମୂଳମନ୍ତ୍ର କରି ଶାସନ କାର୍ଯ୍ୟ ଚଳାଇଥିଲେ । ଦୟା ଏବଂ ଉଦାରତାରେ, ଲୋକହିତକର କାର୍ଯ୍ୟ ଏବଂ ପ୍ରଜାବାତ୍ସଲ୍ୟରେ ଖାରବେଳ ଭାରତର ଯେ କୌଣସି ମହାନୁଭବ ସମ୍ରାଟଙ୍କ ସମକକ୍ଷ । ପ୍ରାଚୀନ ଯୁଗର ଏହି ରାଜାଙ୍କୁ ଆମ୍ଭେମାନେ ଅଷ୍ଟମ ପ୍ରକାରର ଆଧୁନିକ ଲୋକହିତକର କାର୍ଯ୍ୟରେ

ବ୍ୟସ୍ତ ଥିବାର ଦେଖିପାରୁଁ । ଜଳପଥ ଓ କେନାଲ ଖନନ, ନଦୀ ହ୍ରଦମାନଙ୍କ ତଟରେ ବନ୍ଧ ନିର୍ମାଣ, ଜଳ ସଞ୍ଚୟ ପାଇଁ ଜଳାଗାର ନିର୍ମାଣ, ନଗରବାସୀଙ୍କ ପ୍ରମୋଦ ପାଇଁ ଉଦ୍ୟାନ ପ୍ରଭୃତି ତିଆରି ଏବଂ ଖାରବେଳଙ୍କର ଏହିପରି ଅପର ସବୁ କାର୍ଯ୍ୟ ଦେଖି ବାସ୍ତବିକ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ । ସାମ୍ରାଜ୍ୟର ଅକଳନ୍ତି ଅର୍ଥ ପ୍ରଜାଙ୍କ ହିତାର୍ଥେ ବ୍ୟୟ ହୋଇଥିଲା । ବାରମ୍ବାର ନାଗରିକମାନଙ୍କୁ ଖାଦ୍ୟପେୟଦ୍ୱାରା ଆପ୍ୟାୟିତ କରିବା ଖାରବେଳଙ୍କ ଲୋକପ୍ରିୟତାର ଅପର ଏକ ପରିଚୟ । ଯଦି ପ୍ରାଚୀନ କଳିଙ୍ଗରେ ଖାରବେଳଙ୍କ ଯୁଗ ସର୍ବୋତ୍ତମ ଯୁଗ ଥିଲା ତାହା ମୁଖ୍ୟତଃ ତାହାଙ୍କର ପ୍ରଜାବାତ୍ସଲ୍ୟ ପାଇଁ ।

ଖାରବେଳଙ୍କ ସୈନିକ ଜୀବନରେ ତାହାଙ୍କର ସର୍ବଶ୍ରେଷ୍ଠ କୃତୀତ୍ୱ ଥିଲା ଗ୍ରୀକ୍ ସମ୍ରାଟ ଡେମିଟ୍ରିୟସ୍‌ଙ୍କୁ ପରାଜିତ କରିବା । ଭାରତର ଦୁର୍ଦ୍ଦିନରେ ଯଥାଯୋଗ୍ୟ ଭାବରେ ସେ ମାତୃଭୂମିର ମର୍ଯ୍ୟାଦା ରକ୍ଷା କରିଥିଲେ । ଭାରତ ଇତିହାସରେ ଯେଉଁ ସମସ୍ତ ମହାବୀର ବିଦେଶୀମାନଙ୍କ ବିରୁଦ୍ଧରେ ସଂଗ୍ରାମ କରି ଅମର ହୋଇଛନ୍ତି ତାହା ମଧ୍ୟରୁ ଖାରବେଳଙ୍କ ନାମ ହେଉଛି ଗୋଟିଏ ଯେଉଁ ନାମ ବିଦେଶୀମାନଙ୍କର ହୃତ୍‌କମ୍ପ ଉପୁଜାଇ ପାରିଥିଲା ।

ଖାରବେଳଙ୍କର ବୀର ପ୍ରକୃତି ତାହାଙ୍କର ପାଣ୍ଡିତ୍ୟ ଉପରେ ବ୍ୟାଘାତ ଆଣି ନ ଥିଲା । କନିଷ୍କ ଏବଂ ହର୍ଷଙ୍କ ପରି ଖାରବେଳ ଥିଲେ ଏକାଧାରରେ ମହାଯୋଦ୍ଧା ଏବଂ ମହାବିଦ୍ୱାନ । ହିନ୍ଦୁ ରାଜକୀୟ ପରମ୍ପରା ଦଳୀୟ ରକ୍ଷୀ ଖାରବେଳ ଦେଶର ପାଣ୍ଡିତ୍ୟ ଏବଂ ଶିକ୍ଷାର ପୃଷ୍ଠପୋଷକତା କରିଥିଲେ । ଶୈଶବ ଅବସ୍ଥାରେ ଆମ୍ଭେ-ମାନେ ସମ୍ରାଟଙ୍କୁ ଏକ ସର୍ବାଙ୍ଗୀନ ଶିକ୍ଷାଲାଭ କରିବାର ଦେଖିଛୁଁ । ଖାରବେଳ ଚରିତରେ ତାହାଙ୍କର କଳାନୁରାଗର ସବୁ ନିଦର୍ଶନ ଉଲ୍ଲିଖିତ ହୋଇଛି । ସାହିତ୍ୟର ପୃଷ୍ଠପୋଷକରୂପେ ସେ ନିଜ 'ଜୀବନ ଚରିତ' ପରି ପ୍ରାଚୀନ ସାହିତ୍ୟର ଏକ ଅପରୂପ ନିଦର୍ଶନ ଭବିଷ୍ୟତ ପାଇଁ ହାତିଗୁମ୍ଫା ଶିଳାରେ ଲିପିବଦ୍ଧ କରି-ଯାଇଛନ୍ତି । ସଙ୍ଗୀତର ପୃଷ୍ଠପୋଷକରୂପେ ଖାରବେଳ ରାଜଧାନୀରେ ବାରମ୍ବାର ସେ କଳାର ପୃଷ୍ଠପୋଷକତା କରିଥିଲେ । ଆମ୍ଭେମାନେ ସମ୍ରାଟଙ୍କୁ ଉଦୟଗିରିଠାରେ ଭାରତୀୟ ପଣ୍ଡିତ ସମାଜ ସହ ଧର୍ମସମ୍ବନ୍ଧୀୟ ଉଚ୍ଚାଙ୍ଗ ଆଲୋଚନାରେ ବ୍ୟସ୍ତ ରହିଥିବାର ଦେଖିଛୁଁ । ଏହାପରେ ତାହାଙ୍କୁ ଏକ ଧର୍ମ ମହାସମ୍ମିଳନୀରେ

ସାରା ଭାରତର ଜୈନ ପଣ୍ଡିତମାନଙ୍କୁ ସମବେତ କରିଥିବାର ଦେଖାଯାଉଛି । ଏପରିକି ଜୈନଧର୍ମର ଲୁପ୍ତ ଦର୍ଶନର ପୁନରୁଦ୍ଧାର ମଧ୍ୟ ତାହାଙ୍କର ପାଣ୍ଡିତ୍ୟପୂର୍ଣ୍ଣ ନେତୃତ୍ୱରେ ସମ୍ଭବପର ହୋଇ ପାରିଛି । ଏସମସ୍ତ ବିଷୟ ବହୁଦୂର ପର୍ଯ୍ୟନ୍ତ ପ୍ରମାଣ କରିଥାଏ ଯେ ସେ ଯୁଗର ପ୍ରାଚ୍ୟଖଣ୍ଡରେ ଖାରବେଳ ଥିଲେ ମହାପଣ୍ଡିତ-ମାନଙ୍କ ମଧ୍ୟରୁ ଜଣେ ।

ଏହି ବିଦ୍ୱାନ ସମ୍ରାଟ ମଧ୍ୟ ଥିଲେ ସେ ଯୁଗର ସର୍ବଶ୍ରେଷ୍ଠ ନିର୍ମାତା । ଅଶୋକଙ୍କ ବ୍ୟତୀତ ପ୍ରାଚୀନ ଭାରତରେ ଅପର କେହି ସମ୍ରାଟ ନ ଥିଲେ ଯାହାଙ୍କୁ ନିର୍ମାତା ହିସାବରେ ଖାରବେଳଙ୍କ ସହିତ ତୁଳନା କରାଯାଇ ପାରିବ । ଭାରତୀୟ ସ୍ଥାପତ୍ୟର ଇତିହାସରେ ଅଶୋକ ଏବଂ ଖାରବେଳ ଅପ୍ରତିଦ୍ୱନ୍ଦୀ । ଅଶୋକଙ୍କ ସ୍ଥାପତ୍ୟ ଥିଲା ବୌଦ୍ଧ ସ୍ଥାପତ୍ୟର ମେରୁଦଣ୍ଡ ; ଖାରବେଳଙ୍କ ସ୍ଥାପତ୍ୟ ଜୈନ ସ୍ଥାପତ୍ୟର ହୃତ୍‌ପିଣ୍ଡ । କଳିଙ୍ଗ ସ୍ଥାପତ୍ୟର ଇତିହାସରେ ଖାରବେଳଙ୍କ ସ୍ଥାନ ଶୀର୍ଷ । ଏହି ଜୈନ ସମ୍ରାଟଙ୍କ ନିର୍ମିତ ଶତ ଶତ ଜୈନଗୁମ୍ଫା ମଧ୍ୟରୁ ଆଜିସୁଦ୍ଧା କେତେକ ଖଣ୍ଡଗିରି-ଉଦୟଗିରି ବକ୍ଷରେ ଦଣ୍ଡାୟମାନ । କଳିଙ୍ଗ ସ୍ଥାପତ୍ୟକୁ ଖାରବେଳଙ୍କ ଦାନ ଥିଲା ବହୁତ । ସଂଖ୍ୟାତୀତ ଶୈଳଗୁମ୍ଫା, ମନ୍ଦିର, ବେଦୀ, ସ୍ତମ୍ଭ, ଚୈତ୍ୟ, ସ୍ମୃତିପୀଠ, ସଭାକକ୍ଷ, ତୋରଣ ଏବଂ ରାଜପ୍ରାସାଦମାନ ଖାରବେଳଙ୍କ ନିର୍ଦ୍ଦେଶରେ ଅକ୍ଲାନ୍ତ ପରିଶ୍ରମଦ୍ୱାରା କଳିଙ୍ଗଦେଶର ଶିଳ୍ପୀମାନେ ନିର୍ମାଣ କରିଥିଲେ । ପ୍ରାଚୀନ କଳିଙ୍ଗରେ ଏପରିଭାବରେ ସ୍ଥାପତ୍ୟର ବିକାଶ ଏହି ପ୍ରଥମ । ଅଶୋକ ଇତିହାସ ଯୁଗରେ କଳିଙ୍ଗମାଟିରେ ସ୍ଥାପତ୍ୟର ମୂଳଦୁଆ ଦେଇଥିଲେ । ତାହାଙ୍କ ପରେ ଖାରବେଳ ସେହି ପ୍ରାଚୀନ ସ୍ଥାପତ୍ୟକୁ ପୂର୍ଣ୍ଣାଙ୍ଗ ପ୍ରଦାନ କରିଥିଲେ । ଅଶୋକଙ୍କ ପାଟଳିପୁତ୍ର ରାଜପ୍ରାସାଦ ପରି କଳିଙ୍ଗନଗରରେ ଖାରବେଳଙ୍କର 'ମହାବିଜୟ ପ୍ରାସାଦ' ଭୂପୃଷ୍ଠରୁ ଲୋପ ପାଇଯାଇଛି । କିନ୍ତୁ ହାତୀଗୁମ୍ଫା ସେହି ପ୍ରାସାଦର ସ୍ଥାପତ୍ୟକଳା ସମ୍ବନ୍ଧରେ ଆଜିସୁଦ୍ଧା ଆଭାସ ଦେଉଛି ।

ଜୈନଧର୍ମ ପାଇଁ ଖାରବେଳ ଯାହା କରିଯାଇଛନ୍ତି ତାହାର ଗୁରୁତ୍ୱ ବର୍ଣ୍ଣନା କରିବା ଅସମ୍ଭବ । ବୌଦ୍ଧଧର୍ମରେ ଅଶୋକଙ୍କର ଯେଉଁ ସ୍ଥାନ, ଜୈନଧର୍ମରେ ଖାରବେଳଙ୍କର ମଧ୍ୟ ତଦନୁରୂପ । କିନ୍ତୁ ଜୈନଧର୍ମର ଏହି ରାଜପୃଷ୍ଠ-ପୋଷକ ଅନ୍ୟ ଧର୍ମମାନଙ୍କ ପ୍ରତି ଭୁଲ ବଶତଃ ମଧ୍ୟ ଈର୍ଷାପରବଶ ହୋଇ

ନ ଥିଲେ । ଆମ୍ଭେମାନେ ଖାରବେଳଙ୍କୁ ମହାବୀର ଜୀନଙ୍କ ସ୍ତୂପପୀଠରେ ପୂଜା କରିବାର ଦେଖିଛୁଁ, କଳିଙ୍ଗ ଜୀନାସନକୁ ମଗଧରୁ କଳିଙ୍ଗ ଆଣିବାର ଦେଖିଛୁଁ, ଜୈନ ତାପସଙ୍କର ସେବାରତ ଥିବା ଦେଖିଛୁଁ, ଏବଂ ଜୈନ ମହାସଭା ଆହ୍ୱାନ କରିବାର ମଧ୍ୟ ଦେଖିଛୁଁ, କିନ୍ତୁ କୈାଣସିକାଳେ ସେ ଅନ୍ୟଧର୍ମପ୍ରତି ବିଦ୍ୱେଷ ବହନ କରିଥିବାର ଶୁଣି ନାହୁଁ କିମ୍ବା କୌଣସି କାଳରେ ଧର୍ମ ନାମରେ ହିଂସାପରବଶ ହୋଇଥିବାର ଦେଖି ନାହୁଁ । ଜାତି-ଧର୍ମ-ନିର୍ବିଶେଷରେ ସମସ୍ତଙ୍କ ପ୍ରତି ଉଦାରଭାବ ପୋଷଣ କରିବା ଥିଲା ହିନ୍ଦୁ ସମ୍ରାଟମାନଙ୍କର ଗତାନୁଗତିକ ରୀତି । ପୁରାତନ ଭାରତର ଏକ ଆଧ୍ୟାତ୍ମିକ ସଭ୍ୟତାର ପ୍ରକୃତ ପ୍ରତିରୂପେ ଖାରବେଳ ମଧ୍ୟ ଥିଲେ ଉଦାର ଏବଂ ମହାନୁଭବ ।

ଏକାଧାରରେ ସୈନିକ ଏବଂ ସନ୍ନ୍ୟାସୀ, ସମ୍ରାଟ ଏବଂ ଭିକ୍ଷୁ, ଯୋଦ୍ଧା ଏବଂ ଶାସକ ହିସାବରେ ଖାରବେଳ କଳିଙ୍ଗ ଭୂମିର ଏକ ଅଦ୍ୱିତୀୟ ସନ୍ତାନ । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ତାହାଙ୍କର ସେହି ସଂକ୍ଷିପ୍ତ ରାଜତ୍ୱକାଳ ଆଜିପର୍ଯ୍ୟନ୍ତ ଉତ୍କଳ ଇତିହାସର ଶ୍ରେଷ୍ଠତମ ଯୁଗ ବୋଲି ପରିଗଣିତ ହୋଇଆସୁଛି । ଯୁଗ ଯୁଗ ପରେ ମଧ୍ୟ 'ଆର୍ଯ୍ୟ ମହାରାଜ, ମହାମେଘବାହନ, ଚେତ ରାଜବଂଶ ବର୍ଦ୍ଧନ, ପ୍ରଶସ୍ତ ଶୁଭଲକ୍ଷଣ, ଚତୁରନ୍ତରକ୍ଷଣ ଗୁଣୋପେତ, କଳିଙ୍ଗାଧିପତି, ସୁଣ୍ଯାମଳ' ଶ୍ରୀ ଖାରବେଳଙ୍କର ବିଜୟ କାହାଣୀ ଏବଂ ଧର୍ମକୀର୍ତ୍ତି ଏ ଦେଶବାସୀଙ୍କର ଗର୍ବ ଏବଂ ଗୌରବର ସର୍ବପ୍ରଥମ ବିଷୟବସ୍ତୁ ।[1]



---

1. ମୁଦ୍ରିତ 'Glimpses of Kalinga History' ନାମକ ପୁସ୍ତକର 'A Great Conqueror and his Career' ନାମକ ପ୍ରବନ୍ଧର ଛାୟା ଅବଲମ୍ବନରେ ଲିଖିତ । ଏହିଠାରେ ଏହା ବିଶେଷ ଉଲ୍ଲେଖଯୋଗ୍ୟ ଯେ ସମ୍ରାଟ ଖାରବେଳଙ୍କ ସମୟ ସମ୍ବନ୍ଧରେ ଏପର୍ଯ୍ୟନ୍ତ ଐତିହାସିକମାନେ ଏକମତ ହୋଇ ପାରିଲେ ନାହିଁ । ଏବିଷୟରେ ବିଭିନ୍ନ ଐତିହାସିକମାନଙ୍କର ମତାମତ ଏଠାରେ ସ୍ଥାନାଭାବରୁ ଦିଆଯାଇ ପାରିଲା ନାହିଁ । ସେ ଯାହାହେଉ, ଖାରବେଳଙ୍କ ସମୟ ସମ୍ବନ୍ଧରେ ମୁଁ ଜୟସ୍ୱାଲ, ରାଖାଲ ଦାସ ବ୍ୟାନାର୍ଜି ପ୍ରମୁଖ ବିଶିଷ୍ଟ ଐତିହାସିକମାନଙ୍କର ମତଟିକୁ ଗ୍ରହଣ କରିଛି । ମୋର ଅନୁମାନ ସେମାନଙ୍କଦ୍ୱାରା ନିର୍ଦ୍ଧିଷ୍ଟ ହୋଇଥିବା ସମୟଟିକୁ ଗ୍ରହଣ ନ କଲେ ଖାରବେଳଙ୍କ ରାଜତ୍ୱ ସମ୍ବନ୍ଧରେ ଅନେକ ବିଷୟ ଗଣ୍ଡଗୋଳ ମଧ୍ୟରେ ପଡ଼ିଯିବ । ମୋ ମତରେ ଖାରବେଳଙ୍କ ସମୟ ଅଦ୍ୟପର୍ଯ୍ୟନ୍ତ ଯୁକ୍ତିତର୍କର ବିଷୟବସ୍ତୁ ହୋଇ ରହିପାରେ । କିନ୍ତୁ ତାହାଙ୍କ କୃତୀତ୍ୱ ଉପରେ ସନ୍ଦେହ କରିବାର କିଛି ନାହିଁ । କାରଣ ଯାହାଫଳରେ ଖାରବେଳଙ୍କ ସମୟ ବିଷୟରେ ନୀରବ ରହିଲେ ମଧ୍ୟ ତାହାଙ୍କ କୃତୀତ୍ୱ ବିଷୟରେ ସବାକ୍ । ସୁତରାଂ କୃତୀତ୍ୱ ଦୃଷ୍ଟିରୁ ଖାରବେଳଙ୍କୁ ଉତ୍କଳର ପ୍ରାୟ ସର୍ବଶ୍ରେଷ୍ଠ ନରପତି ବୋଲି କହିଲେ ବିଶେଷ କିଛି ଅତ୍ୟୁକ୍ତି ହେବ ନାହିଁ ।

# ଖ୍ରୀଷ୍ଟ ଯୁଗର ପ୍ରଥମ ପାଦରେ କଳିଙ୍ଗ

ଚେତ ସାମ୍ରାଜ୍ୟର ପତନ ପାଖରୁ ଗୁପ୍ତଯୁଗର ଆରମ୍ଭ ପର୍ଯ୍ୟନ୍ତ କଳିଙ୍ଗ ଇତିହାସ ଅନ୍ଧକାରାଚ୍ଛନ୍ନ । ଦୀର୍ଘ ପଞ୍ଚଶତ ବର୍ଷବ୍ୟାପୀ ଏହି ଅନ୍ଧକାରାଚ୍ଛନ୍ନ ଯୁଗ ମଧ୍ୟରେ କଳିଙ୍ଗର ରାଜନୈତିକ ଏବଂ ସାଂସ୍କୃତିକ ମଣ୍ଡଳରେ ଅନେକ ପରିବର୍ତ୍ତନ ସଂଘଟିତ ହୋଇଥିବ । ଐତିହାସିକ ବିଷୟବସ୍ତୁ ଅଭାବରେ ଏହି ସମସ୍ତ ପରିବର୍ତ୍ତନର ରୂପରେଖା ନିର୍ଣ୍ଣୟ କରିବା ଅସମ୍ଭବ । କେବଳ ଅନୁମାନଦ୍ୱାରା ଯେତିକି ଧରି ଯାଇ ପାରିବ ସେତିକି । ଏହି ଯୁଗରେ ଭାରତର ଉତ୍ତର-ପଶ୍ଚିମ ଖଣ୍ଡରେ ଏକ ଭୁମୂଳ ରାଜନୈତିକ ଏବଂ ସାଂସ୍କୃତିକ ବିପ୍ଳବ ଘଟିଥାଏ । ଏ ବିପ୍ଳବ ହେଉଛି ଭାରତର ଉତ୍ତର-ପଶ୍ଚିମାଞ୍ଚଳରେ ବୈଦେଶିକ ଜାତିମାନଙ୍କର ଶକ୍ତି ବିସ୍ତାର ଏବଂ ଏହା ଫଳରେ ବୈଦେଶିକ ସଭ୍ୟତା ସହ ଭାରତୀୟ ସଭ୍ୟତାର ସଂଘର୍ଷ ଓ ମିଳନ । ଉତ୍ତର-ପଶ୍ଚିମାଞ୍ଚଳରେ ସଂଘଟିତ ହୋଇଥିବା ଏହି ବିପ୍ଳବର ପ୍ରଭାବ କଳିଙ୍ଗ ଉପରେ ଉଣା ଅଧିକ ଛାୟାପାତ କରିଥାଇ ପାରେ ବୋଲି ଅନୁମାନ କରାଯାଇପାରେ । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ମଧ୍ୟ-ଏସିଆର ଯାଯାବର ଶକ ଏବଂ ପହ୍ଲବ ଜାତିର ଆକ୍ରମଣ ସ୍ରୋତ ଭାରତ ଉପରକୁ ମାଡ଼ି ଆସିଥିଲା । ଅକ୍ଷୁ ନଦୀତଟରୁ ଶକ ଆକ୍ରମଣକାରୀମାନେ ଇରାନ୍, ଆଫଗାନିସ୍ଥାନ ଓ ଭାରତର ଉତ୍ତର-ପଶ୍ଚିମ ସୀମାନ୍ତ ଉପରେ ,ଆକ୍ରମଣ ଚଳାଇ କାଳକ୍ରମେ ସେହି ସବୁ ଅଞ୍ଚଳ ଉପରେ ଅଧିକାର ବିସ୍ତାର କରିଥିଲେ । ଭାରତବର୍ଷର ପ୍ରଥମ ଶକ ରାଜାଙ୍କର ନାମ ଥିଲା ମୋଗ ଏବଂ ଏହି ପରାକ୍ରମଶାଳୀ ରାଜା ଗ୍ରୀକ୍‌ମାନଙ୍କ ନିକଟରୁ ତକ୍ଷଶିଳା ଅଞ୍ଚଳ ଅଧିକାର କରି ନେଇଥିଲେ । ଏହାଙ୍କ ପରେ ଶକମାନେ କ୍ରମେ କ୍ରମେ ମଥୁରା, ଉଜ୍ଜୟିନୀ ଏବଂ ସୁରାଷ୍ଟ୍ର ଅଞ୍ଚଳରେ ମଧ୍ୟ ଶକ ସାମ୍ରାଜ୍ୟ ବିସ୍ତାର କରିଥିଲେ । ଶକମାନଙ୍କ ସଙ୍ଗେ ସଙ୍ଗେ କାସ୍ପିୟାନ ସାଗର କୂଳରୁ ଓ ଉତ୍ତର ପାରସ୍ୟଖଣ୍ଡରୁ ଯାଯାବର ପହ୍ଲବ ବା ପାର୍ଥିୟାନ ଜାତି ମଧ୍ୟ କାନ୍ଦାହାର ଓ ସୀମାନ୍ତ ଅଧିକାର କରି ପଞ୍ଜାବ

ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲେ । ଶକ ଏବଂ ପହ୍ଳବମାନଙ୍କର ରାଜନୈତିକ ପ୍ରତିପତ୍ତି ବିସ୍ତାର ଲାଭ କରୁଥିଲାବେଳେ ସେମାନଙ୍କ ସହିତ ପାରସ୍ୟ ଦେଶର ସଭ୍ୟତା ଓ ଧର୍ମ ଭାରତର ପଶ୍ଚିମାଞ୍ଚଳ ଉପରେ ପ୍ରଭାବ ବିସ୍ତାର କରୁଥାଏ । ଶକ-ପହ୍ଳବମାନଙ୍କ ପରେ ପରେ ଏବଂ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ପ୍ରଥମ ଭାଗରେ ଆସିଲେ କୁଶାନମାନେ । କୁଶାନମାନେ ଥିଲେ ପ୍ରସିଦ୍ଧ ଇଉ-ଚି ଜାତିର ଗୋଟିଏ ଶାଖା । ଚୀନ ସାମ୍ରାଜ୍ୟର ସୁଦୂର ଉତ୍ତର-ପଶ୍ଚିମ ସୀମାନ୍ତ ଅଞ୍ଚଳ ହେଉଛି ଇଉଚି ଜାତିର ଆଦିଗୃହ । କାଳକ୍ରମେ ହିଉଂ-ନୋ ନାମକ ଏକ ଦୁର୍ଦ୍ଧର୍ଷ ଯାଯାବର ଜାତିଦ୍ୱାରା ବିତାଡ଼ିତ ହୋଇ ଇଉ-ଚି ଜାତି ମଧ୍ୟ-ଏସିଆ ଖଣ୍ଡକୁ ପଳାଇ ଆସିଥିଲା ଏବଂ ଶେଷରେ ମଧ୍ୟ-ଏସିଆ ଖଣ୍ଡରୁ ଇଉ-ଚି ଜାତିର ଏକ ଶକ୍ତିଶାଳୀ ଶାଖା ଭାରତ ମଧ୍ୟକୁ ପ୍ରବେଶ କରିଥିଲା । ଏହି ଶାଖା କୁଶାନ ନାମରେ ବିଖ୍ୟାତ । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ପ୍ରାୟ ମଧ୍ୟ ଭାଗରେ କୁଶାନମାନଙ୍କର ଏକ ପରାକ୍ରମଶାଳୀ ନେତା, କୁଜଲ କାଡ଼ଫିସ, ଭାରତର ଗାନ୍ଧାର ଅଞ୍ଚଳ ଅଧିକାର କରି କୁଶାନ ସାମ୍ରାଜ୍ୟର ମୂଳପତ୍ତନ କରିଥିଲେ । ତାହାଙ୍କ ସାମ୍ରାଜ୍ୟ ପାରସ୍ୟ ସୀମାରୁ ସିନ୍ଧୁ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ତାହାଙ୍କ ପୁତ୍ର ଭିମ କାଡ଼ଫିସ୍‌ଙ୍କ ନେତୃତ୍ୱରେ କୁଶାନମାନେ ଗାନ୍ଧାର ନିକଟରୁ କାଶୀ ପର୍ଯ୍ୟନ୍ତ ଏହି ବିସ୍ତୃତ ଭୂଖଣ୍ଡ କୁଶାନ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଥିଲେ । କୁଶାନମାନଙ୍କର ଭାରତ ଆଗମନ ଫଳରେ ଏ ଦେଶର ଉତ୍ତର-ପଶ୍ଚିମାଞ୍ଚଳରେ ତିନି ମହା ସଭ୍ୟତାର ମିଳନ ହୋଇଥିଲା । କୁଶାନମାନଙ୍କର ପ୍ରଥମ ଗୃହ ଥିଲା ଚୀନ, ଦ୍ୱିତୀୟ ଗୃହ ମଧ୍ୟ-ଏସିଆ ଏବଂ ତୃତୀୟ ଗୃହ ହେଲା ଭାରତ । ତେଣୁ ସେମାନଙ୍କ ସଙ୍ଗରେ ଚୀନ ଏବଂ ମଧ୍ୟ-ଏସିଆର ସଭ୍ୟତା ଭାରତ ପ୍ରବେଶ କଲା । କିନ୍ତୁ ଅନତିବିଳମ୍ବେ ଭାରତୀୟ ସଭ୍ୟତା କୁଶାନମାନଙ୍କର ଚୀନ ଓ ମଧ୍ୟ-ଏସିଆର ସଭ୍ୟତା ଦ୍ୱୟକୁ ଗର୍ଭସାତ୍ କରିଦେଇଥିଲା । କୁଶାନମାନେ ଥିଲେ ବିଦେଶୀ, ସେମାନଙ୍କର ଧର୍ମ ଥିଲା ଭାରତୀୟ ଧର୍ମମାନଙ୍କଠାରୁ ପୃଥକ । କିନ୍ତୁ ଭାରତ ମାଟିରେ ପଦାର୍ପଣ କରିବା ସଙ୍ଗେ ସଙ୍ଗେ ଭାରତୀୟ ଧର୍ମ କୁଶାନମାନଙ୍କୁ ସ୍ୱ ବକ୍ଷକୁ ଟାଣି ନେଇଥିଲା । କୁଶାନମାନେ ଅତିଅଳ୍ପ ସମୟ ମଧ୍ୟରେ ଭାରତୀୟ ଧର୍ମରେ ଦୀକ୍ଷିତ ହୋଇଥିଲେ । ଏହା ସନାତନ ହିନ୍ଦୁଧର୍ମର ଏକ ବିଶେଷତ୍ୱ । ଅତିଦୂର କାଳରୁ ଭାରତ ମଧ୍ୟକୁ କେତେ ଅଗଣିତ ବୈଦେଶିକ ଜାତି ଆସିଛନ୍ତି କିନ୍ତୁ ହିନ୍ଦୁ ସଭ୍ୟତା ଓ ହିନ୍ଦୁଧର୍ମ ମଧ୍ୟରେ ସେମାନଙ୍କର ଅସ୍ତିତ୍ୱ ଚିରଦିନ ଲୋପ ପାଇଛି । କୁଶାନମାନେ ମଧ୍ୟ ଅଳ୍ପ ସମୟ ମଧ୍ୟରେ ଭାରତ ଗର୍ଭରେ

ସେମାନଙ୍କର ଅସ୍ତିତ୍ୱ ହରାଇଥିଲେ । ଦ୍ୱିତୀୟ କୁଶାନ ସମ୍ରାଟ ଭିମ କାଡ଼ଫିସ୍‌ଙ୍କ ମୁଦ୍ରାରେ ବୃଷଭ-ବାହନ ଶିବଙ୍କ ମୂର୍ତ୍ତି ଦେଖିବାକୁ ମିଳେ । ଅର୍ଥାତ୍, ଏହି କୁଶାନ ସମ୍ରାଟ ଭାରତରେ ପ୍ରବେଶ କଲାପରେ ବ୍ରାହ୍ମଣ୍ୟଧର୍ମଦ୍ୱାରା ପ୍ରଭାବିତ ହୋଇ ଶିବ ଉପାସକରୂପେ ଜୀବନ ଯାପନ କରିଥିଲେ । ଏହାଙ୍କ ପରେ କୁଶାନ ବଂଶର ସର୍ବଶ୍ରେଷ୍ଠ ସମ୍ରାଟ କନିଷ୍କ ସିଂହାସନ ଆରୋହଣ କରିଥିଲେ । ଏହାଙ୍କ ଅମଳରେ କୁଶାନ ସାମ୍ରାଜ୍ୟ ତାହାର ଦୀର୍ଘତମ ସୀମା ସ୍ପର୍ଶ କରିଥିଲା ଏବଂ କୁଶାନ ସଭ୍ୟତା ଉନ୍ନତିର ଶୀର୍ଷ ସୀମାରେ ପହଞ୍ଚିଥିଲା । ତୁର୍କସ୍ଥ ଦେଶର କାଶ୍‌ଗର୍, ୟାରଖଣ୍ଡ ଏବଂ ଖୋଟାନ ପ୍ରଭୃତି ସ୍ଥାନ କନିଷ୍କ ଅଧିକାର କରିଥିଲେ । କାଶ୍ମୀର ମଧ୍ୟ ଏହାଙ୍କ ପଦାନତ ହୋଇଥିଲା । ମଧ୍ୟ-ଏସିଆ ପାଖରୁ କାଶୀ ପର୍ଯ୍ୟନ୍ତ ଭୂଭାଗ ଏ ସମୟରେ କୁଶାନ ସାମ୍ରାଜ୍ୟର ସ୍ଥାୟୀ ଅଙ୍ଗ ଥିଲା । ଏହାଛଡ଼ା, କନିଷ୍କ ପାଟଳିପୁତ୍ର ଆକ୍ରମଣ କରିଥିବାର ଜଣାଯାଏ । ଭାରତ ଏବଂ ମଧ୍ୟ-ଏସିଆ ବାହାରେ କନିଷ୍କ ଚୀନ ସାମ୍ରାଜ୍ୟ ବିରୁଦ୍ଧରେ ମଧ୍ୟ ଯୁଦ୍ଧ ଘୋଷଣା କରିଥିଲେ । କଥିତ ଅଛି ଚୀନ ସମ୍ରାଟଙ୍କୁ ପରାସ୍ତ କରି କନିଷ୍କ ଜଣେକ ଚୀନ ରାଜକୁମାରଙ୍କୁ ରାଜବନ୍ଦୀରୂପେ ଅଟକ କରି ରଖିଥିଲେ ଏବଂ ପରେ ଏହି ରାଜବନ୍ଦୀଙ୍କୁ ପୂର୍ବ ପଞ୍ଜାବର ଚୀନାଭୁକ୍ତି ନାମକ ଜିଲ୍ଲା ଭୋଗ କରିବାକୁ ଦେଇଥିଲେ । ଖ୍ରୀଷ୍ଟ ଯୁଗର ପ୍ରଥମ ପାଦରେ କନିଷ୍କଙ୍କୁହିଁ ଭାରତରେ ଏକ ବିଶାଳ ସାମ୍ରାଜ୍ୟ ନିର୍ମାଣ କରିଥିବାର ଦେଖାଯାଏ । ବର୍ତ୍ତମାନ ପ୍ରଶ୍ନ ହେଉଛି କନିଷ୍କଙ୍କ କୁଶାନ ସାମ୍ରାଜ୍ୟ କଳିଙ୍ଗ ଦେଶକୁ ସ୍ୱ ଅନ୍ତର୍ଭୁକ୍ତ କରିଥିଲା କି ନାହିଁ । କଳିଙ୍ଗର ବିଭିନ୍ନ ସ୍ଥାନରୁ, ବିଶେଷତଃ ପୁରୀ, ଗଞ୍ଜାମ ଏବଂ ମୟୂରଭଞ୍ଜ ଜିଲ୍ଲାମାନଙ୍କର ଅନେକ ସ୍ଥାନରୁ କୁଶାନ ସମ୍ରାଟମାନଙ୍କର ବହୁମୁଦ୍ରା ପ୍ରତ୍ନତତ୍ତ୍ୱବିଦ୍‌ମାନଙ୍କଦ୍ୱାରା ଆବିଷ୍କୃତ ହୋଇଛି । ପୁରୀ ଜିଲ୍ଲାର ମାଣିକପାଟଣାଠାରେ ଅନେକଗୁଡ଼ିଏ କୁଶାନ ମୁଦ୍ରା ଆବିଷ୍କୃତ ହୋଇଥିବାରୁ ଡକ୍ଟର ହୋଏର୍ଣ୍ଣଲ ଏହି ମୁଦ୍ରାମାନଙ୍କର ନାମ ରଖିଥିଲେ 'ପୁରୀ-କୁଶାନ' । ୧୮୫୮ ଖ୍ରୀଷ୍ଟାବ୍ଦରେ ଗଞ୍ଜାମ ଜିଲ୍ଲାର ପୁରୁଷୋତ୍ତମପୁରଠାରେ ଏହି ମୁଦ୍ରା ବହୁସଂଖ୍ୟାରେ ଆବିଷ୍କୃତ ହୋଇଥିଲା । ୧୯୧୭ସାଲରେ ପୁନର୍ବାର ସିଂହଭୂମ ଜିଲ୍ଲାର ରଖା ପାହାଡ଼ର ଉତ୍ତର ପାର୍ଶ୍ୱରୁ କୁଶାନ ଯୁଗର ମୁଦ୍ରା ବାହାର କରାଯାଇଥିଲା । ଏହାପରେ ମୟୂରଭଞ୍ଜର କୌଣସି ସ୍ଥାନରୁ ବହୁ ସଂଖ୍ୟକ କୁଶାନ ମୁଦ୍ରା ଆବିଷ୍କାର କରାଯାଇଛି । ମୟୂରଭଞ୍ଜରୁ ଆବିଷ୍କୃତ ହୋଇଥିବା ମୁଦ୍ରାମାନଙ୍କ ମଧ୍ୟରୁ ୨୭୦ଟି ମୁଦ୍ରା ହେଉଛି 'ପୁରୀ-କୁଶାନ' ଢଙ୍ଗର ଏବଂ ୧୧୨ଟି ହେଉଛି ସମ୍ରାଟ କନିଷ୍କ ଏବଂ ହବିଷ୍କଙ୍କର ମୁଦ୍ରା । ଉତ୍କଳର

ଅନ୍ୟାନ୍ୟ ସ୍ଥାନରୁ ମଧ୍ୟ କୁଶାନ ଯୁଗର ମୁଦ୍ରା ମିଳୁଛି । ଝିଂହଭୂମଠାରୁ ଗଞ୍ଜାମ ପର୍ଯ୍ୟନ୍ତ କଳିଙ୍ଗର ଏହି ଅଂଶରେ କୁଶାନ ମୁଦ୍ରାର ଏପରି ପ୍ରାଚୁର୍ଯ୍ୟ ଦେଖି କେତେକ ଐତିହାସିକ ମତ ପୋଷଣ କରିଛନ୍ତି ଯେ କଳିଙ୍ଗ କୁଶାନ ସାମ୍ରାଜ୍ୟର ଏକ ଅଂଶ ଥିଲା । ଐତିହାସିକ ରାଖାଲ ଦାସ ବେନାର୍ଜି ତାହାଙ୍କର ପ୍ରସିଦ୍ଧ ଓଡ଼ିଶା ଇତିହାସରେ କଳିଙ୍ଗରେ କୁଶାନ ରାଜତ୍ୱ ସପକ୍ଷରେ ମତ ଦେଇଛନ୍ତି । ତାହାଙ୍କ ଭାଷାରେ, "ଏହା ଅତି ସମ୍ଭବ ଯେ ଯେତେବେଳେ ଉତ୍ତର ଏବଂ ଦକ୍ଷିଣ ବିହାରକୁ କୁଶାନ ସାମ୍ରାଜ୍ୟ ସହ ମିଶାଇ ଦିଆଯାଇଥିଲା ସେତେବେଳେ ଓଡ଼ିଶା ଏବଂ ଭାରତର ପୂର୍ବ ଉପକୂଳରେ ଋଷିକୁଲ୍ୟା ଓ ଲାଙ୍ଗୁଲ୍ୟା ନଦୀ ପର୍ଯ୍ୟନ୍ତ ଅଞ୍ଚଳ ମଧ୍ୟ ଅଧିକୃତ ହୋଇଥିଲା ।"[1] ଐତିହାସିକ ବାସ୍ତବତା ଦୃଷ୍ଟିରୁ ରାଖାଲ ଦାସ ବେନାର୍ଜିଙ୍କର ଉକ୍ତ ମତ ସମ୍ପୂର୍ଣ୍ଣ ଭୁଲ ବୋଲି କୁହାଯାଇପାରେ । ମୋ ମତରେ କଳିଙ୍ଗ କୁଶାନ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇ ନ ଥିଲା କିମ୍ବା କଳିଙ୍ଗ ଉପରେ କୁଶାନ ସମ୍ରାଟମାନଙ୍କର କୌଣସି ପ୍ରକାର ରାଜନୈତିକ ପ୍ରଭାବ ପଡ଼ି ନ ଥିଲା । କାରଣ କଳିଙ୍ଗରୁ କୁଶାନ ମୁଦ୍ରା ମିଳିବା ବ୍ୟତୀତ ଅନ୍ୟ କୌଣସି ପ୍ରକାର ଐତିହାସିକ ପ୍ରମାଣ ନାହିଁ ଯାହାଦ୍ୱାରା କଳିଙ୍ଗ କୁଶାନ ସାମ୍ରାଜ୍ୟର ଏକ ଅଂଶ ଥିଲା ବୋଲି ବିଶ୍ୱାସ କରାଯାଇ ପାରିବ । କଳିଙ୍ଗରୁ କୁଶାନ ମୁଦ୍ରା ମିଳୁଛି ବୋଲି କଳିଙ୍ଗକୁ କୁଶାନ ସାମ୍ରାଜ୍ୟର ଏକ ଅଂଶ ବୋଲି ଘୋଷଣା କରିବା ସମ୍ପୂର୍ଣ୍ଣ ଅନ୍ୟାୟ । କାରଣ କୁଶାନ ଯୁଗର ମୁଦ୍ରା କୁଶାନ ସାମ୍ରାଜ୍ୟ ନିକଟରୁ ବହୁ ଦୂରସ୍ଥିତ ସ୍ଥାନମାନଙ୍କରୁ ମଧ୍ୟ ମିଳୁଛି । ଏପରିକି ସୁଦୂର ସ୍କାଣ୍ଡିନେଭିୟା ଏବଂ ଉଏଲ୍ସରେ ମଧ୍ୟ କନିଷ୍କଙ୍କ ମୁଦ୍ରା ଭୂଗର୍ଭରୁ ଆବିଷ୍କୃତ ହୋଇଛି ।[2] ଏହାର ଅର୍ଥ ନୁହେଁ ଯେ କନିଷ୍କ ସ୍କାଣ୍ଡିନେଭିୟା ଏବଂ ଉଏଲ୍ସ ଉପରେ ଶାସନ କରୁଥିଲେ । ଦାକ୍ଷିଣାତ୍ୟର ବିଭିନ୍ନ ସ୍ଥାନରୁ ରୋମାନ ସମ୍ରାଟମାନଙ୍କର ସ୍ୱର୍ଣ୍ଣମୁଦ୍ରା ଆବିଷ୍କୃତ ହୋଇଛି । କିନ୍ତୁ ସେଥିରୁ ରୋମାନ ସମ୍ରାଟମାନେ ଦାକ୍ଷିଣାତ୍ୟ ଉପରେ ରାଜତ୍ୱ କରୁଥିଲେ ବୋଲି ଧାରଣା କରିବା ସମ୍ପୂର୍ଣ୍ଣ ଅସଙ୍ଗତ । ମୋଟଉପରେ କଳିଙ୍ଗର ବିଭିନ୍ନ ସ୍ଥାନରୁ କୁଶାନମୁଦ୍ରା ବାହାରିଛି ବୋଲି କଳିଙ୍ଗ ଉପରେ କୁଶାନ ରାଜତ୍ୱ ଚାଲିଥିଲା ବୋଲି କୌଣସି ମତେ କୁହାଯାଇ ନ ପାରେ । ସେପରି ସିଦ୍ଧାନ୍ତକୁ ଆସିବା ପାଇଁ ଅନ୍ୟ ଉପାଦାନ ଆବଶ୍ୟକ । କିନ୍ତୁ ସେପରି ଉପାଦାନର ଅସ୍ତିତ୍ୱ ସୁଦ୍ଧା ନାହିଁ । କୁଶାନ

1. History of Orissa--- R. D. Banerjee pp. 114.-15.
2. J. R. A. S. 1912 pp. 671-2 ( Kennedy ).

ମୁଦ୍ରାମାନଙ୍କର ବହୁଳ ସଂଖ୍ୟାରୁ ରାଖାଲ ଦାସ ବେନାର୍ଜି କଳିଙ୍ଗକୁ କୁଶାନ ସାମ୍ରାଜ୍ୟର ଅଂଶରୂପେ ବିଶ୍ୱାସ କରିନେଇ ସେ ବିଷୟଟିକୁ ନିଶ୍ଚିତରୂପେ ପ୍ରମାଣ କରିବା ପାଇଁ ଅପର ଉପାଦାନ ଖୋଜି ବୁଲିଛନ୍ତି । କିନ୍ତୁ କୌଣସି ଉପାଦାନ ନ ପାଇ ଶେଷରେ ମାଦଳାପାଞ୍ଜିର କୌଣସି ଅଂଶ ଉପରେ ଆଶ୍ରୟ ନେଇଛନ୍ତି । ମାଦଳାପାଞ୍ଜିରେ ଲିଖିତ ଅଛି ଯେ 'କଳିଯୁଗର ପ୍ରଥମ ଭାଗରେ ଯୁଧିଷ୍ଠିରଙ୍କ ଧରି ୪୮ ଜଣ ରାଜା ୩୨୮୧ ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏହି ବଂଶର ସପ୍ତଦଶ ରାଜା ଶୋଭନ-ଦେବଙ୍କ ରାଜତ୍ୱରେ ଦିଲ୍ଲୀର ମୁଗଲପାତଶାଙ୍କ ଅମୁର (ମୋଗଲ ବାଦଶାହଙ୍କ ଅମୀର) ରକ୍ତବାହୁ ଓଡ଼ିଶା ଆକ୍ରମଣ କରିଥିଲେ ।' ଏହି ତଥାକଥିତ ମୁଗଲ ଆକ୍ରମଣକୁ ରାଖାଲ ଦାସ ବେନାର୍ଜି କୁଶାନ ଆକ୍ରମଣ ବୋଲି ପ୍ରମାଣ କରିବାକୁ ଯଥେଷ୍ଟ ଚେଷ୍ଟା କରିଛନ୍ତି ।[1] ସେହି ସ୍ୱନାମଧନ୍ୟ ଐତିହାସିକଙ୍କ ପ୍ରତି ଯଥେଷ୍ଟ ସମ୍ମାନ ସହି ମୁଁ ଏତିକି କହିବାକୁ ବାଧ୍ୟ ହେଉଛି ଯେ ମାଦଳାପାଞ୍ଜିର କୌଣସି ଏକ ଅସ୍ପଷ୍ଟ ବିବରଣୀରୁ 'ରକ୍ତବାହୁ,' 'ମୁଗଲପାତଶା' ଇତ୍ୟାଦି ନାମକୁ କେନ୍ଦ୍ରକରି କଳିଙ୍ଗ ଉପରେ କୁଶାନ ଆକ୍ରମଣ ହୋଇଥିଲା ବୋଲି ଅନୁମାନ କରିବା ତାହାଙ୍କର ଉଚିତ ହୋଇ ନାହିଁ । ଭାରତ ଇତିହାସରେ ଏ ପର୍ଯ୍ୟନ୍ତ କୁଶାନଯୁଗ ସମ୍ବନ୍ଧୀୟ ଯେତେସବୁ ଉପାଦାନ ମିଳିଛି ସେଥିରୁ ଏହାହିଁ ପ୍ରମାଣ ହେଉଛି ଯେ ଭାରତର ଉତ୍ତର-ପଶ୍ଚିମାଞ୍ଚଳରେହିଁ କୁଶାନ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇଥିଲା । କନିଷ୍କଙ୍କ ସମୟରେ ପୁରୁଷପୁର ବା ପେଶୋୟାରକୁ କେନ୍ଦ୍ରକରି ମଧ୍ୟ-ଏସିଆ ଖଣ୍ଡରୁ କାଶୀ ପର୍ଯ୍ୟନ୍ତ ଏହି ବିସ୍ତୃତ ଭୂଭାଗ ଉପରେ କୁଶାନ ସାମ୍ରାଜ୍ୟ ଛିଡ଼ା ହୋଇଥିଲା । ଅତି ବେଶିରେ, ପାଟଳିପୁତ୍ର ପର୍ଯ୍ୟନ୍ତ ତାହାଙ୍କ ସାମ୍ରାଜ୍ୟ ବିସ୍ତୃତ ଲାଭ କରିଥିବ, କାରଣ ପାଟଳିପୁତ୍ରର ରାଜା କନିଷ୍କଙ୍କ ନିକଟରେ ପରାସ୍ତ ହୋଇଥିବାର ଜଣାଯାଏ । କନିଷ୍କଙ୍କ ପରେ କୁଶାନ ସାମ୍ରାଜ୍ୟ ଆଉ ବିସ୍ତୃତ ଲାଭ କରି ନାହିଁ । ତେଣୁ ଋଷିକୁଲ୍ୟା ନଦୀ ପର୍ଯ୍ୟନ୍ତ କଳିଙ୍ଗ ଉପରେ କୁଶାନ ରାଜତ୍ୱ ପ୍ରତିଷ୍ଠିତ ହୋଇଥିଲା ବୋଲି ବିଶ୍ୱାସ କରାଯାଇ ନ ପାରେ । ଏଠାରେ ପ୍ରଶ୍ନ ହୋଇପାରେ ଯେ କଳିଙ୍ଗ ଉପରେ ଯଦି କୁଶାନ ରାଜତ୍ୱ ପ୍ରତିଷ୍ଠିତ ହୋଇ ନ ଥିଲା ତେବେ କଳିଙ୍ଗର ସ୍ଥାନେ ସ୍ଥାନେ ବହୁ ସଂଖ୍ୟାରେ କୁଶାନ ମୁଦ୍ରା ମିଳୁଛି କିପରି ? ଏ ପ୍ରଶ୍ନର ଉତ୍ତର ଅତି ସହଜ । ଭାରତ ଇତିହାସରେ କୁଶାନ ସଭ୍ୟତା ହେଉଛି ଏକ ଅତି ଉନ୍ନତ ସଭ୍ୟତା ।

1. R. D. Banerjee ଙ୍କ History of Orissa ର ୧୧୦, ୧୧୧ ଏବଂ ୧୧୨ ପୃଷ୍ଠା ଦ୍ରଷ୍ଟବ୍ୟ ।

ସମଗ୍ର ଭାରତ ଉପରେ କୁଶାନମାନଙ୍କର ରାଜନୈତିକ ପ୍ରଭାବ ବିସ୍ତାରିତ ହୋଇ ନ ଥିଲେ ମଧ୍ୟ ସେମାନଙ୍କ ସଭ୍ୟତାର ପ୍ରଭାବ ଭାରତର ସମସ୍ତ ଅଞ୍ଚଳ ଉପରେ ଅଳ୍ପ ବହୁତ ମାତ୍ରାରେ ବିସ୍ତାର ଲାଭ କରିଥିଲା । କଳିଙ୍ଗ ଉପରେ କୁଶାନ ସଭ୍ୟତାର ପ୍ରଭାବ ଅତ୍ୟଧିକ ପରିମାଣରେ ପଡ଼ିଥିଲା । କାରଣ, କୁଶାନ ଯୁଗ ଥିଲା ଅତି ସମୃଦ୍ଧିଶାଳୀ ଏବଂ କୁଶାନ ସାମ୍ରାଜ୍ୟ ଥିଲା ଅତିଶୟ ଧନଶାଳୀ । ତେଣୁ ଏ ଯୁଗରେ ଭାରତର ବହିର୍ବାଣିଜ୍ୟ ଏବଂ ଅନ୍ତର୍ବାଣିଜ୍ୟ ଉଭୟର ପ୍ରଭୂତ ଉନ୍ନତି ସାଧିତ ହୋଇଥିଲା । ବହିର୍ବାଣିଜ୍ୟ ଦୃଷ୍ଟିରୁ କୁଶାନ ସାମ୍ରାଜ୍ୟର ପାଶ୍ଚାତ୍ୟ ଜଗତ ସହିତ ସମ୍ପର୍କ ଇତିହାସରେ ସୁବିଦିତ । ସ୍ଥଳପଥରେ ଆଫଗାନିସ୍ଥାନ ଏବଂ ମଧ୍ୟ ଏସିଆ ରାସ୍ତାରେ କୁଶାନମାନେ ଏକ ଦିଗରେ ସୁଦୂର ରୋମ ସାମ୍ରାଜ୍ୟ ସହ ଏବଂ ଅପର ଦିଗରେ ସୁଦୂର ଚୀନ ସାମ୍ରାଜ୍ୟ ସହ ବାଣିଜ୍ୟଗତ ସମ୍ପର୍କ ଲଗାଇ ରଖିଥିଲେ । ଅନ୍ତର୍ବାଣିଜ୍ୟ ଦୃଷ୍ଟିରୁ ଏହି ଯୁଗରେ ସାରା ଭାରତ ମଧ୍ୟରେ ଶିଳ୍ପ ବାଣିଜ୍ୟର ଆଦାନ ପ୍ରଦାନ ଅତି ଜୋର ସୋରରେ ଚାଲିଥିଲା । ପ୍ରାଚୀନ ଭାରତରେ କଳିଙ୍ଗ ଯେ ଏକ ପ୍ରସିଦ୍ଧ ବାଣିଜ୍ୟ କେନ୍ଦ୍ର ଥିଲା ଏହା ନିଃସନ୍ଦେହରୂପେ ପ୍ରମାଣିତ ହୋଇଛି । ଖ୍ରୀଷ୍ଟୀୟ ଯୁଗର ପ୍ରଥମ ପାଦରେ ଯେଉଁ ବିଖ୍ୟାତ ଗ୍ରୀକ୍ ଓ ରୋମୀୟ ପରିବ୍ରାଜକ ଏବଂ ଭୌଗଳିକମାନେ ଭାରତ ଉପରେ ଦୃଷ୍ଟିପାତ କରିଥିଲେ ସେମାନେ କଳିଙ୍ଗକୁ ପ୍ରାଚ୍ୟର ଏକ ବିଖ୍ୟାତ ବାଣିଜ୍ୟ କେନ୍ଦ୍ରରୂପେ ଦେଖିବାକୁ ପାଇଥିଲେ । ଏପରି ଏକ ବାଣିଜ୍ୟ କେନ୍ଦ୍ର ସହ କୁଶାନ ସାମ୍ରାଜ୍ୟର ବାଣିଜ୍ୟଗତ ସମ୍ପର୍କ ଲାଗି ରହିଥିଲା ଏଥିରେ ସନ୍ଦେହ ନାହିଁ । ଏହି ବାଣିଜ୍ୟଗତ ସମ୍ପର୍କ ପାଇଁ କଳିଙ୍ଗରେ କୁଶାନ ମୁଦ୍ରାର ବହୁଳ ବିସ୍ତାର ହୋଇଥିଲା । ଆଜି କଳିଙ୍ଗର ଭୂଗର୍ଭରୁ ଯେଉଁ କୁଶାନ ମୁଦ୍ରା ବାହାରୁଛି ତାହା କଳିଙ୍ଗ ସହ କୁଶାନ ସାମ୍ରାଜ୍ୟର ଯେଉଁ ପଣ୍ୟ ବିନିମୟ ଚାଲିଥିଲା ତାହାହିଁ ପ୍ରମାଣ କରୁଛି । ଦକ୍ଷିଣ ଭାରତର ବିବିଧ ପଣ୍ୟଦ୍ରବ୍ୟ କଳିଙ୍ଗର ବାଣିଜ୍ୟ କେନ୍ଦ୍ରମାନଙ୍କରୁ କୁଶାନ ସାମ୍ରାଜ୍ୟ ମଧ୍ୟକୁ ଗତ କରୁଥିଲା ଏବଂ କୁଶାନମାନେ ସେହି ପଣ୍ୟଦ୍ରବ୍ୟ ସୁଦୂର ରୋମୀୟ ସାମ୍ରାଜ୍ୟ ଉଦ୍ଦେଶ୍ୟରେ ପଠାଇ ଦେଉଥିଲେ । ଏହାଛଡ଼ା କୁଶାନ ସାମ୍ରାଜ୍ୟର ବହିର୍ବାଣିଜ୍ୟ କେବଳ ସ୍ଥଳପଥରେ ବହିର୍ଦେଶକୁ ନ ଯାଇ ଜଳପଥରେ ମଧ୍ୟ ଯାଉଥିଲା । ଏହାର ଭୂରି ଭୂରି ପ୍ରମାଣ ସେ କାଳର ବିଦେଶୀ ପରିବ୍ରାଜକମାନଙ୍କ ବିବରଣୀରୁ ମିଳେ । ଭାରତର ପଶ୍ଚିମ ଉପକୂଳ ଏବଂ ପୂର୍ବ ଉପକୂଳର ବନ୍ଦରମାନଙ୍କ ମଧ୍ୟ ଦେଇ କୁଶାନ ବାଣିଜ୍ୟ ପାଶ୍ଚାତ୍ୟ ଏବଂ ପ୍ରାଚ୍ୟ ଉଦ୍ଦେଶ୍ୟରେ ଯାଉଥିଲା । ଏପରିସ୍ଥଳେ

କଳିଙ୍ଗର ବିଖ୍ୟାତ ବନ୍ଦରମାନଙ୍କରୁ ମଧ୍ୟ କୁଶାନ ସାମଗ୍ରୀ ବିଦେଶକୁ ଯାଇଥିବ । ଏହିପରିଭାବେ କୁଶାନ ସାମ୍ରାଜ୍ୟ ସହ କଳିଙ୍ଗର ଅର୍ଥନୈତିକ ଯୋଗାଯୋଗ ଅତି ଘନିଷ୍ଠ ଥିଲା ଯାହା ଫଳରେ କୁଶାନ ମୁଦ୍ରା କଳିଙ୍ଗ ମଧ୍ୟକୁ ଯଥେଷ୍ଟ ମାତ୍ରାରେ ଆସି ଯାଇଥିଲା । ମୋଟଉପରେ କୁଶାନ ଯୁଗର ରାଜନୈତିକ ପ୍ରଭାବ କଳିଙ୍ଗ ଉପରେ ପଡ଼ି ନ ଥିଲେ ସୁଦ୍ଧା ଅନ୍ୟ ପ୍ରଭାବମାନ ପଡ଼ିଥିଲା । ଏହା ଅତିଶୟ ସ୍ୱାଭାବିକ । କୁଶାନ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ନ ହୋଇ ମଧ୍ୟ କଳିଙ୍ଗବାସୀମାନେ ସେହି ସାମ୍ରାଜ୍ୟ ସହ ଭାବ ବିନିମୟ କରିପାରିଥିଲେ । ଅନ୍ତତଃ କଳିଙ୍ଗର କୁଶାନ ମୁଦ୍ରାମାନଙ୍କରୁ ଏତିକ କଥା ଉତ୍ତମରୂପେ ପ୍ରମାଣିତ ହେଉଛି ।

କିପରି ଥିଲା ଏହି କୁଶାନ ସଭ୍ୟତାର ରୂପ ? ଭାରତ ଇତିହାସରେ ମୌର୍ଯ୍ୟ-ସଭ୍ୟତା ପରେ ଏବଂ ଗୁପ୍ତ ସଭ୍ୟତା ପୂର୍ବରୁ କୁଶାନ ସଭ୍ୟତାହିଁ ଥିଲା ଏକମାତ୍ର ଉଲ୍ଲେଖଯୋଗ୍ୟ ନିଖିଳ ଭାରତୀୟ ସଭ୍ୟତା । କୁଶାନମାନେ ଥିଲେ ବିଦେଶୀ, କିନ୍ତୁ ସେମାନଙ୍କର ବିଶେଷତ୍ୱ ହେଉଛି ଭାରତମାଟିରେ ବସତି ସ୍ଥାପନ କରିବା ସଙ୍ଗେ ସଙ୍ଗେ ସେମାନେ ନିଜକୁ ଭାରତର ସନ୍ତାନ ବୋଲି ପରିଚିତ କରାଉଥିଲେ ଏବଂ ଭାରତୀୟ ସଭ୍ୟତାର ବିକାଶ ଓ ବୃଦ୍ଧି ପାଇଁ ପ୍ରାଣପଣ ଚେଷ୍ଟା କରୁଥିଲେ । ପ୍ରଥମେ ଭାରତୀୟ କୁଶାନମାନେ ହିନ୍ଦୁଧର୍ମ ଗ୍ରହଣ କରିଥିଲେ, ତାପରେ ବୌଦ୍ଧଧର୍ମ ସେମାନଙ୍କ ଉପରେ ଯଥେଷ୍ଟ ପ୍ରଭାବ ବିସ୍ତାର କରିଥିଲା, ଏବଂ ଶେଷରେ ପୁଣି ସେମାନେ ହିନ୍ଦୁଧର୍ମକୁ ଫେରି ଆସିଥିଲେ । ଏକ କଥାରେ ସେମାନଙ୍କର ଆଦିଧର୍ମ ପରିତ୍ୟାଗ କରି କୁଶାନମାନେ ଭାରତୀୟ ଧର୍ମକୁ ସ୍ୱଧର୍ମରୂପେ ସାଦରେ ଗ୍ରହଣ କରି ନେଇଥିଲେ ଏବଂ ଭାରତୀୟ ଧର୍ମର ଉନ୍ନତିକଳ୍ପେ ତଥା ପ୍ରଗତିଅର୍ଥେ ବହୁ ଚେଷ୍ଟା କରିଥିଲେ । ଏ ଦିଗରେ ମହାମତି କନିଷ୍କଙ୍କ ଦୃଷ୍ଟାନ୍ତ ଇତିହାସ ପ୍ରସିଦ୍ଧ । ସମ୍ରାଟ କନିଷ୍କ ପ୍ରଥମେ ହିନ୍ଦୁଧର୍ମାବଲମ୍ବୀ ଥିଲେ ବୋଲି ତାହାଙ୍କର ମୁଦ୍ରାଙ୍କିତ ହିନ୍ଦୁ ଦେବମୂର୍ତ୍ତିମାନଙ୍କରୁ ଜଣାଯାଏ । ସୂର୍ଯ୍ୟ, ଚନ୍ଦ୍ର ଏବଂ ଅନ୍ୟାନ୍ୟ ହିନ୍ଦୁ ଦେବତା ପ୍ରଥମେ ତାହାଙ୍କ ଦ୍ୱାରା ପୂଜିତ ହେଉଥିଲେ । ତାପରେ କନିଷ୍କ ବୌଦ୍ଧଧର୍ମ ଗ୍ରହଣ କରିଥିଲେ ଏବଂ ସେ ଧର୍ମର ପରମ ପୃଷ୍ଠପୋଷକ ହୋଇପଡ଼ିଥିଲେ । ବୌଦ୍ଧଜଗତରେ କନିଷ୍କଙ୍କ ସ୍ଥାନ ଅଶୋକଙ୍କ ଠିକ୍ ତଳେ । କନିଷ୍କଙ୍କ ପୂର୍ବରୁ ବୌଦ୍ଧଧର୍ମ ହୀନଯାନ ଏବଂ ମହାଯାନ ନାମକ ଦୁଇଗୋଟି ପୃଥକ୍ ସମ୍ପ୍ରଦାୟରେ ବିଭକ୍ତ ହୋଇ କ୍ରମେ କ୍ରମେ ନିଷ୍ପ୍ରଭ ହୋଇ ଆସୁଥିଲା । କନିଷ୍କ ବୌଦ୍ଧଧର୍ମକୁ ଏହି ଅଧୋଗତି ମୁଖରୁ

ରକ୍ଷାକରିବା ପାଇଁ ଏବଂ ବୌଦ୍ଧମାନଙ୍କ ମଧ୍ୟରୁ ବିରୋଧ ଭାବ ଦୂର କରିବା ଉଦ୍ଦେଶ୍ୟରେ ଭାରତର ସମସ୍ତ ପ୍ରାନ୍ତରୁ ବୌଦ୍ଧ ପଣ୍ଡିତମାନଙ୍କୁ ଆମନ୍ତ୍ରିତ କରି ଏକ ଧର୍ମ ମହାସମ୍ମିଳନୀ ଅନୁଷ୍ଠିତ କରାଇଥିଲେ । କନିଷ୍କଙ୍କ ଆହୂତ ଏହି ସମ୍ମିଳନ ହେଉଛି ବୌଦ୍ଧଧର୍ମର ଚତୁର୍ଥ ଏବଂ ଶେଷ ମହାସଭା । ଏହି ମହାସଭାରେ ବହୁ ଆଲୋଚନା ପରେ ଶେଷରେ ମହାଯାନ ମତବାଦ ଗ୍ରହଣ କରାଯାଇଥିଲା । ଏହି ମତବାଦର ପୃଷ୍ଠପୋଷକରୂପେ କନିଷ୍କ ଭାରତ ଭିତରେ ତଥା ବାହାରେ ବୌଦ୍ଧଧର୍ମର ଏହି ନୂତନ ମାର୍ଗ ପ୍ରଚାର କରିଥିଲେ । ଅଶୋକଙ୍କ ପରି ଏହି କୁଶାନ ସମ୍ରାଟ ଭାରତର ବହୁ ସ୍ଥାନରେ ବହୁ ସ୍ତୂପ, ମଠ ଏବଂ ବିହାର ଇତ୍ୟାଦି ନିର୍ମାଣ କରାଇଥିଲେ । ତାହାଙ୍କ ରାଜଧାନୀ ପୁରୁଷପୁରଠାରେ ବୁଦ୍ଧଦେବଙ୍କ ଅସ୍ଥିଖଣ୍ଡ ଉପରେ କନିଷ୍କ ଯେଉଁ ବିରାଟ ସ୍ତୂପ ନିର୍ମାଣ କରାଇଥିଲେ ତାହା ବହୁ ଶତାବ୍ଦୀ ପର୍ଯ୍ୟନ୍ତ କୁଶାନ ସ୍ଥାପତ୍ୟର ଶ୍ରେଷ୍ଠ ନିଦର୍ଶନରୂପେ ଦର୍ଶକମାନଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା । କନିଷ୍କ ଭାରତର ଶ୍ରେଷ୍ଠତମ ପଣ୍ଡିତମାନଙ୍କ ମଧ୍ୟରୁ ଅନ୍ୟତମ । ତାହାଙ୍କ ଧମନୀରେ ବୈଦେଶିକ ରକ୍ତ ପ୍ରବାହିତ ହେଉଥିଲେ ସୁଦ୍ଧା ତାହାଙ୍କ ମନ ପ୍ରାଣରେ ଭାରତୀୟ ସଂସ୍କୃତି ଓ ଭାରତୀୟ ଚିନ୍ତାଧାରା ପୂର୍ଣ୍ଣମାତ୍ରାରେ ଆଧିପତ୍ୟ ବିସ୍ତାର କରିଥିଲା । ସେଥିପାଇଁ କନିଷ୍କଙ୍କ ପୃଷ୍ଠପୋଷକତାରେ ଭାରତୀୟ ଦର୍ଶନ, ସାହିତ୍ୟ ଏବଂ ବିଜ୍ଞାନ ଇତ୍ୟାଦିର ପ୍ରଭୂତ ଉନ୍ନତି ସାଧିତ ହୋଇଥିଲା । କନିଷ୍କଙ୍କ ପୃଷ୍ଠପୋଷକତାରେ ବିଖ୍ୟାତ ବୌଦ୍ଧକବି ଓ ସଙ୍ଗୀତଜ୍ଞ ଅଶ୍ୱଘୋଷ ତାହାଙ୍କର 'ବୁଦ୍ଧଚରିତ' ରଚନା କରିଥିଲେ । ଏହି ଗ୍ରନ୍ଥ ବୌଦ୍ଧ ସାହିତ୍ୟର ଏକ ଉଜ୍ଜ୍ୱଳ ରତ୍ନ । ଅଶ୍ୱଘୋଷ ପ୍ରଥମେ ଥିଲେ ବ୍ରାହ୍ମଣ ଏବଂ ପରେ ହୋଇଯାଇଥିଲେ ବୌଦ୍ଧ । କିନ୍ତୁ ସେ ହେଉଛନ୍ତି ସେ ଯୁଗର ଶ୍ରେଷ୍ଠ ସଂସ୍କୃତ କବି । ତାହାଙ୍କ ବୁଦ୍ଧଚରିତ ଏକ ମହାକାବ୍ୟ ଢଙ୍ଗରେ ଲିଖିତ । ଏହି ଗ୍ରନ୍ଥ ବ୍ୟତୀତ ଅଶ୍ୱଘୋଷ ସୌନ୍ଦରନନ୍ଦ କାବ୍ୟ, ସୂତ୍ରାଳଙ୍କାର, ବଜ୍ରସୂଚୀ, ଶାରିପୁତ୍ର ପ୍ରକରଣ ଇତ୍ୟାଦି ପୁସ୍ତକମାନଙ୍କର ପ୍ରଣୟନ କରିଥିଲେ । ଅଶ୍ୱଘୋଷଙ୍କ ଲେଖା ଅତି ଉନ୍ନତ ଧରଣର ଥିଲା ଏବଂ ସେପରି ଉନ୍ନତ ଲେଖା ଖ୍ରୀଷ୍ଟଯୁଗର ଆରମ୍ଭକାଳରେ ଦେଖିବାକୁ ମିଳେ ବୋଲି ପଣ୍ଡିତ ମଣ୍ଡଳୀ ଆଶ୍ଚର୍ଯ୍ୟ ହୋଇଛନ୍ତି । ତାହାଙ୍କ ସମ୍ବନ୍ଧରେ ସୁବିଖ୍ୟାତ ଫରାସୀ ପଣ୍ଡିତ ସିଲ୍‌ଭାଁ ଲେଭି ନିମ୍ନଲିଖିତ ରୂପେ ଲେଖିଛନ୍ତି, "ଖ୍ରୀଷ୍ଟୀୟ ଶତାବ୍ଦୀର ପ୍ରାରମ୍ଭରେ ଯେ ସମସ୍ତ ମହାନ ଚିନ୍ତାଧାରା ଭାରତବର୍ଷକୁ ସଞ୍ଜୀବିତ ଓ ପରିବର୍ତ୍ତିତ କରିଛି, ଅଶ୍ୱଘୋଷ ତାହାର ଉପଯୁକ୍ତ ସ୍ଥଳରେ ଦଣ୍ଡାୟମାନ । ଭାବର ସମ୍ପଦ ଓ

ବୈଚିତ୍ର୍ୟତାରେ ସେ ମିଲ୍‌ଟନ୍ ; ଗେଟେ, କ୍ୟାଣ୍ଟ ଓ ଭଲଟେୟାରଙ୍କ କଥା ସ୍ମରଣ କରାଇଦିଅନ୍ତି ।"[1] ଏପରି ଏକ ପଣ୍ଡିତଙ୍କୁ ନିଜ ରାଜଦରବାରରେ ଆଶ୍ରୟ ଦେଇ କନିଷ୍କ ନିଜ ପ୍ରଗାଢ଼ ପାଣ୍ଡିତ୍ୟର ପରିଚୟ ଦେଇଛନ୍ତି । ଅଶ୍ୱଘୋଷଙ୍କ ବ୍ୟତୀତ ସୁପ୍ରସିଦ୍ଧ ବୌଦ୍ଧ ଦାର୍ଶନିକ ଓ ବୈଜ୍ଞାନିକ ନାଗାର୍ଜ୍ଜୁନ ଏବଂ ବସୁମିତ୍ର, ଏବଂ ଚିକିତ୍ସାଶାସ୍ତ୍ର-ପ୍ରଣେତା ମହାମନୀଷୀ ଚରକ ପ୍ରଭୃତି ସେ ଯୁଗର ଶ୍ରେଷ୍ଠ ପଣ୍ଡିତମାନେ ମଧ୍ୟ କନିଷ୍କଙ୍କ ରାଜଦରବାର ମଣ୍ଡନ କରିଥିଲେ । ଖ୍ରୀଷ୍ଟିୟ ଯୁଗର ଆରମ୍ଭରେ ଏହି ମହାମନୀଷିମାନେହିଁ ଭାରତୀୟ ଚିନ୍ତାଧାରାର କର୍ଣ୍ଣଧାରରୂପେ କାର୍ଯ୍ୟ କରିଥିଲେ ଏବଂ କୁଶାନ ଯୁଗର ସଭ୍ୟତାକୁ ଭାରତର ଏକ ଶ୍ରେଷ୍ଠ ସଭ୍ୟତାରେ ପରିଣତ କରାଇଥିଲେ । ଶିଳ୍ପ ଓ ସ୍ଥାପତ୍ୟ କ୍ଷେତ୍ରରେ ଭାରତକୁ କୁଶାନ ଯୁଗର ବିଶିଷ୍ଟ ଦାନ ହେଉଛି 'ଗାନ୍ଧାର ଶିଳ୍ପ' । ଭାରତୀୟ ଶିଳ୍ପକଳା ସହ ଗ୍ରୀକ୍ ଓ ରୋମାନ ଶିଳ୍ପକଳାର ଅପୂର୍ବ ମିଳନ ମଧ୍ୟରୁ 'ଗାନ୍ଧାର ଶିଳ୍ପ'ର ଜନ୍ମ । କୁଶାନ ଯୁଗରେ ଭାରତୀୟ ସାମ୍ରାଜ୍ୟର ସୀମା ପଶ୍ଚିମ ଏସିଆର ବହୁଦୂର ପର୍ଯ୍ୟନ୍ତ ବିସ୍ତୃତି ଲାଭ କରିଯାଇଥିଲା । ପଶ୍ଚିମ ଏସିଆର ସେହି ଅଞ୍ଚଳ ସହିତ ଗ୍ରୀକ୍ ଏବଂ ରୋମାନ ଜଗତର ଘନିଷ୍ଠ ସମ୍ପର୍କ ଥିଲା । ଏତଦ୍ୱାରା କୁଶାନ ସାମ୍ରାଜ୍ୟ ମଧ୍ୟକୁ ଗ୍ରୀକ୍ ଏବଂ ରୋମାନ ସଭ୍ୟତାର ପ୍ରଭାବ ଅଳ୍ପ ବହୁତ ମାତ୍ରାରେ ମାଡ଼ି ଆସିଥିଲା । ଏହି ପ୍ରଭାବର ସର୍ବଶ୍ରେଷ୍ଠ ଅଂଶ ହିଁ ଥିଲା କଳା । କିନ୍ତୁ ଗ୍ରୀକ୍ ଓ ରୋମୀୟ ଜଗତର କଳା ଭାରତ ପ୍ରବେଶ କଲାପରେ ସେହି କଳା ଉପରେ ଭାରତୀୟ କଳା ନିଜର ପ୍ରାଧାନ୍ୟ ସ୍ଥାପନ କରିଥିଲା । କୁଶାନମାନେ ଭାରତୀୟ କଳାର ଯେଉଁ ପୃଷ୍ଠପୋଷକତା କରିଥିଲେ ତାହାଦ୍ୱାରା ପଶ୍ଚିମ ଏସିଆ ଖଣ୍ଡରେ ଭାରତୀୟ କଳାର ପ୍ରାଧାନ୍ୟ ବିସ୍ତାର ହୋଇ ପାରିଥିଲା । ତଥାପି ଭାରତୀୟ କଳା ଅଙ୍ଗରେ ଗ୍ରୀକ-ରୋମାନ କଳାର ଆଭାସ ହିଁ ଭାରତର ପଶ୍ଚିମାଞ୍ଚଳରେ ଏବଂ ପଶ୍ଚିମ-ଏସିଆ ଖଣ୍ଡରେ ଦେଖିବାକୁ ମିଳିଥିଲା । ଭାରତୀୟ କଳାର ପ୍ରାଧାନ୍ୟ ସଙ୍ଗେ ଗ୍ରୀକ୍-ରୋମାନ କଳାର ଆଭାସ ଏହାରି ନାମ ହେଉଛି 'ଗାନ୍ଧାର ଶିଳ୍ପ' । ଗାନ୍ଧାର ଶିଳ୍ପର ଏକ ବିଶିଷ୍ଟ ଦାନ ହେଉଛି ବୁଦ୍ଧଦେବଙ୍କର ଏକ ପ୍ରକାର ପୂର୍ଣ୍ଣାଙ୍ଗ ପ୍ରସ୍ତର ମୂର୍ତ୍ତି ଯାହାକି ଗାନ୍ଧାର ଅଞ୍ଚଳରୁ ଆରମ୍ଭ କରି ମଧ୍ୟ-ଏସିଆ, ପଶ୍ଚିମ ଏସିଆ, ଚୀନ, ତିବ୍ଵତ ଏବଂ ଜାପାନ ପର୍ଯ୍ୟନ୍ତ ଦେଖିବାକୁ ମିଳେ ଏବଂ ଯେଉଁ ଶିଳ୍ପର ଅନୁକରଣରେ ହଜାର ହଜାର

1. Sylvan Levi quoted in ପ୍ରାଚୀନ ଭାରତୀୟ ସଭ୍ୟତାର ଇତିହାସ--
Dr. P C. Ghosh.

ବୁଦ୍ଧ ମୂର୍ତ୍ତି ନିର୍ମିତ ହୋଇଛି ଏବଂ ଉପର ଲିଖିତ ଅଞ୍ଚଳମାନଙ୍କରେ ରହି ଯାଇଛି । ଭାରତୀୟ ଢାଞ୍ଚରେ ନିର୍ମିତ ହୋଇଥିବା ଗ୍ରୀକ୍ କଳାର ନିଦର୍ଶନ କୁଶାନ ଯୁଗର ସ୍ଥାପତ୍ୟ ଦେହରେ ଦେଖିବାକୁ ମିଳୁଛି । ଗାନ୍ଧାର ଶୈଳୀର ନିଦର୍ଶନ ମଥୁରା ଏବଂ ସାରନାଥ ପର୍ଯ୍ୟନ୍ତ ସ୍ଥାନମାନଙ୍କରେ ଦେଖିବାକୁ ମିଳେ । କିନ୍ତୁ ଅଳ୍ପ ସମୟ ମଧ୍ୟରେ ଭାରତୀୟ କଳା ଗ୍ରୀକ୍ ପ୍ରଭାବରୁ ସମ୍ପୂର୍ଣ୍ଣରୂପେ ମୁକ୍ତିଲାଭ କରିଥିଲା ଏବଂ ଏପରିକି ସେହି କୁଶାନ ଯୁଗରେ ମଧ୍ୟ ଗ୍ରୀକ୍ କଳାକୁ ଭାରତରୁ ବହିଷ୍କୃତ କରିଦେବାକୁ ଚାହିଁଥିଲା । କାରଣ ଭାରତୀୟ କଳା ଏତେ ଉନ୍ନତ ଏବଂ ଏତେ ବଳିଷ୍ଠ ଯେ ଅପର କଳାମାନଙ୍କର ପ୍ରଭାବ ଗ୍ରହଣ କରିବା ତା ପକ୍ଷରେ ଆବଶ୍ୟକ ହୋଇ ନାହିଁ । କୁଶାନ ସମ୍ରାଟମାନଙ୍କର ପୃଷ୍ଠପୋଷକତାରେ ସାରନାଥ, ଶ୍ରାବସ୍ତୀ ଏବଂ ମଥୁରାରେ ବୋଧିସତ୍ତ୍ୱମାନଙ୍କର ପ୍ରକାଣ୍ଡ ପ୍ରସ୍ତର ମୂର୍ତ୍ତିମାନ ନିର୍ମିତ ହୋଇଥିଲା । ଏହି ଯୁଗରେ ସୂକ୍ଷ୍ମ କାରୁକାର୍ଯ୍ୟ ଏବଂ ଚିତ୍ରକଳା ମଧ୍ୟ ଏକ ଉନ୍ନତ ସ୍ତରରେ ପହଞ୍ଚିଥିଲା । ସେ ସବୁର ନିଦର୍ଶନ ଅନେକ ସ୍ଥାନରେ ମିଳୁଛି । କୁଶାନ ଯୁଗରେ ଭାରତୀୟ ଶିକ୍ଷା ମୌର୍ଯ୍ୟଯୁଗର ଶିକ୍ଷାପରି ଉଚ୍ଚାଙ୍ଗ ଲାଭ କରିଥିଲା । ତକ୍ଷଶିଳା ବିଶ୍ୱବିଦ୍ୟାଳୟ ଏହି ଯୁଗରେ ପୂର୍ବଠାରୁ ଅଧିକତର ପ୍ରସିଦ୍ଧି ଲାଭ କରିଥିଲା । କୁଶାନ ଯୁଗର ପ୍ରଚାର ବିକାଶ ଦିଗରେ ଏକ ବିଶେଷତ୍ୱ ହେଉଛି କୁଶାନମାନେ ପ୍ରଥମେ ମଙ୍ଗୋଲୀୟ ଥିବାରୁ ସେମାନଙ୍କର ସେହି ଅଞ୍ଚଳ ସହିତ ସମ୍ବନ୍ଧ ଲାଗି ରହିଥିଲା ଏବଂ ଫଳରେ ଚୀନ ଦେଶ ମଧ୍ୟକୁ ବୌଦ୍ଧଧର୍ମର ସ୍ରୋତ ପ୍ରବାହର ପ୍ରବଳ ଗତିରେ ମାଡ଼ି ଯାଇଥିଲା । ଭାରତରେ କୁଶାନ ଯୁଗ ଆରମ୍ଭ ହେଲାକୁ ପାଶ୍ଚାତ୍ୟଖଣ୍ଡରେ ଖ୍ରୀଷ୍ଟଧର୍ମ ଜନ୍ମଗ୍ରହଣ କରିସାରିଥିଲା ସତ୍ୟ, କିନ୍ତୁ ସେତେବେଳେ ଖ୍ରୀଷ୍ଟଧର୍ମ ଏକ ଦୁଗ୍ଧପୋଷ୍ୟ ଶିଶୁମାତ୍ର । ଯେତେବେଳେ କୁଶାନ ସମ୍ରାଟମାନେ ପଶ୍ଚିମ ଏସିଆ ଖଣ୍ଡରେ ବୌଦ୍ଧଧର୍ମ ଓ ଭାରତୀୟ ସଭ୍ୟତା ନବ ଉଦ୍ୟମରେ ପ୍ରସାର କରୁଥାଆନ୍ତି ସେତେବେଳେ ଶିଶୁ ଖ୍ରୀଷ୍ଟଧର୍ମ ବୌଦ୍ଧ ଆଧ୍ୟାତ୍ମିକତା ଓ ନୀତି ଗୀତ ମଧ୍ୟରୁ ଯଥେଷ୍ଟ ଖାଦ୍ୟ ଗ୍ରହଣ କରି ନିଜର ପୁଷ୍ଟି ସାଧନ କରିଥିବ ବୋଲି ଐତିହାସିକ ହ୍ୟାଭେଲ ବିଶ୍ୱାସ କରନ୍ତି ।

କୁଶାନ ସଭ୍ୟତାର ବିଶେଷ ପରିଚୟ ଦେବା ସ୍ଥାନ ଦୃଷ୍ଟିରୁ ଅସମ୍ଭବ । କିନ୍ତୁ ଏହି ଏ ସଭ୍ୟତାର ସମ୍ପର୍କ ବିଷୟରେ କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ ଯେଉଁ ସଭ୍ୟତାର ପ୍ରଭାବ ଦିନେ ସମଗ୍ର ପଶ୍ଚିମ ଏସିଆ ଖଣ୍ଡରେ ବିସ୍ତାର ଲାଭ କରିଥିଲା ଏବଂ ଯେଉଁ ସଭ୍ୟତାର ଆଲୋକ ସୁଦୂର ଚୀନ ସାମ୍ରାଜ୍ୟର ଶେଷସୀମା

ପର୍ଯ୍ୟନ୍ତ ଦେଖାଯାଇଥିଲା ଏବଂ ଯେଉଁ ସଭ୍ୟତା ଭାରତର ଉତ୍ତର-ପଶ୍ଚିମାଞ୍ଚଳରେ ଏକ ସୁଦୃଢ଼ ଭିତ୍ତି ସ୍ଥାପନ କରିପାରିଥିଲା ସେ ସଭ୍ୟତାର ପ୍ରଭାବ ଯେ କଳିଙ୍ଗ ଉପରେ ପଡ଼ି ନ ଥିବ ଏହା ଭାବିବା ପ୍ରାୟ ଅସମ୍ଭବ । କୁଶାନ ସାମ୍ରାଜ୍ୟର ଦକ୍ଷିଣ ପୂର୍ବ ବିସ୍ତୃତ ଥିଲା ମଗଧ ପର୍ଯ୍ୟନ୍ତ । ସୁତରାଂ ମଗଧ ପର୍ଯ୍ୟନ୍ତ ଭୂଭାଗ କୁଶାନ ସଭ୍ୟତା ତଳେ ବୁଡ଼ି ରହିଥିଲା ଏଥିରେ ସନ୍ଦେହ କରାଯାଇ ନ ପାରେ । କଳିଙ୍ଗ ସୀମାକୁ ସ୍ପର୍ଶକରି କୁଶାନ ସାମ୍ରାଜ୍ୟର ବିସ୍ତୃତ ଥିବା ସ୍ଥଳେ କୁଶାନ ସଭ୍ୟତା ନିଶ୍ଚୟ କଳିଙ୍ଗ ଉପରେ ଯଥେଷ୍ଟ ପ୍ରଭାବ ବିସ୍ତାର କରିଥିଲା । ସେ ପ୍ରଭାବ ପଡ଼ି ନ ଥିଲେ କଳିଙ୍ଗ ଦେଶର ସିଂହଭୂମ ନିକଟରୁ ଗଞ୍ଜାମ ପର୍ଯ୍ୟନ୍ତ ଭୂଖଣ୍ଡର ବିଭିନ୍ନ ସ୍ଥାନରେ କୁଶାନ ମୁଦ୍ରା ଦେଖିବାକୁ ମିଳୁ ନ ଥାନ୍ତା । ଅତଏବ ଖ୍ରୀଷ୍ଟିୟ ଯୁଗର ପ୍ରଥମ ପାଦରେ ଉତ୍କଳୀୟ ସଭ୍ୟତା ଉପରେ କୁଶାନ ସଭ୍ୟତା ତାହାର ପ୍ରଭାବ ନିକ୍ଷେପ କରି ଉତ୍କଳୀୟ ସଭ୍ୟତାର ଅଙ୍ଗ ବୃଦ୍ଧି ଦିଗରେ ସାହାଯ୍ୟ କରିଥିଲା ।

କିନ୍ତୁ କୁଶାନ ଯୁଗରେ କଳିଙ୍ଗର ଧର୍ମ ସମ୍ବନ୍ଧରେ ଏତିକି ଅନୁମାନ କରାଯାଇ-ପାରେ ଯେ ନବପ୍ରବର୍ତ୍ତିତ ମହାଯାନ ମତବାଦ କଳିଙ୍ଗ ଉପରେ ପ୍ରାଧାନ୍ୟ ବିସ୍ତାର କରିପାରି ନ ଥିଲା । କାରଣ ଶେଷ ପର୍ଯ୍ୟନ୍ତ ଉତ୍କଳରେ ହୀନଯାନ ମତବାଦର ପ୍ରାଧାନ୍ୟ ପରିଲକ୍ଷିତ ହୋଇଛି । ଖ୍ରୀଷ୍ଟଯୁଗର ଆରମ୍ଭରେ ଉତ୍କଳରେ ବୌଦ୍ଧଧର୍ମ, ଜୈନଧର୍ମ ଏବଂ ବ୍ରାହ୍ମଣ୍ୟଧର୍ମ ପରସ୍ପର ପ୍ରତି ବିଦ୍ୱେଷ ଭାବ ପୋଷଣ ନ କରି ଯେ ଯାହା ଉପାୟରେ ତିଷ୍ଠି ରହିଥିଲା । ଏହି ସମୟରେ ଉତ୍କଳରେ କେଉଁ ଧର୍ମ ପ୍ରାଧାନ୍ୟ ଲାଭ କରିଥିଲା ତାହା ଅନୁମାନ କରିବା କଷ୍ଟକର । ଅଶୋକ କିମ୍ବା ଖାରବେଳଙ୍କ ପରି ବୌଦ୍ଧ କିମ୍ବା ଜୈନଧର୍ମର ପୃଷ୍ଠପୋଷକତା କରିବା ପାଇଁ ଏ ସମୟରେ କେହି ନ ଥିଲେ । ତେଣୁ ରାଜକୀୟ ଧର୍ମ ହିସାବରେ ଏହି ଯୁଗରେ କୌଣସି ଧର୍ମ ପ୍ରାଧାନ୍ୟ ଲାଭ କରିବାର ସୁଯୋଗ ପାଇ ନ ଥିଲା । କିନ୍ତୁ ଉତ୍ତର ଭାରତରେ ଏହି ସମୟରେ ପୁନର୍ବାର ବୌଦ୍ଧଧର୍ମ ପ୍ରବଳ ହୋଇ ଉଠିଥିଲା । ନାଗାର୍ଜ୍ଜୁନ ଏବଂ ଆର୍ଯ୍ୟଦେବ ପ୍ରଭୃତି ବୌଦ୍ଧ ଦାର୍ଶନିକମାନେ ବୌଦ୍ଧଧର୍ମ ପ୍ରଚାର କରି ବୁଲୁଥିଲେ । କନିଷ୍କ ବୌଦ୍ଧଧର୍ମକୁ ତାହାଙ୍କ ସାମ୍ରାଜ୍ୟର ରାଜକୀୟ ଧର୍ମ କରିବା ଦ୍ୱାରା ମଧ୍ୟ ସେ ଧର୍ମ ବଳପ୍ରାପ୍ତ ହୋଇଥିଲା । ଉତ୍ତର ଭାରତରେ ଯେତେବେଳେ ଏହିପରି ବୌଦ୍ଧଧର୍ମର ଉତ୍‌ଥାନ ଦାକ୍ଷିଣାତ୍ୟରେ ଅନ୍ଧ୍ର ସାତ-ବାହନ ସମ୍ରାଟମାନେ ମଧ୍ୟ ବୌଦ୍ଧଧର୍ମର ପୃଷ୍ଠପୋଷକତା କରିଥିଲେ । ସୁତରାଂ

ଭାରତବ୍ୟାପୀ ବୌଦ୍ଧ ପ୍ରାଧାନ୍ୟ ସମୟରେ କଳିଙ୍ଗରେ ସେ ଧର୍ମ କିଛି ମାତ୍ରାରେ ଉତ୍ଥାନମୁଖୀ ହୋଇ ଥାଇପାରେ ବୋଲି ଅନୁମେୟ । ଏହିଠାରେ ଅପର ଏକ ବିଷୟ ପ୍ରତି ଦୃଷ୍ଟି ଦେବା ଉଚିତ । ଖ୍ରୀଷ୍ଟଯୁଗର ପ୍ରଥମ ପର୍ବରେ ଭାରତୀୟ ଧର୍ମ ଜଗତରେ ଏକ ନୂତନ ବିପ୍ଳବର ଆରମ୍ଭ ହୋଇଯାଇଥିଲା । ଏହି ବିପ୍ଳବ ହେଉଛି ବ୍ରାହ୍ମଣ୍ୟଧର୍ମ ସହ ବୌଦ୍ଧଧର୍ମର ସମିଶ୍ରଣ ପାଇଁ ଏକ ପରୋକ୍ଷ ଉଦ୍ୟମ । ବୌଦ୍ଧଧର୍ମ ମଧ୍ୟରେ ମତଭେଦ, ମହାଯାନ ମତବାଦର ସୃଷ୍ଟି ଏବଂ ବୈଦେଶିକ କୁଶାନ-ମାନଙ୍କର ବ୍ରାହ୍ମଣ୍ୟଧର୍ମ ଓ ବୌଦ୍ଧଧର୍ମ ଉଭୟ ପ୍ରତି ସମଭକ୍ତି କ୍ରମେ ବୌଦ୍ଧଧର୍ମର ଜ୍ୟୋତି ମ୍ଳାନ କରି ଆଣିଥିଲା । ଇତିହାସ ଯୁଗର ଆରମ୍ଭରେ ଭାରତରେ ବୌଦ୍ଧ ଓ ଜୈନ ବିପ୍ଳବ ଆରମ୍ଭ ହୋଇଥିଲା । ସେହି ସମୟରୁ ଖ୍ରୀଷ୍ଟଯୁଗର ଆରମ୍ଭ ପର୍ଯ୍ୟନ୍ତ ଦୀର୍ଘ ଛଅଶହ ବର୍ଷକାଳ ମଧ୍ୟରେ ବୌଦ୍ଧ ଓ ଜୈନଧର୍ମ ନିଜ ନିଜର ସ୍ୱର୍ଣ୍ଣଯୁଗ ଭୋଗକରି ସାରିଥିଲେ । ଯେଉଁ ସବୁ ତ୍ରୁଟି ପାଇଁ ହିନ୍ଦୁଧର୍ମ ବିରୁଦ୍ଧରେ ବିପ୍ଳବ ହୋଇଥିଲା· କାଳକ୍ରମେ ସେହି ତ୍ରୁଟିମାନ ବୌଦ୍ଧ ଓ ଜୈନଧର୍ମକୁ ଗ୍ରାସ କରିବାକୁ ବସିଥିଲା । ପରୋକ୍ଷଭାବେ ବ୍ରାହ୍ମଣ୍ୟଧର୍ମର ପ୍ରାଧାନ୍ୟ ବୌଦ୍ଧ ଓ ଜୈନମାନେ ସ୍ୱୀକାର କରିନେଇଥିଲେ । ଖ୍ରୀଷ୍ଟଯୁଗ ଆରମ୍ଭ ବେଳକୁ ତିନିଧର୍ମ ପରସ୍ପରର ଏତେଦୂର ନିକଟବର୍ତ୍ତୀ ହୋଇ ସାରିଥିଲେ ଯେ ସାଧାରଣ ଚକ୍ଷୁରେ ସେମାନଙ୍କ ମଧ୍ୟରେ ଯେଉଁ ପାର୍ଥକ୍ୟ ଥିଲା ତାହା ଦେଖା ଯାଉ ନ ଥିଲା । କୁଶାନ ସମ୍ରାଟମାନେ ଥିଲେ ଏକାଧାରେ ହିନ୍ଦୁ ଏବଂ ବୌଦ୍ଧ । କାରଣ ହିନ୍ଦୁଧର୍ମରୁ ବୌଦ୍ଧଧର୍ମ ଗ୍ରହଣ କରିବା କିମ୍ବା ବୌଦ୍ଧଧର୍ମରୁ ହିନ୍ଦୁଧର୍ମ ଗ୍ରହଣ କରିବା ସେମାନଙ୍କ ପକ୍ଷରେ ବିଶେଷ କିଛି ପରିବର୍ତ୍ତନ ଆଣି ନ ଥିଲା । ଅବଶ୍ୟ କନିଷ୍କ ଜୀବନର ପରବର୍ତ୍ତୀକାଳରେ ବୌଦ୍ଧଧର୍ମର ଉନ୍ନତି ପାଇଁ ବହୁ ପରିଶ୍ରମ କରିଥିଲେ । ସେଥିପାଇଁ ତାହାଙ୍କ ରାଜତ୍ୱକାଳରେ ବୌଦ୍ଧଧର୍ମ ପୁଣି ଥରେ ନିଜର ବିଶେଷତ୍ୱ ରକ୍ଷାକରି ବହୁ ଉପରକୁ ଉଠି ପାରିଥିଲା । କିନ୍ତୁ କନିଷ୍କଙ୍କ ଯୁଗ ଦେଖିଥିଲା ବୌଦ୍ଧଧର୍ମର ଶେଷ ଉତ୍ଥାନ । ଏହାପରେ ବୌଦ୍ଧଧର୍ମ କ୍ରମେ କ୍ରମେ ଅବନତି ପଥରେ ଯାତ୍ରା କରିଥିଲା ଏବଂ ଶେଷରେ ଅନ୍ତିମ ଶଯ୍ୟା ଧାରଣ କରିଥିଲା । ସମ୍ରାଟ ହର୍ଷବର୍ଦ୍ଧନ ଶେଷଥର ପାଇଁ ମୃତ୍ୟୁମୁଖୀ ବୌଦ୍ଧଧର୍ମ ଦେହରେ ନବପ୍ରାଣ ସଞ୍ଚାର କରିବାକୁ ଚେଷ୍ଟା କରିଥିଲେ । କିନ୍ତୁ ସେ ଥିଲା କେବଳ ଅନ୍ତିମ ଶୁଶ୍ରୂଷା । ସେ ଯାହାହେଉ, କୁଶାନ ଯୁଗ ପାଖରୁ ଭାରତର ତିନି ମୁଖ୍ୟ ଧର୍ମ ପରସ୍ପରକୁ ହୋଳାକୋଳି କରିବା ପାଇଁ ଆରମ୍ଭ କରି ଦେଇଥିଲେ । ଉତ୍କଳର ଧର୍ମ

ଇତିହାସରେ ମଧ୍ୟ ଏହି ସମୟ ପାଖରୁ ଏପରି ଏକ ପରିବର୍ତ୍ତନ ଆରମ୍ଭ ହୋଇଥିବାର ସମ୍ଭାବନା । ଅବଶ୍ୟ ସୁଦୂର ସପ୍ତମ ଶତାବ୍ଦୀରେ ମଧ୍ୟ ଉତ୍କଳରେ ବୌଦ୍ଧଧର୍ମ ଓ ଜୈନଧର୍ମର ଯଥେଷ୍ଟ ପ୍ରଭାବ ଦେଖିବାକୁ ମିଳେ । ତଥାପି ଖ୍ରୀଷ୍ଟଯୁଗର ପ୍ରଥମ ପାଦରୁ ବିଶେଷତଃ କୁଶାନ ଯୁଗର ଦ୍ୱିତୀୟାର୍ଦ୍ଧ ପାଖରୁ ଯେଉଁ ଧର୍ମ ସମିଶ୍ରଣର ଆନ୍ଦୋଳନ ସାରା ଭାରତକୁ ଆଲୋଡ଼ିତ କରିଥିଲା ତାହାର ପ୍ରଭାବ କଳିଙ୍ଗ ଖଣ୍ଡରେ ମଧ୍ୟ ଯଥାସମୟରେ ଦେଖା ଦେଇଥିଲା । କଳିଙ୍ଗର ଏହି ଅନ୍ଧକାରାଚ୍ଛନ୍ନ ଯୁଗରେ ଯେତେବେଳେ କଳିଙ୍ଗର ରାଜନୈତିକ ଇତିହାସ ସମ୍ବନ୍ଧରେ କୌଣସି ବିଷୟ ଜାଣି ହେଉ ନାହିଁ ସେତେବେଳେ କଳିଙ୍ଗର ରାଜକୀୟ ଧର୍ମ କ'ଣ ଥିଲା, କିମ୍ବା କେଉଁ ଧର୍ମ କେଉଁ ବର୍ଗରୁ କିପରି ଭାବରେ ପୃଷ୍ଠପୋଷକତା ଲାଭ କରିଥିଲା, ଏ ସମସ୍ତ କଥା ଅନୁମାନ କରିବା ଅତି ଦୁରୂହ ବ୍ୟାପାର ।

ଏହି ଯୁଗରେ କଳିଙ୍ଗର ରାଜନୈତିକ ଏକତା ଥିଲା କି ନାହିଁ ତାହା ଜଣା ଯାଇ ନାହିଁ । ଖୁବ ସମ୍ଭବତଃ ଚେତ ସାମ୍ରାଜ୍ୟର ପତନ ପରେ ପ୍ରାଚୀନ କଳିଙ୍ଗ ସାମ୍ରାଜ୍ୟ ଖଣ୍ଡ ଖଣ୍ଡ ହୋଇଯାଇଥିଲା । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ବିଖ୍ୟାତ ରୋମୀୟ ଭୌଗଳିକ ପ୍ଲିନି କଳିଙ୍ଗ ଦେଶକୁ ଦୁଇଭାଗରେ ବିଭକ୍ତ ଥିବାର ଦେଖିଥିଲେ । ପ୍ଲିନିଙ୍କ ଭାଷାରେ ପ୍ରଥମ ଖଣ୍ଡର ନାମ ଥିଲା 'ଗଙ୍ଗାରିଡାଇ କଳିଙ୍ଗ' ଏବଂ ଦ୍ୱିତୀୟ ଖଣ୍ଡର ନାମ ଥିଲା 'ମାକୋ କଳିଙ୍ଗ' (ମୁଖ କଳିଙ୍ଗ) । ଅର୍ଥାତ ଗଙ୍ଗା ପର୍ଯ୍ୟନ୍ତ କଳିଙ୍ଗର ପୂର୍ବଭାଗର ନାମ ଥିଲା ଗଙ୍ଗା କଳିଙ୍ଗ ଏବଂ କଳିଙ୍ଗର ଦକ୍ଷିଣ ଭାଗର ନାମ ଥିଲା ମୁଖ କଳିଙ୍ଗ । ପ୍ଲିନି କଳିଙ୍ଗର କେବଳ ଏହି ଦୁଇ ମୁଖ୍ୟ ବିଭାଗ ଦେଖି ପାରିଥିଲେ । କିନ୍ତୁ ଏହା ବ୍ୟତୀତ କଳିଙ୍ଗରେ ଅନ୍ୟ ରାଜନୈତିକ ବିଭାଗମାନଙ୍କର ମଧ୍ୟ ସୃଷ୍ଟି ହୋଇଯାଇଥିଲା । ଏହି ବିଭାଗମାନଙ୍କର ନାମ ଯଥାକ୍ରମେ ଉତ୍କଳ, କଙ୍ଗୋଦ୍ର, କଳିଙ୍ଗ, କୋଶଳ, ତ୍ରିକଳିଙ୍ଗ ଇତ୍ୟାଦି । ଏହି ମୁଖ୍ୟ ବିଭାଗ ମଧ୍ୟରେ ପୁଣି କ୍ଷୁଦ୍ର କ୍ଷୁଦ୍ର ବିଭାଗମାନଙ୍କର ସୃଷ୍ଟି ହୋଇଯାଇଥିବାର ଯଥେଷ୍ଟ ସମ୍ଭାବନା । ଯେତେବେଳେ ଅଶୋକ କଳିଙ୍ଗ ଆକ୍ରମଣ କରିଥିଲେ ସେତେବେଳେ ସମଗ୍ର କଳିଙ୍ଗ ସାମ୍ରାଜ୍ୟ ଏକ ରାଜନୈତିକ ଶକ୍ତିରୂପେ ତାହାଙ୍କ ବିରୁଦ୍ଧରେ ଯୁଦ୍ଧ କରିଥିଲା । ଯେତେବେଳେ ଖାରବେଳ ଭାରତ ଦିଗ୍‌ବିଜୟ କରୁଥିଲେ ସେତେବେଳେ ସମଗ୍ର କଳିଙ୍ଗର ସମ୍ରାଟରୂପେ ସେ ଏପରି ଦିଗ୍‌ବିଜୟ ପାଇଁ ଆଗେଇ ପାରିଥିଲେ । କିନ୍ତୁ ଖ୍ରୀଷ୍ଟଯୁଗର ଆରମ୍ଭରେ ବିଶାଳ କଳିଙ୍ଗର

ରାଜନୈତିକ ଏକତା ଖଣ୍ଡ ଖଣ୍ଡ ହୋଇଯାଇଥିଲା । ଗୁପ୍ତଯୁଗର ଆରମ୍ଭରେ ସମୁଦ୍ରଗୁପ୍ତ ଯେତେବେଳେ କଳିଙ୍ଗ ଆକ୍ରମଣ କଲେ ସେତେବେଳେ ସମଗ୍ର କଳିଙ୍ଗ ଅଶୋକଙ୍କ ବିରୁଦ୍ଧରେ ଯୁଦ୍ଧ କଲାପରି ସମୁଦ୍ରଗୁପ୍ତଙ୍କ ବିରୁଦ୍ଧରେ ଛିଡ଼ା ହୋଇପାରି ନ ଥିଲା । ସମୁଦ୍ରଗୁପ୍ତ ଖଣ୍ଡବିଖଣ୍ଡ କଳିଙ୍ଗରେ ବହୁ କ୍ଷୁଦ୍ର କ୍ଷୁଦ୍ର ରାଜାଙ୍କୁ ଦେଖିଥିଲେ ଏବଂ ସେମାନଙ୍କୁ ଅନାୟାସରେ ପରାଜିତ କରିଥିଲେ । ଏ ବିଷୟରେ ଆମ୍ଭେମାନେ ପରେ ଆଲୋଚନା କରିବୁଁ । ମୋଟଉପରେ କଳିଙ୍ଗରେ ପୁନର୍ବାର ଏକ ବିରାଟ ରାଜଶକ୍ତିର ଅଭ୍ୟୁଦୟ ପର୍ଯ୍ୟନ୍ତ କଳିଙ୍ଗକୁ ଭାଗ ଭାଗ ହୋଇ ରହିବାକୁ ପଡ଼ିଥିଲା । ଅନ୍ତତଃ ଖ୍ରୀଷ୍ଟଯୁଗର ପ୍ରଥମ ଶତାବ୍ଦୀମାନଙ୍କରେ କଳିଙ୍ଗର ରାଜନୈତିକ ଅବସ୍ଥା ଉପରେ ଏତିକି ଅନୁମାନ କରିବାର ଯଥେଷ୍ଟ କାରଣ ଅଛି ।

କିନ୍ତୁ ଏହି ଯୁଗରେ କଳିଙ୍ଗର ରାଜନୈତିକ ଏକତା ନ ଥିଲେ ମଧ୍ୟ କଳିଙ୍ଗବାସୀଙ୍କ ଜାତୀୟ ଏକତା କୌଣସି ପ୍ରକାରେ ନିସ୍ତେଜ ହୋଇ ନ ଥିଲା । କଳିଙ୍ଗ ଇତିହାସରେ ଦେଖିବାକୁ ମିଳେ ଯେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଏହି ସୁବିସ୍ତୃତ ଭୂଖଣ୍ଡ ବାରମ୍ବାର ରାଜନୈତିକ ଏକତା ହରାଇ କ୍ଷୁଦ୍ର ବୃହତ୍ ରାଜ୍ୟମାନଙ୍କର ସମଷ୍ଟିରେ ପରିଣତ ହୋଇଛି । କିନ୍ତୁ ରାଜନୈତିକ ଏକତା ହରାଇ ସୁଦ୍ଧା କଳିଙ୍ଗ କେବେହେଲେ ଜାତୀୟ କିମ୍ବା ସାଂସ୍କୃତିକ ଏକତା ହରାଇ ନାହିଁ । ଏପରି ଏକ ବିଶେଷତ୍ୱପୂର୍ଣ୍ଣ ଘଟଣା ଆମ୍ଭମାନଙ୍କୁ ପ୍ରାଚୀନ ଗ୍ରୀକ୍ ସଭ୍ୟତା କଥା ମନେ ପକାଇ ଦିଏ । ଅତୀତ କାଳରେ ଗ୍ରୀସ୍ ଦେଶ ବହୁଧା ବିଭକ୍ତ ରହି ଅନେକ ସ୍ୱାଧୀନ ରାଜ୍ୟକୁ ଗର୍ଭରେ ଧରିଥାଏ । ସେ ସମସ୍ତ କ୍ଷୁଦ୍ର କ୍ଷୁଦ୍ର ଗ୍ରୀକ୍ ରାଜ୍ୟ ସଦାସର୍ବଦା ପରସ୍ପର ମଧ୍ୟରେ ଯୁଦ୍ଧରତ ରହିଥାଆନ୍ତି । କିନ୍ତୁ ଗ୍ରୀକ୍ ଜଗତରେ ରାଜନୈତିକ ଏକତା ନ ଥିଲେ ମଧ୍ୟ ସାଂସ୍କୃତିକ ଏକତା କେବେହେଲେ ଭାଙ୍ଗିଯାଇ ନ ଥିଲା । ଅର୍ଥାତ୍ ସମଗ୍ର ଗ୍ରୀସ୍ ଭୂଖଣ୍ଡ ମଧ୍ୟରେ ବହୁ ସଂଖ୍ୟକ କ୍ଷୁଦ୍ର କ୍ଷୁଦ୍ର ସ୍ୱାଧୀନ ରାଜ୍ୟମାନଙ୍କର ଅବସ୍ଥିତି ଥିଲେ ମଧ୍ୟ ସମଗ୍ର ଗ୍ରୀସ୍ ଭୂଖଣ୍ଡ ଏକ ବିରାଟ ସଭ୍ୟତା ଗଠନ କରିବାକୁ ସମର୍ଥ ହୋଇଥିଲା ଏବଂ ଏହି ସଭ୍ୟତା ଥିଲା ଗ୍ରୀକ୍ ସଭ୍ୟତା । ଏହି ବିଶାଳ ସଭ୍ୟତା ତଳେ ସମଗ୍ର ଗ୍ରୀକ୍ ଜାତି ନିଜପାଇଁ ଏକ ଜାତୀୟ-ଜୀବନ, ଧର୍ମ ଓ ସଂସ୍କୃତି ଗଠନ କରିନେଇଥିଲେ । ସେହିପରି କଳିଙ୍ଗ ବହୁବାର ନିଜର ରାଜନୈତିକ ଏକତା ହରାଇଥିଲେ ମଧ୍ୟ କେବେହେଲେ ନିଜର ଜାତୀୟ ଏକତା ହରାଇ ନ ଥିଲା । ଏହି ଜାତୀୟ ଏକତାରେ ଅନୁପ୍ରାଣିତ ହୋଇ କଳିଙ୍ଗବାସୀମାନେ

ସବୁକାଳେ ସେମାନଙ୍କର ସଭ୍ୟତା ସଂସ୍କୃତି ଅଗ୍ରଗାମୀ ରଖି ପାରୁଥିଲେ । ଖ୍ରୀଷ୍ଟିୟ ଯୁଗର ପ୍ରଥମ ପାଦରେ କଳିଙ୍ଗ ସାମ୍ରାଜ୍ୟର ରାଜନୈତିକ ଏକତା ନ ଥିଲେ ମଧ୍ୟ କଳିଙ୍ଗ ଜାତିର ଜାତୀୟ ପ୍ରେରଣା ପୂର୍ବପରି ରହିଥିଲା ଏବଂ ସେଥିପାଇଁ ଆମ୍ଭେମାନେ ଦେଖିବାକୁ ପାଉଁ ଯେ ସେହି ଯୁଗରେ ସେମାନେ ସେମାନଙ୍କର ସାଗରପାରି କୃତୀତ୍ୱର ଯଥେଷ୍ଟ ପରିଚୟ ଦେଇଥିଲେ । ଖ୍ରୀଷ୍ଟଯୁଗର ପ୍ରଥମ ପାଦ ସେମାନଙ୍କ ସାଗରପାରି କୃତିତ୍ୱର ସୂଦିନ । ଅବଶ୍ୟ କଳିଙ୍ଗ ଦେଶର ଔପନିବେଶିକମାନେ ଖ୍ରୀଷ୍ଟଙ୍କ ଜନ୍ମର ବହୁ ପୂର୍ବରୁ ଜାଭା, ସୁମାତ୍ରା, ବୋର୍ଣ୍ଣିଓ ଓ ବାଲି ପ୍ରଭୃତି ଦ୍ୱୀପରେ ଭାରତୀୟ ସଭ୍ୟତା ବିସ୍ତାର କରିଥିଲେ । କିନ୍ତୁ ସେ ସମସ୍ତ ପ୍ରାକ୍ ଖ୍ରୀଷ୍ଟିୟ ଉପନିବେଶ ସ୍ଥାପନର ଇତିବୃତ୍ତ ଗଭୀର ଅନ୍ଧକାରାଚ୍ଛନ୍ନ । କିନ୍ତୁ ଖ୍ରୀଷ୍ଟଜନ୍ମ ପୂର୍ବରୁ ଏପରି ଉପନିବେଶ ସ୍ଥାପନ ଚାଲି ଆସିଥିଲା ବୋଲି ଖ୍ରୀଷ୍ଟଜନ୍ମ ପରେ ସେ ସବୁର ପରିଷ୍କାର ଛବି ଦେଖିବାକୁ ମିଳେ । ଖ୍ରୀଷ୍ଟଯୁଗର ଆରମ୍ଭରେ 'ପେରିପ୍ଲାସ୍ ଅବ୍ ଦି ଏରିଥ୍ରୀୟାନ ସି' ନାମକ ସୁବିଖ୍ୟାତ ପୁସ୍ତକର ନାମହୀନ ଲେଖକ ଯେତେବେଳେ ପ୍ରାଚ୍ୟଖଣ୍ଡର ଜଳଯାତ୍ରା ଉପରେ ଦୃଷ୍ଟି ପକାଇଥିଲେ ସେତେବେଳେ ସେ ଦେଖିଥିଲେ ଯେ ଭାରତର ପୂର୍ବ ଉପକୂଳରୁ ଅର୍ଥାତ୍ କଳିଙ୍ଗତଟରୁ କ୍ରମାଗତ ଭାବରେ ବୋଇତମେଳା ମାଳୟ ଦ୍ୱୀପପୁଞ୍ଜ ଆଡ଼କୁ ବାଣିଜ୍ୟ ବ୍ୟବସାୟ ପାଇଁ ବାହାରି ଯାଉଥିଲେ । ଖ୍ରୀଷ୍ଟଯୁଗ ପୂର୍ବରୁ କଳିଙ୍ଗ ଏବଂ ମାଳୟ ଦ୍ୱୀପପୁଞ୍ଜ ମଧ୍ୟରେ ଯେଉଁ ସମ୍ବନ୍ଧ ସୃଷ୍ଟି ହୋଇଥିଲା ସେ ସବୁର ବିବରଣୀ ଆଜି ସେହି ଦ୍ୱୀପପୁଞ୍ଜ ମାନଙ୍କରେ ଜନଶ୍ରୁତି ଆକାରରେ ଶୁଣିବାକୁ ମିଳେ । ଜାଭା ବା ଜବ ଦ୍ୱୀପର ଏକ ପ୍ରସିଦ୍ଧ ଏବଂ ବହୁ ପ୍ରଚଳିତ ଜନଶ୍ରୁତିରୁ ଜଣାଯାଏ ଯେ, "କ୍ଲିଙ୍ଗ (କଳିଙ୍ଗ) ଦେଶର ରାଜା ଜବଦ୍ୱୀପକୁ ବିଂଶ ସହସ୍ର ପରିବାର ପଠାଇ ଦେଇଥିଲେ । ଏହି ପରିବାରଗୁଡ଼ିକର ସଂଖ୍ୟା କାଳକ୍ରମେ ବଢ଼ି ଯାଇଥିଲା ଏବଂ ସେମାନେ ଉନ୍ନତି କରିବାରେ ଲାଗିଥିଲେ । କିନ୍ତୁ ସେମାନେ ଜବଦ୍ୱୀପର ୨୮୯ ଅବ୍ଦ ପର୍ଯ୍ୟନ୍ତ ଅନୁନ୍ନତ ଅବସ୍ଥାରେ ବାସ କରିଥିଲେ ଯେତେବେଳେ କି ସର୍ବଶକ୍ତିମାନ ଈଶ୍ୱର ସନ୍ତୁଷ୍ଟ ହୋଇ ସେମାନଙ୍କୁ କାନୋ ନାମକ ଏକ ରାଜାଙ୍କୁ ଅର୍ପଣ କରିଥିଲେ ।" ଏହି ଜନଶ୍ରୁତି ଅନୁସାରେ ଏହି କାନୋଙ୍କ ବଂଶଧରମାନେ ସେଠାରେ ରାଜତ୍ୱ କରିଥିଲେ । ଜବଦ୍ୱୀପର ଏହି ପ୍ରାଚୀନ ଏବଂ ବହୁଜନବିଦିତ ଜନଶ୍ରୁତି ଅତି ଅନ୍ଧକାରାଚ୍ଛନ୍ନ ଏକ ଅତୀତ ମଧ୍ୟରୁ ଅନ୍ତତଃ ଗୋଟିଏ ଐତିହାସିକ ଇଙ୍ଗିତ ବାହାର କରି ଆଣେ ଯେ ପ୍ରାଗ୍‌ଖ୍ରୀଷ୍ଟିୟ କାଳରେ ଜଣେ କଳିଙ୍ଗଦେଶର ରାଜା ବହୁସଂଖ୍ୟକ ଔପନିବେଶିକଙ୍କୁ ଜବ ଦ୍ୱୀପକୁ

ପଠାଇଥିଲେ ଏବଂ ସେହି ଔପନିବେଶିକମାନେ ଜବଦ୍ୱୀପରେ ବସବାସ କରି ରହି ଯାଇଥିଲେ । କଳିଙ୍ଗ ଔପନିବେଶିକମାନଙ୍କର ମାଲୟ ଯାତ୍ରା ସେହି ଅନ୍ଧକାରାଚ୍ଛନ୍ନ ଯୁଗରୁ ଖ୍ରୀଷ୍ଟଯୁଗର ବହୁ ଶତାବ୍ଦୀ ପର୍ଯ୍ୟନ୍ତ ଲାଗିରହିଥିଲା । ଯେତେବେଳେ ସୁବିଖ୍ୟାତ ପାଶ୍ଚାତ୍ୟ ଭୌଗଳିକ ଟଲେମି ଦକ୍ଷିଣ ପୂର୍ବ ଏସିଆର ଭୌଗଳିକ ବିବରଣୀ ଲେଖୁଥିଲେ ସେତେବେଳେ ମଧ୍ୟ ସେ ଦେଖିଥିଲେ ଯେ କଳିଙ୍ଗର ସୁବିଦିତ ପାଲୁର ବନ୍ଦରରୁ ମାଲୟ ଦ୍ୱୀପପୁଞ୍ଜ ଅଭିମୁଖରେ ସଦା ସର୍ବଦା ଔପ-ନିବେଶିକମାନଙ୍କର ଯାତାୟାତ ଲାଗିରହିଥାଏ । ପାଲୁର ହେଉଛି ପ୍ରାଚୀନ କଳିଙ୍ଗ ତଥା ପ୍ରାଚୀନ ଭାରତର ଏକ ଅତି ପ୍ରସିଦ୍ଧ ବନ୍ଦର । ପ୍ରାଚୀନ ଭାରତରେ ପାଲୁର ପରି ଗୋଟିଏ ସମୃଦ୍ଧିଶାଳୀ ବନ୍ଦର ପ୍ରାୟ ଅନ୍ୟ କୌଣସି ସ୍ଥାନରେ ନ ଥିଲା । ବହୁ ଶତାବ୍ଦୀ ଯାବତ୍ ଭାରତର ସୁଦୂର ପ୍ରାଚ୍ୟ ବାଣିଜ୍ୟ ବ୍ୟବସାୟ ଏହି କଳିଙ୍ଗ ବନ୍ଦର ମଧ୍ୟଦେଇ ଗତି କରୁଥିଲା । ଅଧ୍ୟାପକ ସିଲଭାଁ ଲେଭି କଳିଙ୍ଗରେ ଦନ୍ତପୁର ବୋଲି ଯେଉଁ ପ୍ରାଚୀନ ବନ୍ଦର ଥିବାର ଖ୍ୟାତ ଅଛି ସେହି ବନ୍ଦରକୁ ପାଲୁର ବୋଲି ମତ ପ୍ରକାଶ କରନ୍ତି । କିନ୍ତୁ ଅନ୍ୟାନ୍ୟ କେତେକ ଐତିହାସିକଙ୍କ ମତରେ ପାଲୁର ହେଉଛି ଋଷିକୁଲ୍ୟା ନଦୀର ମୁହାଣରେ ଅବସ୍ଥିତ ଏକ ବନ୍ଦର ।

ଖ୍ରୀଷ୍ଟିୟ ଯୁଗର ପ୍ରଥମ ଶତାବ୍ଦୀମାନଙ୍କରେ ଏହି ପାଲୁର ବନ୍ଦରରୁ କ୍ରମାଗତ-ଭାବେ ଚାଲିଯାତ୍ରା ଲାଗିରହିଥିଲା । କଳିଙ୍ଗବାସୀଙ୍କର ଏପରି ସିନ୍ଧୁ ଯାତ୍ରା ଏବଂ ମାଲୟ ଦ୍ୱୀପପୁଞ୍ଜରେ ଉପନିବେଶ ସ୍ଥାପନ ଫଳରେ କ୍ରମେ ସମଗ୍ର ଦ୍ୱୀପପୁଞ୍ଜରେ ସେମାନଙ୍କର ପ୍ରଭାବ ଏବଂ ପ୍ରତିପତ୍ତି ପ୍ରବଳ ହୋଇ ଉଠିଥିଲା । ଏ ପ୍ରଭାବ ଏତେଦୂର ପ୍ରବଳ ହୋଇ ପଡ଼ିଥିଲା ଯେ ଏପରିକି ଚୀନ ଦେଶର ଅଧିବାସୀମାନେ ଏହି ସମୟରେ ମାଲୟ ଦ୍ୱୀପପୁଞ୍ଜକୁ କ୍ଲିଙ୍ଗ୍ ନାମରେ ଡାକିବାକୁ ଆରମ୍ଭ କରି-ଥିଲେ । ଚୀନ ଅଧିବାସୀଙ୍କର ଏହି କ୍ଲିଙ୍ଗ୍ ବା କ୍ଲିଙ୍ଗ୍ ନାମ ଯେ ନିଶ୍ଚୟ କଳିଙ୍ଗ ଶବ୍ଦର ଅପଭ୍ରଂଶ ଏଥିରେ ଐତିହାସିକମାନେ ନିଃସନ୍ଦେହ । ଚୀନଭାଷାରେ କଳିଙ୍ଗ ଶବ୍ଦର ପ୍ରତିଶବ୍ଦ ହେଉଛି ହୋ-ଲିଙ୍ଗ୍ । ଖ୍ରୀଷ୍ଟଯୁଗର ଆରମ୍ଭରେ ଚୀନ ଅଧିବାସୀମାନେ ଜବଦ୍ୱୀପକୁ ଏହି ହୋଲିଙ୍ଗ୍ ନାମରେ ଆଖ୍ୟାତ କରିଥିଲେ । କାରଣ ଜବଦ୍ୱୀପରେ ସେତେବେଳେ କଳିଙ୍ଗ ଉପନିବେଶ ସୁଦୃଢ଼ ହୋଇ ସାରିଥିଲା । ଯେହେତୁ କଳିଙ୍ଗବାସୀମାନେ ଦଳ ଦଳ ହୋଇ ମାଲୟ ଦ୍ୱୀପପୁଞ୍ଜର ସ୍ଥାନେ ସ୍ଥାନେ ଉପନିବେଶ ସ୍ଥାପନ କରି ସେଠାରେ ବସବାସ କରୁଥିଲେ ଏବଂ

ସେ ସବୁ ସ୍ଥାନରେ ଭାରତୀୟ ସଭ୍ୟତା ଓ ଭାରତୀୟ ଧର୍ମ ବିସ୍ତାର କରୁଥିଲେ ସେଥିପାଇଁ ସାଧାରଣତଃ ପ୍ରାଚ୍ୟ ଖଣ୍ଡର ଅପର ଦେଶମାନଙ୍କ ଆଗରେ କଳିଙ୍ଗ ଦେଶ ସେହିସବୁ ଉପନିବେଶମାନଙ୍କର ଜନନୀରୂପେ ପ୍ରତୀୟମାନ ହୋଇଥିଲା । ସେଥିପାଇଁ ସ୍ୱାଭାବିକ ଭାବରେ ଚୀନବାସୀମାନେ ମାଲୟ ଦ୍ୱୀପପୁଞ୍ଜକୁ 'କଳିଙ୍ଗ' ନାମରେ ଆଖ୍ୟାତ କରିପାରିଥିଲେ କିମ୍ବା ଜବଦ୍ୱୀପକୁ 'ହୋ-ଲିଙ୍ଗ୍' ବୋଲି ଡାକିଥିଲେ । ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀ ଶେଷ ହେଲାବେଳକୁ କେବଳ ଜବଦ୍ୱୀପ ଯେ 'କଳିଙ୍ଗ' ବା 'ହୋ-ଲିଙ୍ଗ୍' ନାମରେ ବିଖ୍ୟାତ ହୋଇ ସାରିଥିଲା ତା ନୁହେଁ, ଏହାଛଡ଼ା ସୁମାତ୍ରା ଦ୍ୱୀପରେ 'ଶ୍ରୀ ବିଜୟ' ନାମକ ରାଜ୍ୟ ସଂସ୍ଥାପିତ ହୋଇ ସାରିଥିଲା, ବୋର୍ଣ୍ଣିଓ ଦ୍ୱୀପରେ ପ୍ରାଚୀନ ହିନ୍ଦୁମନ୍ଦିରମାନଙ୍କର ନିର୍ମାଣ ଓ ଗୁହା-ମାନଙ୍କର ଖନନ କାର୍ଯ୍ୟ ଅନେକ ଆଗେଇ ଯାଇଥିଲା ଏବଂ ବାଲି ଦ୍ୱୀପରେ ହିନ୍ଦୁ-ଧର୍ମର ବହୁଳ ପ୍ରଚାର ମଧ୍ୟ ହୋଇ ସାରିଥିଲା ।

ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀ ପାଖରୁ କଳିଙ୍ଗ ଦେଶର ଉପନିବେଶ ସ୍ଥାପନ ଇତ୍ୟାଦି ବିଷୟ ସମ୍ବନ୍ଧରେ ବହୁଳ ଐତିହାସିକ ତଥ୍ୟ ରହିଛି । ବିଶେଷତଃ ଚୀନ ଓ ଆରବ ଐତିହାସିକମାନଙ୍କ ଲେଖାରୁ ବହୁ ବିଷୟ ଜାଣିବାକୁ ମିଳେ । ଏହା-ଛଡ଼ା ବିସ୍ତୀର୍ଣ୍ଣ ମାଲୟ ଦ୍ୱୀପପୁଞ୍ଜର ବିଭିନ୍ନ ସ୍ଥାନରୁ ଯେଉଁ ସବୁ ପ୍ରତ୍ନତତ୍ତ୍ୱର ଆବିଷ୍କାର ହୋଇଛି ସେ ସବୁରୁ ଅନେକ ଐତିହାସିକ ତତ୍ତ୍ୱ ଜଣାପଡ଼େ । ସେ ସମସ୍ତ ବିଷୟ ଏହି ପୁସ୍ତକର ଦ୍ୱିତୀୟ ଖଣ୍ଡରେ 'ସାଗର ସେପାରେ ଉତ୍କଳ ସଭ୍ୟତା' ଶୀର୍ଷକ ପ୍ରବନ୍ଧରେ ବିଶଦଭାବେ ଆଲୋଚିତ ହେବ ।



# ଗୁପ୍ତଯୁଗର ଧର୍ମ ଓ ସଭ୍ୟତା

କୁଶାନ ସାମ୍ରାଜ୍ୟ ପତନର ପ୍ରାୟ ଏକଶତ ବର୍ଷ ପରେ ପୁନର୍ବାର ପାଟଳିପୁତ୍ରକୁ କେନ୍ଦ୍ର କରି ଭାରତରେ ଏକ ବିଶାଳ ସାମ୍ରାଜ୍ୟର ଅଭ୍ୟୁଦୟ ହୋଇଥିଲା । ଏହି ସାମ୍ରାଜ୍ୟ ଭାରତ ଇତିହାସରେ ଗୁପ୍ତ ସାମ୍ରାଜ୍ୟ ନାମରେ ପ୍ରସିଦ୍ଧ । ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀର ଆରମ୍ଭରେ କୁଶାନ ସାମ୍ରାଜ୍ୟର ଅଧଃପତନଦ୍ୱାରା ଭାରତର ରାଷ୍ଟ୍ରୀୟ ଐକ୍ୟ ବିଲୟ ଭଜିଥିଲା । ସେହି ସମୟଠାରୁ ଗୁପ୍ତ ସାମ୍ରାଜ୍ୟର ଉତ୍ଥାନ କାଳ ପର୍ଯ୍ୟନ୍ତ ପ୍ରାୟ ଶତବର୍ଷ ଯାବତ୍ ଭାରତ ଇତିହାସ ବିଶୃଙ୍ଖଳା ଏବଂ ଅରାଜକତା ମଧ୍ୟଦେଇ ଗତି କରିଥିଲା । କିନ୍ତୁ ଭାରତ ଇତିହାସର ସେହି ଅବାଞ୍ଛିତ ଯୁଗର ଶେଷ ହୋଇଥିଲା ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ପ୍ରଥମ ଭାଗରେ ଯେତେବେଳେ ପ୍ରାଚୀନ ଭାରତର ରାଜନୈତିକ କେନ୍ଦ୍ର ମଗଧଠାରେ ଗୁପ୍ତ ରାଜବଂଶର ଅଭ୍ୟୁଦୟ ହେଲା । ଗୁପ୍ତ ବଂଶର ଅଭ୍ୟୁତ୍ଥାନ ଭାରତ ଭାଗ୍ୟାକାଶରେ ଏକ ଅଭିନବ ପରିବର୍ତ୍ତନ ସୃଷ୍ଟି କରିଥିଲା । ଏହି ବଂଶର ଖ୍ୟାତନାମା ସମ୍ରାଟମାନଙ୍କର ପରାକ୍ରମ ଫଳରେ ଭାରତ ବର୍ଷରେ ପୁନର୍ବାର ଶାନ୍ତି ପ୍ରତିଷ୍ଠିତ ହୋଇଥିଲା ଏବଂ ଭାରତର ଏକ ବିଶାଳ ଅଞ୍ଚଳ ଉପରେ ରାଜନୈତିକ ଐକ୍ୟ ସଂସ୍ଥାପିତ ହୋଇଥିଲା । ଏହି ବଂଶର କୃତିତ୍ୱରେ ଭାରତ ଭୂଭାଗରୁ ବୈଦେଶିକ ରାଜବଂଶମାନେ ନିର୍ମୂଳିତ ହୋଇଯାଇଥିଲେ ଏବଂ ପରାଧୀନତାର ନାଗପାଶରୁ ମୁକ୍ତ ହୋଇ ତଥା ବିଶୃଙ୍ଖଳା ଏବଂ ଅରାଜକତାରୁ ନିଷ୍କୃତି ଲାଭ କରି ଭାରତୀୟମାନେ ବିଜ୍ଞାନ, ସାହିତ୍ୟ, ଶିଳ୍ପ ଓ ଧର୍ମ କ୍ଷେତ୍ରରେ ନିଜ ପ୍ରତିଭାର ପୂର୍ଣ୍ଣ ପରିଚୟ ଦେବାକୁ ସମର୍ଥ ହୋଇଥିଲେ । ଗୁପ୍ତବଂଶର ସ୍ଥାପୟିତା ଶ୍ରୀଗୁପ୍ତ ଏବଂ ତାହାଙ୍କ ପୁତ୍ର ଘଟୋତ୍କଚ ମଗଧର କୌଣସି ଏକ କ୍ଷୁଦ୍ର ଅଞ୍ଚଳରେ ରାଜତ୍ୱ କରୁଥିଲେ । କିନ୍ତୁ ଏହି ବଂଶର ତୃତୀୟ ନରପତି ପ୍ରଥମ ଚନ୍ଦ୍ରଗୁପ୍ତ ନିଜର କ୍ଷୁଦ୍ର ପୈତୃକ ରାଜ୍ୟର ବୃଦ୍ଧି ସାଧନ କରି ଏକ ବିରାଟ ଗୁପ୍ତ ସାମ୍ରାଜ୍ୟର ପ୍ରତିଷ୍ଠା ପାଇଁ ଚେଷ୍ଟିତ ହୋଇଥିଲେ । ସୌଭାଗ୍ୟବଶତଃ ଭାରତ-ବିଦିତ ଲିଚ୍ଛବୀ-ବଂଶର ରାଜକନ୍ୟା କୁମାରଦେବୀଙ୍କୁ ବିବାହ କରିବାଦ୍ୱାରା ଚନ୍ଦ୍ରଗୁପ୍ତଙ୍କର

ରାଜନୈତିକ ପ୍ରଭାବ ବୃଦ୍ଧିପ୍ରାପ୍ତ ହୋଇଥିଲା ଏବଂ ତାହାଙ୍କର ଅଣାପଥ ପରିଷ୍କାର ହୋଇଯାଇଥିଲା । ପାଟଳିପୁତ୍ରକୁ ରାଜଧାନୀ କରି ଚନ୍ଦ୍ରଗୁପ୍ତ ମଗଧଠାରୁ ପ୍ରୟାଗ ଏବଂ ଅଯୋଧ୍ୟା ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରି ଯାଇଥିଲେ ଏବଂ ଏପରି ଏକ ରାଜ୍ୟ ଗଠନ କରିବାଦ୍ୱାରା ନିଜର ଶକ୍ତି ଓ ପ୍ରତିପତ୍ତିର ଯଥେଷ୍ଟ ବୃଦ୍ଧିଲାଭ ହୋଇଛି ଜାଣି ନିଜକୁ ମହାରାଜାଧିରାଜ ଉପାଧିଦ୍ୱାରା ମଣ୍ଡିତ କରିଥିଲେ । ଖ୍ରୀ: ଅ: ୩୨୦ରେ ନବଗଠିତ ସାମ୍ରାଜ୍ୟର ସମ୍ରାଟରୂପେ ସ୍ୱଖ୍ୟାତି ଘୋଷଣା କରିବା ପାଇଁ ଏବଂ ସେହି ନୂତନ ରାଜ୍ୟାଭିଷେକ ବର୍ଷକୁ ସ୍ମରଣୀୟ ରଖିବା ପାଇଁ ଚନ୍ଦ୍ରଗୁପ୍ତ ସେହି ବର୍ଷଠାରୁ ଏକ ନୂତନ ଅବ୍ଦ ବା ସମ୍ବତ୍ସର ପ୍ରଚଳନ କରିଥିଲେ । ଏହା ଗୁପ୍ତାବ୍ଦ ନାମରେ ପ୍ରସିଦ୍ଧ । ମୃତ୍ୟୁ ପୂର୍ବରୁ ଗୁପ୍ତ ସାମ୍ରାଜ୍ୟର ଏହି ଜନ୍ମଦାତା ତାହାଙ୍କ ସାମ୍ରାଜ୍ଞୀ କୁମାରଦେବୀଙ୍କ ପୁତ୍ର ସମୁଦ୍ରଗୁପ୍ତଙ୍କୁ ନିଜର ଉତ୍ତରାଧିକାରୀରୂପେ ମନୋନୟନ କରି ଯାଇଥିଲେ । କଥିତ ଅଛି, ଚନ୍ଦ୍ରଗୁପ୍ତ ସାମ୍ରାଜ୍ୟର ସମସ୍ତ ରାଜକର୍ମଚାରୀ ଏବଂ ପାତ୍ରମନ୍ତ୍ରୀଙ୍କ ସମ୍ମୁଖରେ ସମୁଦ୍ରଗୁପ୍ତଙ୍କୁ ସାରା ପୃଥିବୀର ଭାର ଗ୍ରହଣ କରିବା ପାଇଁ ଉପଦେଶ ଦେଇ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ ।

ପ୍ରଥମ ଚନ୍ଦ୍ରଗୁପ୍ତଙ୍କ ପୁତ୍ର ସମୁଦ୍ରଗୁପ୍ତ ଇତିହାସରେ ଭାରତୀୟ ନେପୋଲିୟନ ନାମରେ ବିଖ୍ୟାତ । ଇଉରୋପ-ବିଜୟୀ ମହାବୀର ନେପୋଲିୟନଙ୍କ ପରି ସମୁଦ୍ରଗୁପ୍ତ ଭାରତ ଦିଗ୍‌ବିଜୟ କରି ସ୍ୱବୀରତ୍ୱର ପରିଚୟ ଦେଇଥିଲେ ଏବଂ ପିତାଙ୍କ ମନୋନୟନ ସାର୍ଥକ କରିଥିଲେ । ନିଃସନ୍ଦେହରୂପେ ଏହି ସମ୍ରାଟ ଥିଲେ ଗୁପ୍ତବଂଶର ସର୍ବଶ୍ରେଷ୍ଠ ନରପତି ଏବଂ ଭାରତର ଜଣେ ଅତି ଶ୍ରେଷ୍ଠ ମହାବୀର । ସମଗ୍ର ଆର୍ଯ୍ୟାବର୍ତ୍ତ ଖଣ୍ଡରେ ସ୍ୱକୀୟ ରାଜ୍ୟ ଆଣିଲା ପରେ ସମୁଦ୍ରଗୁପ୍ତ ଦାକ୍ଷିଣାତ୍ୟ ଖଣ୍ଡରେ ମଧ୍ୟ ହିନ୍ଦୁ ରାଜନୀତି ଅନୁଯାୟୀ ନିଜ ଦିଗ୍‌ବିଜୟ ପରିଚାଳନା କରିଥିଲେ । ସମୁଦ୍ରଗୁପ୍ତଙ୍କର ରାଜ୍ୟବିସ୍ତାର ଏବଂ ଦିଗ୍‌ବିଜୟର ପୂର୍ଣ୍ଣ ବିବରଣୀ ପ୍ରୟାଗସ୍ଥ ସମ୍ରାଟ ଅଶୋକଙ୍କ ଶୈଳସ୍ତମ୍ଭ ଗାତ୍ରରେ ଗୁପ୍ତଯୁଗର ଜନୈକ ବିଖ୍ୟାତ କବି ମହାଦଣ୍ଡ-ନାୟକ ହରିଷେଣଙ୍କ ଦ୍ୱାରା ବର୍ଣ୍ଣିତ ହୋଇଛି । ହରିଷେଣଙ୍କ ବିବରଣୀରୁ ଜଣାଯାଏ ଯେ ସମୁଦ୍ରଗୁପ୍ତ ଉତ୍ତରଭାରତରେ ରୁଦ୍ରଦେବ, ମତିଲ, ନାଗଦତ୍ତ, ଚନ୍ଦ୍ରବର୍ମା, ଗଣପତିନାଗ, ନାଗସେନ, ଅଚ୍ୟୁତ, ନନ୍ଦୀ, ବଳବର୍ମା ଏବଂ ଅନ୍ୟ କେତେକ ନରପତିଙ୍କୁ ନିର୍ମୂଳ କରି ସମଗ୍ର ଆର୍ଯ୍ୟାବର୍ତ୍ତ ଉପରେ ଗୁପ୍ତସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ । ଏହାପରେ ସମୁଦ୍ରଗୁପ୍ତ ଦାକ୍ଷିଣାତ୍ୟବିଜୟ ପାଇଁ ପ୍ରସ୍ତୁତ ହୋଇଥିଲେ ।

ଦାକ୍ଷିଣାପଥର ଯେଉଁ ରାଜାମାନଙ୍କ ସହିତ ସମୁଦ୍ରଗୁପ୍ତଙ୍କର ଯୁଦ୍ଧ ହୋଇଥିଲା ସେମାନେ ହେଉଛନ୍ତି କୋଶଳରାଜ ମହେନ୍ଦ୍ର, ମହାକାନ୍ତାର ଅଧିପତି ବ୍ୟାଘ୍ରରାଜ, କୌରାଳପତି ମନ୍ତରାଜ, କୋଟ୍ଟୁର ଅଧିପତି ସ୍ୱାମୀଦତ୍ତ, ପିଷ୍ଟପୁରରାଜ ମହେନ୍ଦ୍ର, ଏରଣ୍ଡପଲ୍ଲୀ ଅଧୀଶ୍ୱର ଦାମନ, କାଞ୍ଚୀଶ୍ୱର ବିଷ୍ଣୁଗୋପ, ଅବମୁକ୍ତର ନୀଳରାଜ, ଭେଙ୍ଗି ଅଧିପତି ହସ୍ତୀବର୍ମା, ପାଲକର ଉଗ୍ରସେନ, ଦେବରାଷ୍ଟ୍ର ରାଜା କୁବେର ଏବଂ କୁସ୍ଥଲପୁରରାଜ ଧନଞ୍ଜୟ । ଦାକ୍ଷିଣାତ୍ୟର ଏହି ରାଜାମାନଙ୍କ ମଧ୍ୟରୁ ଅନେକେ ହେଉଛନ୍ତି କଳିଙ୍ଗର ବିଭିନ୍ନାଞ୍ଚଳର ସ୍ୱାଧୀନ ରାଜା ଏବଂ ପ୍ରାୟ ସମସ୍ତେ ହେଉଛନ୍ତି ସେହି ଦେଶମାନଙ୍କର ରାଜା ଯେଉଁ ଦେଶମାନେ ଏକଦା ମିଳିତ ଭାବରେ ଖାରବେଳଙ୍କର ବିଶାଳ ଦକ୍ଷିଣ-ସାମ୍ରାଜ୍ୟର ଅଙ୍ଗ ପ୍ରତ୍ୟଙ୍ଗରୂପେ ଘଟିତ ହୋଇଥିଲେ । ସମୁଦ୍ରଗୁପ୍ତଙ୍କର ଦାକ୍ଷିଣାତ୍ୟ ଅଭିଯାନବେଳେ ଖାରବେଳଙ୍କର ସେହି ବିଶାଳ ସାମ୍ରାଜ୍ୟର ଅସ୍ତିତ୍ୱ ନ ଥିଲା କିମ୍ବା ପ୍ରାକୃତିକ କଳିଙ୍ଗଦେଶର ମଧ୍ୟ ରାଜନୈତିକ ଏକତା ନ ଥିଲା । ଖ୍ରୀଷ୍ଟୀୟ ଯୁଗର ପ୍ରଥମ ପାଦରୁ କଳିଙ୍ଗର ରାଷ୍ଟ୍ରୀୟ ଐକ୍ୟ ଭାଙ୍ଗି ଯାଇଥିଲା ଏବଂ ଗୁପ୍ତଯୁଗର ଆରମ୍ଭ ବେଳକୁ କଳିଙ୍ଗରେ ବହୁ ସ୍ୱାଧୀନ ରାଜ୍ୟମାନଙ୍କର ସୃଷ୍ଟି ହୋଇ ସାରିଥିଲା । କଳିଙ୍ଗର ଏହି ସ୍ୱାଧୀନ ରାଜ୍ୟମାନଙ୍କ ଉପରେ ସମୁଦ୍ରଗୁପ୍ତ ତାହାଙ୍କ ଦାକ୍ଷିଣାତ୍ୟ ଦିଗ୍‌ବିଜୟବେଳେ ଆକ୍ରମଣ କରିଥିଲେ ଏବଂ ସେହି ରାଜ୍ୟମାନଙ୍କର ରାଜାମାନଙ୍କ ମଧ୍ୟରୁ କେତେକଙ୍କୁ ପରାଜିତ କରିଥିଲେ । ହରିଷେଣଙ୍କ ବର୍ଣ୍ଣନାରୁ ଗୋଟିଏ ବିଷୟ ପ୍ରତୀୟମାନ ହୁଏ ଯେ ସମୁଦ୍ରଗୁପ୍ତ ଗଙ୍ଗାନଦୀ କୂଳେ କୂଳେ କଳିଙ୍ଗର ପୂର୍ବ ପ୍ରାନ୍ତରୁ ସେ ରାଜ୍ୟ ଆକ୍ରମଣ ନ କରି ମଧ୍ୟପ୍ରଦେଶର ପାର୍ବତ୍ୟାଞ୍ଚଳ ମଧ୍ୟଦେଇ ଆକ୍ରମଣ କରିଥିଲେ । ହୁଏତ କୌଣସି ପ୍ରୟୋଜନୀୟତା ଦୃଷ୍ଟିରୁ ସମୁଦ୍ରଗୁପ୍ତ ଉତ୍କଳର ଉପକୂଳ ଅଞ୍ଚଳ ଦେଇ ନ ଆସି ପାର୍ବତ୍ୟ ଅଞ୍ଚଳ ଦେଇ ଆସିଥିଲେ । ଏହାମଧ୍ୟ ଅନୁମାନ କରାଯାଇ ପାରେ ଯେ ପ୍ରାଚୀନ କାଳରେ ଉତ୍ତର ଭାରତ ଏବଂ କଳିଙ୍ଗ ମଧ୍ୟରେ ଆଧୁନିକ ଓଡ଼ିଶାର ଗଡ଼ଜାତ ଅଞ୍ଚଳ, ସମ୍ବଲପୁର ଏବଂ ମଧ୍ୟପ୍ରଦେଶ ଅଞ୍ଚଳ ଦେଇ ଏକ ଯୋଗାଯୋଗ ରାସ୍ତା ଥିଲା । ସମୁଦ୍ରଗୁପ୍ତଙ୍କୁ ପ୍ରଥମେ କୋଶଳରାଜ ମହେନ୍ଦ୍ରଙ୍କ ସଙ୍ଗେ ଯୁଦ୍ଧ କରିବାକୁ ପଡ଼ିଥିଲା । ଏହି କୋଶଳ ଥିଲା ତଦାନୀନ୍ତନ କଳିଙ୍ଗର ପଶ୍ଚିମାଞ୍ଚଳର ଏକ ଅଂଶ । ଆଧୁନିକ ବିଳାସପୁର, ରାୟପୁର ଏବଂ ସମ୍ବଲପୁର ଜିଲ୍ଲାମାନଙ୍କୁ ନେଇ ଯେଉଁ ଅଞ୍ଚଳ ହୁଏ ତାହାହିଁ ସେ କାଳର କୋଶଳ ବୋଲି ଐତିହାସିକମାନଙ୍କ ମତ । କୋଶଳ ଅଧିକାର ପରେ ସମୁଦ୍ରଗୁପ୍ତଙ୍କ ସୈନ୍ୟସେନା ଆଧୁନିକ ଓଡ଼ିଶାର ବାମରା,

ରେଢ଼ାଖୋଳ, ସୋନପୁର, ପାଟଣା ଇତ୍ୟାଦି ଅଞ୍ଚଳ ମଧ୍ୟରେ ପ୍ରବେଶ କରିଥିଲେ । ହରିଷେଣାଙ୍କ ବର୍ଣ୍ଣିତ ମହାକାନ୍ତାର ରାଜ୍ୟ ହେଉଛି ପଶ୍ଚିମରେ ମଧ୍ୟପ୍ରଦେଶ ଏବଂ ପୂର୍ବରେ ଗଞ୍ଜାମ ଜିଲ୍ଲାର ମଧ୍ୟବର୍ତ୍ତୀ ସ୍ଥାନମାନଙ୍କରେ ଓଡ଼ିଶାର ଯେଉଁ ପାହାଡ଼ିଆ ଅଞ୍ଚଳ ତାହାହିଁ । ଏହି ଅଞ୍ଚଳରେ 'ବ୍ୟାଘ୍ରରାଜ' ମାନେ ଅଷ୍ଟମ ଶତାବ୍ଦୀ ପର୍ଯ୍ୟନ୍ତ ରାଜତ୍ୱ କରୁଥିଲେ ବୋଲି ଐତିହାସିକ ଆୟେଙ୍ଗାରଙ୍କ ମତ ।[1] ସମୁଦ୍ରଗୁପ୍ତ ଓଡ଼ିଶାର ଏହି ପାର୍ବତ୍ୟ ଅଞ୍ଚଳମାନଙ୍କରେ ବ୍ୟାଘ୍ରରାଜ ଉପାଧିଧାରୀ ଜଣେ ରାଜାଙ୍କ ସହି ଯୁଦ୍ଧ କରିଥିଲେ ଏବଂ ତାହାଙ୍କୁ ମଧ୍ୟ ପରାଜିତ କରିଥିଲେ । ଏହାପରେ ସମୁଦ୍ରଗୁପ୍ତ ଓଡ଼ିଶାର ଏହି ପାର୍ବତ୍ୟ ଅଞ୍ଚଳମାନଙ୍କର ଦକ୍ଷିଣ ଦିଗରେ ଅବସ୍ଥିତ କୌରାଳ ରାଜ୍ୟ ଆକ୍ରମଣ କରିଥିଲେ । ଡକ୍ଟର ବାର୍ନେଟ୍ କୌରାଳର ଅବସ୍ଥିତି ଦକ୍ଷିଣରେ କୋଲିଡ଼ା ନାମଧେୟ ସ୍ଥାନରେ ବୋଲି ନିର୍ଣ୍ଣୟ କରିଛନ୍ତି । ଏହି ସ୍ଥାନ ଗଞ୍ଜାମ ଜିଲ୍ଲାର ରସୁଲ୍‌କୋଣ୍ଡା ନିକଟରେ ଅବସ୍ଥିତ ବୋଲି ଡକ୍ଟର ରାୟଚୌଧୁରୀଙ୍କ ମତ ।[2] ମନ୍ତ୍ରରାଜ ନାମଧେୟ ରାଜା ଏହି ସମୟରେ କୌରାଳ ଉପରେ ରାଜତ୍ୱ କରୁଥିଲେ ଏବଂ ସମୁଦ୍ରଗୁପ୍ତଙ୍କ ସହି ଯୁଦ୍ଧକରି ପରାଜିତ ହୋଇଥିଲେ । ଏହାପରେ ସମୁଦ୍ରଗୁପ୍ତ କୋଟ୍ଟୁର ନାମକ ରାଜ୍ୟର ସ୍ୱାମୀଦତ୍ତ ନାମ୍ନୀ ରାଜାଙ୍କୁ ପରାଜିତ କରିଥିଲେ । ଏହି କୋଟ୍ଟୁର ହେଉଛି ଆଧୁନିକ ଗଞ୍ଜାମ ଜିଲ୍ଲାର କୋଠୂର ନାମକ ସ୍ଥାନ । ଏହା ମହେନ୍ଦ୍ରଗିରିର ଦକ୍ଷିଣ-ପୂର୍ବ କୋଣରେ ମାତ୍ର ୧୨ ମାଇଲ ଦୂରରେ ଅବସ୍ଥିତ । କୋଟ୍ଟୁର ପରେ ଗୁପ୍ତସମ୍ରାଟ ଏରଣ୍ଡପଲ୍ଲୀ ଆକ୍ରମଣ କରିଥିଲେ । ଏରଣ୍ଡପଲ୍ଲୀ ଗଞ୍ଜାମ ଜିଲ୍ଲାର ଚିକାକୋଲ ନିକଟରେ ଅବସ୍ଥିତ ଏବଂ ଏହି ସ୍ଥାନର ନାମ ଆଜିସୁଦ୍ଧା ଏରଣ୍ଡପଲ୍ଲୀ ରହିଛି । କେହି କେହି କହନ୍ତି ଏରଣ୍ଡପଲ୍ଲୀ ହେଉଛି ଆଧୁନିକ ଭିଜାଗାପଟମ୍ ଜିଲ୍ଲାର ଏଣ୍ଡିପଲ୍ଲୀ ନାମକ ସ୍ଥାନ । ଏରଣ୍ଡପଲ୍ଲୀ ପରେ ଦେବରାଷ୍ଟ୍ର ନାମଧେୟ ରାଜ୍ୟ ବିରୁଦ୍ଧରେ ସମୁଦ୍ରଗୁପ୍ତ ଯୁଦ୍ଧ କରିଥିଲେ । ଏହି ରାଜ୍ୟ ଭିଜାଗାପଟମ୍ ଜିଲ୍ଲାର ଏକ ଅଂଶ । ଏହାର ରାଜା କୁବେର ମଧ୍ୟ ସମୁଦ୍ରଗୁପ୍ତଙ୍କ ନିକଟରେ ପରାଜିତ ହୋଇଥିଲେ । ଗଞ୍ଜାମ ଏବଂ ଭିଜାଗାପଟମ୍ ଅଞ୍ଚଳରୁ ସମୁଦ୍ରଗୁପ୍ତ କଳିଙ୍ଗର ଶେଷ ଦକ୍ଷିଣ ସୀମା ଉଦ୍ଦେଶ୍ୟରେ ସୈନ୍ୟ ଚାଳନା କରିଥିଲେ । ତାହାଙ୍କର ପରବର୍ତ୍ତୀ ଯୁଦ୍ଧ ହୋଇଥିଲା ପିଷ୍ଟାପୁରର ରାଜାଙ୍କ ସହିତ । ଏହି ପିଷ୍ଟାପୁର ଆଧୁନିକ ଗୋଦାବରୀ ଜିଲ୍ଲାର ପିଠାପୁରମ୍ ବୋଲି

1. Advanced History of India-- Prof. P. T. S. Iyengar-- p. 257.
2. Political History of Ancient India-- H. C. Roy Chaudhury.

ଆଟବିକମାନେ କଷ୍ଟସ୍ୱ କରୁଛନ୍ତି । ଏହି ଗୋଦାବରୀ ଅଞ୍ଚଳରେ ଆଟବିକ ରାଜ୍ୟ ମଧ୍ୟ ଅବସ୍ଥିତ ଥିଲା ବୋଲି ଅନୁମାନ କରାଯାଏ । କଳିଙ୍ଗର ଉପରଲିଖିତ ରାଜ୍ୟମାନଙ୍କ ବିରୁଦ୍ଧରେ ଯୁଦ୍ଧ ଶେଷ କରି ଏବଂ ସେ ରାଜ୍ୟର ରାଜାମାନଙ୍କୁ ପରାଜିତ କରି ସମୁଦ୍ରଗୁପ୍ତ କାଞ୍ଚି, ବେଙ୍ଗୀ, ପାଲକ, କୁସ୍ଥଲପୁର ପ୍ରଭୃତି ଦାକ୍ଷିଣାତ୍ୟର ଅପର ରାଜ୍ୟମାନଙ୍କୁ ମଧ୍ୟ ଆକ୍ରମଣ କରିଥିଲେ । ଦକ୍ଷିଣ ଭାରତର ପୂର୍ବ ଉପକୂଳରେ ଅବସ୍ଥିତ ପ୍ରାୟ ସମସ୍ତ ସ୍ୱାଧୀନ ନରପତି ଏହିପରି ସମୁଦ୍ରଗୁପ୍ତଙ୍କ ନିକଟରେ ପରାଜୟ ସ୍ୱୀକାର କରିଥିଲେ । ଏପରି ଦିଗ୍‌ବିଜୟ ଦ୍ୱାରା ସମୁଦ୍ରଗୁପ୍ତ ଗୁପ୍ତ ସାମ୍ରାଜ୍ୟର ଯଥେଷ୍ଟ ଗୌରବ ବର୍ଦ୍ଧନ କରିଥିଲେ ଏବଂ ନିଜକୁ ତତ୍କାଳୀନ ଭାରତର ଅଦ୍ୱିତୀୟ ବୀରରୂପେ ପରିଚିତ କରାଇଥିଲେ । କିନ୍ତୁ ସମୁଦ୍ରଗୁପ୍ତଙ୍କର ଉତ୍ତର ଅଭିଯାନ ଏବଂ ଦକ୍ଷିଣ ଅଭିଯାନ ମଧ୍ୟରେ ଏକ ବିରାଟ ପାର୍ଥକ୍ୟ ଲକ୍ଷିତ ହୁଏ । ଉତ୍ତର ଭାରତରେ ଅଧିକାର କରିଥିବା ରାଜ୍ୟମାନଙ୍କୁ ସମୁଦ୍ରଗୁପ୍ତ ଗୁପ୍ତ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରାଇନେଇଥିଲେ କିନ୍ତୁ ଦକ୍ଷିଣ ଭାରତର ଉପରଲିଖିତ ରାଜାମାନଙ୍କୁ ପରାଜିତ କରି ସମୁଦ୍ରଗୁପ୍ତ ପୁନର୍ବାର ସେମାନଙ୍କୁ ସେମାନଙ୍କର ରାଜ୍ୟମାନ ଫେରାଇ ଦେଇଥିଲେ । ଉତ୍ତରରେ ସେ ପ୍ରକୃତ ଦିଗ୍‌ବିଜୟୀରୂପେ ନିଜର ବିଜୟ ସାଧନ କରିଥିଲେ କିନ୍ତୁ ଦକ୍ଷିଣ ଭାରତରେ ପୌରାଣିକ ନୀତି ଅନୁଯାୟୀ ସେ ତାହାଙ୍କର ଧର୍ମବିଜୟ ସମାପନ କରିଥିଲେ । ପ୍ରାଚୀନ ହିନ୍ଦୁ ପୌରାଣିକ ନୀତି ଅନୁଯାୟୀ ଧର୍ମବିଜୟର ଅର୍ଥ ବିଭିନ୍ନ ଦେଶର ରାଜାମାନଙ୍କୁ ପରାଜୟ କରି ସେମାନଙ୍କ ପାଖରୁ ଆନୁଗତ୍ୟ ଗ୍ରହଣ କରିବା, କିନ୍ତୁ ସେମାନଙ୍କର ରାଜ୍ୟ ସେମାନଙ୍କୁ ପ୍ରତ୍ୟର୍ପଣ କରିଦେବା । ସମୁଦ୍ରଗୁପ୍ତ ତାହାହିଁ କରିଥିଲେ । ଉତ୍ତର ଭାରତର ରାଷ୍ଟ୍ରୀୟ ଐକ୍ୟ ପାଇଁ ସେ ଉତ୍ତରର ସମସ୍ତ ରାଜାଙ୍କୁ ପରାଜୟ କରି ସେମାନଙ୍କର ଉଚ୍ଛେଦ ସାଧନ କରିଥିଲେ ଏବଂ ସେମାନଙ୍କର ରାଜ୍ୟମାନଙ୍କୁ ନିଜ ସାମ୍ରାଜ୍ୟର ପ୍ରଦେଶରୂପେ ପରିଣତ କରିଥିଲେ । କିନ୍ତୁ ଦକ୍ଷିଣ ଭାରତରେ ସେ ଥିଲେ ଧର୍ମବିଜୟୀ ଏବଂ ତେଣୁ ପରାଜିତ ରାଜାମାନଙ୍କୁ ରାଜ୍ୟ ଫେରାଇଦେଇ କେବଳ ସେମାନଙ୍କର ବଶ୍ୟତା ଗ୍ରହଣ ଦ୍ୱାରା ସନ୍ତୁଷ୍ଟ ହୋଇଥିଲେ । ଏହି କାର୍ଯ୍ୟ ଦ୍ୱାରା ସମୁଦ୍ରଗୁପ୍ତ ନିଜକୁ ଏକ ବିଚକ୍ଷଣ ରାଜନୀତିଜ୍ଞରୂପେ ପରିଚୟ ଦେଇଥିଲେ । ଶାସନର ସୁଶୃଙ୍ଖଳା ଦୃଷ୍ଟିରୁ ସମଗ୍ର ଭାରତବର୍ଷକୁ ଏକ ଶାସନାଧୀନ କରିବା ଅନ୍ୟାୟ ବୋଲି ସେ ଅନୁମାନ କରିପାରିଥିଲେ । ଅଥଚ ସମଗ୍ର ଭାରତ ଉପରେ ଏକ ସାମ୍ରାଜ୍ୟବାଦ ପ୍ରତିଷ୍ଠିତ ରହୁ ତାହାମଧ୍ୟ ସେ ଚାହୁଁଥିଲେ । ମଗଧ ଖଣ୍ଡରୁ

ସମଗ୍ର ଭାରତ ଉପରେ ସେ ଗୁପ୍ତସାମ୍ରାଜ୍ୟବାଦର ବିଜୟ ଧ୍ୱଜା ଉଡ଼ାଇଥିଲେ ଏବଂ ସାରା ଭାରତର ରାଜନୈତିକ ଐକ୍ୟ ଘୋଷଣା କରିଥିଲେ । କିନ୍ତୁ ସୁଶାସନ ଦୃଷ୍ଟିରୁ କେବଳ ଉତ୍ତରଭାରତଖଣ୍ଡ ଗୁପ୍ତ ଶାସନ ଶୃଙ୍ଖଳା ତଳେ ବାନ୍ଧି ରଖି ସେ ଭାରତର ଅପର ଅଂଶମାନଙ୍କୁ ସ୍ୱାୟତ୍ତଶାସନ ଦେଇଥିଲେ । ବିଚକ୍ଷଣ ବୁଦ୍ଧିମତ୍ତାର ପରିଚୟ ଦେଇ ସମୁଦ୍ରଗୁପ୍ତ ନିଶ୍ଚିତଭାବେ ଜାଣିପାରିଥିଲେ ଯେ ରାଜଧାନୀ ପାଟଳିପୁତ୍ର ନିକଟରୁ ସୁଦୂର ଦକ୍ଷିଣ ଭାରତର ଶେଷସୀମା ପର୍ଯ୍ୟନ୍ତ ପ୍ରତ୍ୟକ୍ଷଭାବେ ଶାସନଦଣ୍ଡ ପରିଚାଳନା କରିବା କଷ୍ଟସାଧ୍ୟ । ତେଣୁ ଏକ ଅଭିନବ ଉଦାର ନୀତିଦ୍ୱାରା ବିଜୟ ଶେଷରେ ସେ ବିଜିତମାନଙ୍କୁ ସେମାନଙ୍କର ରାଜ୍ୟ ପ୍ରତ୍ୟର୍ପଣ କରିଥିଲେ ଏବଂ ଗୁପ୍ତ ସିଂହାସନ ପ୍ରତି ସେମାନଙ୍କୁ ଅନୁରକ୍ତ ରଖି ପାରିଥିଲେ । ସମୁଦ୍ରଗୁପ୍ତଙ୍କ ଦିଗ୍‌ବିଜୟ ଶେଷରେ ତାହାଙ୍କ ସାମ୍ରାଜ୍ୟ ହିମାଳୟଠାରୁ ନର୍ମଦା ଏବଂ ବ୍ରହ୍ମପୁତ୍ରଠାରୁ ଚମ୍ବଲ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିବାର ଦେଖାଯାଇଥିଲା । ତାହାଙ୍କ ପ୍ରତାପ ପ୍ରତି ଭୟ ପରବଶ ହୋଇ ଗୁପ୍ତ ସାମ୍ରାଜ୍ୟ ବାହାରର ରାଜାମାନେ ମଧ୍ୟ ସମୁଦ୍ରଗୁପ୍ତଙ୍କ ପ୍ରତି କୃତଜ୍ଞତାସୂଚକ ଉପହାରମାନ ପଠାଇଥିଲେ ଏବଂ ଗୁପ୍ତ ସାମ୍ରାଜ୍ୟର ସାର୍ବଭୌମତ୍ୱ ପ୍ରତି ସମ୍ମାନ ଦେଖାଇଥିଲେ । ଏହି ରାଜାମାନଙ୍କ ମଧ୍ୟରୁ ପୂର୍ବରେ କାମରୂପ ବା ଆସାମର ରାଜା, ସମତାତ ବା ଦକ୍ଷିଣ ପୂର୍ବ ବଙ୍ଗର ରାଜା ଏବଂ ଉତ୍ତରରେ ନେପାଳ ରାଜ୍ୟର ରାଜା ପ୍ରଧାନ ଥିଲେ । ଭାରତର ବିଭିନ୍ନ ସ୍ଥାନର ଆରଣ୍ୟକ ଜାତିମାନେ ମଧ୍ୟ ସମୁଦ୍ରଗୁପ୍ତଙ୍କୁ କର ପ୍ରଦାନଦ୍ୱାରା ତାହାଙ୍କ ନିକଟରେ ବଶ୍ୟତା ସ୍ୱୀକାର କରିଥିଲେ । ଏପରିକି ସୁଦୂର ଉତ୍ତର-ପଶ୍ଚିମର ଶକ ଓ କୁଷାନ ନରପତିମାନେ ସୁଦ୍ଧା ସମୁଦ୍ରଗୁପ୍ତଙ୍କ ରାଜଦଣ୍ଡ ପ୍ରତି ସମ୍ମାନ ଜ୍ଞାପନ କରିଥିଲେ । ପରିଶେଷରେ ସିଂହଳ ଦ୍ୱୀପର ସମସାମୟିକ ରାଜା ଶ୍ରୀ ମେଘବର୍ଣ୍ଣ ଗୁପ୍ତ ଦରବାରକୁ ବହୁବିଧ ଦ୍ରବ୍ୟ ଉପହାର ପ୍ରଦାନ କରି ସମୁଦ୍ରଗୁପ୍ତଙ୍କ ପ୍ରତି ତାହାଙ୍କ ସଦ୍‌ଭାବ ଘୋଷଣା କରିଥିଲେ । ଏହିପରି ଭାରତ ଉପରେ ନିଜର ସାର୍ବଭୌମ ଅଧିକାର ବିସ୍ତାର କରି ବହୁରାଜ୍ୟ ଜୟର ସ୍ମୃତିରୂପେ ବ୍ରାହ୍ମଣ୍ୟଧର୍ମର ରୀତି ଅନୁଯାୟୀ ଶେଷରେ ସମୁଦ୍ରଗୁପ୍ତ ଅଶ୍ୱମେଧଯଜ୍ଞର ଅନୁଷ୍ଠାନ କରିଥିଲେ । ବିଦେଶୀଶାସନ ଓ ବିଶୃଙ୍ଖଳାର ଲୋପ ସାଧନ ପରେ ଭାରତବ୍ୟାପୀ ଏହି ଗୁପ୍ତ ଜାତୀୟ-ସାମ୍ରାଜ୍ୟର ସୃଷ୍ଟିଦ୍ୱାରା ଦେଶର ଦୈର୍ଘ୍ୟ ପ୍ରସ୍ଥରେ ଏକ ଅପରୂପ ଜାଗରଣ ଦେଖାଦେଇଥିଲା । ଏହି ଜାତୀୟ ଜାଗରଣ ହେଉଛି ଗୁପ୍ତ ସଭ୍ୟତାର ଜନନୀ ।

ସାର୍ବଭୌମ ଏବଂ ସାର୍ବଜନୀନ ଗୁପ୍ତ ସଭ୍ୟତାର ପ୍ରଭାବ ଉତ୍କଳୀୟ ସଭ୍ୟତାର ଇତିହାସରେ ଅପର ଏକ ଅଧ୍ୟାୟ ସୃଷ୍ଟି କରିଥିଲା । ଭାରତର ଯେ କୌଣସି ଅଂଶରେ ଯେତେବେଳେ ଏକ ବିଶେଷତ୍ୱପୂର୍ଣ୍ଣ ଘଟଣା ଘଟିଛି ସେ ଘଟଣାର ପ୍ରଭାବ ଭାରତର ସମସ୍ତ ଅଂଶ ଉପରେ ଊଣା ଅଧିକ ପଡ଼ିଛି । ବିଶେଷତଃ, ଧର୍ମ ଓ ସଭ୍ୟତା ଏ ଦୁହେଁ ଭାରତର ଯେ କୌଣସି ସ୍ଥାନରେ ଜନ୍ମ ନିଅନ୍ତୁ ନା କାହିଁକି ସେମାନେ ସମଗ୍ର ଭାରତର ସମ୍ପତ୍ତିରୂପେ ଜନସାଧାରଣଙ୍କ ଦ୍ୱାରା ଗୃହୀତ ହୋଇଛନ୍ତି । ବୌଦ୍ଧ, ଜୈନ, ଶୈବ, ଶାକ୍ତ, ବୈଷ୍ଣବ, ପ୍ରଭୃତି ଯେତେସବୁ ମତବାଦ ସେମାନେ ପ୍ରଥମେ ଭାରତର ଗୋଟିଏ ନା ଗୋଟିଏ ଅଂଶରେ ଜନ୍ମ ଗ୍ରହଣ କରିଥିଲେ, କିନ୍ତୁ ଜନ୍ମ ସଙ୍ଗେ ସଙ୍ଗେ ସେମାନେ ଭାରତର ଆପାଦମସ୍ତକ ପ୍ରସାର ଲାଭ କରିଯାଇଥିଲେ । ସଂସ୍କୃତି, କଳା, ସ୍ଥାପତ୍ୟ, ଭାସ୍କର୍ଯ୍ୟ, ସାହିତ୍ୟ, ଦର୍ଶନ ଏବଂ ବିଜ୍ଞାନ ଇତ୍ୟାଦି ସମ୍ପର୍କରେ ମଧ୍ୟ ସେହି କଥା । ଭାରତର ପରିସର ମଧ୍ୟରେ ଏ ସମସ୍ତ ପଦାର୍ଥ ଚିରଦିନ ସାରା ଭାରତ ଉପରେହିଁ ପ୍ରଭାବ ବିସ୍ତାର କରିଛନ୍ତି, କୌଣସି ଗୋଟିଏ ବିଶେଷ ଅଞ୍ଚଳ ଉପରେ ନୁହେଁ । ଗୁପ୍ତଯୁଗର ଜାତୀୟ ଜାଗରଣ ଫଳରେ ଯେଉଁ ସର୍ବାଙ୍ଗୀନ ସଭ୍ୟତାର ବିକାଶ ହେଲା ତାହା କେବଳ ଗୁପ୍ତ ରାଜଧାନୀ ମଗଧ ମଧ୍ୟରେ କେନ୍ଦ୍ରୀଭୂତ ନ ଥିଲା । ସେ ସଭ୍ୟତା ଭାରତର ଦୈର୍ଘ୍ୟ ପ୍ରସ୍ଥ ଉପରେ ନିଜର ବପୁ ବିସ୍ତାର କରିଥିଲା । କାରଣ ସଭ୍ୟତା ଚିରଦିନ ପ୍ରସାରମୁଖୀ । ଦୂର ଦୂରାନ୍ତରକୁ ସଭ୍ୟତା ତା'ର ଆଲୋକ ବିକୀରଣ କରିବା ପାଇଁ ଅତି ଅଳ୍ପ ସମୟ ମଧ୍ୟରେ ସମର୍ଥ ; ଗୁପ୍ତଯୁଗର ସଭ୍ୟତା ହେଉଛି ପ୍ରାଚୀନ ଭାରତର ସର୍ବଶ୍ରେଷ୍ଠ ସଭ୍ୟତା । ଗୁପ୍ତଯୁଗ ଭାରତ ଇତିହାସର ସୁବର୍ଣ୍ଣଯୁଗ । ଏହି ସୁବର୍ଣ୍ଣଯୁଗରେ ପ୍ରାଚୀନ ଭାରତର ସର୍ବଶ୍ରେଷ୍ଠ ସଭ୍ୟତା କଳିଙ୍ଗ ଉପରେ ଭାରତର ଅନ୍ୟାନ୍ୟ ଅଞ୍ଚଳମାନଙ୍କ ପରି ତାହାର ପ୍ରଭାବ ବିସ୍ତାର କରିଥିଲା ଏଥିରେ ସନ୍ଦେହ ନାହିଁ । ଆମ୍ଭେମାନେ ଜାଣୁ ଯେ କଳିଙ୍ଗର ସମସ୍ତ ଦକ୍ଷିଣ ପଶ୍ଚିମାଞ୍ଚଳ ସମୁଦ୍ରଗୁପ୍ତଙ୍କ ରାଜଦଣ୍ଡ ତଳେ ବଶ୍ୟତା ସ୍ୱୀକାର କରିଥିଲା । ସେହି ଅଞ୍ଚଳର ଯେତେ ସମସ୍ତ ରାଜା ସମସ୍ତେ ପରାଜୟ ସ୍ୱୀକାର କରିଥିଲେ । ଅବଶ୍ୟ ସମୁଦ୍ରଗୁପ୍ତ କଳିଙ୍ଗକୁ ତାହାଙ୍କ ସାମ୍ରାଜ୍ୟ ସହ ପ୍ରତ୍ୟକ୍ଷଭାବେ ମିଶାଇ ନେଇ ନ ଥିଲେ । କିନ୍ତୁ କଳିଙ୍ଗର ପରାଜିତ ରାଜାମାନେ ଯେ ଗୁପ୍ତସିଂହାସନର ସାର୍ବଭୌମତ୍ୱ ସ୍ୱୀକାର କରିଥିଲେ ଏଥିରେ ସନ୍ଦେହ ନାହିଁ । ସମୁଦ୍ରଗୁପ୍ତଙ୍କ ରାଜତ୍ୱ କାଳରେ ଏବଂ ତାହାଙ୍କର ସୁପ୍ରସିଦ୍ଧ ପୁତ୍ର ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟଙ୍କ ସମୟରେ କଳିଙ୍ଗର ରାଜାମାନେ

ଗୁପ୍ତସାମ୍ରାଜ୍ୟ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିବାକୁ ସାହସ କରି ନ ଥିବେ ଏବଂ ନିଜ ନିଜ ରାଜ୍ୟରେ ସ୍ୱାଧୀନଭାବେ ରାଜତ୍ୱ କରିବା ପାଇଁ ସୁଦ୍ଧା ଗୁପ୍ତସମ୍ରାଟ-ମାନଙ୍କୁ ନିଜର ଉପରିସ୍ଥ ସମ୍ରାଟ ବୋଲି ସଦାସର୍ବଦା ବିବେଚନା କରିଥିବେ । ଯେତେବେଳେ ଦକ୍ଷିଣରେ ସିଂହଳ, ପୂର୍ବରେ ଆସାମ, ପଶ୍ଚିମରେ ଆରବ ଉପସାଗର ଏବଂ ଉତ୍ତରରେ ହିନ୍ଦୁକୁଶ, ହିମାଳୟ, ନେପାଳ ପର୍ଯ୍ୟନ୍ତ ଗୁପ୍ତସମ୍ରାଟମାନଙ୍କର ରାଜନୈତିକ ପ୍ରଭାବ ପ୍ରତିଷ୍ଠିତ ହୋଇ ପାରିଥିଲା ସେତେବେଳେ ମଗଧସୀମା ପାଖରୁ ଅଳ୍ପ ଦୂରରେ ଅବସ୍ଥିତ କଳିଙ୍ଗ ରାଜାମାନେ ସେହି ରାଜନୈତିକ ପ୍ରଭବ ଦ୍ୱାରା ଅଧିକ ମାତ୍ରାରେ ପ୍ରଭାବିତ ହୋଇଥିବେ । କଳିଙ୍ଗ ଉପରେ ଗୁପ୍ତ ରାଜନୈତିକ ପ୍ରଭାବର ଗୋଟିଏ ଜ୍ୱଳନ୍ତ ଉଦାହରଣ ହେଉଛି କଳିଙ୍ଗରେ ଗୁପ୍ତାବ୍ଦର ପ୍ରଚଳନ । କଳିଙ୍ଗର କେତେକ ଶିଳାଲିପି ଦେହରେ ଗୁପ୍ତାବ୍ଦର ଉଲ୍ଲେଖ ଦେଖିବାକୁ ମିଳେ । ଶଶାଙ୍କଙ୍କ ସମୟର ଗଞ୍ଜାମ-ତାମ୍ରଶାସନମାନଙ୍କରେ ଗୁପ୍ତାବ୍ଦର ହିସାବରେ ସମୟ ଉଲ୍ଲିଖିତ ହୋଇଛି । ଶିବରାଜଙ୍କର ପାତିଆକେରି ଅନୁଶାସନ ଏବଂ ଦ୍ୱିତୀୟ ଭୀମସେନଙ୍କର ଆରଙ୍ଗ ଅନୁଶାସନରେ ଗୁପ୍ତାବ୍ଦ ବ୍ୟବହାର କରାଯାଇଛି । ଓଡ଼ିଶାରେ ଗୁପ୍ତାବ୍ଦର ପ୍ରଚଳନ ଦେଖି ଐତିହାସିକ ରାଖାଲ ଦାସ ବାନାର୍ଜି ମତ ପ୍ରକାଶ କରିଛନ୍ତି "ଓଡ଼ିଶା ପରିଷ୍କାର ଭାବରେ ଗୁପ୍ତ ରାଜନୈତିକ ଓ ସାଂସ୍କୃତିକ ପ୍ରଭାବର ପରିସର ମଧ୍ୟରେ ରହିଥିଲା ।"[1]

ଗୁପ୍ତଯୁଗର ଧର୍ମ ଓ ସଭ୍ୟତା ଭାରତ ଇତିହାସରେ ସୁବିଦିତ । ଭାରତୀୟ ଧର୍ମ କ୍ଷେତ୍ରରେ ଏହି ଯୁଗ ବ୍ରାହ୍ମଣ୍ୟଧର୍ମର ଅଭୂତପୂର୍ବ ଉନ୍ନତି ଦେଖିଥିଲା । ହିମାଦ୍ରି ପାଖରୁ କୁମାରିକା ପର୍ଯ୍ୟନ୍ତ ଭାରତର ଚତୁର୍ଦ୍ଦିଗରେ ହିନ୍ଦୁଧର୍ମ ବା ବ୍ରାହ୍ମଣ୍ୟଧର୍ମର ଏକ ନବ ଜୀବନ ଦେଖାଯାଇଥିଲା । ଗୁପ୍ତଯୁଗର ପୂର୍ବରୁ ଭାରତର ଖ୍ୟାତନାମା ସମ୍ରାଟ-ମାନେ ସମସ୍ତେ ଥିଲେ ଏକେ ବୌଦ୍ଧଧର୍ମାବଲମ୍ବୀ କିମ୍ବା ଜୈନଧର୍ମାବଲମ୍ବୀ । ମୌର୍ଯ୍ୟଯୁଗ ଏବଂ କୁଶାନଯୁଗରେ ବୌଦ୍ଧଧର୍ମ ରାଜକୀୟ ଧର୍ମରେ ପରିଣତ ହୋଇଥିଲା । ଅବଶ୍ୟ ବୌଦ୍ଧ କିମ୍ବା ଜୈନଧର୍ମର ଗୌରବମୟ ଦିନମାନଙ୍କରେ ବ୍ରାହ୍ମଣ୍ୟଧର୍ମ ଯେ ଭାରତଖଣ୍ଡରୁ ଲୋପପାଇ ଯାଇଥିଲା ତାହା ନୁହେଁ । ଯେତେବେଳେ ବ୍ରାହ୍ମଣ୍ୟଧର୍ମ ବା ଆର୍ଯ୍ୟଧର୍ମ ହେଉଛି ବୌଦ୍ଧ ଓ ଜୈନ ମତବାଦର ଜନନୀ । କିନ୍ତୁ ଚନ୍ଦ୍ରଗୁପ୍ତ, ଅଶୋକ, ଖାରବେଳ କିମ୍ବା କନିଷ୍କ ପ୍ରଭୃତି ଖ୍ୟାତନାମା

1. History of Orissa—R. D. Banerjee----p. 117

ସମ୍ରାଟମାନଙ୍କର ପୃଷ୍ଠପୋଷକତା ପାଇ ବୌଦ୍ଧ ଏବଂ ଜୈନଧର୍ମ ପ୍ରସାର ଲାଭ କରିଥିଲାବେଳେ ବ୍ରାହ୍ମଣ୍ୟଧର୍ମର ପ୍ରଭାବ ଅନେକ ପରିମାଣରେ ମ୍ଳାନ ହୋଇ ଆସିଥିଲା । ଅର୍ଥାତ୍ ବ୍ରାହ୍ମଣ୍ୟଧର୍ମର ରୀତି ନୀତି ରାଜଦରବାରରେ ପ୍ରକୃତ ସମ୍ମାନ ପାଇ ନ ଥିଲା ଏବଂ ତେଣୁ ରାଜ୍ୟରେ ମଧ୍ୟ ଉପଯୁକ୍ତଭାବେ ପ୍ରସାରଲାଭ କରିପାରି ନ ଥିଲା । ବୌଦ୍ଧଧର୍ମ ଓ ଜୈନଧର୍ମର ସରଳ ସହଜ ନୀତି, ଅହିଂସା ଓ ହିନ୍ଦୁ ଦେବ ଦେବୀଙ୍କର ଅସ୍ତିତ୍ୱ ଉପରେ ସନ୍ଦେହ ପ୍ରକାଶ ଇତ୍ୟାଦି ଜନସାଧାରଣଙ୍କ ଦ୍ୱାରା ଗୃହୀତ ହୋଇଥିଲା । କିନ୍ତୁ କାଳକ୍ରମେ ବୌଦ୍ଧ ଓ ଜୈନ ମତବାଦଦ୍ୱୟ ଜଟିଳ ପନ୍ଥା ଧାରଣ କରିଥିଲେ ଏବଂ ଶତ ଶତ ବର୍ଷର ପ୍ରତିଷ୍ଠା ପରେ କ୍ରମେ ଅଧୋଗତି ମୁଖରେ ଅଗ୍ରସର ହେବାକୁ ଆରମ୍ଭ କରିଦେଇଥିଲେ । ଖ୍ରୀଷ୍ଟୟୁଗର ଆରମ୍ଭ ପାଖରୁ ବୌଦ୍ଧ ଓ ଜୈନଧର୍ମର କ୍ରମ ବିଲୟ ଆରମ୍ଭ ହୋଇଯାଇଥିଲା । ସେମାନଙ୍କର ଏହି କ୍ରମ ବିଲୟ ପଥରେ ଆସିଲା ଗୁପ୍ତ ରାଜତ୍ୱ । ପ୍ରଥମଥର ପାଇଁ ଭାରତ ଇତିହାସରେ ବ୍ରାହ୍ମଣ୍ୟଧର୍ମର ପୃଷ୍ଠପୋଷକମାନେ ନିଖିଳ ଭାରତୀୟ ସାମ୍ରାଜ୍ୟ ଉପରେ ରାଜତ୍ୱ ଆରମ୍ଭ କଲେ । ପ୍ରଥମ ଚନ୍ଦ୍ରଗୁପ୍ତ, ସମୁଦ୍ରଗୁପ୍ତ, ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ ଏବଂ ଅପର ବିଖ୍ୟାତ ଗୁପ୍ତସମ୍ରାଟମାନେ ସମସ୍ତେ ଥିଲେ ବ୍ରାହ୍ମଣ୍ୟଧର୍ମର ପୃଷ୍ଠପୋଷକ ଏବଂ ଭାଗବତ ମତାବଲମ୍ବୀ । ଅବଶ୍ୟ ଭାଗବତ ମତାବଲମ୍ବୀ ବୈଷ୍ଣବ ହେଲେସୁଦ୍ଧା ଗୁପ୍ତ ସମ୍ରାଟମାନେ ସେମାନଙ୍କର ଅଲୌକିକ ଉଦାରତା ଏବଂ ଉନ୍ନତ ସଂସ୍କୃତି ଯୋଗୁଁ ଭାରତର ଅନ୍ୟ କୌଣସି ମତବାଦ ବା ଧର୍ମ ଉପରେ ବିଦ୍ୱେଷ ପୋଷଣ କରି ନ ଥିଲେ । ସମ୍ରାଟ ସମୁଦ୍ରଗୁପ୍ତ ତାହାଙ୍କ ସମସାମୟିକ ବୌଦ୍ଧ ଲେଖକ ବସୁବନ୍ଧୁଙ୍କର ପୃଷ୍ଠପୋଷକତା କରୁଥିଲେ ଏବଂ ଏପରିକି ସିଂହଳର ବୌଦ୍ଧରାଜ ମେଘବର୍ଣ୍ଣଙ୍କ ଗୟାକ୍ଷେତ୍ରରେ ଏକ ବିରାଟ ବୌଦ୍ଧ ବିହାର ନିର୍ମାଣ କରିବା ପାଇଁ ଅନୁମତି ପ୍ରଦାନ କରିଥିଲେ ଯେଉଁ ବୌଦ୍ଧ ବିହାର କି ତଦାନୀନ୍ତନ ଭାରତର ଏକ ବିଖ୍ୟାତ ବୌଦ୍ଧ କେନ୍ଦ୍ରରେ ପରିଣତ ହୋଇଥିଲା । ସେହିପରି ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ ଚୀନ ଦେଶୀୟ ବୌଦ୍ଧ ପରିବ୍ରାଜକଙ୍କୁ ଭାରତରେ ବୌଦ୍ଧ ତୀର୍ଥସମୂହ ଦର୍ଶନ ଏବଂ ବୌଦ୍ଧଧର୍ମର ମୂଳ ଗ୍ରନ୍ଥାବଳୀ ସଂଗ୍ରହ ନିମନ୍ତେ ଯଥେଷ୍ଟ ସାହାଯ୍ୟ କରିଥିଲେ । ବହୁପ୍ରମାଣ ରହିଛି ଯାହାଦ୍ୱାରା ପରିଷ୍କାରଭାବେ ଜଣାଯାଏ ଯେ ଗୁପ୍ତ ସମ୍ରାଟମାନେ ଧର୍ମ ବିଦ୍ୱେଷୀ ନ ଥିଲେ । ମୋଟଉପରେ ସେମାନଙ୍କଦ୍ୱାରା ଅତ୍ୟାଚାରିତ ହୋଇ ବୌଦ୍ଧ ଏବଂ ଜୈନ ଧର୍ମଦ୍ୱୟ ଧ୍ୱଂସ ହୋଇନାହାନ୍ତି । କିନ୍ତୁ ଗୁପ୍ତ ସମ୍ରାଟମାନଙ୍କ ଅତ୍ୟାଚାରରେ ନ ହେଲେ ମଧ୍ୟ

ଗୁପ୍ତଯୁଗର ପ୍ରଭାବରେ ସେମାନଙ୍କର ଅନ୍ତିମ ସମୟ ଆସିଯାଇଥିଲା । ଗୁପ୍ତଯୁଗ ପୂର୍ବରୁ ବୌଦ୍ଧ ଓ ଜୈନଧର୍ମ ଧ୍ୱଂସ ପଥର ଯାତ୍ରୀ ହୋଇସାରିଥିଲେ ; ସେହି ଯାତ୍ରାରେ ଗୁପ୍ତଯୁଗ ସେମାନଙ୍କୁ ଦ୍ରୁତ ସାହାଯ୍ୟ କରିଥିଲା । ଭାରତର ଏହି ଆର୍ଯ୍ୟ ଜାଗରଣ ବେଳେ ଦେଶର ଯାହା ଆର୍ଯ୍ୟଧର୍ମ ତାହାହିଁ ଉତ୍ଥାନମୁଖୀ ହୋଇଥିଲା । ବୌଦ୍ଧ ଏବଂ ଜୈନ ମତବାଦ ଯେତେବେଳେ ଭାରତୀୟ ଆର୍ଯ୍ୟଧର୍ମର ଏକ ଅଙ୍ଗ । ଯେତେପର୍ଯ୍ୟନ୍ତ ଆର୍ଯ୍ୟଧର୍ମର ସର୍ବତୋମୁଖୀ ଉନ୍ନତି ପାଇଁ ଏକ ସମ୍ୟକ୍ ଜାତୀୟ ପ୍ରଚେଷ୍ଟା ହୋଇ ନ ଥିଲା ସେତେପର୍ଯ୍ୟନ୍ତ ସେହି ଧର୍ମର ଅଙ୍ଗରୂପେ ବୌଦ୍ଧ ଓ ଜୈନ ମତବାଦ ସେମାନଙ୍କର ପୁଷ୍ଟିସାଧନ କରିଯାଇଥିଲେ । କିନ୍ତୁ ଦିନ ଆସିଥିଲା ଯେତେବେଳେ ପୁନର୍ବାର ଭାରତର ସେହି ବୈଦିକ ଏବଂ ପୌରାଣିକ ଯୁଗର ଧର୍ମପ୍ରତି ଭାରତବାସୀଙ୍କ ମନ ଆକୃଷ୍ଟ ହୋଇ ପଡ଼ିଥିଲା । ଜାତୀୟ ଜୀବନର ଏହି ଆକାଂକ୍ଷା ଦେଶର ଦେଶୀୟ ରାଜଶକ୍ତି ଦ୍ୱାରା ସମର୍ଥିତ ହୋଇଥିଲା । ଫଳରେ ବିଶାଳ ଆର୍ଯ୍ୟଧର୍ମ ସତେଜ ହୋଇ ଉଠିଥିଲା ଏବଂ ସେ ଧର୍ମର ତେଜ ଆଗରେ ପତନମୁଖୀ ବୌଦ୍ଧ ଏବଂ ଜୈନଧର୍ମ ନିଷ୍ପ୍ରଭ ହୋଇ ପଡ଼ିଥିଲେ । ଗୁପ୍ତ ଭାରତର ଗୃହଆଡ଼େ, ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ ଚତୁର୍ଦ୍ଦିଗରେ, ସଂଖ୍ୟାତୀତ ହିନ୍ଦୁ ମନ୍ଦିର, ବେଦୀ ଓ ପୂଜାପୀଠମାନ ନିର୍ମିତ ହୋଇଥିଲା । ଭାରତର କୌଣସି କାଳରେ ଏପରି ଏକ ଦେଶବ୍ୟାପୀ ମନ୍ଦିର ନିର୍ମାଣ ଦେଖିବାକୁ ମିଳି ନାହିଁ । ଅବଶ୍ୟ ଏପରି ଅସଂଖ୍ୟ ମନ୍ଦିର ନିର୍ମାଣ ପାଇଁ ଗୁପ୍ତ ରାଜସ୍ୱରୁ ଅର୍ଥବ୍ୟୟ ହୋଇ ନ ଥିଲା କିମ୍ବା ଗୁପ୍ତ ସମ୍ରାଟମାନଙ୍କଦ୍ୱାରା ଯେପରି ଏକ ନିର୍ମାଣ କାର୍ଯ୍ୟ ପରିଚାଳିତ ହୋଇ ନ ଥିଲା । କିନ୍ତୁ ଏପରି ଏକ ଘଟଣା ପାଇଁ ଦାୟୀ ଥିଲା ସେହି ଉନ୍ନତ ଯୁଗର ଜାତୀୟ ଜାଗରଣ ଯେଉଁ ଜାଗରଣ ଜାତୀୟ ଧର୍ମକୁ କେନ୍ଦ୍ର କରି ନିଜର ଉତ୍ସାହ ପ୍ରଦର୍ଶନ କରିଥିଲା । ଦେଶବ୍ୟାପୀ ମନ୍ଦିର ନିର୍ମାଣ ସଙ୍ଗେ ସଙ୍ଗେ ଆଶ୍ଚର୍ଯ୍ୟପ୍ରଦ ଭାବରେ ଦେଶର ଗୃହଆଡ଼େ ଅସଂଖ୍ୟ ଦେବଦେବୀଙ୍କର ମୂର୍ତ୍ତି ଗଠନ କରାଯାଇଥିଲା ଏବଂ ମୂର୍ତ୍ତି ପୂଜାର ବହୁଳ ପ୍ରସାର ହୋଇଥିଲା । ବିଶେଷଜ୍ଞମାନଙ୍କ ମତରେ ଆର୍ଯ୍ୟଧର୍ମର ଏହି ନବ ଉନ୍ମାଦନା ସମୟରେ ପ୍ରାଚୀନ ବ୍ରାହ୍ମଣ୍ୟଧର୍ମ ଆଧୁନିକ ହିନ୍ଦୁଧର୍ମକୁ ରୂପାନ୍ତରିତ ହେବା ପାଇଁ ଆରମ୍ଭ କରିଥିଲା । ବୈଦିକ ଯୁଗର ଦେବଦେବୀମାନଙ୍କ ବ୍ୟତୀତ ଏ ଯୁଗରେ ଅନ୍ୟାନ୍ୟ ଅନେକ ନୂତନ ଦେବଦେବୀଙ୍କର ଉପାସନା ପ୍ରଚଳନ ହେଲା ଏବଂ ସେହି ଦେବଦେବୀମାନଙ୍କର ମୂର୍ତ୍ତି ଗଠନ କରାଗଲା । ଆଧୁନିକ ହିନ୍ଦୁଧର୍ମରେ ଯେଉଁ ଦୁର୍ଗା, ସରସ୍ୱତୀ, ଲକ୍ଷ୍ମୀ, ଗଣେଶ, କାର୍ତ୍ତିକେୟ ଏବଂ

ଅନ୍ୟାନ୍ୟ ଅସଂଖ୍ୟ ଦେବଦେବୀଙ୍କୁ ଦେଖିବାକୁ ମିଳୁଛି ସେମାନଙ୍କ ମଧ୍ୟରୁ ଅନେକଙ୍କର ଜନ୍ମ ଏହି ଗୁପ୍ତ ଯୁଗରେ । ବୈଦିକ ଯୁଗର ପ୍ରାଚୀନ ଦେବତା-ମାନଙ୍କର ଉପାସନା ବର୍ତ୍ତମାନ ଶିଥିଳ ହୋଇଆସିଥିଲା ଏବଂ ଏପରିକି ବେଦର ସୁପ୍ରସିଦ୍ଧ ଦେବତା ଇନ୍ଦ୍ର ମଧ୍ୟ ବହୁ ପଛକୁ ଚାଲିଯାଇଥିଲେ । ଅଥଚ କ୍ରମେ କ୍ରମେ ହିନ୍ଦୁ ତ୍ରିମୂର୍ତ୍ତିଙ୍କ ସ୍ଥାନ ଧର୍ମ ଜଗତରେ ଅଧିକ ଉଚ୍ଚକୁ ଆସିଥିଲା । ଗୁପ୍ତଯୁଗ ଆରମ୍ଭ ଆଗରୁ ବ୍ରହ୍ମା, ବିଷ୍ଣୁ ଏବଂ ମହେଶ୍ୱର ଭଗବାନଙ୍କର ତିନି ପ୍ରଧାନ କାର୍ଯ୍ୟ ଅର୍ଥାତ୍ ସୃଷ୍ଟି, ସ୍ଥିତି ଏବଂ ଧ୍ୱଂସକୁ ପ୍ରତିନିଧିତ୍ୱ କରି ହିନ୍ଦୁ ବିଶ୍ୱାସର ପ୍ରଧାନ ଦେବତାରେ ପରିଣତ ହୋଇ ସାରିଥିଲେ । କ୍ରମେ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର ସ୍ଥାନ ମଧ୍ୟ ତଳକୁ ଖସି ଆସିଥିଲା ଏବଂ କେବଳ ବିଷ୍ଣୁ ଓ ଶିବ ହିନ୍ଦୁ ଜଗତର ଦୁଇ ଶ୍ରେଷ୍ଠ ଦେବତା ରୂପେ ପୂଜା ପାଇଥିଲେ । ବିଷ୍ଣୁ ଥିଲେ ପାଳନକର୍ତ୍ତା ଏବଂ ଶିବ ଧ୍ୱଂସକର୍ତ୍ତା । ଏହି ଦୁଇ ଦେବତାଙ୍କୁ କେନ୍ଦ୍ର କରି କ୍ରମେ ବୈଷ୍ଣବ ଏବଂ ଶୈବ ସମ୍ପ୍ରଦାୟମାନ ସୃଷ୍ଟି ହୋଇ ଯାଇଥିଲେ । ଗୁପ୍ତଯୁଗରେ ଏହି ପରିବର୍ତ୍ତିତ ବ୍ରାହ୍ମଣ୍ୟଧର୍ମର ପୂର୍ଣ୍ଣ ବିକାଶ ଆରମ୍ଭ ହୋଇଥିଲା । ଏହି ଯୁଗର ଅପର ଏକ ବିଶେଷତ୍ୱ ହେଉଛି ବହୁବିଧ ଧର୍ମଗ୍ରନ୍ଥମାନଙ୍କର ରଚନା ଏବଂ ପ୍ରଚଳନ । ଏହି ସମସ୍ତ ଗ୍ରନ୍ଥରେ ସୃଷ୍ଟିତତ୍ତ୍ୱ, ଦେବଦେବୀମାନଙ୍କର ଉଦ୍ଭବ ସମ୍ବନ୍ଧୀୟ ବିବରଣ, ସେମାନଙ୍କର ଲୀଳା ଓ ମହାତ୍ମ୍ୟ, ପ୍ରାଚୀନ ଯୁଗର ରାଜା ଓ ମୁନି ଋଷିମାନଙ୍କର କାର୍ଯ୍ୟକଳାପ ଇତ୍ୟାଦିର ବିସ୍ତୃତ ବର୍ଣ୍ଣନା ଦିଆଯାଇଥିଲା । ଏତଦ୍ ବ୍ୟତୀତ ଏହି ଧର୍ମଗ୍ରନ୍ଥମାନଙ୍କରେ ଜନସାଧାରଣଙ୍କ ପ୍ରତି ବିବିଧ ପ୍ରକାର ଧର୍ମୋପଦେଶ ପ୍ରଦତ୍ତ ହୋଇଥିଲା ଏବଂ ହିନ୍ଦୁଧର୍ମର ବହୁପ୍ରକାର ପୂଜାପଦ୍ଧତିର ରୀତି ନୀତି ମଧ୍ୟ ବିଶେଷଭାବରେ ବର୍ଣ୍ଣିତ ହୋଇଥିଲା । ଏହି ପୁରାଣ ଏବଂ ତନ୍ତ୍ରମାନଙ୍କୁ କେନ୍ଦ୍ର କରି ଗୁପ୍ତ ଯୁଗରେ ବ୍ରାହ୍ମଣ୍ୟଧର୍ମ ଅଭିନବ ଭାବରେ ନିଜର ଶ୍ରୀବୃଦ୍ଧି କରିଥିଲା । ମୋଟଉପରେ ବୈଦିକ ଯୁଗର ବ୍ରାହ୍ମଣ୍ୟଧର୍ମ ଏବଂ ପରବର୍ତ୍ତୀ ଯୁଗର ବ୍ରାହ୍ମଣ୍ୟଧର୍ମ ମଧ୍ୟରେ ବହୁ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଏହି ବିରାଟ ପରିବର୍ତ୍ତନ ଫଳରେ ରୂପାନ୍ତରିତ ବ୍ରାହ୍ମଣ୍ୟଧର୍ମ 'ପୌରାଣିକ ହିନ୍ଦୁଧର୍ମ' ନାମରେ ପରିଚିତ ହୋଇଥିଲା । ଏହି ପୌରାଣିକ ହିନ୍ଦୁଧର୍ମହିଁ ଆଧୁନିକ ହିନ୍ଦୁଧର୍ମର ମେରୁଦଣ୍ଡ । ଏବଂ ଗୁପ୍ତଯୁଗରେହିଁ ଏହି ଧର୍ମ ନିଜର ମହାଶକ୍ତି ସଂଗ୍ରହ କରିଥିଲା । ପୌରାଣିକ ହିନ୍ଦୁ-ଧର୍ମର ଅପର ଏକ ବିଶେଷତ୍ୱ ହେଉଛି ଅବତାରବାଦ । ଦୁଷ୍ଟର ଦମନ ଏବଂ ଶିଷ୍ଟର ପାଳନ ପାଇଁ ପୃଥିବୀରେ ବିଷ୍ଣୁ ମାନବରୂପେ ଅବତୀର୍ଣ୍ଣ ହୁଅନ୍ତି, ଏହି

ବିଶ୍ୱାସ ଦୃଢ଼ଭାବରେ ଜନମନ ଆକର୍ଷଣ କରିଥିଲା ଏବଂ ତାହା ଫଳରେ ବିଷ୍ଣୁ ପୂଜା ସଙ୍ଗେ ସଙ୍ଗେ ବିଷ୍ଣୁଙ୍କର ଅବତାରମାନଙ୍କର ପୂଜାମଧ୍ୟ ଲୋକପ୍ରିୟ ହୋଇ ପଡ଼ିଥିଲା । ଏହି ଯୁଗରେ ଶକ୍ତି ପୂଜାର ମଧ୍ୟ ବହୁଳ ପ୍ରସାର ହୋଇଥିଲା ଏବଂ ତାନ୍ତ୍ରିକ ଦେବୀମାନଙ୍କ ମଧ୍ୟରେ ଆଦ୍ୟାଶକ୍ତି ରୂପେ ଦୁର୍ଗା ସର୍ବ ପ୍ରଧାନ ସ୍ଥାନ ଅଧିକାର କରିଥିଲେ । କ୍ରମେ ତନ୍ତ୍ରଶାସ୍ତ୍ରୀୟ ପୂଜାପଦ୍ଧତିର ମଧ୍ୟ ପ୍ରଚଳନ ହୋଇଥିଲା । ଆଶ୍ଚର୍ଯ୍ୟର ବିଷୟ ଯେଉଁ ଯୁଗରେ ଏପରି ବହୁସଂଖ୍ୟକ ଦେବ-ଦେବୀଙ୍କର ଆରାଧନାରେ ଦେଶ ମୁଖରିତ ହୋଇ ଉଠିଥିଲା ସେହି ଯୁଗରେ ଏକ ଈଶ୍ୱରଙ୍କ ଉପରେ ବିଶ୍ୱାସ ଏବଂ କେବଳ ସେହି ଈଶ୍ୱରଙ୍କ ପୂଜାହିଁ ମୋକ୍ଷଲାଭର ଶ୍ରେଷ୍ଠ ଉପାୟ, ଏହା ମଧ୍ୟ ଜନସମାଜ ଦ୍ୱାରା ଗୃହୀତ ହୋଇଥିଲା । ହିନ୍ଦୁ ସମାଜର ଅନେକେ ଏହି ମତ ଉପରେ ଦୃଢ଼ ବିଶ୍ୱାସ ସ୍ଥାପନ କରି ପାରିଥିଲେ ଏବଂ ତଦନୁରୂପ ଏକ ଈଶ୍ୱରଙ୍କର ଆରାଧନା ବାଗରେ ଅନୁପ୍ରାଣିତ ହୋଇଥିଲେ । ଅଥଚ ସମାଜ ମଧ୍ୟରେ ପୌରାଣିକ ଧର୍ମର ଦ୍ରୁତ ପ୍ରସାର ଚାଲିଥିଲା ଏବଂ ପ୍ରସାର ସଙ୍ଗେ ସଙ୍ଗେ ମୂର୍ତ୍ତି ପୂଜାର ବହୁଳ ପ୍ରଚଳନ ହୋଇଥିଲା ଏବଂ ଫଳରେ ଦେଶର ସର୍ବତ୍ର ଅଗଣିତ ସଂଖ୍ୟାରେ ମନ୍ଦିର ନିର୍ମାଣ ଏବଂ ମୂର୍ତ୍ତି ଗଠନର ଉନ୍ମାଦନା ଖେଳି ଯାଇଥିଲା । ଏସବୁ ବ୍ୟତୀତ ଏହି ଯୁଗରେ ରାମାୟଣ ଏବଂ ମହାଭାରତ ନୂତନ ରୂପରେ ସଙ୍କଳିତ ହୋଇଥିଲା । ଅନେକଙ୍କ ମତରେ ପ୍ରାଚୀନ ରାମାୟଣ ଓ ମହାଭାରତ ଅଙ୍ଗରେ ଏହି ସମୟରେ ପରବର୍ତ୍ତୀ ଯୁଗର ବହୁକଥା ଯୋଗ କରାଯାଇଥିଲା ଏବଂ ସେହି ଦୁଇ ମହାଗ୍ରନ୍ଥର ଆକାର ପରିବର୍ଦ୍ଧିତ କରାହୋଇଥିଲା । ଆଜିକାଲି ଯେଉଁ ରାମାୟଣ ମହାଭାରତ ଏ ଦେଶରେ ପ୍ରଚଳିତ ତାହା ପ୍ରକୃତ ପକ୍ଷରେ ଏହି ଗୁପ୍ତଯୁଗର ସୃଷ୍ଟି । ଅବଶ୍ୟ ଏ ଦୁଇ ଗ୍ରନ୍ଥର ପ୍ରାଚୀନ ରୂପକୁ ମେରୁଦଣ୍ଡରୂପେ ବ୍ୟବହାର କରି ସେମାନଙ୍କର ନୂତନ ରୂପ ଦିଆଯାଇଛି ।

ଏହାହିଁ ହେଉଛି ଅତି ସଂକ୍ଷେପରେ ଗୁପ୍ତଯୁଗର ଧର୍ମ । ଆଶ୍ଚର୍ଯ୍ୟର ବିଷୟ ହେଉଛି ହିନ୍ଦୁଧର୍ମର ଏହି ଅଭିନବ ଅଭ୍ୟୁତ୍ଥାନ ବେଳେ ବୌଦ୍ଧଧର୍ମ ଉପରେ କୌଣସି ପ୍ରକାର ଆକ୍ରୋଶ ପୋଷଣ କରାଯାଇ ନାହିଁ । ବୌଦ୍ଧଧର୍ମ ମଧ୍ୟ ହିନ୍ଦୁଧର୍ମର ଅଗ୍ରଗତି ପଥରେ କୌଣସି ପ୍ରକାର ବାଧା ସୃଷ୍ଟି କରି ନାହିଁ । ବ୍ରାହ୍ମଣ ଏବଂ ବୌଦ୍ଧ-ମାନଙ୍କ ମଧ୍ୟରେ ଅତି ପବିତ୍ର ସମ୍ବନ୍ଧ ଥିବାର ଜଣାଯାଏ ଏବଂ ପ୍ରତ୍ୟେକ ପ୍ରତ୍ୟେକଙ୍କ ଧର୍ମପ୍ରତି ଯଥେଷ୍ଟ ସମ୍ମାନ ଦେଖାଇଥିବାର ପ୍ରମାଣ ମିଳେ । ଏତେବେଳକୁ

ବୁଦ୍ଧଦେବ ହିନ୍ଦୁଧର୍ମର ଦଶାବତାର ମଧ୍ୟରୁ ଏକ ଅବତାର ବୋଲି ଜନସାଧାରଣ ପୂର୍ଣ୍ଣଭାବରେ ବିଶ୍ୱାସ କରି ସାରିଥିଲେ ଏବଂ ବୌଦ୍ଧମାନେ ମଧ୍ୟ ଏଥିରେ ପ୍ରତିବାଦ କରିବା ପରିବର୍ତ୍ତେ ବୌଦ୍ଧ ସଂଘ ମଧ୍ୟରେ ବୁଦ୍ଧ ପୂଜା ପ୍ରଚଳନ କରାଇଥିଲେ । ବୌଦ୍ଧ ସମାଜ ମଧ୍ୟରେ କ୍ରମେ କ୍ରମେ ବହୁ ହିନ୍ଦୁ ପୂଜାପଦ୍ଧତି ମଧ୍ୟ ପ୍ରବେଶ କରିଥିଲା । ଗୁପ୍ତଯୁଗରେ ବୌଦ୍ଧଧର୍ମ ଯେ ବହୁଦୂର ପତନ ମୁଖରେ ଅଗ୍ରସର ହୋଇଯାଇଥିଲା ତାହା ଏହାଦ୍ୱାରା ପ୍ରମାଣିତ ହୁଏ । ବୌଦ୍ଧସଂଘର ଶିଥିଳତା ଏବଂ ବୌଦ୍ଧ ଗୌରବର ଅବସାନ ବିଷୟ ଅପର ଏକ ଘଟଣାରୁ ବିଶେଷଭାବେ ଜଣାଯାଏ । ଗୁପ୍ତଯୁଗର ଠିକ୍ ମଧ୍ୟଭାଗରେ ବିଖ୍ୟାତ ଚୀନଦେଶୀୟ ବୌଦ୍ଧ ପରିବ୍ରାଜକ ଫାହିୟାନ ବୌଦ୍ଧଗ୍ରନ୍ଥ ଏବଂ ବୁଦ୍ଧମୂର୍ତ୍ତି ସଂଗ୍ରହ କରିବା ଉଦ୍ଦେଶ୍ୟରେ ତଥା ବୌଦ୍ଧ ତୀର୍ଥସ୍ଥଳୀମାନଙ୍କର ଦର୍ଶନ ଲାଭ ଉଦ୍ଦେଶ୍ୟରେ ଭାରତ ଆଗମନ କରିଥିଲେ । ସେ ଥିଲେ ଜଣେ ନୈଷ୍ଠିକ ବୌଦ୍ଧ ଏବଂ ତେଣୁ ଭାରତବର୍ଷରେ ସେ ଯାହାକିଛି ଦର୍ଶନ କରିଥିଲେ ସେ ସମସ୍ତ ବୌଦ୍ଧ ଦୃଷ୍ଟିକୋଣରୁ ହିଁ ଦେଖିଥିଲେ । ତାହାଙ୍କ ବର୍ଣ୍ଣନା ମଧ୍ୟରେ କେବଳ ବୌଦ୍ଧଧର୍ମର ପ୍ରଶଂସା ଏବଂ ବୌଦ୍ଧ କେନ୍ଦ୍ର-ମାନଙ୍କର ବିବରଣୀ ଅଧିକ ମାତ୍ରାରେ ଦେଖିବାକୁ ମିଳେ । କୌଣସି ବିଷୟ ଅତିରଞ୍ଜିତ କରି ନ ଥିଲେ ସୁଦ୍ଧା ଫାହିୟାନ ଯେ ଜଣେ ବୌଦ୍ଧ ହିସାବରେ ସେ ଯୁଗର ବୌଦ୍ଧ ଭାରତ ଉପରେ ମତ ପ୍ରକାଶ କରୁଥିଲେ ଏଥିରେ ସନ୍ଦେହ ନାହିଁ । କିନ୍ତୁ ଫାହିୟାନ ନିଜ ଲେଖାଦ୍ୱାରା ନିଜେ ପ୍ରତାରିତ ହୋଇଛନ୍ତି ; କାରଣ ଯଦିଚ ତାହାଙ୍କ ଉଦ୍ଦେଶ୍ୟ ଥିଲା ସେ ବେଳର ବୌଦ୍ଧଧର୍ମର ଶ୍ରୀବୃଦ୍ଧି ବର୍ଣ୍ଣନା କରିବା ତଥାପି ତାହାଙ୍କ ବର୍ଣ୍ଣନା ମଧ୍ୟରୁ ଏକ ଅସ୍ତଗାମୀ ବୌଦ୍ଧଧର୍ମର ଛବି ବ୍ୟତୀତ ଅପର କିଛି ଦେଖିବାକୁ ମିଳେ ନାହିଁ । ଉଦାହରଣ ସ୍ୱରୂପ, ଫାହିୟାନଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ ସେତେବେଳକୁ ଗୌତମ ବୁଦ୍ଧଙ୍କ ଜୀବନୀ ସହିତ ସଂଯୁକ୍ତ ଥିବା ବୌଦ୍ଧଧର୍ମର ଗୁରୁତ୍ୱପୂର୍ଣ୍ଣ ମହାପୀଠ ଧ୍ୱଂସ ମୁଖରେ ପତିତ ହୋଇ ସାରିଥିଲା । କପିଳବାସ୍ତୁ, ଯେଉଁଠାରେ ବୁଦ୍ଧଦେବ ନିଜର ଶୈଶବକାଳ ଅତିବାହିତ କରିଥିଲେ ସେ ନଗରୀ ବର୍ତ୍ତମାନ 'ଅତି ଅଳ୍ପସଂଖ୍ୟକ ଅଧିବାସୀଙ୍କୁ ବକ୍ଷରେ ଧାରଣ କରି ପରିତ୍ୟକ୍ତ ଓ ଶ୍ରୀହୀନ ଅବସ୍ଥା ଧାରଣ କରିଥିଲା ।' ଗୟା, ଯେଉଁଠାରେ ଶାକ୍ୟମୁନି ବୁଦ୍ଧତ୍ୱ ପ୍ରାପ୍ତ ହୋଇଥିଲେ ସେ ନଗରୀ ବର୍ତ୍ତମାନ 'ନିଜର ପ୍ରାଚୀର ମଧ୍ୟରେ ଏକ ଧ୍ୱଂସସ୍ତୂପରେ ପରିଣତ ହୋଇ ସାରିଥିଲା ।' ଶ୍ରାବସ୍ତୀ, ଯେଉଁଠାରେ ବୁଦ୍ଧ ତାଙ୍କ ଜୀବନର ଦୀର୍ଘ ପଚିଶ ବର୍ଷକାଳ ଅତିବାହିତ କରିଥିଲେ ସେ ନଗରୀ

ମଧ୍ୟରେ 'ଅତି ଅଳ୍ପସଂଖ୍ୟକ ଲୋକ ଏଣେତେଣେ ହୋଇ, ବାସ କରୁଥିଲେ ଏବଂ ସେମାନଙ୍କର ମୋଟ ସଂଖ୍ୟା ମାତ୍ର ଦୁଇଶହ ପରିବାର ମଧ୍ୟରେ ସୀମାବଦ୍ଧ ଥିଲା ।' ଏବଂ କୁଶୀନଗର, ଯେଉଁଠାରେ ବୁଦ୍ଧ ନିର୍ବାଣ ଲାଭ କରିଥିଲେ, ସେଠାରେ ମଧ୍ୟ 'ଅତି ଅଳ୍ପସଂଖ୍ୟକ ଅଧିବାସୀ ଯେଉଁମାନେ କି ସଂଘ ସହିତ ସଂପୃକ୍ତ ଥିଲେ କେବଳ ସେହିମାନେହିଁ ବିକ୍ଷିପ୍ତଭାବରେ ବାସ କରୁଥିଲେ ।' ଏପରିକି ସିଂହଳ ଦ୍ୱୀପରେ ମଧ୍ୟ ଫାହିୟାନ ସେଠାକାର ରାଜାଙ୍କୁ ବ୍ରାହ୍ମଣଙ୍କ ଉପାସକରୂପେ ଦେଖିବାକୁ ପାଇଥିଲେ ଏବଂ ତାହାଙ୍କର ଚୀନ ପ୍ରତ୍ୟାବର୍ତ୍ତନ କାଳରେ ସୁଦୂର ଜାଭା ଦ୍ୱୀପରେ ମଧ୍ୟ ସେ ଦେଖିଥିଲେ ଯେ 'ବ୍ରାହ୍ମଣ୍ୟଧର୍ମ ଉନ୍ନତ ଅବସ୍ଥାରେ ଥିଲାବେଳେ ବୌଦ୍ଧ-ଧର୍ମର ଅବସ୍ଥା ଶୋଚନୀୟ ଥିଲା ।'[1] ଫାହିୟାନଙ୍କ ବର୍ଣ୍ଣନା ମଧ୍ୟରେ ଏହିପରି ଅନେକ ବିଷୟ ଦେଖିବାକୁ ମିଳେ ଯାହାଦ୍ୱାରା ବୌଦ୍ଧଧର୍ମର ବିଲୟ ସମ୍ବନ୍ଧରେ ପରିଷ୍କାର ଜଣାପଡ଼େ । ମୋଟ ଉପରେ, ରୂପାନ୍ତରିତ ଆର୍ଯ୍ୟଧର୍ମ ମଧ୍ୟରେ ବୌଦ୍ଧଧର୍ମ ସ୍ୱେଚ୍ଛାକୃତ ଭାବରେ ସ୍ୱ ଅସ୍ତିତ୍ୱ ବିସର୍ଜନ କରିଥିଲା ଏବଂ ସମସ୍ତ ମତବାଦ, ବୌଦ୍ଧ, ଜୈନ, ଶୈବ, ଶାକ୍ତ, ବୈଷ୍ଣବ ପ୍ରଭୃତିଙ୍କୁ ସମନ୍ୱିତ କରି ଅସୀମ ହିନ୍ଦୁଧର୍ମ ନିଜର ସୃଷ୍ଟି ସାଧନ କରିଥିଲା ।

ଧର୍ମ ବିପ୍ଳବ ସଙ୍ଗେ ସଙ୍ଗେ ଗୁପ୍ତ ଯୁଗରେ ଭାରତୀୟ ଦର୍ଶନ ଓ ସାହିତ୍ୟ ମଧ୍ୟ ବହୁଦୂର ଅଗ୍ରସର ହୋଇ ପାରିଥିଲା । ସାହିତ୍ୟ ସାଧାରଣତଃ ରାଜପୃଷ୍ଠ-ପୋଷକତାରେ ଉନ୍ନତି ଲାଭ କରିଥାଏ । ଗୁପ୍ତ ସମ୍ରାଟମାନେ ଥିଲେ ଅସାଧାରଣ ସାହିତ୍ୟ-ପ୍ରେମୀ । ସେମାନଙ୍କର ପୃଷ୍ଠପୋଷକତାରେ ସାହିତ୍ୟ, ବିଶେଷତଃ ସଂସ୍କୃତ ସାହିତ୍ୟ, ନିଜର ଚରମ ଉତ୍କର୍ଷତା ଲାଭ କରିଥିଲା । ଭାରତୀୟ ଦର୍ଶନ କ୍ଷେତ୍ରରେ ଏହି ସମୟରେ ହିନ୍ଦୁ ଓ ବୌଦ୍ଧ ଦର୍ଶନ ସେମାନଙ୍କର ପ୍ରଭୂତ ଉନ୍ନତି ସାଧିତ କରିଥିଲେ । ବୌଦ୍ଧଧର୍ମ ଏହି ସମୟରେ ମ୍ଳାନମୁଖୀ ହୋଇ ପଡ଼ିଥିଲେ ସୁଦ୍ଧା ବୌଦ୍ଧ ଦର୍ଶନ ଭାରତୀୟ ଦାର୍ଶନିକ ଚିନ୍ତାଧାରା ମଧ୍ୟରେ ତାହାର ଉପଯୁକ୍ତ ସ୍ଥାନ ପାଇ ପାରିଥିଲା । ଗୁପ୍ତଯୁଗର ଆରମ୍ଭରେ, ଅର୍ଥାତ୍ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ପ୍ରଥମ ଭାଗରେ, ବିଖ୍ୟାତ ବୌଦ୍ଧ ଦାର୍ଶନିକ 'ଅସଙ୍ଗ' ତାହାଙ୍କର 'ମହାଯାନ ସୂତ୍ରାଲଙ୍କାର' ଏବଂ 'ବୋଧିସତ୍ତ୍ୱ ଭୂମି' ନାମକ ଦୁଇ ବିରାଟ ଦର୍ଶନ ଗ୍ରନ୍ଥ ପ୍ରଣୟନ କରିଥିଲେ । ଅସଙ୍ଗଙ୍କ ଭ୍ରାତା ବସୁବନ୍ଧୁ ଥିଲେ ବୌଦ୍ଧ ଦର୍ଶନର

1. See Advanced History of India---S. Iyengar p p. 308, 309.

ଅପର ଏକ ଉଜ୍ଜ୍ୱଳତମ ରତ୍ନ । ଏ ଥିଲେ ସମ୍ରାଟ ସମୁଦ୍ରଗୁପ୍ତଙ୍କର ଜନୈକ ଅନ୍ତରଙ୍ଗ ବନ୍ଧୁ ଏବଂ ସେହି ପ୍ରତିଭାଶାଳୀ ଗୁପ୍ତ ସମ୍ରାଟଙ୍କ ପୃଷ୍ଠପୋଷକତାରେ ବସୁବନ୍ଧୁ 'ଗାଥା ସଂଗ୍ରହ', 'ଅଭିଧର୍ମକୋଷ' ଏବଂ 'ପରମାର୍ଥ ଶପ୍ତତୀ' ନାମଧେୟ ଦର୍ଶନ ଗ୍ରନ୍ଥମାନ ରଚନା କରିଥିଲେ । ଏହି ସମୟରେ ଅପର ଏକ ବୌଦ୍ଧ ଦର୍ଶନ ଶାସ୍ତ୍ର ରଚିତ ହୋଇଥିଲା ଏବଂ ସେ ଗ୍ରନ୍ଥର ନାମ ଥିଲା 'ଲଙ୍କାବତାର ସୂତ୍ର' । ଏହି ଯୁଗରେ ସୁଦୂର ଦକ୍ଷିଣରେ ମଧ୍ୟ ବୌଦ୍ଧ ଦାର୍ଶନିକମାନେ ଦର୍ଶନ ଶାସ୍ତ୍ର ରଚନା କରୁଥିଲେ । ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ଶେଷଭାଗରୁ ଚୋଳ ରାଜ୍ୟରେ ବୁଦ୍ଧଦତ୍ତ ନାମକ ବୌଦ୍ଧ ଦାର୍ଶନିକ ପାଲି ଭାଷାରେ ତାହାଙ୍କର 'ଅଭିଧର୍ମାବତାର' ଏବଂ 'ବିନୟ ବିନିଛ୍ଛୟ' ନାମ୍ନୀ ପୁସ୍ତକଦ୍ୱୟ ଲେଖିଥିଲେ । ଏହାଙ୍କର ଅବ୍ୟବହିତ ପରେ, ଗୟା ନଗରୀରେ ବିଖ୍ୟାତ ବୌଦ୍ଧ ପଣ୍ଡିତ ବୁଦ୍ଧଘୋଷ ପ୍ରାଚୀନ ବୌଦ୍ଧ ସାହିତ୍ୟର ବିଭିନ୍ନ ଅଙ୍ଗ ଉପରେ ସମାଲୋଚନାମୂଳକ ଗ୍ରନ୍ଥମାନ ରଚନା କରିଥିଲେ ଏବଂ ବୌଦ୍ଧ ଦର୍ଶନ ଉପରେ ମଧ୍ୟ ଅନେକ କଥା ଲେଖିଥିଲେ । ସେ ସବୁ ମଧ୍ୟରେ ସୁପ୍ରସିଦ୍ଧ 'ଅଠ କଥା' ହେଉଛି ସର୍ବଶ୍ରେଷ୍ଠ । ଏହି ଯୁଗରେ ବିଖ୍ୟାତ ତର୍କଶାସ୍ତ୍ର ପ୍ରଣେତା ଦିଙ୍ନାଗ ତାହାଙ୍କର 'ନ୍ୟାୟ ପ୍ରବେଶ' ଏବଂ ଅନ୍ୟ ପୁସ୍ତକମାନ ରଚନା କରିଥିଲେ । ବୌଦ୍ଧ ଦର୍ଶନର ବିରୁଦ୍ଧ ଅଭିଯୁକ୍ତମାନଙ୍କ ସପକ୍ଷରେ ସେ ତାହାଙ୍କର ତର୍କଶାସ୍ତ୍ରମାନ ପ୍ରଣୟନ କରିଥିଲେ । ଏହି ଯୁଗରେ ହିନ୍ଦୁ ଦାର୍ଶନିକ ଚିନ୍ତାଧାରା ଉଦ୍ଭବଧ ଶାସ୍ତ୍ର ଏବଂ ପୁରାଣମାନଙ୍କ ଅଙ୍ଗରେ ସ୍ୱରୂପ ପ୍ରକାଶ କରିଥିଲା । ଅତି ପ୍ରାଚୀନ ସୂତ୍ରମାନଙ୍କ ଉପରେ ଏହି ସମୟରେ ଭାଷ୍ୟ ଏବଂ ସମାଲୋଚନାମାନ ଲିଖିତ ହୋଇଥିଲା । ବିଖ୍ୟାତ ଯାଜ୍ଞବଲ୍କ୍ୟ ସ୍ମୃତିର ଚୂଡ଼ାନ୍ତ ସଂକଳନ ଏହି ସମୟରେ ହୋଇଥିଲା ଯଦିଚ ଏହି ସ୍ମୃତିର ସାରାଂଶ ରହିଥିଲା ପ୍ରାଚୀନ ସୂତ୍ରମାନଙ୍କ ଯୁଗରେ । ଯାଜ୍ଞବଲ୍କ୍ୟ ସ୍ମୃତି ହେଉଛି ଏକ ସୁଚିନ୍ତିତ ଏବଂ ସୁନିୟନ୍ତ୍ରିତ କାର୍ଯ୍ୟ ଏବଂ ଏହା ତିନି ସମାନ ଖଣ୍ଡରେ ବିଭକ୍ତ ଯଥା, ଆଚାର, ବ୍ୟବହାର ଏବଂ ପ୍ରାୟଶ୍ଚିତ୍ତ । ଏହି ହିନ୍ଦୁ ବିପ୍ଳବ ଯୁଗରେ ହିନ୍ଦୁ ଆଇନ୍‌କାନୁନ, ସାମାଜିକ ରୀତି ନୀତି ଉପରେ ବହୁ ଭାଷ୍ୟ ଲିଖିତ ହୋଇଥିଲା ଏବଂ ସେସମସ୍ତ ଆଜିଯାଏ ହିନ୍ଦୁ ସମାଜ ମଧ୍ୟରେ ବର୍ତ୍ତମାନ । କୌଟିଲ୍ୟଙ୍କ ଲିଖିତ ପୁସ୍ତକମାନଙ୍କ ଉପରେ ଏହି ଯୁଗରେ ସମାଲୋଚନାମାନ ଲିଖିତ ହୋଇଥିଲା । କାମନ୍ଦକଙ୍କ ନୀତିଶାସ୍ତ୍ର ହେଉଛି ତନ୍ମଧ୍ୟରୁ ଗୋଟିଏ । ଏହି ଯୁଗରେ ପୂର୍ବ ଏବଂ ଉତ୍ତର ମୀମାଂସା ଉପରେ ଭାଷ୍ୟମାନ ଲିଖିତ ହୋଇଥିଲା ଏବଂ ଯୋଗସୂତ୍ର ଉପରେ ସମାଲୋଚନା

ପ୍ରକାଶ ପାଇଥିଲା । ଗୁପ୍ତଯୁଗର ସାହିତ୍ୟ କେବଳ ଧର୍ମ ଏବଂ ଦର୍ଶନ ସମ୍ବନ୍ଧୀୟ ବିଷୟବସ୍ତୁ ଉପରେ କେନ୍ଦ୍ରୀଭୂତ ହୋଇ ନ ଥିଲା । ସେ ସବୁ ବ୍ୟତୀତ ନାଟକ, କାବ୍ୟ, କବିତା, ଉପନ୍ୟାସ ପ୍ରଭୃତିରେ ମଧ୍ୟ ଗୁପ୍ତ ସାହିତ୍ୟର ପରିଚୟ ମିଳିଥିଲା । ସମ୍ରାଟ ସମୁଦ୍ରଗୁପ୍ତ ନିଜେ ଜଣେ ବିଖ୍ୟାତ କବି ଥିଲେ ବୋଲି ତାହାଙ୍କର 'କବିରାଜ' ଉପାଧିରୁ ଜଣାଯାଏ । ତାହାଙ୍କର ସଭାସଦ୍ କବି ହରିସେନଙ୍କ ଖ୍ୟାତି ଇତିହାସରେ ସୁବିଦିତ । ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟଙ୍କର ଜନୈକ ମନ୍ତ୍ରୀ ବୀରସେନ ମଧ୍ୟ ସେ ଯୁଗର ଜଣେ ପ୍ରସିଦ୍ଧ କବି ଥିଲେ । ଜନଶ୍ରୁତି ଅନୁସାରେ ସମ୍ରାଟ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟଙ୍କ ରାଜସଭାରେ ଧନ୍ୱନ୍ତରି, କ୍ଷପଣକ, ଅମରସିଂହ, ଶଙ୍କୁ, ବେତାଳଭଟ୍ଟ, ଘଟକର୍ପର, କାଳିଦାସ, ବରାହମିହିର ଏବଂ ବରରୁଚି, ଏହି ନବରତ୍ନଙ୍କର ସମାବେଶ ହୋଇଥିଲା । ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର 'ଜ୍ୟୋତିର୍ବିଦ୍ୟାଭରଣ' ନାମକ ଗ୍ରନ୍ଥରେ ଉଦ୍ଧୃତ ହୋଇଥିବା ଏକ ପ୍ରାଚୀନ ଶ୍ଳୋକ ଦେହରେ ଏହି ନବରତ୍ନଙ୍କ କଥା ଉଲ୍ଲିଖିତ ଅଛି । ବିକ୍ରମାଦିତ୍ୟଙ୍କ ରାଜସଭାରେ ଏହି ନଅଜଣ ମହାମନୀଷୀ ଏକତ୍ରିତ ହୋଇଥିଲେ କି ନାହିଁ ସେ ବିଷୟରେ ନିର୍ଭୁଲ ମତ ପ୍ରକାଶ କରି ନ ହେଲେ ମଧ୍ୟ ନିଶ୍ଚିତଭାବେ ଏତିକି କୁହାଯାଇ ପାରେ, ଯେ ଏହି ନଅଜଣଙ୍କ ମଧ୍ୟରୁ ଅଧିକାଂଶ ମନୀଷୀ ଗୁପ୍ତଯୁଗର ବିଭିନ୍ନ ସମୟରେ ପ୍ରତିଷ୍ଠା ଲାଭ କରିଥିଲେ ଏବଂ ଗୁପ୍ତଯୁଗର ସଭ୍ୟତାକୁ ସ୍ୱ ସ୍ୱ ପ୍ରତିଭା ଦ୍ୱାରା ଆଲୋକିତ କରିଥିଲେ । ଏମାନଙ୍କ ମଧ୍ୟରୁ ଅନ୍ତତଃ କେତେଜଣ ନିଶ୍ଚୟ ଚନ୍ଦ୍ରଗୁପ୍ତ-ବିକ୍ରମାଦିତ୍ୟଙ୍କ ରାଜଦରବାର ମଣ୍ଡନ କରିଥିଲେ । ସେ ଯାହାହେଉ, ନବରତ୍ନଙ୍କ ମଧ୍ୟରୁ ଶ୍ରେଷ୍ଠରତ୍ନ କାଳିଦାସ ଗୁପ୍ତ ସଭ୍ୟତାର ଉଜ୍ଜ୍ୱଳତମ ତାରକାରୂପେ ବିରାଜମାନ କରିଥିଲେ ଏହା ପ୍ରାୟ ସର୍ବବାଦୀ ସମ୍ମତ । କାଳିଦାସଙ୍କର ସମକକ୍ଷ ସଂସ୍କୃତ ସାହିତ୍ୟରେ କୌଣସି କାଳରେ ଜନ୍ମ ଗ୍ରହଣ କରି ନାହାନ୍ତି । କି ନାଟକ, କି କାବ୍ୟ, କି ଗୀତିକାବ୍ୟ, ସବୁଥିରେ କାଳିଦାସ ତାହାଙ୍କର ଶ୍ରେଷ୍ଠତ୍ୱର ପରିଚୟ ଦେଇଯାଇଛନ୍ତି । କାଳିଦାସଙ୍କର ସାହିତ୍ୟ କେବଳ ଭାରତବର୍ଷର ସାହିତ୍ୟରେ ନୁହେଁ ସମଗ୍ର ବିଶ୍ୱ ସାହିତ୍ୟରେ ଏକ ଅମର ସମ୍ପଦ ବୋଲି ପୃଥିବୀର ପଣ୍ଡିତମାନେ ଘୋଷଣା କରିଛନ୍ତି । କାଳିଦାସଙ୍କର ନାଟକମାନଙ୍କ ମଧ୍ୟରୁ 'ବିକ୍ରମୋର୍ବଶୀ', 'ମାଳବିକାଗ୍ନିମିତ୍ର', ଓ 'ଶକୁନ୍ତଳା' ଏହି ତିନୋଟି ଅତି ପ୍ରସିଦ୍ଧ ଏବଂ ଏହା ମଧ୍ୟରୁ ଶକୁନ୍ତଳା ହେଉଛି ବିଶ୍ୱବିଖ୍ୟାତ । 'ରଘୁବଂଶ' ଓ 'କୁମାର ସମ୍ଭବ' ଏ ଦୁଇଖଣ୍ଡ କାଳିଦାସଙ୍କର ପ୍ରସିଦ୍ଧ କାବ୍ୟ । ଏହା ବ୍ୟତୀତ କାଳିଦାସ ଅନେକ

ଗୀତିକାବ୍ୟ ଏବଂ ଗ୍ରନ୍ଥମାନଙ୍କର ରଚନା କରିଥିଲେ ଯାହା ମଧ୍ୟରୁ 'ମେଘଦୂତ' ଏବଂ ଋତୁସଂହାର' ଅତି ପ୍ରସିଦ୍ଧ । କାଳିଦାସଙ୍କ ଶକୁନ୍ତଳା ବିଶ୍ବର ପଣ୍ଡିତମଣ୍ଡଳୀଙ୍କୁ ଚମତ୍କୃତ କରିଛି । ଇଉରୋପୀୟ କବିକୁଳଗୁରୁ ଗେଟେ ଶକୁନ୍ତଳା ପ୍ରତି ଯେଉଁ ସମ୍ମାନ ଦେଖାଇଛନ୍ତି ଏବଂ ଯେଉଁ ଓଜସ୍ବିନୀ ଭାଷାରେ ତାହାର ପ୍ରଶଂସା କରି ଯାଇଛନ୍ତି ତାହା ବାସ୍ତବିକ୍ ଭାରତୀୟ ସାହିତ୍ୟ ପକ୍ଷରେ ଏକ ଗୌରବ । ବିଖ୍ୟାତ ଇଂରେଜ ପଣ୍ଡିତ ଉଇଲିୟମ ଜୋନ୍ସ୍ କାଳିଦାସଙ୍କୁ ଇଉରୋପର ସର୍ବଶ୍ରେଷ୍ଠ ନାଟ୍ୟକାର ସେକ୍ସପିୟରଙ୍କ ସଙ୍ଗେ ତୁଳନା କରିଛନ୍ତି । କାଳିଦାସଙ୍କ କାବ୍ୟ ଓ ନାଟକ ପୃଥିବୀର ବହୁ ଦିଗରୁ ବହୁ ପ୍ରଶଂସା ପାଇ ଆସୁଛି । ଏଲିଜାବେଥୀୟ ଯୁଗରେ ଇଂଲଣ୍ଡର ଜାତୀୟ ଜାଗରଣବେଳେ ଯେପରି ସେକସ୍‌ପିୟାର ସେ ଜାଗରଣର ଥିଲେ ପ୍ରତୀକ, ଗୁପ୍ତଯୁଗର ଜାଗରଣରେ କାଳିଦାସ ମଧ୍ୟ ଠିକ୍ ସେହିପରି ସେ ସଭ୍ୟତାର ଥିଲେ ଅମର ପ୍ରତିନିଧି । କାଳିଦାସଙ୍କ ବ୍ୟତୀତ ଗୁପ୍ତଯୁଗର ଅପର ଏକ ବିଖ୍ୟାତ ନାଟ୍ୟକାର ହେଉଛନ୍ତି ଶୂଦ୍ରକ । ଶୂଦ୍ରକଙ୍କ ଲିଖିତ 'ମୃଚ୍ଛକଟିକ' ଭାରତୀୟ ନାଟ୍ୟ ଜଗତରେ ଅତି ଅମୂଲ୍ୟ । ଏହି ଯୁଗର ଅପର ଏକ ସୁପ୍ରସିଦ୍ଧ ନାଟକ ହେଉଛି 'ମୁଦ୍ରା ରାକ୍ଷସ' ଏବଂ ଏହି ନାଟକର ପ୍ରଣେତା ଥିଲେ ବିଶାଖ ଦତ୍ତ । ଏହି ସମସ୍ତ ନାଟକ ଏବଂ କାବ୍ୟ ଗୁପ୍ତଯୁଗୀୟ ସାହିତ୍ୟର ମାତ୍ର କେତୋଟି ଶ୍ରେଷ୍ଠ ନିଦର୍ଶନ । ଏ ସମସ୍ତ ବ୍ୟତୀତ ଏହି ଯୁଗରେ ଅପର କେତେ ପ୍ରକାରର କାବ୍ୟ, କବିତା, ନାଟକ ଗଳ୍ପ ଇତ୍ୟାଦି ରଚିତ ହୋଇଥିଲା ତାହାର କଳନା ନାହିଁ । ଦୁଃଖର ବିଷୟ ସଂସ୍କୃତ ସାହିତ୍ୟର ସେହି ସୁବର୍ଣ୍ଣ ଯୁଗରେ ଯେତେ ସବୁ ଗ୍ରନ୍ଥ ଲିଖିତ ଏବଂ ରଚିତ ହୋଇଥିଲା ତାହାର ସହସ୍ରାଂଶରୁ ଏକ ଅଂଶ ମଧ୍ୟ କାଳଗର୍ଭରୁ ରକ୍ଷା ପାଇ ରହି ନାହିଁ ।

ସାହିତ୍ୟ ଏବଂ ଦର୍ଶନର ଉନ୍ନତି ସଙ୍ଗେ ସଙ୍ଗେ ଗୁପ୍ତଯୁଗର ଭାରତରେ ବିଜ୍ଞାନର ଚରମ ଉତ୍କର୍ଷତା ସାଧିତ ହୋଇଥିଲା । ପ୍ରସିଦ୍ଧ ବୈଜ୍ଞାନିକ ଓ ଜ୍ୟୋତିର୍ବିଦ୍ ଗର୍ଗ, ଆର୍ଯ୍ୟଭଟ୍ଟ ଓ ବରାହମିହିର ପ୍ରମୁଖ ମନୀଷୀବୃନ୍ଦ ଏହି ଗୁପ୍ତଯୁଗର ସନ୍ତାନ । ତନ୍ତ୍ରାଦି ଶାସ୍ତ୍ର ପୁରାଣମାନଙ୍କରୁ ଭାରତରେ ଆୟୁର୍ବେଦ, ଜୀବ ବିଦ୍ୟା, ପଦାର୍ଥ ବିଦ୍ୟା, ଗଣିତ ଶାସ୍ତ୍ର, ଜ୍ୟୋତିଷ ଶାସ୍ତ୍ର, ରସାୟନ, ପ୍ରଭୃତି ବୈଜ୍ଞାନିକ ବିଷୟମାନଙ୍କ ଉପରେ ହିନ୍ଦୁ ବୈଜ୍ଞାନିକମାନଙ୍କର ଗବେଷଣା ସମ୍ବନ୍ଧରେ ବହୁ-ବିବରଣୀ ଜଣାଯାଏ । ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀର ଶେଷଭାଗରେ ମହାମତି ଆର୍ଯ୍ୟଭଟ୍ଟ

ଗଣିତ ଏବଂ ଜ୍ୟୋତିଷ ବିଦ୍ୟା ଉପରେ ବହୁଗ୍ରନ୍ଥ ପ୍ରଣୟନ କରିଥିଲେ । ଦୁର୍ଭାଗ୍ୟର ବିଷୟ ସେହି ସବୁ ମହାମୂଲ୍ୟ ବୈଜ୍ଞାନିକ ଗ୍ରନ୍ଥମାନଙ୍କ ମଧ୍ୟରୁ ପ୍ରାୟ ସମସ୍ତ ବିନଷ୍ଟ ହୋଇଯାଇଛି । ଧ୍ୱଂସ ମୁଖରୁ ଯେତିକି କିଛି ବଞ୍ଚିଛି ସେଥିରୁ ଆର୍ଯ୍ୟଭଟ୍ଟଙ୍କ ପ୍ରତିଭାର ଯଥେଷ୍ଟ ପରିଚୟ ମିଳେ । ପୃଥିବୀର ଆବର୍ତ୍ତନ ଫଳରେ ଦିବାରାତ୍ରର ସୃଷ୍ଟି ହୋଇଥାଏ—ଏ ତତ୍ତ୍ୱ ଆର୍ଯ୍ୟଭଟ୍ଟ ଉତ୍ତମରୂପେ ପ୍ରତିପାଦିତ କରିଥିଲେ । ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ରର ଚଳାଚଳ ସମ୍ବନ୍ଧରେ ତାହାଙ୍କର ଗବେଷଣା ଅତିଶୟ ଉତ୍କୃଷ୍ଟ ଥିଲା ଏବଂ ତେଣୁ ହିନ୍ଦୁ ଜ୍ୟୋତିଷାଚାର୍ଯ୍ୟମାନଙ୍କ ମଧ୍ୟରେ ଆର୍ଯ୍ୟଭଟ୍ଟଙ୍କୁ ପ୍ରଥମସ୍ଥାନ ଦିଆଯାଏ । ଆର୍ଯ୍ୟଭଟ୍ଟ ସୂର୍ଯ୍ୟ ଓ ଚନ୍ଦ୍ରଗ୍ରହଣର କାରଣ ଯଥାର୍ଥ ରୂପେ ଅବିଷ୍କାର କରିଥିଲେ । ତାହାଙ୍କଦ୍ୱାରା ଅନ୍ୟତ୍ର ମଧ୍ୟ ପ୍ରତିପାଦିତ ହୋଇଥିଲା ଯେ ଚନ୍ଦ୍ର ଓ ଗ୍ରହମାନଙ୍କର ନିଜର ଆଲୋକ ନାହିଁ; ସୂର୍ଯ୍ୟଙ୍କର ଆଲୋକଦ୍ୱାରା ସେମାନେ ଆଲୋକିତ ହୋଇ ଥାଆନ୍ତି । ପୃଥିବୀ ପରି ଗ୍ରହ ସମସ୍ତେ ମଧ୍ୟ ସୂର୍ଯ୍ୟଙ୍କ ଚତୁର୍ଦ୍ଦିଗରେ ଭ୍ରମଣ କରନ୍ତି ଏହି ମତ ଆର୍ଯ୍ୟଭଟ୍ଟ ବ୍ୟକ୍ତ କରିଥିଲେ । ପରିଶେଷରେ ଆର୍ଯ୍ୟଭଟ୍ଟ ପୃଥିବୀର ଆହ୍ନିକ ଓ ବାର୍ଷିକ ଗତି ନିର୍ଣ୍ଣୟ କରିଥିଲେ । ଗଣିତ କ୍ଷେତ୍ରରେ ସେ Progression, algebraic identities ଏବଂ indeterminate equations of the first degree ପ୍ରଭୃତିର ବିସ୍ତୃତ ଆଲୋଚନା କରିଥିଲେ । ଏତଦ୍ ବ୍ୟତୀତ ସେ radius ଏବଂ circumference of the circle ମଧ୍ୟରେ ଯେଉଁ ratio ତାହାର ନିର୍ଭୁଲ value ବାହାର କରିଥିଲେ । ଆର୍ଯ୍ୟଭଟ୍ଟଙ୍କର 'ବୀଜ ଗଣିତ' ଏବଂ 'ଆର୍ଯ୍ୟ ସିଦ୍ଧାନ୍ତ' ନାମକ ଗଣିତ ଓ ଜ୍ୟୋତିଷ ସମ୍ପର୍କୀୟ ଗ୍ରନ୍ଥଦ୍ୱୟ ଭାରତୀୟ ବିଜ୍ଞାନ ଜଗତର ଅମୂଲ୍ୟ ସମ୍ପଦ । ଆର୍ଯ୍ୟଭଟ୍ଟଙ୍କ ପରେ ଗୁପ୍ତଯୁଗରେ ଅପର ଯେଉଁ ସୁବିଖ୍ୟାତ ବୈଜ୍ଞାନିକ ଜନ୍ମଗ୍ରହଣ କରିଥିଲେ ତାହାଙ୍କର ନାମ ହେଉଛି ବରାହମିହିର । ବରାହମିହିର ତାହାଙ୍କର 'ପଞ୍ଚସିଦ୍ଧାନ୍ତିକା' ନାମ୍ନୀ ପୁସ୍ତକରେ ପାଞ୍ଚଟି ପ୍ରାଚୀନ ଜ୍ୟୋତିଷ ଗ୍ରନ୍ଥର ବିବରଣୀ ପ୍ରକାଶ କରିଛନ୍ତି । ତାହାଙ୍କର ବିଶେଷ ପାରଦର୍ଶିତା ଥିଲା ଫଳିତ ଜ୍ୟୋତିଷ ଉପରେ । ଜ୍ୟୋତିଷ ଶାସ୍ତ୍ରକୁ ସେ ତିନିଭାଗରେ ବିଭକ୍ତ କରିଥିଲେ ଯଥା ତନ୍ତ୍ର, ହୋରା ଏବଂ ସଂହିତା । ତନ୍ତ୍ର ହେଉଛି ଗଣିତ ଜ୍ୟୋତିଷକୁ ମୂଳଭିତ୍ତି କରି ଫଳିତ ଜ୍ୟୋତିଷ ନିର୍ଦ୍ଧାରଣ କରିବାର ପ୍ରଣାଳୀ । ହୋରା ଅର୍ଥ ଜାତକ ବିଚାର ବିଦ୍ୟା । ସଂହିତା ହେଉଛି ପ୍ରକୃତ ଫଳିତ ଜ୍ୟୋତିଷ । ବରାହମିହିରଙ୍କର 'ବୃହତ୍ ସଂହିତା' ସେ ଯୁଗର ଜ୍ଞାନଧାରା ଉପରେ ଏକ ଅଭିଧାନ କହିଲେ ଚଳେ । ତାହାଙ୍କର 'ବୃହଜ୍ଜାତକ' ଭାରତୀୟ ଜ୍ୟୋତିଷ ଶାସ୍ତ୍ରମାନଙ୍କ ମଧ୍ୟରେ ଏକ ଅମୂଲ୍ୟ ଗ୍ରନ୍ଥ ।

ଶିଳ୍ପକଳା ଏବଂ ସ୍ଥାପତ୍ୟ ବିଦ୍ୟା ଦୃଷ୍ଟିରୁ ଗରିମାମୟୀ ଗୁପ୍ତଯୁଗ ଥିଲା ହିନ୍ଦୁ ଭାରତର ଶ୍ରେଷ୍ଠ ଯୁଗ । ଅତ୍ୟନ୍ତ ଦୁଃଖର ବିଷୟ, ଗୁପ୍ତଯୁଗର ସେହି ଅଗଣିତ କୀର୍ତ୍ତିରାଜି ଆଜି ଭାରତ ପୃଷ୍ଠରୁ ପ୍ରାୟ ଲୁପ୍ତ । ଗୁପ୍ତ ରାଜତ୍ୱ ପରେ ପରେ ଭାରତ ଉପରକୁ ଯେଉଁ ଯାଯାବର ହୁନ୍ ଆକ୍ରମଣ ମାଡ଼ି ଆସିଥିଲା ତାହାଦ୍ୱାରା ଗୁପ୍ତ ସ୍ଥାପତ୍ୟ ଏବଂ ଶିଳ୍ପକଳା ଭୟଙ୍କର ବିପଦ ମୁଖରେ ପଡ଼ିଥିଲା । ବୈଦେଶିକ ହୁନ୍‌ମାନେ ଗୁପ୍ତଯୁଗର ମନ୍ଦିର, ଅଟ୍ଟାଳିକା, ସ୍ତମ୍ଭ ପ୍ରଭୃତି ବହୁ ଅଂଶରେ ଧ୍ୱଂସ କରି ଦେଇଥିଲେ । ଅବଶିଷ୍ଟ ଯାହା ଥିଲା ତାହା ମୁସଲମାନ ଆକ୍ରମଣର ପ୍ରଥମାବସ୍ଥାରେ ଧୂଳିସାତ୍ ହୋଇଥିଲା । ମୁସଲମାନମାନେ ଏ ଦେଶ ମଧ୍ୟକୁ ଆସିଥିଲେ ଇସଲାମ୍ ଧର୍ମର ପ୍ରଚାର ପାଇଁ । ହିନ୍ଦୁ ମନ୍ଦିର, ଦେବଦେବୀ, ଏ ସମସ୍ତ ଥିଲା ସେମାନଙ୍କର ଆକ୍ରମଣର ପ୍ରଧାନ ବସ୍ତୁ କାରଣ ଏହି ସମସ୍ତ ଧ୍ୱଂସ କରି ସେମାନେ ମୂର୍ତ୍ତି ପୂଜକ ହିନ୍ଦୁମାନଙ୍କୁ ଆରବ ଧର୍ମରେ ଦୀକ୍ଷିତ କରିବାକୁ ଚେଷ୍ଟା କରିଥିଲେ । ଆରବ ଆକ୍ରମଣକାରୀ-ମାନେ, ସୁଲତାନ୍ ମାମୁଦ୍ ଏବଂ ତାହାଙ୍କର ବଂଶଧରମାନେ, ତଥା ପରବର୍ତ୍ତୀ କାଳର ତୁର୍କୀ ସମ୍ରାଟମାନେ ହିନ୍ଦୁ ସଭ୍ୟତା ଓ ହିନ୍ଦୁଧର୍ମ ବିରୁଦ୍ଧରେ ଯେପରି ସର୍ବଧ୍ୱଂସୀ ଅଭିଯାନ ଚଳାଇଥିଲେ ତାହା ଭାରତ ଇତିହାସରେ ରକ୍ତମସୀରେ ଲିଖିତ ଅଛି । ଏହି ଧର୍ମବିଦ୍ୱେଷୀ ଅଭିଯାନ ଫଳରେ ଉତ୍ତର ଭାରତରେ ହିନ୍ଦୁ ସ୍ଥାପତ୍ୟ ପ୍ରାୟ ସମୂଳେ ବିନଷ୍ଟ ହେବାକୁ ବସିଥିଲା । ମୁସଲମାନ ଆକ୍ରମଣର ସେହି ଧ୍ୱଂସଲୀଳା ମଧ୍ୟରେ ପ୍ରାଚୀନ ଭାରତର କେତେ ଶିଳ୍ପକଳା, କେତେ ସ୍ଥାପତ୍ୟ ଧୂଳିସାତ୍ ହୋଇଛି ତାହାର କଳନା କରିବା ଅସମ୍ଭବ । ସେହି ଧୂଳିରାଶି ମଧ୍ୟରେ ଗୁପ୍ତ ସ୍ଥାପତ୍ୟ ଓ ଶିଳ୍ପକଳା ମଧ୍ୟ ନିଜକୁ ମିଶାଇ ଦେଇଛି । ମାତ୍ର ଅତି ନଗଣ୍ୟ ସଂଖ୍ୟକ ଗୁପ୍ତ ଶିଳ୍ପ ନିଦର୍ଶନ ଆଜି ଭାରତର ଏଣେ ତେଣେ ବିକ୍ଷିପ୍ତ ଭାବରେ ଦଣ୍ଡାୟମାନ ରହିଥିବାର ଦେଖିବାକୁ ମିଳେ । ସେହି ଯତ୍ ସାମାନ୍ୟ ମଧ୍ୟରୁ ଗୁପ୍ତ ଶିଳ୍ପକଳାର ମହତ୍ତ୍ୱ ଯଥେଷ୍ଟ ମାତ୍ରାରେ ଉପଲବ୍ଧି କରିହୁଏ । ବିଖ୍ୟାତ ପାଶ୍ଚାତ୍ୟ ପଣ୍ଡିତ ହ୍ୟାଭେଲ, ଫାର୍ଗୁସନ୍, ସ୍ମିଥ୍, ସ୍ପୁନର ଏବଂ ଅପରାପର ଅନେକେ ଗୁପ୍ତ ଶିଳ୍ପକଳାର ଅଭିନବ ରୂପରେ ମୋହିତ ହୋଇ ଯାଇଛନ୍ତି ଏବଂ ତାହାର ଭୂୟସୀ ପ୍ରଶଂସା କରିଛନ୍ତି । ଆଜି ସୁଦ୍ଧା ଗୁପ୍ତ ଶିଳ୍ପକଳାର ନିଦର୍ଶନ ସହସ୍ର ସହସ୍ର ଦର୍ଶକଙ୍କୁ ଚମତ୍କୃତ କରୁଛି ଏବଂ ଗୁପ୍ତ ଯୁଗର ଗୌରବ ଘୋଷଣା କରୁଛି ।

ଗୁପ୍ତଯୁଗୀୟ ସ୍ଥାପତ୍ୟର ନିଦର୍ଶନମାନଙ୍କ ମଧ୍ୟରୁ ଏଲୋରାର ବିଶ୍ୱକର୍ମା ଚୈତ୍ୟ ଅତି ପ୍ରସିଦ୍ଧ । ପ୍ରାଚୀନ କାଳରେ ଏଲୋରା ସ୍ଥପତି ବିଦ୍ୟାର ଏକ ପ୍ରଧାନ କେନ୍ଦ୍ରସ୍ଥଳୀ ଥିଲି ବୋଲି ବିଶେଷଜ୍ଞମାନେ ବିଶ୍ୱାସ କରନ୍ତି । ଏହି କେନ୍ଦ୍ରସ୍ଥଳୀରୁ ଶିଳ୍ପୀମାନେ ଭାରତର ଅନ୍ୟ ଅଂଶରେ ମଧ୍ୟ ସ୍ୱକୃତିତ୍ୱର ପରିଚୟ ଦେଇଥିବାର ଜଣାଯାଏ । ବିଶ୍ୱକର୍ମା ଚୈତ୍ୟ ସେମାନଙ୍କ ଶିଳ୍ପବିଦ୍ୟାର ଏକ ଚିତ୍ତାକର୍ଷକ ସ୍ମୃତିଚିହ୍ନ । ହିନ୍ଦୁମାନଙ୍କ ବିଶ୍ୱାସରେ ବିଶ୍ୱକର୍ମା ହେଉଛନ୍ତି ଦେବଶିଳ୍ପୀ, ତେଣୁ ସେ ମାନବ ଶିଳ୍ପୀମାନଙ୍କର ଆରାଧ୍ୟ । ଏଲୋରାର ଶିଳ୍ପୀମାନେ ଦେବ ଶିଳ୍ପୀଙ୍କୁ ଆରାଧନା କରି ନିଜ ନିଜର ଶିଳ୍ପବିଦ୍ୟାର ଉନ୍ନତି ଆଶା କରିଥିଲେ । ହୁଏତ ଶିଳ୍ପୀମାନେ ସେଠାରେ ବିଶ୍ୱକର୍ମାଙ୍କର ପୂଜା କରୁଥିଲେ ଏବଂ ସମ୍ମିଳିତ ଚେଷ୍ଟାରେ ସେହି ଦେବତାଙ୍କ ଉଦ୍ଦେଶ୍ୟରେ ଏକ ବିରାଟ ଚୈତ୍ୟ ନିର୍ମାଣ କରିଥିଲେ । ବିଶାଳ ପର୍ବତ ଗାତ୍ର ଖନନପୂର୍ବକ ବିପୁଳ ପ୍ରାସାଦ ନିର୍ମାଣ କରାଯାଇଛି ଏବଂ ପ୍ରାସାଦ ଅଙ୍ଗରେ ଅତି ଉତ୍କୃଷ୍ଟ ଧରଣର କାରୁକାର୍ଯ୍ୟ ଖୋଦିତ କରାହୋଇଛି । ଗଠନ ପ୍ରଣାଳୀ ଏବଂ ଭାସ୍କର୍ଯ୍ୟ ଦୃଷ୍ଟିରୁ ଏ ଚୈତ୍ୟ ବାସ୍ତବିକ ଭାରତୀୟ ସ୍ଥାପତ୍ୟକଳାର ଏକ ଗୌରବ । ଏହିଠାରେ ଗୋଟିଏ କଥା ଉଲ୍ଲେଖଯୋଗ୍ୟ ଯେ ଏହି ଚୈତ୍ୟ କୌଣସି ଧର୍ମ ଦୃଷ୍ଟିରୁ ନିର୍ମିତ ନ ହୋଇ ପ୍ରଧାନତଃ ଶିଳ୍ପ ଦୃଷ୍ଟିରୁ ନିର୍ମିତ ହୋଇଛି । ସୌନ୍ଦର୍ଯ୍ୟହିଁ ଶିଳ୍ପୀର ଧର୍ମ ଏବଂ ଶିଳ୍ପୀ ସୌନ୍ଦର୍ଯ୍ୟର ଚିର ଉପାସକ । ଗୁପ୍ତଯୁଗର ଶିଳ୍ପକଳା ମଧ୍ୟରେ ଏହି ମହାନୁଭବତାର ଯଥେଷ୍ଟ ପରିଚୟ ସେ ଯୁଗର ଶିଳ୍ପୀମାନେ ଦେଇଛନ୍ତି ଯଦିଚ ଗୁପ୍ତଯୁଗ ଥିଲା ବ୍ରାହ୍ମଣ୍ୟଧର୍ମର ଯୁଗ, ତଥାପି ଏହି ଯୁଗରେ ବୌଦ୍ଧ, ଜୈନ ଏବଂ ହିନ୍ଦୁ, ଏହି ତିନି ଧର୍ମକୁ ସମନ୍ୱିତ କରି ଶିଳ୍ପୀମାନେ କେବଳ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ଶିଳ୍ପ ସୃଷ୍ଟି କରିଯାଇଛନ୍ତି । ଏପରିକି ଏହି ଯୁଗରେ ଧର୍ମହୀନ ଶିଳ୍ପକଳା ମଧ୍ୟ ଯଥେଷ୍ଟ ମାତ୍ରାରେ ପରିସ୍ଫୁଟ ହୋଇ ପାରିଛି । ଗୁପ୍ତଯୁଗରେ ଭାରତର ବିଭିନ୍ନ ସ୍ଥାନରେ ବହୁସଂଖ୍ୟକ ସୁନ୍ଦର ବୌଦ୍ଧ ମୂର୍ତ୍ତି ନିର୍ମିତ ହୋଇଥିବାର ଦେଖି ଏହା ଅନୁମାନ କରିବା ଉଚିତ ନୁହେଁ ଯେ ସେ ଯୁଗର ମୁଖ୍ୟଧର୍ମ ଥିଲା ବୌଦ୍ଧଧର୍ମ । ଶିଳ୍ପୀର ଧର୍ମ ବୋଲି କିଛି ନ ଥାଏ । ତେଣୁ ସେମାନଙ୍କ ହସ୍ତରୁ ବୌଦ୍ଧମୂର୍ତ୍ତି ନିର୍ମିତ ହେବାର ଅର୍ଥ ନୁହେଁ ଯେ ସେମାନେ ଥିଲେ ବୌଦ୍ଧ । କାହିଁକି ଗୁପ୍ତଯୁଗରେ ବହୁ ବୁଦ୍ଧ ମୂର୍ତ୍ତି ନିର୍ମିତ ହୋଇଛି ତାହା ପଛରେ ବହୁ କାରଣ ରହିଛି । ପ୍ରଧାନତଃ ଶିଳ୍ପୀମାନେ ସୌନ୍ଦର୍ଯ୍ୟ ଏବଂ କଳା ବିକାଶ ଦୃଷ୍ଟିରୁ ବୌଦ୍ଧମୂର୍ତ୍ତିମାନ ସୁନ୍ଦର, ସୁଲଳିତ ଢଙ୍ଗରେ ନିର୍ମାଣ କରିଯାଇଛନ୍ତି । ଦ୍ୱିତୀୟତଃ, ଶତ ସହସ୍ର ଦେବଦେବୀଙ୍କ

ମୂର୍ତ୍ତି ନିର୍ମିତ ହେଉଥିଲାବେଳେ ବୁଦ୍ଧଦେବଙ୍କ ମୂର୍ତ୍ତି ମଧ୍ୟ ସେଥିରୁ ବାଦ ପଡ଼ିଯାଇ ନାହିଁ, କାରଣ ଏତେବେଳକୁ ବୁଦ୍ଧଦେବ ମଧ୍ୟ ହିନ୍ଦୁ ଦେବତାରେ ପରିଣତ ହୋଇ ସାରିଲେଣି । ସଂକୀର୍ଣ୍ଣ ଧର୍ମଭେଦ ଗୁପ୍ତଯୁଗର ଶିଳ୍ପୀମାନଙ୍କୁ ପ୍ରଭାବିତ କରି ନ ଥିଲା ତେଣୁ ସେମାନେ ଭାରତୀୟ ଚିନ୍ତାଧାରାର ବିଭିନ୍ନ ଅଙ୍ଗକୁ କଳା ମଧ୍ୟରେ ପ୍ରକାଶ କରିପାରିଥିଲେ । ବୌଦ୍ଧଧର୍ମ ହେଉ କିମ୍ବା ଜୈନଧର୍ମ ହେଉ, ସେମାନେ ଭାରତୀୟ ଚିନ୍ତାଧାରାର ଗୋଟିଏ ଗୋଟିଏ ଅଙ୍ଗ । ଶିଳ୍ପୀର ଚକ୍ଷୁରେ ସେମାନେ ଭାରତୀୟ ଶିଳ୍ପଧାରାର ବିଷୟବସ୍ତୁ । ତେଣୁ ଭାରତୀୟ ଶିଳ୍ପର ଏପରି ସର୍ବାଙ୍ଗୀନ ଉନ୍ନତି । ବହୁଦିନ ପରେ ଯେତେବେଳେ ମୁସଲମାନମାନଙ୍କ ଦ୍ୱାରା ଭାରତ ଅଧିକୃତ ହୋଇଥିଲା ସେତେବେଳେ ସେହି ବିଧର୍ମୀ ରାଜାମାନଙ୍କ ଆଦେଶରେ ମଧ୍ୟ ହିନ୍ଦୁ ଶିଳ୍ପୀମାନେ ଇସଲାମ ଧର୍ମୋପଯୋଗୀ ଶିଳ୍ପ ଏବଂ ସ୍ଥାପତ୍ୟ ସୃଷ୍ଟି କରିଥିଲେ। ପାଠାଣ ଓ ମୋଗଲ ସମ୍ରାଟମାନଙ୍କ ଅଧୀନରେ ନିର୍ମିତ ହୋଇଥିବା ଯେଉଁ ଅସଂଖ୍ୟ ମସଜିଦ୍, ମିନାର, କବର, ଦରବାର ଇତ୍ୟାଦି ଦେଖିବାକୁ ମିଳେ ସେସବୁ ମହମ୍ମଦୀୟ ଢଙ୍ଗରେ ନିର୍ମିତ ହୋଇଥିଲେ ମଧ୍ୟ ମୁଖ୍ୟତଃ ଭାରତୀୟ ଶିଳ୍ପୀମାନଙ୍କର କର୍ମ । ହିନ୍ଦୁ ଶିଳ୍ପୀମାନେ ସଙ୍କୀର୍ଣ୍ଣମନା ହୋଇଥିଲେ କିମ୍ବା ସେମାନଙ୍କର ଚିନ୍ତାଧାରା ଧର୍ମାନ୍ଧ ହୋଇଥିଲେ ଭାରତ ବକ୍ଷରେ ଇଣ୍ଡୋ-ମହମ୍ମଦୀୟ ସ୍ଥାପତ୍ୟ ବିକାଶ ଲାଭ କରି ପାରି ନ ଥାନ୍ତା । ଜାତିଧର୍ମ ଭେଦାଭେଦ ପାଶରୁ ବହୁ ଉପରେ ରହି କଳନା-ବିଳାସୀ ଭାରତୀୟ ଶିଳ୍ପୀମାନେ ଏ ଦେଶର ଶିଳ୍ପକଳାର ଚରମ ଉତ୍କର୍ଷ ସାଧନ କରିଛନ୍ତି । ଏହାହିଁ ସେମାନଙ୍କର ବିଶେଷତ୍ୱ ।

ଗୁପ୍ତ ସ୍ଥାପତ୍ୟର ଅପର ଏକ ନିଦର୍ଶନ ଦେଖିବାକୁ ମିଳେ ଯୁକ୍ତପ୍ରଦେଶର ଝାନ୍‌ସି ଜିଲ୍ଲାର ଅନ୍ତର୍ଗତ ଦେଓଗଡ଼ ନାମକ ସ୍ଥାନରେ । ଏଠାକାର ପ୍ରସ୍ତର ନିର୍ମିତ ଦଶାବତାର ମନ୍ଦିର ଭାସ୍କର୍ଯ୍ୟ ଶିଳ୍ପ ପାଇଁ ପ୍ରସିଦ୍ଧ । ପାଶ୍ଚାତ୍ୟ ପଣ୍ଡିତ ଭିନ୍‌ସେଣ୍ଟ ସ୍ମିଥ୍ ଦେଓଗଡ଼ ଭାସ୍କର୍ଯ୍ୟର ଭୂୟସୀ ପ୍ରଶଂସା କରିଛନ୍ତି । କାନପୁର ଅନ୍ତର୍ଗତ ଭିତାରଗାଁ ଠାରେ ଯେଉଁ ସୁନ୍ଦର ଇଷ୍ଟକ ନିର୍ମିତ ମନ୍ଦିର ବିଦ୍ୟମାନ ତାହା ମଧ୍ୟ ଗୁପ୍ତଯୁଗରେ ନିର୍ମିତ ହୋଇଥିଲା । ସାରନାଥଠାରେ ଏହି ଯୁଗରେ ବହୁ ମନ୍ଦିର ନିର୍ମିତ ହୋଇଥିଲା ବୋଲି ବିଶେଷଜ୍ଞମାନେ ମତ ପୋଷଣ କରନ୍ତି । ସେ ସବୁ ମନ୍ଦିରର ଧ୍ୱଂସାବଶେଷ ଆଜିସୁଦ୍ଧା ଏକ ଉନ୍ନତ ଭାସ୍କର୍ଯ୍ୟ ଶିଳ୍ପ ଗାଥାରେ ଧରି ରଖିଛି । କେହି କେହି ପାଶ୍ଚାତ୍ୟ ପଣ୍ଡିତଙ୍କ ମତରେ ୫ମ ଶତାବ୍ଦୀରେ ନିର୍ମିତ ହୋଇଥିବା

ସାରନାଥର ଭାସ୍କର୍ଯ୍ୟ ଏବଂ ଷୋଡ଼ଶ ଶତାବ୍ଦୀର ଫ୍ଲୋରେନ୍ସ ନଗରୀର ଭାସ୍କର୍ଯ୍ୟ ଏ ଉଭୟେ ଉତ୍କର୍ଷତା ଦୃଷ୍ଟିରୁ ତୁଳନୀୟ । ଉଭୟ ସ୍ଥାନର ଭାସ୍କର୍ଯ୍ୟ ସେ ବିଦ୍ୟାର ଚରମ ପରିଣତିର ନିଦର୍ଶନ । ସାରନାଥଠାରେ ନିର୍ମିତ ହୋଇଥିବା ବୁଦ୍ଧମୂର୍ତ୍ତି-ମାନଙ୍କୁ ଇଉରୋପୀୟ ଭାସ୍କର୍ଯ୍ୟ ଶିଳ୍ପର ଶ୍ରେଷ୍ଠ ଦୃଷ୍ଟାନ୍ତମାନଙ୍କ ସହିତ ପାଶ୍ଚାତ୍ୟ ବିଶେଷଜ୍ଞମାନେ ମୁକ୍ତ କଣ୍ଠରେ ତୁଳନା କରିଯାଇଛନ୍ତି । ଅଙ୍ଗ ବିନ୍ୟାସ, ସୌନ୍ଦର୍ଯ୍ୟ, ଅଙ୍ଗପ୍ରତ୍ୟଙ୍ଗର ସୁସ୍ପଷ୍ଟତା ଏବଂ ନିର୍ଭୁଲ ସମ୍ପାଦନ ଦୃଷ୍ଟିରୁ ସାରନାଥର ଉପବିଷ୍ଟ ଓ ଦଣ୍ଡାୟମାନ ବୁଦ୍ଧ ମୂର୍ତ୍ତି ଭାରତୀୟ ଭାସ୍କର୍ଯ୍ୟ ଶିଳ୍ପର ଆଦର୍ଶ ନିଦର୍ଶନ ।

କିନ୍ତୁ ଗୁପ୍ତ ଶିଳ୍ପକଳାର ଶ୍ରେଷ୍ଠ ପରିଚୟ ମିଳେ ଅଜନ୍ତାର ଚିତ୍ରଶିଳ୍ପ ଦେହରୁ । ଗୁପ୍ତଯୁଗର ବହୁ ପୂର୍ବେ, ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ, ବୌଦ୍ଧ ସାଧୁମାନେ ଅଜନ୍ତାର ନିର୍ଜନ ଗୁହା ମଧ୍ୟରେ ନିଜର ବସବାସ ଆରମ୍ଭ କରିଥିଲେ । ତଦବଧି ସେହି ଗୁହାମାନଙ୍କ ଗାତ୍ରରେ ବୌଦ୍ଧ ସନ୍ନ୍ୟାସୀମାନଙ୍କ ଦ୍ୱାରା ଶତ ଶତ ବର୍ଷ ଧରି ଏବଂ ବଂଶ-ପରମ୍ପରା କ୍ରମେ ଚିତ୍ରାଙ୍କନ କାର୍ଯ୍ୟ ଚାଲି ଆସୁଥିଲା । ଅତି ପ୍ରାଚୀନ ଭାରତରେ ଭାରତୀୟ ସଭ୍ୟତାର ଅଙ୍ଗରୂପେ ଚିତ୍ରଶିଳ୍ପ ଯେ ଜାତୀୟ ଜୀବନକୁ ମୁଗ୍ଧ କରୁଥିଲା ତାହା ଏହି ପ୍ରାଗ୍ ଖ୍ରୀଷ୍ଟୀୟ ଯୁଗର ଅଜନ୍ତା ଚିତ୍ରକଳା ପ୍ରମାଣ କରେ । ଗୃହତ୍ୟାଗୀ ବୌଦ୍ଧ ସନ୍ନ୍ୟାସୀମାନେ କଳନା ବିଳାସ ମଧ୍ୟରେ ଯେଉଁ ଚିତ୍ରସୃଷ୍ଟି କରି ଯାଇଛନ୍ତି ତାହା ସମଗ୍ର ଏସିଆର କଳା-ମଣ୍ଡଳରେ ଅଦ୍ୱିତୀୟ । ପ୍ରାଗ୍-ଖ୍ରୀଷ୍ଟୀୟ ଯୁଗରୁ ଏହି ଯେଉଁ ଚିତ୍ରବିଦ୍ୟା ଅଜନ୍ତାର ନିର୍ଜନ କକ୍ଷରେ ନିଜକୁ ସୃଷ୍ଟି କରୁଥିଲା ସେହି ଚିତ୍ରବିଦ୍ୟାର ପରିପୂର୍ଣ୍ଣତା ଲାଭ ହେଲା ଗୁପ୍ତଯୁଗରେ । ଅଜନ୍ତା ଗୁହାର ଚିତ୍ରାବଳୀ ଗୁପ୍ତଯୁଗର ଅମର କୀର୍ତ୍ତି । ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀ ପାଖରୁ ଗୁପ୍ତଯୁଗର ଶେଷ ସମୟ ପର୍ଯ୍ୟନ୍ତ ଅଜନ୍ତାରେ ଭାରତୀୟ ଚିତ୍ରଶିଳ୍ପ ପରିପୂର୍ଣ୍ଣତା ଲାଭ କରୁଥିଲା । ଗୁପ୍ତଯୁଗର ଅବସାନ ସଙ୍ଗେ ସଙ୍ଗେ କେଉଁ ଅଜଣା କାରଣରୁ ଅଜନ୍ତାର କଳା ଉପରେ ମଧ୍ୟ ପୂର୍ଣ୍ଣଚ୍ଛେଦ ପଡ଼ିଯାଇଥିଲା । କାଳକ୍ରମେ ବୌଦ୍ଧ ସନ୍ନ୍ୟାସୀମାନଙ୍କ ଦ୍ୱାରା ପରିତ୍ୟକ୍ତ ହୋଇ ଅଜନ୍ତା ଅଗମ୍ୟ ଜଙ୍ଗଲ ମଧ୍ୟରେ ନିଜକୁ ଲୁଚାଇ ରଖିଥିଲା । ସହସ୍ର ବର୍ଷରୁ ଊର୍ଦ୍ଧ୍ୱ କାଳ ବ୍ୟାପୀ ଅଜନ୍ତାର ବୌଦ୍ଧ ଗୁହାମାନ ହିଂସ୍ରଜନ୍ତୁ ଓ ଅପର ପଶୁପକ୍ଷୀମାନଙ୍କର ବାସସ୍ଥଳୀରୂପେ ବ୍ୟବହୃତ ହୋଇଥିଲା । ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଭାରତୀୟ ସୈନ୍ୟ ବାହିନୀର ଜଣୈକ ଅବସରପ୍ରାପ୍ତ ଇଂରାଜ କର୍ମଚାରୀ ଶିକାର ଉଦ୍ଦେଶ୍ୟରେ ଅଜନ୍ତାର

ଜଙ୍ଗଲ ଦେଶରେ ଭ୍ରମଣ କରୁଁ କରୁଁ ଅପ୍ରତ୍ୟାଶିତ ଭାବରେ ଅଜନ୍ତା ଗୁମ୍ଫାମାନଙ୍କୁ ଆବିଷ୍କାର କରିଥିଲେ । ଶତ ଶତ ବର୍ଷର ଅବହେଳା ମଧ୍ୟରେ ଅଜନ୍ତା ଜରାଜୀର୍ଣ୍ଣ ରୂପେ ପଡ଼ି ରହିଥିଲା; ପଶୁପକ୍ଷୀଙ୍କ ଉପଦ୍ରବରେ ଏବଂ ଅନ୍ୟ ପ୍ରାକୃତିକ ଧ୍ୱଂସ-ଲୀଳାରେ ଅଜନ୍ତାର ପ୍ରାଚୀନ ଶ୍ରୀ ବହୁ ପୂର୍ବରୁ ମଳିନ ହୋଇ ଯାଇଥିଲା । କିନ୍ତୁ ସେହି ଶ୍ରୀହୀନ ଅଜନ୍ତା ଆଜି ଭାରତର ଶ୍ରେଷ୍ଠ ଚିତ୍ରାଗାର ଏବଂ ପୃଥିବୀର ଶ୍ରେଷ୍ଠତମ କଳାପୀଠମାନଙ୍କ ମଧ୍ୟରେ ଅନ୍ୟତମ ଏବଂ ସେଠାକାର ରମଣୀୟ ଚିତ୍ରାବଳି ସେ ସବୁ ଗୁପ୍ତ ସଭ୍ୟତାର ମୂକସାକ୍ଷୀ ।

ଅଜନ୍ତା ବ୍ୟତୀତ ଗୋୟାଲିଅର ରାଜ୍ୟର ଅନ୍ତର୍ଗତ ବାଗ୍ ନାମକ ଗୁମ୍ଫା ଚିତ୍ର-ସମୂହ ଗୁପ୍ତଯୁଗର ଅପର ଏକ କଳା ଭବନ । ଅଜନ୍ତାର ଚିତ୍ରରେ ଏଠାକାର ଚିତ୍ରକଳା ମଧ୍ୟ ଅତି ଉତ୍କୃଷ୍ଟ ।

ସ୍ଥାପତ୍ୟ, ଭାସ୍କର୍ଯ୍ୟ ଏବଂ ଚିତ୍ରକଳା ବ୍ୟତୀତ ଧାତବ ଶିଳ୍ପରେ ମଧ୍ୟ ଗୁପ୍ତଯୁଗ ଅନୁପମ । ଦିଲ୍ଲୀର ବିଖ୍ୟାତ ଲୌହସ୍ତମ୍ଭ ଗୁପ୍ତଯୁଗରେ ନିର୍ମିତ । ଏହି ସ୍ତମ୍ଭଟି ବାଇଶି ଫୁଟ ଉଚ୍ଚ । ଏପରି ବିଶାଳ ଲୌହସ୍ତମ୍ଭ ନିର୍ମାଣ କରିବା ପାଇଁ ସେ ଯୁଗରେ ସେପରି ଉପଯୁକ୍ତ କଳ କାରଖାନା ଥିବାର ଯଥେଷ୍ଟ ସମ୍ଭାବନା । କିନ୍ତୁ ଏହି ଲୌହସ୍ତମ୍ଭ ବିଶାଳତା ପାଇଁ ଦର୍ଶକମାନଙ୍କୁ ଯେତେଦୂର ଆଶ୍ଚର୍ଯ୍ୟାନ୍ୱିତ ନ କରୁଛି ତାହାଠାରୁ ଅଧିକ ଆଶ୍ଚର୍ଯ୍ୟ କରୁଛି ସେ ଯୁଗର ବିଜ୍ଞାନ ପାଇଁ । ଦୀର୍ଘ ଦେଢ଼ ହଜାର ବର୍ଷ ପୂର୍ବେ ଏହି ସ୍ତମ୍ଭ ନିର୍ମିତ ହୋଇଥିଲା । ଏହି ଦୀର୍ଘ କାଳବ୍ୟାପୀ ସମୟ ମଧ୍ୟରେ ସୂର୍ଯ୍ୟ କିରଣ, ବୃଷ୍ଟି କିମ୍ବା ପବନ ଦ୍ୱାରା ଏହାର ଉଜ୍ଜ୍ୱଳତା ମଳିନ ହୋଇ ନାହିଁ କିମ୍ବା ଏହାର କୌଣସି ସ୍ଥାନରେ କିଞ୍ଚିତ୍ ମାତ୍ର କଳଙ୍କି ଲାଗିନାହିଁ । ଏହିଠାରେ ଗୁପ୍ତଯୁଗର ବୈଜ୍ଞାନିକମାନେ ଆଧୁନିକ ବୈଜ୍ଞାନିକମାନଙ୍କ ଅପେକ୍ଷା ଧାତୁବିଜ୍ଞାନରେ ଅଧିକ ଦକ୍ଷ ବୋଲି ନିଜକୁ ପ୍ରମାଣିତ କରିଛନ୍ତି । ଆଧୁନିକ ଯୁଗରେ ଧାତୁଶିଳ୍ପ ବହୁଦୂର ଅଗ୍ରସର ହୋଇଛି । କିନ୍ତୁ ଏ ପର୍ଯ୍ୟନ୍ତ ଲୌହଖଣ୍ଡକୁ ଚିରଦିନ ପାଇଁ ନିଷ୍କଳଙ୍କ ରଖିବା ପାଇଁ ଏ ଯୁଗର ବିଜ୍ଞାନ କୌଣସି ପ୍ରକାର ଉଦ୍ଭାବନ କରିପାରି ନାହିଁ । ଅଥଚ ସୁଦୂର ସେହି ଗୁପ୍ତ ଯୁଗରେ ବୈଜ୍ଞାନିକ-ମାନେ ଲୌହଖଣ୍ଡକୁ ଚିରଦିନ ପାଇଁ ଅକଳଙ୍କିତ ରଖିବାର ପ୍ରକାର ଆବିଷ୍କାର କରି ପାରିଥିଲେ । ଦିଲ୍ଲୀର ଲୌହସ୍ତମ୍ଭ ତାହାର ଜ୍ୱଳନ୍ତ ପ୍ରମାଣ । ଗୁପ୍ତଯୁଗର

ଶିଳ୍ପୀମାନେ ବ୍ରୋଞ୍ଜ ଏବଂ ତମ୍ବାରେ ମୂର୍ତ୍ତି ନିର୍ମାଣ କରିବା ଦିଗରେ ମଧ୍ୟ ଯଥେଷ୍ଟ ପାରଗତା ଲାଭ କରିଥିଲେ । ନାଳନ୍ଦାଠାରେ ଏକ ସୁବିଶାଳ ବୁଦ୍ଧ ମୂର୍ତ୍ତି ତମ୍ବାରେ ନିର୍ମିତ ହୋଇଥିଲା । ଭାଗଲପୁର ଅନ୍ତର୍ଗତ ସୁଲତାନଗଞ୍ଜରେ ସାଢ଼େ ସାତ ଫୁଟ ଉଚ୍ଚତା ବିଶିଷ୍ଟ ଏକ ବୁଦ୍ଧ ମୂର୍ତ୍ତି ବ୍ରୋଞ୍ଜରେ ନିର୍ମିତ ହୋଇଥିଲା । ଏହି ମୂର୍ତ୍ତି ଆଜି ଇଂଲଣ୍ଡର ବିଖ୍ୟାତ ବାର୍ମିଂହାମ୍ ଯାଦୁଘର ମଧ୍ୟରେ ଶୋଭା ପାଉଛି ଏବଂ ବିଦେଶୀମାନଙ୍କ ସମ୍ମୁଖରେ ଗୁପ୍ତଯୁଗର ଖ୍ୟାତି ଘୋଷଣା କରୁଛି ।

ଗୁପ୍ତଯୁଗୀୟ ସ୍ଥାପତ୍ୟ ଓ ଶିଳ୍ପର ନିଦର୍ଶନ ଉତ୍କଳଖଣ୍ଡରେ ପ୍ରଚୁର । ଐତିହାସିକ ମଜୁମଦାର୍ ଏବଂ ଐତିହାସିକ ଅଲ୍‌ଟେକାରଙ୍କ ମତରେ "ଗୁପ୍ତ-ଯୁଗରେ ଓଡ଼ିଶା ଯେଉଁ ପ୍ରେରଣା ପାଇଥିଲା ସେହି ପ୍ରେରଣାହିଁ ପରବର୍ତ୍ତୀ ଯୁଗ-ମାନଙ୍କରେ ଉତ୍କଳ ତା'ର ସ୍ଥାପତ୍ୟବିଦ୍ୟାର ଯେଉଁ ତୁଙ୍ଗଚୂଡ଼ା ଆରୋହଣ କରିଥିଲା ତାହାର ମୂଳଦୁଆ ସ୍ଥାପନ କରିଥିଲା ।"[1] ଏହି ଦୁଇ ଐତିହାସିକଙ୍କ ମତରେ ଭୁବନେଶ୍ୱର ନିକଟରେ ଯେଉଁ ଶିଶୁପାଳଗଡ଼ର ଧ୍ୱଂସାବଶେଷ ଦେଖିବାକୁ ମିଳେ ତାହା ଗୁପ୍ତଯୁଗୀୟ ସ୍ଥାପତ୍ୟ ଦୃଷ୍ଟିରୁ ଅତ୍ୟନ୍ତ ପ୍ରସିଦ୍ଧ । ଆମ୍ଭେମାନେ ଜାଣୁ ଯେ ଉତ୍କଳର ଶିଶୁପାଳଗଡ଼ ଏ ଦେଶର ପ୍ରାଚୀନତମ ସ୍ଥାନମାନଙ୍କ ମଧ୍ୟରେ ଅନ୍ୟତମ । ଅତି ପ୍ରାଚୀନ କାଳରେ ଏହିଠାରେ ଅଶୋକଙ୍କ ରାଜଧାନୀ ତୋଷଳୀ ଅବସ୍ଥିତ ଥିଲା ବୋଲି ଅନେକ ଐତିହାସିକ ଏକମତ ହୋଇଛନ୍ତି । ଏହିଠାରେ ଖାରବେଳଙ୍କର ରାଜଧାନୀ ମଧ୍ୟ ଅବସ୍ଥିତ ଥିଲାବୋଲି ଅନେକ କାରଣରୁ ବିଶ୍ୱାସ କରାଯାଏ । ଏହି ପ୍ରସିଦ୍ଧ କେନ୍ଦ୍ରରେ ଗୁପ୍ତଯୁଗୀୟ ସ୍ଥାପତ୍ୟର ମଧ୍ୟ ଯଥେଷ୍ଟ ପ୍ରଭାବ ପଡ଼ିଥିଲା ବୋଲି ଅନେକାନେକ କାରଣରୁ ଐତିହାସିକମାନେ ଭାବୁଛନ୍ତି । ଶିଶୁପାଳଗଡ଼ ବ୍ୟତୀତ ଜାଜପୁର ପାହାଡ଼ ଅଞ୍ଚଳରେ ଅବସ୍ଥିତ ଉଦୟଗିରି ଲଳିତଗିରି ଏବଂ ରତ୍ନଗିରି ନାମକ ସ୍ଥାନମାନଙ୍କରେ ଗୁପ୍ତଯୁଗୀୟ ସ୍ଥାପତ୍ୟ ଓ ଶିଳ୍ପର ବହୁତ ଧ୍ୱଂସାବଶେଷ ଦେଖିବାକୁ ମିଳେ ବୋଲି ମଜୁମଦାର ଓ ଅଲ୍‌ଟେକାର ମତ ପୋଷଣ କରନ୍ତି । ଏହି ତିନି ସ୍ଥାନରେ ବହୁତ ବୌଦ୍ଧକୀର୍ତ୍ତି ଦେଖିବାକୁ ମିଳେ ଏବଂ ଏହି ବୌଦ୍ଧକୀର୍ତ୍ତିସବୁ ଅନେକ ପରିମାଣରେ ଗୁପ୍ତ-ଯୁଗରେ ସମ୍ପାଦିତ ହୋଇଛନ୍ତି । ଏହି ସ୍ଥାନମାନଙ୍କରେ ଯେଉଁସବୁ ମୂର୍ତ୍ତି ମିଳୁଛି ତାହା ଗୁପ୍ତଯୁଗୀୟ ଶିଳ୍ପଶୈଳୀରେ ନିର୍ମିତ । ଏତଦ୍‌ବ୍ୟତୀତ ମୟୂରଭଞ୍ଜ ରାଜ୍ୟର

1. Vakataka—Gupta Age—By Majumdar and Altekar p. 438.

ପ୍ରାଚୀନ ରାଜଧାନୀ ଖିଚିଙ୍ଗ୍ ମଧ୍ୟ ଗୁପ୍ତଯୁଗରେ ନିର୍ମିତ ହୋଇଥିଲା ବୋଲି ଉପର ଦୁଇ ଐତିହାସିକ ଠିକ୍ କରିଛନ୍ତି । ମୟୂରଭଞ୍ଜର ଖିଚିଙ୍ଗ୍ ଉତ୍କଳୀୟ ସ୍ଥାପତ୍ୟ କଳାର ଏକ ମାର୍ଜିତ ନିଦର୍ଶନ । ଏଠାରେ ବୌଦ୍ଧ, ଶାକ୍ତ ଓ ବୈଷ୍ଣବ ମତବାଦର ପ୍ରଚଳନ ହୋଇଥିଲା ବୋଲି ଏଠାକାର ମୂର୍ତ୍ତିମାନଙ୍କରୁ ସ୍ପଷ୍ଟ ଜଣାଯାଏ । ଗୁପ୍ତଯୁଗରେ ଯେଉଁସବୁ ଦେବଦେବୀଙ୍କର ମୂର୍ତ୍ତିରେ ସାରା ଭାରତ ଛାଇ ଯାଇଥିଲା ସେହିସବୁ ଦେବଦେବୀଙ୍କର ଅନେକ ପ୍ରତିନିଧି ଖିଚିଙ୍ଗ୍ଠାରେ ଅବସ୍ଥିତ । ସେମାନଙ୍କର ସୁନ୍ଦର ଗଠନ ଏବଂ ଉନ୍ନତ ସୌଷ୍ଠବ ଦର୍ଶକମାନଙ୍କୁ ଆକୃଷ୍ଟ କରିଥାଏ । ଭାରତର ଅନ୍ୟ ସ୍ଥାନମାନଙ୍କରେ ଗୁପ୍ତଯୁଗର ଯେଉଁ ମୂର୍ତ୍ତିମାନଙ୍କୁ ଦେଖିବାକୁ ମିଳେ ସେ ମୂର୍ତ୍ତିମାନଙ୍କ ସହିତ ଖିଚିଙ୍ଗ୍ର ମୂର୍ତ୍ତିମାନଙ୍କର ଘନିଷ୍ଠ ସାମଞ୍ଜସ୍ୟ ଦେଖି ଅନେକେ ବିଶ୍ୱାସ କରନ୍ତି ଯେ ଗୁପ୍ତଯୁଗର ଶିଳ୍ପ ସୃଷ୍ଟି ବେଳେ ଖିଚିଙ୍ଗ୍ ସ୍ଥାପତ୍ୟ ଓ ଶିଳ୍ପର ମଧ୍ୟ ସୃଷ୍ଟି ହୋଇଛି । ଗୁପ୍ତଯୁଗ ପରେ ମଧ୍ୟ ବହୁ ସମୟ ଧରି ଖିଚିଙ୍ଗ୍ଠାରେ ଶିଳ୍ପକଳାର ବିକାଶ ହୋଇଛି । ତେବେ ଗୁପ୍ତଯୁଗର ପ୍ରଭାବ ଯେ ସେଠାରେ ଅତିମାତ୍ରାରେ ପଡ଼ିଛି ଏହା ନିଃସନ୍ଦେହ । ଗୁପ୍ତଯୁଗର ଅନ୍ୟାନ୍ୟ କୀର୍ତ୍ତିମାନଙ୍କ ମଧ୍ୟରେ ଖଣ୍ଡଗିରି ଓ ଉଦୟଗିରିଠାରେ ଖୋଦିତ ହୋଇଥିବା ପରବର୍ତ୍ତୀ ଯୁଗର ଶୈଳଗୁମ୍ଫାଗୁଡ଼ିକ ଏବଂ ଭୁବନେଶ୍ୱର ଓ ଜାଜପୁରଠାରେ ନିର୍ମିତ ହୋଇଥିବା ପ୍ରଥମ ମନ୍ଦିରଗୁଡ଼ିକ ପ୍ରସିଦ୍ଧ । ଏତଦ୍ବ୍ୟତୀତ ବୌଦ୍ଧ ଇତ୍ୟାଦି ସ୍ଥାନରେ ମଧ୍ୟ ଗୁପ୍ତଯୁଗର ଶିଳ୍ପର ଧ୍ୱଂସାବଶେଷ ବିଦ୍ୟମାନ । ଉତ୍କଳର ବହୁପ୍ରାଚୀନ ସ୍ଥାନମାନଙ୍କରେ ଯେଉଁ ସ୍ଥାନମାନଙ୍କରେ ପରବର୍ତ୍ତୀ କାଳରେ ଶିବ, ଦୁର୍ଗା, ବିଷ୍ଣୁ, ବୌଦ୍ଧ, ନୃସିଂହ ଇତ୍ୟାଦି ଦେବଦେବୀଙ୍କର ପୂଜାର କେନ୍ଦ୍ରସ୍ଥଳୀମାନ ଗଢ଼ି ହୋଇଉଠିଥିଲା ସେ ସବୁ ସ୍ଥାନ ଗୁପ୍ତଯୁଗରେହିଁ ସେ ଯୁଗର ଧର୍ମସ୍ରୋତରେ ପ୍ରଥମେ ଭାସମାନ ହୋଇଥିଲେ ଏବଂ ପରବର୍ତ୍ତୀ-କାଳରେ ପ୍ରସିଦ୍ଧ ଧର୍ମପୀଠମାନଙ୍କରେ ପରିଣତ ହୋଇଥିଲେ । ଏ ସବୁ ସ୍ଥାନ-ମାନଙ୍କରୁ ଅନେକେ ଆଜି ବିସ୍ମୃତିଗର୍ଭେ । ଜାଜପୁର ଏବଂ ଭୁବନେଶ୍ୱର ଉଭୟସ୍ଥଳ କେଶରୀ ସମ୍ରାଟମାନଙ୍କ ଅମଳରେ ପ୍ରସିଦ୍ଧ ଶୈବ କେନ୍ଦ୍ରରେ ପରିଣତ ହୋଇଥିଲେ ଏବଂ କେଶରୀ ସମ୍ରାଟମାନଙ୍କର ପୃଷ୍ଠପୋଷକତାରେ ସେହି ଦୁଇ ସ୍ଥାନରେ ଶତ ଶତ ଶୈଳମନ୍ଦିର ଓ ସହସ୍ର ସହସ୍ର ଶୈବ ମୂର୍ତ୍ତି ନିର୍ମିତ ହୋଇଥିଲା । କିନ୍ତୁ ଏ ଦୁଇ ଶୈବ କେନ୍ଦ୍ରକୁ ଶୈବଧର୍ମର ସ୍ରୋତ ମାଡ଼ି ଆସିଥିଲା ପ୍ରଥମେ ସେହି ଗୁପ୍ତଯୁଗରେ ଯେତେବେଳେ ଦେଶବ୍ୟାପୀ ଗୃହ୍ୟଆଡ଼ ଶୈବ ଓ ବୈଷ୍ଣବ ମତବାଦ

ଦ୍ୱୟର ପ୍ରଚଳନ ହେଲା ଏବଂ ସେ ଦୁଇ ମତବାଦକୁ କେନ୍ଦ୍ରକରି ଶତ ଶତ ମନ୍ଦିର ଓ ମୂର୍ତ୍ତି ଗଠିତ ହେବାକୁ ଲାଗିଲା । ଗୁପ୍ତଯୁଗରେ ଯେଉଁ ଅସଂଖ୍ୟ ନୂତନ ଦେବଦେବୀଙ୍କର କଳ୍ପନା କରାଯାଇଥିଲା ସେମାନଙ୍କର ପ୍ରତିମୂର୍ତ୍ତି ପ୍ରସ୍ତରମାନଙ୍କରେ ସୁନ୍ଦର ଶିଳ୍ପକଳାରେ ରୂପାନ୍ତରିତ କରାହୋଇ ଭାରତର ସବୁସ୍ଥାନ ପରି ଉତ୍କଳ-ଖଣ୍ଡରେ ମଧ୍ୟ ପ୍ରକଟିତ ହୋଇଥିଲେ । ଗୁପ୍ତଯୁଗର ପ୍ରେରଣା ଭାରତର ଅନ୍ୟାନ୍ୟ ଅଞ୍ଚଳ ଅପେକ୍ଷା ଉତ୍କଳଖଣ୍ଡରେ ଅଧିକ ମାତ୍ରାରେ କାର୍ଯ୍ୟକାରୀ ହୋଇଥିଲା । କାରଣ ଗୁପ୍ତଯୁଗ ପରେ ଉତ୍ତରଭାରତ ଉପରକୁ ହୂନ୍ ଓ ଶକ ଇତ୍ୟାଦି ବୈଦେଶିକ-ମାନଙ୍କର ଆକ୍ରମଣ ମାଡ଼ ଆସିବା ଦ୍ୱାରା ଧର୍ମ ଜାଗରଣ ଅଧିକ ମାତ୍ରାରେ ଅଗ୍ରଗତି ହୋଇ ପାରି ନ ଥିଲା କିମ୍ବା ଧର୍ମଜାଗରଣ ଆଗେଇ ଚାଲିଲେ ସୁଦ୍ଧା ଶିଳ୍ପକଳାର ସୃଷ୍ଟି ଅଧିକ ମାତ୍ରାରେ ହୋଇ ପାରି ନ ଥିଲା । କିନ୍ତୁ ବୈଦେଶିକ ଆକ୍ରମଣ ପାଖରୁ ବହୁଦୂରରେ ରହିବା ଦ୍ୱାରା ଉତ୍କଳଖଣ୍ଡ ଧର୍ମ ଓ ଶିଳ୍ପକଳା ଉଭୟ କ୍ଷେତ୍ରରେ ଆଶ୍ଚର୍ଯ୍ୟପ୍ରଦ ଅଗ୍ରଗତି କରିପାରିଥିଲା । ଗୁପ୍ତଯୁଗ ପରେ ପରେ ଉତ୍କଳରେ କେଶରୀ ସମ୍ରାଟମାନେ ଏବଂ କେଶରୀମାନଙ୍କ ପରେ ଗଙ୍ଗ ସମ୍ରାଟମାନେ ଯେଉଁ ଅଭିନବ ପୃଷ୍ଠପୋଷକତା ଦ୍ୱାରା ଯଥାକ୍ରମେ ଶୈବ ଓ ବୈଷ୍ଣବ ମତବାଦର ପ୍ରଚାର କରି ଅଗଣିତ ମନ୍ଦିର ସୃଷ୍ଟି କରି ପାରିଥିଲେ ତାହାର ମୂଳରେ ଗୁପ୍ତଯୁଗର ଅପୂର୍ବ ଜାଗରଣ ନିଶ୍ଚୟ ରହିଛି । ସେଥିପାଇଁ ଉତ୍କଳୀୟ ଧର୍ମ ଓ ସଭ୍ୟତାର ଇତିହାସକୁ ଗୁପ୍ତଯୁଗର ଦାନ ମହାର୍ଘ ।

ଯେଉଁ ଯୁଗ ଭାରତୀୟ ଜାତୀୟ ଇତିହାସରେ ସୁବର୍ଣ୍ଣଯୁଗ ନାମରେ ବିଖ୍ୟାତ ସେ ଯୁଗର ସେହି ବହୁମୁଖୀ ସଭ୍ୟତାର ପରିଚୟ ଦେବା ପ୍ରାୟ ଅସମ୍ଭବ । ହିନ୍ଦୁ ସଭ୍ୟତାର ବହୁ ଶ୍ରେଷ୍ଠ ସମ୍ପଦ ଗୁପ୍ତଯୁଗରେ ସୃଷ୍ଟି ; ଏବଂ ସେହି ମହାନ୍ ଯୁଗରେ ଉତ୍କଳୀୟ ଧର୍ମ ଓ ସଭ୍ୟତା ମଧ୍ୟ ସେମାନଙ୍କର ବହୁ ଅଂଶ ସୃଷ୍ଟି କରି ନେଇଛନ୍ତି ।



# ଶ୍ରୀହର୍ଷ ଓ ହୁଏନ୍ ସାଂ

ଗୁପ୍ତ ରାଜତ୍ୱର ଅବସାନ ପରେ ପୁନର୍ବାର ଭାରତ ଉପରକୁ ରାଜନୈତିକ ବିପଦମାନ ଘନେଇ ଆସିଥିଲା । ଷଷ୍ଠ ଶତାବ୍ଦୀର ମଧ୍ୟ ଭାଗକୁ ବିଶାଳ ଗୁପ୍ତସାମ୍ରାଜ୍ୟ ଯାଯାବର ହୁନ୍‌ମାନଙ୍କ ଆକ୍ରମଣ ଫଳରେ ଖଣ୍ଡବିଖଣ୍ଡ ହୋଇଯାଇଥିଲା । ରାଷ୍ଟ୍ରୀୟ ଐକ୍ୟ ବିନା ଏବଂ ବୈଦେଶିକ ଆକ୍ରମଣ ହେତୁ ଭାରତ ଉପରେ ବିଶୃଙ୍ଖଳା ଏବଂ ଅଶାନ୍ତିର ଝଞ୍ଜା ତୁମୁଳ ବେଗରେ ବହିବାକୁ ଆରମ୍ଭ କରିଥିଲା । ଭାରତର ଏହି ଦୁର୍ଦ୍ଦିନରେ ପୁନର୍ବାର ଭାରତ ପୃଷ୍ଠରେ ଏକ ଦିଗ୍‌ବିଜୟୀ ମହାବୀର ଜନ୍ମଗ୍ରହଣ କରିଥିଲେ ଏବଂ ନବୀନ ଉତ୍ତର ଭାରତରେ ରାଜନୈତିକ ଐକ୍ୟ ସଂସ୍ଥାପନ କରିଥିଲେ । ଏହି ମହାବୀର ହେଉଛନ୍ତି ସମ୍ରାଟ ହର୍ଷବର୍ଦ୍ଧନ ଶିଳାଦିତ୍ୟ । ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ପ୍ରଥମାର୍ଦ୍ଧ ଭାରତ ଇତିହାସରେ ହର୍ଷଯୁଗ ନାମରେ ଖ୍ୟାତ । ହର୍ଷବର୍ଦ୍ଧନ ଖ୍ରୀ: ଅ: ୬୦୬ ଠାରୁ ଖ୍ରୀ: ଅ: ୬୪୭ ପର୍ଯ୍ୟନ୍ତ ଦୀର୍ଘ ଚାଳିଶ ବର୍ଷକାଳ କନୌଜ ଏବଂ ଥାନେଶ୍ୱରକୁ କେନ୍ଦ୍ରକରି ସାମ୍ରାଜ୍ୟ ଶାସନ କରିଥିଲେ । ଏହି ସମୟ ମଧ୍ୟରେ ପ୍ରାୟ ସମଗ୍ର ଉତ୍ତରଭାରତ ତାହାଙ୍କର ପଦାନତ ହୋଇଥିଲା । ଦକ୍ଷିଣରେ ବିନ୍ଧ୍ୟାଚଳ ପର୍ଯ୍ୟନ୍ତ ରାଜ୍ୟବିସ୍ତାର କରିସାରିଲା ପରେ ହର୍ଷ ନର୍ମଦା ଅତିକ୍ରମପୂର୍ବକ ଦାକ୍ଷିଣାତ୍ୟ ଅଧିକାର ପାଇଁ ଚେଷ୍ଟା କରିଥିଲେ । କିନ୍ତୁ ଦାକ୍ଷିଣାତ୍ୟର ପରାକ୍ରାନ୍ତ ଚାଲୁକ୍ୟରାଜ ଦ୍ୱିତୀୟ ପୁଲକେଶୀଙ୍କର ବିଶାଳ ସୈନ୍ୟଶକ୍ତି ହର୍ଷଙ୍କ ଦାକ୍ଷିଣାତ୍ୟ ଅଭିଯାନ ପଥରେ ବାଧା ସୃଷ୍ଟି କରିଥିଲା । ଫଳରେ କାଶ୍ମୀର ଠାରୁ ଆସାମ ପର୍ଯ୍ୟନ୍ତ ଏବଂ ହିମାଳୟ ପାଦରୁ ବିନ୍ଧ୍ୟ ପର୍ଯ୍ୟନ୍ତ ଏହି ବିସ୍ତୀର୍ଣ୍ଣ ଭୂଖଣ୍ଡ ହର୍ଷଙ୍କ ସାମ୍ରାଜ୍ୟ ରୂପେ ପରିଗଣିତ ହୋଇଥିଲା । ହର୍ଷଙ୍କ ଏହି ସାମ୍ରାଜ୍ୟ ହେଉଛି ଭାରତ ଇତିହାସର ହିନ୍ଦୁଯୁଗରେ ଶେଷ ବିରାଟ ହିନ୍ଦୁ ସାମ୍ରାଜ୍ୟ । ଭାରତ ଇତିହାସରେ କେବଳ ଏହି ରାଷ୍ଟ୍ରୀୟ ଐକ୍ୟ ପ୍ରତିଷ୍ଠା କରିଥିବା ଯୋଗୁଁ ହର୍ଷଯୁଗ ତାର ପ୍ରସିଦ୍ଧ ନୁହେଁ, ଭାରତର ସାଂସ୍କୃତିକ ଐକ୍ୟ ପାଇଁ ମଧ୍ୟ ଏହି ଯୁଗ ଇତିହାସର ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟ । ପ୍ରାଚୀନ ଭାରତୀୟ ସଭ୍ୟତାର ପୂର୍ଣ୍ଣ ବିକଶିତ ହୋଇଥିଲା ଏହି ଅର୍ଦ୍ଧଶତାବ୍ଦୀବ୍ୟାପୀ

ହର୍ଷଯୁଗ ମଧ୍ୟରେ । ଐତିହାସିକ ହ୍ୟାଭେଲଙ୍କ ଭାଷାରେ, "ପୃଥିବୀ ଇତିହାସର କୌଣସି ସଭ୍ୟତା ତା'ର ଚରମ ଉତ୍କର୍ଷତା ଲାଭକରି ପାରିଛି ବୋଲି କୁହାଯାଇ ପାରିବ ନାହିଁ, କିନ୍ତୁ ଏ କଥା ସତ୍ୟ ଯେ ସଂସ୍କୃତ ଦୃଷ୍ଟିରୁ ବିଚାର କଲେ ସପ୍ତମ ଶତାବ୍ଦୀର ଭାରତୀୟ ସଭ୍ୟତା ଯେଉଁ ଶୀର୍ଷ ସୀମା ସ୍ପର୍ଶ କରିଥିଲା ସେ ସୀମା ଅତିକ୍ରମ କରିବାକୁ ଅତୀତ କିମ୍ବା ଆଧୁନିକ ସମୟର ଅପର କୌଣସି ସଭ୍ୟତା ସମର୍ଥ ହୋଇ ନାହିଁ ।"[1]

ହର୍ଷଯୁଗରେ ଉତ୍କଳୀୟ ଧର୍ମ ଓ ସଭ୍ୟତାର ଅବସ୍ଥା କିପରି ଥିଲା ତାହା ଉତ୍କଳ ଇତିହାସରେ ଅତିଶୟ ଉଜ୍ଜ୍ୱଳ । ଶ୍ରୀହର୍ଷ ସ୍ୱୟଂ କଳିଙ୍ଗକୁ ଆସିଥିଲେ, କଳିଙ୍ଗର ମଧ୍ୟାଞ୍ଚଳ କଙ୍ଗୋଦ ଉପରେ ନିଜର ରାଜନୈତିକ ପ୍ରଭାବ ବିସ୍ତାର କରିଥିଲେ ଏବଂ କଳିଙ୍ଗର ତତ୍କାଳୀନ ଧର୍ମକ୍ଷେତ୍ରରେ ଏକ ପରିବର୍ତ୍ତନ ସୃଷ୍ଟି କରିବାକୁ ଚେଷ୍ଟା କରିଥିଲେ । ହର୍ଷଙ୍କର ବିଖ୍ୟାତ ବନ୍ଧୁ ଚୀନ ପରିବ୍ରାଜକ ହୁଏନ୍‌ସାଂ କଳିଙ୍ଗ ଭ୍ରମଣ କରିଥିଲେ ଏବଂ କଳିଙ୍ଗର ଧର୍ମ ଓ ସଭ୍ୟତାର ବିବରଣୀ ତାହାଙ୍କର ଭ୍ରମଣକାହାଣୀ ଅଙ୍ଗରେ ପରିଷ୍କାରଭାବେ ବର୍ଣ୍ଣନା କରିଯାଇଥିଲେ । ହର୍ଷଯୁଗର ଶ୍ରୀ ଓ ସଭ୍ୟତା ଉପରେ ହୁଏନ୍‌ସାଂଙ୍କ ଲେଖନୀ ହେଉଛି ଅମର ସାକ୍ଷୀ । ଯେଉଁ ଯୁଗରେ ହିନ୍ଦୁସଭ୍ୟତା ଏତେ ଊର୍ଦ୍ଧ୍ୱରେ ପହଞ୍ଚିଥିଲା ସେହି ଯୁଗରେ କଳିଙ୍ଗର ସଭ୍ୟତା ମଧ୍ୟ କେତେ ଉନ୍ନତ ଥିଲା ତାହା ହୁଏନ୍‌ସାଂଙ୍କ ଭ୍ରମଣ ବୃତ୍ତାନ୍ତ ତଥା ଅନ୍ୟାନ୍ୟ ଐତିହାସିକ ଉପାଦାନରୁ ଯଥେଷ୍ଟରୂପେ ଜାଣିବାକୁ ମିଳେ । ସେ ଯୁଗର ଧର୍ମ ଓ ସଭ୍ୟତା ସମ୍ବନ୍ଧରେ ଆଲୋଚନା କରିବା ପୂର୍ବରୁ ପ୍ରଥମେ ସେ ଯୁଗର କଳିଙ୍ଗର ରାଜନୈତିକ ଅବସ୍ଥାପ୍ରତି ଅତି ସଂକ୍ଷେପ ଦୃଷ୍ଟିପାତ କରିବା ଉଚିତ । ଗୁପ୍ତଯୁଗରେ କଳିଙ୍ଗକୁ ବହୁଖଣ୍ଡରେ ବିଭକ୍ତ ରହିଥିବାର ଦେଖାଯାଇଛି । ସମୁଦ୍ରଗୁପ୍ତଙ୍କର କଳିଙ୍ଗ ଆକ୍ରମଣ କାଳରେ କେବଳ ସେ ଦେଶର ଦକ୍ଷିଣ ପଶ୍ଚିମାଞ୍ଚଳରେ କୋଶଳ, ମହାକାନ୍ତାର, କୌରାଳ, ପିଷ୍ଟପୁର, ଏରଣ୍ଡପଲ୍ଲୀ, ଗିରିକୋଟ୍ଟୁର, ଦେବରାଷ୍ଟ୍ର, ଆଭ୍ରମୁକ୍ତ ପ୍ରଭୃତି ସ୍ୱାଧୀନ ରାଜ୍ୟମାନଙ୍କର ଅବସ୍ଥିତି ଦେଖିବାକୁ ମିଳିଥିଲା । କାଳକ୍ରମେ ବହୁଧା ବିଭକ୍ତ କଳିଙ୍ଗ ପୁନର୍ବାର ଏକତ୍ରିତ ହେବା ପାଇଁ ବସିଥିଲା । ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ପ୍ରଥମଭାଗରେ ଅର୍ଥାତ୍ ହର୍ଷ-ହୁଏନ୍‌ସାଂଙ୍କ ଅମଳରେ ଆଗଙ୍ଗା-ଗୋଦାବରୀ ବିସ୍ତୃତ ବିଶାଳ କଳିଙ୍ଗ ଦେଶକୁ ମାତ୍ର ତିନି ଭାଗରେ ବିଭକ୍ତ

1. Aryan Rule in India--Havell---p. 208

ରହିଥିବାର ଦେଖାଯାଇଥିଲା, ଯଥା, ଓଡ୍ର, କଙ୍ଗୋଦ ଏବଂ କଳିଙ୍ଗ । ଗଙ୍ଗା ପାଖରୁ ଗୋଦାବରୀ ପର୍ଯ୍ୟନ୍ତ କଳିଙ୍ଗର ପ୍ରାକୃତିକ ସୀମା ମଧ୍ୟରେ ହୁଏନ୍‌ସାଂ ଏହି ତିନୋଟି ସ୍ୱାଧୀନ ରାଜ୍ୟର ଅବସ୍ଥିତି ଦେଖି ପାରିଥିଲେ । କଳିଙ୍ଗର ଉତ୍ତର ପଶ୍ଚିମାଞ୍ଚଳରେ ଅବସ୍ଥିତ ଯେଉଁ ଅଂଶ ଟିକିକ ରହିଯାଇଥିଲା, ସେ ଅଂଶ ଏବଂ ଆଧୁନିକ ମଧ୍ୟପ୍ରଦେଶର ଏକ ବୃହତ୍ ଅଂଶ ସେ କାଳରେ କୋଶଳ ନାମରେ ପରିଚିତ ହେଉଥିଲା । ହୁଏନ୍‌ସାଂଙ୍କ ବର୍ଣ୍ଣନାରୁ ଓଡ୍ର, କଙ୍ଗୋଦ, ଏବଂ କଳିଙ୍ଗର ଅବସ୍ଥିତି ଏବଂ ଭୌଗଳିକ ବିସ୍ତୃତି ନିର୍ଭୁଲଭାବେ ଜଣାପଡ଼େ । ତାହାଙ୍କ ବର୍ଣ୍ଣିତ ଓଡ୍ର ହେଉଛି କଳିଙ୍ଗର ଉତ୍ତରାଞ୍ଚଳ, ଅର୍ଥାତ୍ ଆଧୁନିକ ଉତ୍ତର ଓଡ଼ିଶା ଏବଂ ବଙ୍ଗ ଦେଶର ଖଣ୍ଡିଏ ଅଂଶ । ଗଙ୍ଗାନଦୀର ପଶ୍ଚିମରୁ ମେଦିନୀପୁର ସମେତ୍ ଚିଲିକା ହ୍ରଦ ପର୍ଯ୍ୟନ୍ତ ଏହି ଅଞ୍ଚଳ ହେଉଛି ହୁଏନ୍‌ସାଂଙ୍କ ଓଡ୍ର । ଓଡ୍ର ପରେ ହୁଏନ୍‌ସାଂ କଙ୍ଗୋଦ ବା କନ୍ୟୋଧ ରାଜ୍ୟରେ ପ୍ରବେଶ କରିଥିଲେ । ଚିଲିକା ପାଖରୁ ଗଞ୍ଜାମ ଅଞ୍ଚଳର ଶେଷ ସୀମା ପର୍ଯ୍ୟନ୍ତ ଭୂଭାଗକୁ ସେତେବେଳେ କଙ୍ଗୋଦ ନାମରେ ଆଖ୍ୟାତ କରାଯାଉଥିଲା । କଙ୍ଗୋଦ ପରେ ଆସିଲା କଳିଙ୍ଗ । ହୁଏନ୍‌ସାଂଙ୍କ ସମୟରେ ବିଶାଳ କଳିଙ୍ଗର କେବଳ ଦକ୍ଷିଣାଞ୍ଚଳକୁ କଳିଙ୍ଗ ବୋଲି ବୁଝାଯାଉଥିଲା । ଅର୍ଥାତ୍ ଏହି କଳିଙ୍ଗର ରାଜନୈତିକ ସୀମା ଥିଲା ଗଞ୍ଜାମ ଦେଶରୁ ଗୋଦାବରୀ ନଦୀ ପର୍ଯ୍ୟନ୍ତ । ଓଡ୍ର, କଙ୍ଗୋଦ ଏବଂ କଳିଙ୍ଗର ଭୌଗଳିକ ଅବସ୍ଥିତି ସମ୍ବନ୍ଧରେ ଚୀନ ପରିବ୍ରାଜକ ବର୍ଣ୍ଣନା କରିଯାଇଛନ୍ତି, ମାତ୍ର ରାଜନୈତିକ ଅବସ୍ଥା ସମ୍ବନ୍ଧରେ କିଛି କହି ନାହାନ୍ତି । କିନ୍ତୁ ଅନ୍ୟ ଐତିହାସିକ ଉପାଦାନରୁ ହର୍ଷଯୁଗରେ ଏ ତିନି ରାଜ୍ୟର ରାଜନୈତିକ ଅବସ୍ଥା କିପରି ଥିଲା ତାହା ଜଣାଯାଏ । ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ପୂର୍ବରୁ ଏହି ତିନି ରାଜ୍ୟରେ ତିନି ଇତିହାସ ବିଖ୍ୟାତ ରାଜବଂଶ ରାଜତ୍ୱ କରୁଥିବାର ଦେଖାଯାଏ । ଉତ୍ତର ଭାରତରେ ଯେତେବେଳେ ସମ୍ରାଟ ହର୍ଷବର୍ଦ୍ଧନଙ୍କ ରାଜତ୍ୱକାଳ ସେତେବେଳେ ଓଡ୍ରଖଣ୍ଡ ବା ଉତ୍ତର ଓଡ଼ିଶାରେ ଭୌମବଂଶର ରାଜତ୍ୱ । ଓଡ଼ିଶା ଇତିହାସରେ ଯେତେସବୁ ବିଖ୍ୟାତ ରାଜବଂଶ ରାଜତ୍ୱ କରିଯାଇଛନ୍ତି ସେମାନଙ୍କ ମଧ୍ୟରେ ଭୌମବଂଶ ଅନ୍ୟତମ । ଷଷ୍ଠ ଶତାବ୍ଦୀର ଶେଷଭାଗରୁ ଏହି ରାଜବଂଶ ଓଡ଼ିଶା ଖଣ୍ଡରେ ପ୍ରସିଦ୍ଧି ଲାଭ କରିଥିଲା ଏବଂ ଓଡ଼ିଶାର ଶିକ୍ଷା, ସଭ୍ୟତା ଓ ଧର୍ମର ଉନ୍ନତି ଦିଗରେ ଯତ୍ନବାନ ହୋଇଥିଲା । ଭୌମବଂଶ ଓଡ଼ିଶା ଇତିହାସରେ କରବଂଶ ନାମରେ ମଧ୍ୟ ଖ୍ୟାତ । ଏହି ବଂଶର ଅମର କୀର୍ତ୍ତି ହେଉଛି ସୁଦୂର ଚୀନ ସାମ୍ରାଜ୍ୟ ସହ ସାଂସ୍କୃତିକ ସମ୍ବନ୍ଧ ସ୍ଥାପନ ଏବଂ ଉତ୍କଳର ବିଖ୍ୟାତ ବୌଦ୍ଧପୀଠ-

ମାନଙ୍କରେ ଶିକ୍ଷା ଓ ସ୍ଥାପତ୍ୟର ସମୃଦ୍ଧ ଉନ୍ନତି ପାଇଁ ଚେଷ୍ଟା । ଏ ବିଷୟରେ ଅଳ୍ପ-ସମୟ ପରେ ଆଲୋଚନା କରିବୁଁ । ଓଡ୍ର ପରେ କଙ୍ଗୋଦ । ଓଡ୍ର ବା ଉତ୍କଳ ଖଣ୍ଡରେ ଯେତେବେଳେ ଭୌମ ରାଜତ୍ୱ ସେତେବେଳେ କଙ୍ଗୋଦ ମଣ୍ଡଳରେ ଶୈଳୋଦ୍ଭବ ବଂଶର ରାଜତ୍ୱକାଳ । ଏ ବଂଶର କୃତିତ୍ୱ ସମ୍ବନ୍ଧରେ କଳିଙ୍ଗ ଇତିହାସ ମୂକପ୍ରାୟ । କାରଣ ଏହି ବିଖ୍ୟାତ ବଂଶର ଏକ ଅଂଶ ସୁଦୂର ସୁବର୍ଣ୍ଣଦ୍ୱୀପ ବା ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ ପ୍ରଭୃତି ଦ୍ୱୀପପୁଞ୍ଜମାନଙ୍କ ଉପରେ ବିଶାଳ ଶୈଳେନ୍ଦ୍ର ସାମ୍ରାଜ୍ୟ ସ୍ଥାପନ କରିଥିଲା । କଙ୍ଗୋଦ ପରେ କଳିଙ୍ଗ । କଳିଙ୍ଗରେ ଏହି କାଳରେ ପ୍ରାଚ୍ୟ ଗଙ୍ଗାବଂଶର ରାଜତ୍ୱ । ଦୂର ଭବିଷ୍ୟତରେ ଦିନେ ସୁଯୋଗ ଆସିଥିଲା ଯେତେବେଳେ ଏହି ଗଙ୍ଗ ବଂଶର ସମ୍ରାଟମାନେ ଓଡ୍ର, କଙ୍ଗୋଦ ଏବଂ କଳିଙ୍ଗକୁ ଏକତ୍ରିତ କରି ପୁନର୍ବାର ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ସୁବିସ୍ତୃତ ଭୂଖଣ୍ଡ ଉପରେ ରାଜନୈତିକ ଐକ୍ୟ ସ୍ଥାପନପୂର୍ବକ ବିଶାଳ ଗଙ୍ଗ ସାମ୍ରାଜ୍ୟ ନିର୍ମାଣ କରିଥିଲେ ଏବଂ ଉତ୍କଳ ଇତିହାସରେ ଏକ ଅଭିନବ ଅଧ୍ୟାୟ ସୃଷ୍ଟି କରିଥିଲେ । ଏହି ସମୟରେ କଳିଙ୍ଗର କୋଣେ ଅଞ୍ଚଳରେ ସୋମବଂଶ ନାମକ ଏକ ରାଜବଂଶ ରାଜତ୍ୱ କରୁଥିଲେ । ଦିନ ଆସିଥିଲା ଯେତେବେଳେ ଏହି ବଂଶର ବଂଶଧରମାନେ ଉତ୍କଳ ଖଣ୍ଡରେ ଏକ ଶକ୍ତିଶାଳୀ ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ ଏବଂ ସ୍ୱବଂଶକୁ କେଶରୀବଂଶ ନାମରେ ଇତିହାସ ପ୍ରସିଦ୍ଧ କରାଇ ଉତ୍କଳର ସହସ୍ର ପ୍ରାନ୍ତରେ ଉତ୍କଳୀୟ ସ୍ଥାପତ୍ୟର ଶତ ଶତ ନିଦର୍ଶନ ସୃଷ୍ଟି କରିଯାଇଥିଲେ । ଏହିପରି ଭାବରେ ଭାରତ ଇତିହାସରେ ହର୍ଷଶିଳାଦିତ୍ୟଙ୍କ ସମୟ ବେଳକୁ କଳିଙ୍ଗର ବିଭିନ୍ନ ସ୍ଥାନରେ ଶକ୍ତିଶାଳୀ ରାଜବଂଶମାନଙ୍କର ରାଜତ୍ୱ ଚାଲିଥାଏ ଏବଂ ଏହି ରାଜବଂଶ-ମାନଙ୍କର ପୃଷ୍ଠପୋଷକତାରେ କଳିଙ୍ଗର ଶିକ୍ଷା ଓ ସଭ୍ୟତା ସମସାମୟିକ ଭାରତୀୟ ସଭ୍ୟତା ସହ ସମାନ ପଦକ୍ଷେପରେ ଉନ୍ନତି ପଥରେ ଅଗ୍ରସର ହେଉଥାଏ । ଏହି-ଠାରେ ଗୋଟିଏ ବିଷୟ ବିଶେଷଭାବେ ଉଲ୍ଲେଖଯୋଗ୍ୟ । ହର୍ଷଯୁଗର ଅବସାନ ପରେ ସମଗ୍ର ଉତ୍ତର ଭାରତ ରାଜନୈତିକ ଦୁର୍ଦ୍ଦିନର ଘୋର ତମସା ମଧ୍ୟରେ ବୁଡ଼ି ରହିଲା । ଅସଂଖ୍ୟ ରାଜ୍ୟଖଣ୍ଡରେ ବିଭକ୍ତ ହୋଇ ଉତ୍ତରାପଥ ରାଷ୍ଟ୍ରୀୟ ଐକ୍ୟ ହରାଇବା ସଙ୍ଗେ ସଙ୍ଗେ ସାଂସ୍କୃତିକ ଐକ୍ୟ ମଧ୍ୟ ମ୍ଳାନ କରି ବସିଲା । ହର୍ଷଙ୍କ ପରେ ଅନ୍ୟ କେହି ହିନ୍ଦୁ ମହାବୀର ଜନ୍ମ ହେଲେ ନାହିଁ ଯାହାଙ୍କର ଶାସନଦଣ୍ଡ ତଳେ ଭାରତୀୟ ଐକ୍ୟ ଓ ସଭ୍ୟତା ଅସ୍ତିତ୍ୱ ଲାଭ କରି ଥାଆନ୍ତା । ହର୍ଷଙ୍କ ମୃତ୍ୟୁ ପରେ ଶତ ଶତ ବର୍ଷ ଯାବତ ଉତ୍ତର ଭାରତ ଖଣ୍ଡବିଖଣ୍ଡିତ ଅବସ୍ଥାରେ

ପଡ଼ିରହିଲା । ଫଳରେ ଦିନ ଆସିଲା ଯେତେବେଳେ ଏହି ଧ୍ୱସ୍ତ ବିଧ୍ୱସ୍ତ ଭାରତ ବକ୍ଷରେ ନିର୍ମିତ ହେଲା ବିଦେଶୀୟ ମୁସ୍‌ଲିମ୍ ସାମ୍ରାଜ୍ୟ । ରାଜନୈତିକ ଆକାଶରେ ଏହି ଘନଘଟା ବେଳେ ଭାରତୀୟ ସଭ୍ୟତା ବିବ୍ରତ ହୋଇ ପଡ଼ିଥିଲା । ଉତ୍ତର ଭାରତରେ ଯେତେବେଳେ ଏହି ଅବସ୍ଥା ସେତେବେଳେ କଳିଙ୍ଗ ଖଣ୍ଡରେ ପ୍ରଥମେ କେଶରୀ ବଂଶ ଏବଂ ତାପରେ ଗଙ୍ଗାବଂଶର ରାଜତ୍ୱକାଳ । ଏହି ଦୁଇ ରାଜବଂଶର ରାଜତ୍ୱ-କାଳରେ ଭାରତୀୟ ଧର୍ମ ଓ ସଭ୍ୟତାର ବିକଶିତ ସୌନ୍ଦର୍ଯ୍ୟ ଦେଖିବାକୁ ମିଳିଥିଲା ଶକ୍ତିଶାଳୀ କଳିଙ୍ଗ ଦେଶରେ । ମଧ୍ୟଯୁଗର ଭାରତ ଇତିହାସରେ କଳିଙ୍ଗ ଥିଲା ଏକ ସମୃଦ୍ଧିଶାଳୀ ରାଜ୍ୟ ଏବଂ ସେହି ସମୃଦ୍ଧିର ଆୟୁମାରମ୍ଭ ଦେଖିବାକୁ ମିଳିଥିଲା ହର୍ଷଯୁଗରେ ।

ହର୍ଷଯୁଗରେ ଭାରତୀୟ ଧର୍ମର ଅବସ୍ଥା କ'ଣ ଥିଲା ତାହା ହୁଏନ୍‌ସାଂ ପରିଷ୍କାର ରୂପେ ଅଙ୍କିତ କରିଯାଇଛନ୍ତି । ଭାରତ ବକ୍ଷରେ ଯେତେ ପରିବ୍ରାଜକ ଭ୍ରମଣ କରି ଯାଇଛନ୍ତି ସେମାନଙ୍କ ମଧ୍ୟରେ ହୁଏନ୍‌ସାଂ ହେଉଛନ୍ତି ସର୍ବଶ୍ରେଷ୍ଠ । ଅନ୍ୟ କୌଣସି ପରିବ୍ରାଜକ ଏହାଙ୍କ ପରି ଭାରତର ଆପାଦମସ୍ତକ ପରିଭ୍ରମଣ କରି ନାହାନ୍ତି କିମ୍ବା ଏପରି ବିଚକ୍ଷଣଭାବରେ ଆଧ୍ୟାତ୍ମିକ, ସାମାଜିକ ଏବଂ ସାଂସ୍କୃତିକ ଜୀବନ ଉପରେ ଗବେଷଣା କରି ନାହାନ୍ତି । ତାହାଙ୍କର ଅମର ଗ୍ରନ୍ଥ ସି-ୟୁ-କି ଭାରତୀୟ ସଭ୍ୟତାର ଇତିହାସକୁ ଏକ ନିର୍ଭୁଲ ଅଧ୍ୟାୟ ଦାନ କରିଛି । ହୁଏନ୍‌ସାଂଙ୍କ ଜନ୍ମ ସୁଦୂର ଚୀନ ସାମ୍ରାଜ୍ୟର ଚୀନ୍‌ଲିଉ ନାମକ ପ୍ରଦେଶରେ । ତାହାଙ୍କର ପୂର୍ବପୁରୁଷମାନଙ୍କ ମଧ୍ୟରୁ କେହି କେହି ଉଚ୍ଚ ରାଜକର୍ମଚାରୀ ରୂପେ ସ୍ୱଦେଶରେ ସମ୍ମାନ ଲାଭ କରିଥିଲେ । ତାହାଙ୍କ ପିତାମହ ଥିଲେ ଚୀନ ଦେଶର ଜଣେ ଅତି ବଡ଼ ପଣ୍ଡିତ ଏବଂ ତାହାଙ୍କ ପାଣ୍ଡିତ୍ୟ ପାଇଁ ସେ ପେକିନ୍ ବିଶ୍ୱବିଦ୍ୟାଳୟର ଅଧ୍ୟକ୍ଷ ପଦରେ ନିଯୁକ୍ତ ଲାଭ କରିଥିଲେ । ହୁଏନ୍‌ସାଂଙ୍କ ପିତା ମଧ୍ୟ ଜଣେ ଅସାଧାରଣ ପଣ୍ଡିତ ଥିଲେ । ଏପରି ଏକ ସମ୍ଭ୍ରାନ୍ତ ଏବଂ ଶିକ୍ଷିତ ପରିବାରରେ ଜନ୍ମଗ୍ରହଣ କରି ଭବିଷ୍ୟ ଜୀବନରେ ହୁଏନ୍‌ସାଂ ଚୀନ ସଂସ୍କୃତିର ଏକ ଉଜ୍ଜ୍ୱଳ ପ୍ରତିନିଧି ରୂପେ ନିଜକୁ ପରିଚୟ ଦେଇ ପାରିଥିଲେ । ବାଲ୍ୟକାଳରୁ ହୁଏନ୍‌ସାଂ ଥିଲେ ଅତ୍ୟଧିକ ଧର୍ମପରାୟଣ ଏବଂ ଚୀନ ଦେଶର ପ୍ରାଚୀନ ମନୀଷିମାନଙ୍କର ଧର୍ମଗ୍ରନ୍ଥମାନ ଥିଲା ତାହାଙ୍କ ଜୀବନରେ ସବୁଠାରୁ ଆଦରଣୀୟ ସାମଗ୍ରୀ । ହୁଏନ୍‌ସାଂଙ୍କ ଜନ୍ମ ବେଳକୁ ବହୁ ପୂର୍ବରୁ ବିଶାଳ ଚୀନ ସାମ୍ରାଜ୍ୟ ବୌଦ୍ଧଧର୍ମ ଦ୍ୱାରା ପ୍ଲାବିତ ହୋଇ ସାରିଥିଲା । ମହାଚୀନର ଦୈର୍ଘ୍ୟ ପ୍ରସ୍ଥରେ

ସହସ୍ର ସହସ୍ର ବୌଦ୍ଧମଠ ନିର୍ମିତ ହୋଇ ସାରିଥିଲା ଏବଂ ବୌଦ୍ଧ ଦର୍ଶନଧାରା ଚୀନ ଆଧ୍ୟାତ୍ମିକ ଜୀବନକୁ ପୂର୍ଣ୍ଣ ମାତ୍ରାରେ ଅଧିକାର କରିନେଇଥିଲା । ହୁଏନ୍‌ସାଂଙ୍କ କୈଶୋରାବସ୍ଥାରେ ତାହାଙ୍କର ଭ୍ରାତା ଫିଂ ହୁନାମକ ବୌଦ୍ଧ ମଠରେ ଅବସ୍ଥାନ କରୁଥିଲେ ଏବଂ ସେହି ମଠରେ ହୁଏନ୍‌ସାଂ ବୌଦ୍ଧ ଦର୍ଶନ ଉପରେ ଶିକ୍ଷାଲାଭ କରିବା ପାଇଁ ସୁଯୋଗ ପାଇଥିଲେ । ଅଳ୍ପଦିନ ପରେ ତାହାଙ୍କର ଅଲୌକିକ ପ୍ରତିଭା ପାଇଁ ହୁଏନ୍‌ସାଂ ମଠର ଆଗ୍ରାର୍ଯ୍ୟ ପଦରେ ଅଧିଷ୍ଠିତ ହୋଇଥିଲେ । ଏହି ସମୟରୁ ସେ ସନ୍ୟାସ ଧର୍ମ ଗ୍ରହଣପୂର୍ବକ ବୌଦ୍ଧଗ୍ରନ୍ଥମାନଙ୍କ ଉପରେ ପ୍ରଗାଢ଼ ଅଧ୍ୟୟନ ଆରମ୍ଭ କରିଥିଲେ । ଅପେକ୍ଷାକୃତ ଅଳ୍ପ ସମୟ ମଧ୍ୟରେ ସେ ବହୁ ଜ୍ଞାନ ଅର୍ଜନ କରି ପାରିଥିଲେ, କିନ୍ତୁ ତାହାଙ୍କର ଜ୍ଞାନପିପାସା ଉତ୍ତରୋତ୍ତର ବୃଦ୍ଧିପ୍ରାପ୍ତ ହୋଇଥିଲା ଏବଂ ପରିଶେଷରେ ସେ ବୁଦ୍ଧଦେବଙ୍କ ଲୀଳାଭୂମି ଭାରତଖଣ୍ଡରେ ସେହି ଜ୍ଞାନପିପାସା ପରିତୃପ୍ତ କରିବା ପାଇଁ ଦୃଢ଼ ପରିକର ହୋଇ ଏ ଦେଶ ଅଭିମୁଖେ ଯାତ୍ରା ଆରମ୍ଭ କରିଥିଲେ । ଖ୍ରୀ: ଅ: ୬୨୯ରେ ହୁଏନ୍‌ସାଂ ମାତୃଭୂମି ଚୀନ ଦେଶରୁ ବିଦାୟ ଗ୍ରହଣ କରିଥିଲେ ଏବଂ ବିପଦସଙ୍କୁଳ ଦୀର୍ଘପଥରେ ବହୁବାଧା, ବହୁବିଘ୍ନ ସହ୍ୟ କରି ଏବଂ ବହୁସ୍ଥାନରେ ଜୀବନ ବିପନ୍ନ କରି ଶେଷରେ ଫରଗନା, ସମରକନ୍ଦ, ବୋଖାରା ଏବଂ ବଲ୍‌ଖ ଅତିକ୍ରମପୂର୍ବକ ଉତ୍ତର-ପଶ୍ଚିମ ସୀମାନ୍ତ ପଥରେ ଭାରତ ପ୍ରବେଶ କଲେ । ଏପରି ରୋମାଞ୍ଚକର ଏବଂ ଦୀର୍ଘଯାତ୍ରାର ଉଦାହରଣ ପୃଥିବୀ ଇତିହାସରେ ଅତି ବିରଳ ମାତ୍ରାରେ ଦେଖିବାକୁ ମିଳେ । ଭାରତ ମଧ୍ୟରେ ଦୀର୍ଘ ପଞ୍ଚଦଶ ବର୍ଷ ବ୍ୟାପୀ ଅକ୍ଳାନ୍ତ ପରିଶ୍ରମ ଦ୍ୱାରା ହୁଏନ୍‌ସାଂ ଭାରତୀୟ ଭାଷା ଏବଂ ଦର୍ଶନ ଉପରେ ମହାପାଣ୍ଡିତ୍ୟ ଲାଭ କରିବା ସଙ୍ଗେ ସଙ୍ଗେ କାଶ୍ମୀର ବକ୍ଷରୁ କୁମାରୀକା ପର୍ଯ୍ୟନ୍ତ ପୁଣ୍ୟଭୂମି ଭାରତର ଶତ ଶତ ଧର୍ମକ୍ଷେତ୍ର ଏବଂ ନଗରୀ ପରିଦର୍ଶନ ତଥା ସହସ୍ର ସହସ୍ର କ୍ରୋଶ ପରିଭ୍ରମଣ ଦ୍ୱାରା ନିଜର ମହାପିପାସା ପରିତୃପ୍ତ କରିଥିଲେ । ଉତ୍ତର ପଶ୍ଚିମ ସୀମାନ୍ତରେ ଭାରତ ପ୍ରବେଶ କରି ହୁଏନ୍‌ସାଂ କାଶ୍ମୀର ଯାତ୍ରା କରିଥଲେ ଏବଂ ସେଠାରୁ ସିଆଲ୍‌କୋଟ ଓ ଜଳନ୍ଧର ପଥରେ କନୌଜ ଆସିଥିଲେ । ତତ୍ପରେ ନେପାଳ ଅଭିମୁଖେ ଯାତ୍ରାକରି ସେଠାକାର ସମସ୍ତ ବୌଦ୍ଧପୀଠ ପରିଦର୍ଶନ କରିଥିଲେ ଏବଂ ତାପରେ ନୌକାଯୋଗେ ଗଙ୍ଗାନଦୀ ବକ୍ଷରେ ଯାତ୍ରାକରି ପ୍ରୟାଗ ଓ ବାରାଣସୀ ଦର୍ଶନ କରିଥିଲେ ଏବଂ ସେଠାରୁ ବୁଦ୍ଧଗୟା ପ୍ରସ୍ଥାନ କରିଥିଲେ । ନାଳନ୍ଦା ବିଶ୍ୱବିଦ୍ୟାଳୟଠାରେ ସେ ଦୁଇଥର ଦୀର୍ଘ ସମୟ ବ୍ୟାପୀ ଅଧ୍ୟୟନ କରିଥିଲେ । ଉତ୍ତରରୁ ବଙ୍ଗ ଓ ଆସାମ ଯାତ୍ରାକରି

ସେ ଅଞ୍ଚଳରୁ ଦକ୍ଷିଣାଭିମୁଖେ ଗତିକରି ଓଡ଼ିଶା ପ୍ରବେଶ କରିଥିଲେ ଏବଂ ଓଡ଼ିଶାରୁ ଦାକ୍ଷିଣାତ୍ୟ ଦେଶରେ ଯାତ୍ରାକରି କାଞ୍ଚି ଏବଂ ବଲ୍ଲଭୀ ଦର୍ଶନ କରି ମାଳବ ରାସ୍ତାରେ ମୁଲତାନ ଓ ସିନ୍ଧୁ ପ୍ରବେଶ କରିଥିଲେ ଏବଂ ସେଠାରୁ ନାଳନ୍ଦା ପ୍ରତ୍ୟାବର୍ତ୍ତନ କରିଥିଲେ । ନାଳନ୍ଦାରେ ଶିକ୍ଷା ସମାପନ କରି ସେ ଆସାମ ବା କାମରୂପର ରାଜା କୁମାର ଭାସ୍କରବର୍ମାଙ୍କ ରାଜଦରବାରରେ କିଛିକାଳ କଟାଇଥିଲେ ଏବଂ ତାପରେ ହର୍ଷଶିଳାଦିତ୍ୟଙ୍କର ଅତିପ୍ରିୟ ବନ୍ଧୁରୂପେ ତାହାଙ୍କ ସହିତ କିଛିକାଳ ଅବସ୍ଥାନ କରିଥିଲେ । ଯେଉଁ ଅଗଣିତ ନଗରୀ ମଧ୍ୟଦେଇ ଚୀନ ପରିବ୍ରାଜକ ଗତି କରିଥିଲେ ସେମାନଙ୍କ ମଧ୍ୟରେ ନଗରହର, ପୁରୁଷପୁର, ପୋଲୁଷା, ଉଦ୍ୟାନା, ତକ୍ଷଶିଳା, ସିଂହପୁର, କଡରୁ, ମଥୁରା, ଥାନେଶ୍ୱର, ମତିପୁର, ହରିଦ୍ୱାର, ବ୍ରହ୍ମପୁର, କାନ୍ୟକୁବ୍ଜ, ଅଯୋଧ୍ୟା, ପ୍ରୟାଗ, କୌଶାମ୍ବୀ, ଶ୍ରାବସ୍ତୀ, କପିଳବାସ୍ତୁ, କୁଶୀନଗର, ବାରାଣସୀ, ବୈଶାଳୀ, ପାଟଳୀପୁତ୍ର, ଗୟା, ରାଜଗୃହ, ନାଳନ୍ଦା, ଚମ୍ପା, ପୁଣ୍ଡ୍ର, କାମରୂପ, ତାମ୍ରଲିପ୍ତି, ପୁଷ୍ପଗିରି, ଚରିତ୍ର, ଧାନକଟକ, ପୂର୍ବଶୈଳ, କାଞ୍ଚିପୁର, ଭରୁକାଚ୍ଛ, ସୌରାଷ୍ଟ୍ର ଇତ୍ୟାଦି ପ୍ରଧାନ । ଏ ସମସ୍ତ ନଗରୀ ଏବଂ ଏମାନଙ୍କ ବ୍ୟତୀତ ଅନ୍ୟାନ୍ୟ ଅନେକ ସ୍ଥାନ ହୁଏନ୍‌ସାଂ ଦର୍ଶନ କରିଥିଲେ ଏବଂ ସମସ୍ତଙ୍କ ଉପରେ ଅଳ୍ପ ବହୁତ ବର୍ଣ୍ଣନା ତାହାଙ୍କର ଭ୍ରମଣ କାହାଣୀ ଅଙ୍ଗରେ ଲିପିବଦ୍ଧ କରିଯାଇଥିଲେ । ସୁଦୂର ସେହି ପ୍ରାଚୀନ ଯୁଗରେ ଭାରତ ବକ୍ଷରେ ଏପରି ପୁଙ୍ଖାନୁପୁଙ୍ଖ ପରିଭ୍ରମଣ ଅପର କୌଣସି ପରିବ୍ରାଜକ କରିପାରି ନାହାନ୍ତି । ଚୀନ ସଭ୍ୟତାର ଅମର ପ୍ରତିନିଧି ବୌଦ୍ଧଭିକ୍ଷୁ ହୁଏନ୍‌ସାଂଙ୍କ ନିକଟରେ ଏଥିପାଇଁ ଭାରତ ଇତିହାସ ଚିର କୃତଜ୍ଞ ।

ହୁଏନ୍‌ସାଂ ଭାରତର ଯେ କୌଣସି ଅଞ୍ଚଳକୁ ଯାଇଥିଲେ ସେଠାକାର ଧର୍ମ ଉପରେ ସର୍ବାଧିକ ଦୃଷ୍ଟି ଦେଇଥିଲେ । କାରଣ ତାହାଙ୍କର ଭାରତଭ୍ରମଣର ମୁଖ୍ୟ ଉଦ୍ଦେଶ୍ୟ ଥିଲା ବୌଦ୍ଧଧର୍ମ ଉପରେ ସର୍ବାଙ୍ଗୀନ ଜ୍ଞାନ ଉପାର୍ଜନ କରିବା ଏବଂ ସମସ୍ତ ବୌଦ୍ଧପୀଠ ପରିଦର୍ଶନ କରିବା । ଫଳରେ ପ୍ରତ୍ୟେକ ସ୍ଥାନରେ ବୌଦ୍ଧ-ଧର୍ମର କପରି ପରିସ୍ଥିତି ତାହା ନିର୍ଣ୍ଣୟ କରିବାକୁ ଯାଇ ତାହାଙ୍କୁ ଅନ୍ୟ ଧର୍ମମାନଙ୍କ ଉପରେ ମଧ୍ୟ ଦୃଷ୍ଟିପାତ କରିବାକୁ ପଡ଼ିଥିଲା । ତେଣୁ ତାହାଙ୍କ ଭ୍ରମଣ ବୃତ୍ତାନ୍ତରୁ ଜୈନ, ବୌଦ୍ଧ ଏବଂ ହିନ୍ଦୁଧର୍ମର ତତ୍କାଳୀନ ଅବସ୍ଥା ଅତି ଉଜ୍ଜ୍ୱଳରୂପେ ଜଣାପଡ଼େ । ଜୈନଧର୍ମ ସେତେବେଳକୁ ଏକ ସଂଖ୍ୟାଲଘୁ ସମ୍ପ୍ରଦାୟରେ ପରିଣତ

ହୋଇ ଭାରତର ମାତ୍ର ଗୋଟିଏ ଦୁଇଟି ସ୍ଥାନରେ ଆଶ୍ରୟ ଗ୍ରହଣ କରିଥିଲା । ପୌରାଣିକ ହିନ୍ଦୁଧର୍ମ ଏବଂ ବୌଦ୍ଧଧର୍ମ ମଧ୍ୟରେ ଶତ ଶତ ବର୍ଷର ପ୍ରତିଯୋଗିତା ଏତେବେଳକୁ ଶେଷ ହେବାକୁ ବସିଲାଣି ଏବଂ ପ୍ରତିଯୋଗିତା ଶେଷରେ ବୌଦ୍ଧ-ଧର୍ମର ସମ୍ପୂର୍ଣ୍ଣ ପରାଜୟ ଘୋଷିତ ହୋଇ ସାରିଲାଣି । ହିନ୍ଦୁଧର୍ମର ଜୟଧ୍ୱଜା ଉଡ଼ାଇ ଗାନ୍ଧାର ପାଖରୁ କୁମାରୀକା ପର୍ଯ୍ୟନ୍ତ ଅସଂଖ୍ୟ ଦେବମନ୍ଦିର ନିର୍ମିତ ହୋଇ ସାରିଥିଲା ଏବଂ ସେମାନଙ୍କ ଆଗରେ ବୌଦ୍ଧ ସଂଘମାନ କ୍ରମେ କ୍ରମେ ଲୋପ ପାଇ ଯାଇଥିଲା । ପ୍ରାଚୀନ କାଳର ସମୃଦ୍ଧିଶାଳୀ ବୌଦ୍ଧପୀଠମାନଙ୍କୁ ଏବେ ପରିତ୍ୟକ୍ତ ଏବଂ ଜନମାନବହୀନ ଅବସ୍ଥାରେ ଦେଖିବାକୁ ମିଳୁଥିଲା । ଭାରତର ମାତ୍ର କେତୋଟି ସ୍ଥାନକୁ ଛାଡ଼ିଦେଲେ ପ୍ରାୟ ସର୍ବତ୍ର ବୌଦ୍ଧଧର୍ମ ବିଲୟ ଭଜିଥିଲା । ହୁଏନ୍‌ସାଂଙ୍କ ପ୍ରସିଦ୍ଧ ଭ୍ରମଣ ବୃତ୍ତାନ୍ତରୁ ପ୍ରତ୍ୟେକ ସ୍ଥାନରେ କେଉଁ ଧର୍ମର ଅବସ୍ଥା କିପରି ଥିଲା ତାହାର ସଂକ୍ଷିପ୍ତ ଉଲ୍ଲେଖ କଲେ ସପ୍ତମ ଶତାବ୍ଦୀର ଭାରତୀୟ ଧର୍ମ ବିଷୟରେ ଏକ ସାଧାରଣ ଧାରଣା ପୋଷଣ କରାଯାଇ ପାରିବ ।

ପରିବ୍ରାଜକଙ୍କ ଭ୍ରମଣ ପଥରେ ପ୍ରଥମେ ପଡ଼ିଥିଲା ଗାନ୍ଧାର ରାଜ୍ୟ । ଏହାର ରାଜଧାନୀ ଥିଲା ପୁରୁଷପୁର ବା ପେଶାୱାର । ଆଶ୍ଚର୍ଯ୍ୟ ସହକାରେ ଏଠାରେ ସେ ଦେଖିଥିଲେ ଯେ 'ଗାନ୍ଧାରର ଗ୍ରାମ୍ୟ ଏବଂ ନଗରମାନ ପରିତ୍ୟକ୍ତ ହୋଇଛି ଏବଂ ଯେଉଁଠାରେ ଅତି ଅଳ୍ପ ସଂଖ୍ୟକ ଅଧିବାସୀ ବାସ କରୁଛନ୍ତି । ପୂର୍ବକାଳର ଏକ ସହସ୍ର ବୌଦ୍ଧ ସଂଘାରାମ ବା ବିହାର ଜନମାନବହୀନ ଅବସ୍ଥାରେ ଧ୍ୱଂସ ହୋଇ ପଡ଼ିଛି ଏବଂ ସେ ସ୍ଥାନରେ ପ୍ରାୟ ଏକଶତ ହିନ୍ଦୁମନ୍ଦିର ନିର୍ମିତ ହୋଇଛି ।' ଗାନ୍ଧାର ଠାରୁ ପଲୁଷା ନାମ୍ନୀ ନଗରକୁ ସେ ଆସିଥିଲେ । ସେଠାରେ ଏକ ଉଚ୍ଚ ପର୍ବତ ଉପରେ ସେ ଦୁର୍ଗାଙ୍କର ପ୍ରସ୍ତରମୂର୍ତ୍ତି ଦେଖିବାକୁ ପାଇଥିଲେ । 'ଦୂର ଏବଂ ନିକଟରୁ ଧନୀ, ଗରିବ ସମସ୍ତେ ଏହି ମୂର୍ତ୍ତି ଆଗରେ ପ୍ରାର୍ଥନା ଏବଂ ଉପବାସ କରିବା ପାଇଁ ଆସୁଥିଲେ । ପର୍ବତର ନିମ୍ନଦେଶରେ ଏକ ମହେଶ୍ୱର ମନ୍ଦିର ଥିଲା ଏବଂ ଏଠାକୁ ହିନ୍ଦୁମାନେ ବଳି ପ୍ରଦାନ ପାଇଁ ଆସୁଥିଲେ ।' ଏହାପରେ କାବୁଲ ନିକଟସ୍ଥ ଉଡ଼ିୟାନା ଅଞ୍ଚଳରେ ହୁଏନ୍‌ସାଂ ପ୍ରବେଶ କରିଥିଲେ । ଏହି ସ୍ଥାନରେ ଦୁଇଶତ ବର୍ଷ ପୂର୍ବେ ଫାହିୟାନ ବୌଦ୍ଧଧର୍ମକୁ ଅତି ଉନ୍ନତ ଅବସ୍ଥାରେ ଦେଖିଥିଲେ । କିନ୍ତୁ ହୁଏନ୍‌ସାଂ ଦେଖିଲାବେଳକୁ 'ସେଠାକାର ବୌଦ୍ଧ ସଂଘାରାମମାନ ପତିତ ଓ ନିର୍ଜନ-ଭାବେ ପଡ଼ି ରହିଛି ଏବଂ ଜଣେ ବୋଲି ବୌଦ୍ଧ ସାଧୁ ସେଠାରେ ବାସ

କରୁ ନାହାନ୍ତି । କିନ୍ତୁ ସେଠାରେ ଦଶଟି ଦେବ ମନ୍ଦିର ବିଦ୍ୟମାନ ରହିଛି ।' ଏହାପରେ ପରିବ୍ରାଜକ ତକ୍ଷଶିଳା ଏବଂ ସିଂହପୁର ମଧ୍ୟରେ ପ୍ରବେଶ କରିଥିଲେ ଏବଂ ସିଂହପୁରଠାରେ ସେ ଶ୍ୱେତାମ୍ବର ଓ ଦିଗମ୍ବର ଜୈନ ସମ୍ପ୍ରଦାୟ ଦ୍ୱୟକୁ ଦେଖିବାକୁ ପାଇଥିଲେ । ତକ୍ଷଶିଳାଠାରୁ ବୌଦ୍ଧ ସମ୍ରାଟ କନିଷ୍କଙ୍କ ଜନ୍ମଭୂମି କାଶ୍ମିର ଉଦ୍ଦେଶ୍ୟରେ ସେ ଯାତ୍ରା କରିଥିଲେ । 'ସେଠାରେ ହିନ୍ଦୁ ଓ ବୌଦ୍ଧ ଉଭୟ ଧର୍ମର ଲୋକେ ବସବାସ କରୁଥିଲେ ଏବଂ ସେଠାରେ ଏକଶତ ସଂଘାରାମ ବିଦ୍ୟମାନ ଥିଲା ଓ ପଞ୍ଚ ସହସ୍ର ବୌଦ୍ଧଭିକ୍ଷୁ ଅବସ୍ଥାନ କରୁଥିଲେ ।' କାଶ୍ମିର ଖଣ୍ଡରୁ ଶତଦ୍ରୁ ଅଭିମୁଖେ ହୁଏନ୍‌ସାଂ ଆଗମନ କରିଥିଲେ । ସେ ଅଞ୍ଚଳରେ 'ଲୋକମାନେ ଧର୍ମପରାୟଣ ଥିଲେ ଓ ବୁଦ୍ଧଦେବଙ୍କ ବାଣୀ ଉପରେ ବିଶ୍ୱାସ ରଖିଥିଲେ, କିନ୍ତୁ ସେଠାକାର ସଂଘାରାମମାନ ବିର୍ଜନ ଭଗ୍ନାବଶେଷରେ ପରିଣତ ହୋଇଯାଇଥିଲା ଏବଂ ସେଥିରେ ବୌଦ୍ଧଭିକ୍ଷୁମାନେ ପ୍ରାୟ ନ ଥିଲେ ।' ଏହାପରେ ମଥୁରା ଖଣ୍ଡରେ ପ୍ରବେଶ କରି ଭ୍ରମଣକାରୀ ସେ ଅଞ୍ଚଳରେ 'କୋଡ଼ିଏଟି ସଂଘାରାମ ଏବଂ ପ୍ରାୟ ଦୁଇ ହଜାର ବୌଦ୍ଧ ସନ୍ନ୍ୟାସୀଙ୍କୁ' ଦେଖିବାକୁ ପାଇଥିଲେ । ସେଠାରୁ ଗଙ୍ଗାନଦୀର ଜନ୍ମସ୍ଥାନ ଦିଗରେ ଗତିକରି ହୁଏନ୍‌ସାଂ ହରିଦ୍ୱାର ନଗରୀ ମଧ୍ୟରେ ପ୍ରବେଶ କରିଥିଲେ । 'ନଗରୀର ଅନତିଦୂରରେ ଗଙ୍ଗା କୂଳରେ ଏକ ସୁବିଖ୍ୟାତ ଦେବମନ୍ଦିର ଦଣ୍ଡାୟମାନ । ଏହି ମନ୍ଦିର ମଧ୍ୟରେ ଏକ ପୁଷ୍କରିଣୀ ବିଦ୍ୟମାନ ଯାହାର ଚତୁର୍ପାର୍ଶ୍ୱ ପ୍ରସ୍ତରଖଣ୍ଡମାନଙ୍କ ଦ୍ୱାରା ଅତି କୌଶଳରେ ବନ୍ଧା ଯାଇଛି । ଏକ କୃତ୍ରିମ ପ୍ରଣାଳୀ ଦ୍ୱାରା ଗଙ୍ଗାନଦୀ ସହ ଏହି ପୁଷ୍କରିଣୀ ସଂଯୋଗ କରାଯାଇଛି । ଭାରତବର୍ଷର ଅଧିବାସୀମାନେ ଏହାକୁ ଗଙ୍ଗାଦ୍ୱାର ବୋଲି କହନ୍ତି । ଏହି ସ୍ଥାନରେ ଶରୀରରୁ ସମସ୍ତ ପାପର ନିଷ୍କାସନ କରାଯାଏ । ସଦା ସର୍ବଦା ଏହି ସ୍ଥାନରେ ବହୁଦୂରରୁ ଶତ ସହସ୍ର ଯାତ୍ରୀ ପୁଷ୍କରିଣୀରେ ସ୍ନାନପୂର୍ବକ ପାପମୁକ୍ତ ହେବା ପାଇଁ ସମ୍ମିଳିତ ହୋଇଥାଆନ୍ତି ।' ସେହି ସପ୍ତମ ଶତାବ୍ଦୀରେ ମଧ୍ୟ ହରିଦ୍ୱାର ହିନ୍ଦୁମାନଙ୍କର ଏକ ପୁଣ୍ୟକ୍ଷେତ୍ରରୂପେ ଲକ୍ଷ ଲକ୍ଷ ଧର୍ମପରାୟଣ ହିନ୍ଦୁଙ୍କୁ ଭାରତର ଚତୁର୍ଦ୍ଦିଗରୁ ଆକର୍ଷଣ କରୁଥିଲା ; ଅନ୍ୟ କେତେକ ସ୍ଥଳରେ ଭ୍ରମଣ ଶେଷକରି ହୁଏନ୍‌ସାଂ କାନ୍ୟକୁବ୍ଜ ମଧ୍ୟରେ ପ୍ରବେଶ କରିଥିଲେ । ସେତେବେଳକୁ କାନ୍ୟକୁବ୍ଜ ତାହାର ଶୀର୍ଷ ସମୃଦ୍ଧି ଭୋଗ କରୁଥିଲା, କାରଣ ସମ୍ରାଟ ହର୍ଷବର୍ଦ୍ଧନଙ୍କ ରାଜଦରବାର ଏହିଠାରେ ଅବସ୍ଥିତ ଥିଲା । 'ଏଠାରେ ହିନ୍ଦୁ ଏବଂ ବୌଦ୍ଧମାନଙ୍କର ସଂଖ୍ୟା ସମାନ ଥିଲା । ବୌଦ୍ଧମାନଙ୍କର ପ୍ରାୟ ଏକଶତ ସଂଘାରାମ ସେତେବେଳେ

ବିଦ୍ୟମାନ ଥିଲା ଏବଂ ଏଥିରେ ଦଶ ସହସ୍ର ବୌଦ୍ଧ ସାଧୁ ବସବାସ କରୁଥିଲେ । ହିନ୍ଦୁମାନଙ୍କର ଦୁଇଶତ ଦେବମନ୍ଦିର ଥିଲା ଏବଂ ସେଥିରେ ବହୁ ସହସ୍ର ଉପାସକ ବାସ କରୁଥିଲେ ।’ ଏହିଠାରେ ସମ୍ରାଟ ହର୍ଷଙ୍କ ସମ୍ବନ୍ଧରେ ବହୁକଥା କହିବାକୁ ଯାଇ ହୁଏନ୍‌ସାଂ ଏକଥା ମଧ୍ୟ ବର୍ଣ୍ଣନା କରିଛନ୍ତି ଯେ, ‘ହର୍ଷ ବୌଦ୍ଧଧର୍ମ ପ୍ରତି ଅନୁରକ୍ତ ଥିଲେ, ନିଜ ସାମ୍ରାଜ୍ୟ ମଧ୍ୟରେ ଜୀବହତ୍ୟା ନିଷେଧ କରିଦେଇଥିଲେ, ସ୍ତୂପମାନ ନିର୍ମାଣ କରିଥିଲେ ଏବଂ ଭାରତର ପ୍ରତ୍ୟେକ ସ୍ଥାନରେ ରାଜପଥମାନଙ୍କରେ ଦାତବ୍ୟ ଚିକିତ୍ସାଳୟମାନ ନିର୍ମାଣ କରିଥିଲେ ଏବଂ ଚିକିତ୍ସକମାନଙ୍କୁ ନିଯୁକ୍ତ କରି ସେମାନଙ୍କର ଖାଦ୍ୟ ପେୟ ତଥା ଚିକିତ୍ସାଳୟର ଔଷଧ ଇତ୍ୟାଦିର ସୁବନ୍ଦୋବସ୍ତ କରିଦେଇଥିଲେ । ପ୍ରତ୍ୟେକ ପାଞ୍ଚବର୍ଷରେ ସେ ବୌଦ୍ଧମାନଙ୍କର ବିରାଟ ଧର୍ମ ସମ୍ମିଳନୀ ଆହ୍ୱାନ କରୁଥାଆନ୍ତି ଏବଂ ସେଠାରେ ମୁକ୍ତ ହସ୍ତରେ ଦାନ କରୁଥାଆନ୍ତି ।’ ହର୍ଷ ବୌଦ୍ଧସମ୍ରାଟ ଥିଲେ ଏବଂ ବୌଦ୍ଧଧର୍ମର ପୃଷ୍ଠପୋଷକତା କରୁଥିଲେ, ଏହା ସୁବିଦିତ । ତଥାପି ତାହାଙ୍କର ସ୍ୱରାଜ୍ୟ କାନ୍ୟକୁବ୍‌ଜରେ ବୌଦ୍ଧମାନଙ୍କ ଅପେକ୍ଷା ହିନ୍ଦୁମାନଙ୍କର ଅଧିକ ପ୍ରତିପତ୍ତି ଥିବା ବିଷୟ ହୁଏନ୍‌ସାଂଙ୍କ ବୃତ୍ତାନ୍ତରୁ ସ୍ପଷ୍ଟରୂପେ ଜଣାଯାଉଛି । କାନ୍ୟକୁବ୍‌ଜରୁ ହୁଏନ୍‌ସାଂ ଅଯୋଧ୍ୟା ଅଭିମୁଖେ ଯାତ୍ରା କରିଥିଲେ । ଅନ୍ୟ ସ୍ଥାନମାନଙ୍କ ପରି ସେଠାରେ ମଧ୍ୟ ହିନ୍ଦୁ ଏବଂ ବୌଦ୍ଧମାନଙ୍କୁ ଏକତ୍ର ଦେଖିବାକୁ ମିଳିଥିଲା । କିନ୍ତୁ ପ୍ରୟାଗଠାରେ ହୁଏନ୍‌ସାଂ ବୌଦ୍ଧଧର୍ମର ପ୍ରତିପତ୍ତି ଏକାଥରକେ ଲୋପ ପାଇଥିବାର ଦେଖିଥିଲେ । ‘ଏଠାକାର ଅଧିବାସୀମାନେ ଭଦ୍ର ଏବଂ ଶିକ୍ଷାନୁରାଗୀ ଥିଲେ, କିନ୍ତୁ ଏଠାରେ ବୌଦ୍ଧଧର୍ମ ପ୍ରତି ସମ୍ମାନ ନ ଥିଲା ଏବଂ ଏଠାକାର ଅଧିବାସୀମାନଙ୍କ ମଧ୍ୟରୁ ଅତ୍ୟଧିକ ସଂଖ୍ୟକ ଥିଲେ ନୈଷ୍ଠିକ ହିନ୍ଦୁ ।’ ଗଙ୍ଗା ଏବଂ ଯମୁନାର ସଙ୍ଗମ ସ୍ଥଳରେ ପ୍ରତ୍ୟହ ସହସ୍ର ସହସ୍ର ଲୋକଙ୍କୁ ସ୍ନାନ କରୁଥିବାର ହୁଏନ୍‌ସାଂ ଦେଖିଥିଲେ । ହରିଦ୍ୱାର ପରି ପ୍ରୟାଗ ମଧ୍ୟ ସେତେବେଳକୁ ହିନ୍ଦୁ ଭାରତର ଏକ ପ୍ରଧାନ ପୁଣ୍ୟପୀଠରେ ପରିଣତ ହୋଇ ସାରିଥିଲା । ଏହାପରେ କୌଶମ୍ବୀ ଏବଂ ଶ୍ରାବସ୍ତୀ ନଗରୀମାନ ପରିବ୍ରାଜକଙ୍କ ଗନ୍ତପଥରେ ପଡ଼ିଥିଲା । ଶ୍ରାବସ୍ତୀ ଥିଲା ପ୍ରାଚୀନ କୋଶଳର ରାଜଧାନୀ ଏବଂ ଏହିଠାରେ ଗୌତମ କିଛିକାଳ ଅବସ୍ଥାନ କରି ସ୍ୱମତ ପ୍ରଚାର କରିଥିଲେ । କିନ୍ତୁ ବର୍ତ୍ତମାନ ସେ ନଗରୀ ଥିଲା ‘ପରିତ୍ୟକ୍ତ ଏବଂ ଜରାଜୀର୍ଣ୍ଣ ।’ ବୁଦ୍ଧଙ୍କର ଜନ୍ମସ୍ଥାନ କପିଳବାସ୍ତୁର ଅବସ୍ଥା ଅତିଶୟ ଶୋଚନୀୟ ଥିଲା । ‘କପିଳବାସ୍ତୁ, ଗୌତମଙ୍କ ଜନ୍ମସ୍ଥାନ, ବର୍ତ୍ତମାନ ଧ୍ୱଂସାବଶେଷରେ ପରିଣତ । ସେ ରାଜ୍ୟ ମଧ୍ୟରେ ଦଶଟି ନଗରୀ ବର୍ତ୍ତମାନ

ଜନମାନବହୀନ ଅବସ୍ଥାରେ ପଡ଼ିରହିଥିଲା । ତିନ ମାଇଲ ପରିମିତ ରାଜପ୍ରାସାଦ ସେ ମଧ୍ୟ ଧ୍ୱଂସ ସ୍ତୂପରେ ପରିଣତ ହେବାକୁ ବସିଥିଲା ।' ଏହାପରେ ଗୌତମଙ୍କ ମୃତ୍ୟୁସ୍ଥାନ କୁଶୀନଗର ମଧ୍ୟରେ ପରିବ୍ରାଜକ ପ୍ରବେଶ କରିଥିଲେ । ଏ ସ୍ଥାନ ମଧ୍ୟ ସେତେବେଳକୁ ଧ୍ୱଂସ ସ୍ତୂପରେ ପରିଣତ ହୋଇସାରିଥିଲା । ବୌଦ୍ଧପୀଠମାନଙ୍କର ଧ୍ୱଂସାବଶେଷ ଅବଲୋକନ କରିସାରିଲା ପରେ ହୁଏନ୍‌ସାଂ ବାରାଣସୀ କ୍ଷେତ୍ରରେ ପ୍ରବେଶ କରିଥିଲେ । ସେତେବେଳକୁ ହରିଦ୍ୱାର ଏବଂ ପ୍ରୟାଗ ପରି ବାରାଣସୀ ମଧ୍ୟ ହିନ୍ଦୁଧର୍ମର ଏକ ମହାପୀଠରେ ପରିଣତ ହୋଇସାରିଲାଣି । 'ଏଠାକାର ଅଧିବାସୀମାନେ ଦୟାଳୁ ଏବଂ ଅଧ୍ୟୟନ ଦିଗରେ ବିଶେଷ ମନଯୋଗୀ । ସେମାନଙ୍କ ମଧ୍ୟରୁ ଅଧିକାଂଶ ହେଉଛନ୍ତି ହିନ୍ଦୁ ଏବଂ ଅତି ଅଳ୍ପ ସଂଖ୍ୟକ ଲୋକେ ବୁଦ୍ଧଙ୍କ ଧର୍ମ ପ୍ରତି ଅନୁରକ୍ତ । ବାରାଣସୀ ରାଜ୍ୟରେ ତିରିଶଟି ସଂଘାରାମରେ ତିନିହଜାର ଭିକ୍ଷୁ ବାସ କରନ୍ତି; ମାତ୍ର ଏକଶତ ଦେବମନ୍ଦିରରେ ଦଶହଜାର ପୂଜକ ବିଦ୍ୟମାନ । ଏ ଅଞ୍ଚଳରେ ମୁଖ୍ୟତଃ ମହେଶ୍ୱରଙ୍କର ପୂଜା ଦେଖିବାକୁ ମିଳେ । କେବଳ ବାରାଣସୀ ନଗରୀ ମଧ୍ୟରେ କୋଡ଼ିଏଟି ଦେବମନ୍ଦିର ଅବସ୍ଥିତ ଏବଂ ଏଠାରେ ଦେବ ମହେଶ୍ୱରଙ୍କର ଏକଶତ ଫୁଟ ଦୀର୍ଘ ଏକ ବିଶାଳ ତାମ୍ର ନିର୍ମିତ ମୂର୍ତ୍ତି ରହିଛି । ଏହି ମୂର୍ତ୍ତିଟି ସୁନ୍ଦର, ସୁଗମ୍ଭୀର ଏବଂ ପ୍ରକୃତ ଜୀବନ୍ତରୂପେ ପ୍ରତୀୟମାନ ହୁଏ ।' ବାରାଣସୀ ପରେ ଅପର କେତେକ ସ୍ଥାନ ଭ୍ରମଣ କରିସାରି ହୁଏନ୍‌ସାଂ ବୈଶାଳୀ ପ୍ରବେଶ କରିଥିଲେ । 'ବୈଶାଳୀର ରାଜଧାନୀ ଜରାଜୀର୍ଣ୍ଣ ଅବସ୍ଥା ଧାରଣ କରିଥିଲା । ଏଠାକାର ପ୍ରାୟ ସମସ୍ତ ସଂଘାରାମ ଧ୍ୱଂସ ହୋଇଯାଇଥିଲା ଏବଂ ଯେଉଁ ତିନି ଗୃହଟି ଧ୍ୱଂସ ହୋଇ ନ ଥିଲା ସେଗୁଡ଼ିକରେ ବୌଦ୍ଧସାଧୁ କେହି ନ ଥିଲେ କହିଲେ ଚଳେ । କିନ୍ତୁ ଏଠାରେ ଅନେକ ଦେବମନ୍ଦିର ବିଦ୍ୟମାନ ଥିଲା ।' ବୈଶାଳୀ ପରେ ହୁଏନ୍‌ସାଂ ନେପାଳ ଯାଇଥିଲେ କିନ୍ତୁ ସେଠାକାର ଅଧିବାସୀମାନଙ୍କ ଉପରେ ଏକ ପ୍ରକାର ବିରକ୍ତିଭାବ ପୋଷଣ କରି ପୁନର୍ବାର ବୈଶାଳୀ ଫେରି ଆସିଥିଲେ ଏବଂ ତାପରେ ଗଙ୍ଗାନଦୀ ପାର ହୋଇ ମଗଧ ରାଜ୍ୟରେ ପ୍ରବେଶ କରିଥିଲେ । 'ମଗଧ ଅଧିବାସୀମାନେ ସାଧୁ ଏବଂ ସରଳ; ସେମାନେ ବିଦ୍ୟାନୁରାଗୀ ଥିଲେ ଏବଂ ବୁଦ୍ଧଙ୍କ ଧର୍ମପ୍ରତି ଭକ୍ତି କରୁଥିଲେ । ଏଠାରେ ପଚାଶଟି ସଂଘାରାମ ଥିଲା ଓ ଦଶ ସହସ୍ର ବୌଦ୍ଧଭିକ୍ଷୁ ବାସ କରୁଥିଲେ, ଏବଂ ଦଶଟି ଦେବମନ୍ଦିର ଥିଲା ଓ ବହୁସଂଖ୍ୟକ ଦେବୋପାସକ ବାସ କରୁଥିଲେ ।' ମଗଧର ପାଟଳୀପୁତ୍ରଠାରେ ଅସଂଖ୍ୟ ବୌଦ୍ଧସ୍ତୂପ ଓ ବିହାରର ଧ୍ୱଂସାବଶେଷ ଦେଖିସାରି ଭ୍ରମଣକାରୀ

ଗୟା ଅଭିମୁଖେ ଯାତ୍ରା କରିଥିଲେ । ସେତେବେଳକୁ 'ଗୟା ନଗରୀରେ କେବଳ ଏକ ସହସ୍ର ବ୍ରାହ୍ମଣ ପରିବାର ବସବାସ କରୁଥିଲେ ।' ଗୟା ନିକଟରୁ ଅଗ୍ରସର ହୋଇ ହୁଏନ୍‌ସାଂ ବୋଧିଦ୍ରୁମ ଏବଂ ତତ୍‌ସନ୍ନିକଟସ୍ଥ ବୌଦ୍ଧ ବିହାରମାନଙ୍କୁ ପର୍ଯ୍ୟବେକ୍ଷଣ କରିଥିଲେ । ଏହିଠାରେ ସେ ସିଂହଳ ରାଜାଙ୍କ ନିର୍ମିତ ମହାବୋଧି ସଂଘାରାମ ମଧ୍ୟ ପରିଦର୍ଶନ କରିଥିଲେ । ତାପରେ ସେ ରାଜଗୃହ ଅଭିମୁଖେ ଗମନ କରି ସେଠାରେ ମଗଧର ସେହି ପ୍ରାଚୀନ ରାଜଧାନୀକୁ ଜରାଜୀର୍ଣ୍ଣ ଅବସ୍ଥାରେ ଦେଖିଥିଲେ । ଏହାପରେ ହୁଏନ୍‌ସାଂ ସୁବିଖ୍ୟାତ ନାଳନ୍ଦା ବିଶ୍ୱବିଦ୍ୟାଳୟରେ କିଛିକାଳ କଟାଇଥିଲେ ଏବଂ ତାପରେ ମୁଙ୍ଗେର, ଚମ୍ପା ପ୍ରଭୃତି ଅଞ୍ଚଳ ମଧ୍ୟଦେଇ ଉତ୍ତର ବଙ୍ଗ ବା ପୁଣ୍ଡ୍ର ରାଜ୍ୟକୁ ଆସିଥିଲେ । ଏଠାରେ 'ପ୍ରାୟ କୋଡ଼ିଏଟି ସଂଘାରାମ ଥିଲା ଓ ତିନିଶତ ଭିକ୍ଷୁ ବାସ କରୁଥିଲେ ଏବଂ ଏକଶତ ଦେବମନ୍ଦିର ଥିଲା ଓ ବିଭିନ୍ନ ପ୍ରକାରର ଉପାସକମାନେ ରହିଥିଲେ । ଏଠାରେ ଉଲଗ୍ନ ନିର୍ଗ୍ରନ୍ଥମାନେ ମଧ୍ୟ ବହୁ ସଂଖ୍ୟାରେ ଥିଲେ ।' ଏଠାରୁ ପୂର୍ବଦିଗକୁ ଗତିକରି କାମରୂପ ବା ଅଧୁନିକ ଆସାମ ମଧ୍ୟରେ ହୁଏନ୍‌ସାଂ ପ୍ରବେଶ କରିଥିଲେ । 'ଏଠାକାର ଅଧିବାସୀମାନଙ୍କର ବୁଦ୍ଧଙ୍କ ନିକଟରେ ବିଶ୍ୱାସ ନ ଥିଲା ଏବଂ ସେମାନେ ଦେବତାମାନଙ୍କର ପୂଜା କରୁଥିଲେ ଓ ବଳି ପ୍ରଦାନ କରୁଥିଲେ । ଏଠାରେ ପ୍ରାୟ ଏକଶତ ଦେବମନ୍ଦିର ଥିଲା କିନ୍ତୁ ଗୋଟିଏ ହେଲେ ବୌଦ୍ଧ ସଂଘାରାମ ନ ଥିଲା । ଏଠାରେ ଭାସ୍କରବର୍ମା ନାମକ ଏକ ରାଜା ରାଜତ୍ୱ କରୁଥିଲେ ଏବଂ ସେ ଥିଲେ ବ୍ରାହ୍ମଣ ।' କାମରୂପର ଦକ୍ଷିଣ ଦିଗରେ ସମତଟ ବା ପୂର୍ବବଙ୍ଗ ଅବସ୍ଥିତ ଥିଲା । 'ଏଠାରେ ତିରିଶଟି ପର୍ଯ୍ୟନ୍ତ ସଂଘାରାମରେ ପ୍ରାୟ ଦୁଇ ହଜାର ପର୍ଯ୍ୟନ୍ତ ସନ୍ନ୍ୟାସୀ ବସବାସ କରୁଥିଲେ । ଏବଂ ପ୍ରାୟ ଏକ ଶହ ଦେବମନ୍ଦିର ବିଦ୍ୟମାନ ଥିଲା । ଏଠାରେ ମଧ୍ୟ ଉଲଙ୍ଗ ନିର୍ଗ୍ରନ୍ଥମାନେ ବହୁସଂଖ୍ୟାରେ ବାସ କରୁଥିଲେ ।' ସମତଟ ପରେ ହୁଏନ୍‌ସାଂ ତାମ୍ରଲିପ୍ତି ଅଞ୍ଚଳରେ ପ୍ରବେଶ କରିଥିଲେ । ସେଠାରେ ସେ ଦଶଟି ସଂଘାରାମ ଏବଂ ପଚିଶଟି ଦେବମନ୍ଦିର ଦେଖିବାକୁ ପାଇଥିଲେ । ଏଠାରୁ ଅଗ୍ରସର ହୋଇ ପରିବ୍ରାଜକ କର୍ଣ୍ଣସୁବର୍ଣ୍ଣ ବା ପଶ୍ଚିମ ବଙ୍ଗକୁ ଆସିଥିଲେ । ସେଠାରେ ମଧ୍ୟ ସେ ଦଶଟି ସଂଘାରାମ ଏବଂ ପଚିଶଟି ଦେବମନ୍ଦିର ବିଦ୍ୟମାନ ଥିବାର ଦେଖିଥିଲେ । ଏହିଠାରେ ହୁଏନ୍‌ସାଂଙ୍କ ଉତ୍ତର ଭାରତ ଭ୍ରମଣ ଶେଷ ହୋଇଥିଲା । ଏହାପରେ ସେ ଦକ୍ଷିଣାଭିମୁଖେ ଯାତ୍ରା କରି ଓଡ୍ରଦେଶ ବା ଓଡ଼ିଶା ମଧ୍ୟରେ ପ୍ରବେଶ କରିଥିଲେ । ହୁଏନ୍‌ସାଂଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ ଓଡ୍ରଦେଶର ପରିଧି ଚଉଦ ଶହ ମାଇଲ

ଥିଲା । ରାଜଧାନୀର ଅବସ୍ଥିତି ସମ୍ବନ୍ଧରେ ସେ ଯେପରିଭାବେ ବର୍ଣ୍ଣନା କରିଛନ୍ତି ସେଥିରୁ ଐତିହାସିକମାନେ ଜାଜପୁର ନଗରକୁ ସେକାଳର ଓଡ୍ର ଦେଶର 'ରାଜଧାନୀ ବୋଲି ଅନୁମାନ କରନ୍ତି । ପରିବ୍ରାଜକଙ୍କ ବର୍ଣ୍ଣନା ଅନୁସାରେ ଓଡ୍ରଦେଶର ଲୋକେ ବିଦ୍ୟାନୁରାଗୀ ଥିଲେ ଏବଂ ସେ ଦେଶ ବୌଦ୍ଧଧର୍ମର ଏକ ମୁଖ୍ୟ କେନ୍ଦ୍ର ଥିଲା । ଓଡ୍ରଦେଶରେ ଏକଶତ ସଙ୍ଘାରାମ ଥିଲା ଏବଂ ସେଥିରେ ଦଶ ସହସ୍ର ପର୍ଯ୍ୟନ୍ତ ବୌଦ୍ଧସନ୍ନ୍ୟାସୀ ବାସ କରୁଥିଲେ । ଅଥଚ ସେ ଦେଶରେ ମାତ୍ର ପଚିଶଟି ଦେବମନ୍ଦିର ଥିଲା । ଏହି ଦେଶର ପୁଷ୍ପଗିରି ନାମକ ଏକ ବିରାଟ ବିହାର ସମ୍ବନ୍ଧରେ ହୁଏନ୍‌ସାଂ ଉଲ୍ଲେଖ କରିଯାଇଛନ୍ତି । ଏହି ବିଖ୍ୟାତ ବିହାରର ଅବସ୍ଥିତି ଏତେ ପର୍ଯ୍ୟନ୍ତ ସଠିକ୍‌ଭାବେ ନିରୂପିତ ହୋଇ ନ ଥିଲେ ସୁଦ୍ଧା ଅଧିକାଂଶଙ୍କ ମତରେ ତାହା କଟକ ଜିଲ୍ଲାର ଉଦୟଗିରି ପାହାଡ଼ ଉପରେ ଅବସ୍ଥିତ ଥିଲା । ଓଡ୍ର-ଦେଶର ଦକ୍ଷିଣ-ପୂର୍ବ କୋଣରେ ସମୁଦ୍ରକୂଳରେ ଚରିତ୍ର ବୋଲି ଏକ ବୃହତ୍ ବନ୍ଦର ଥିବାର ହୁଏନ୍‌ସାଂ ଦେଖିଥିଲେ । 'ଏହିଠାରୁ ବଣିକମାନେ ଦୂରଦୂରାନ୍ତ ଦେଶମାନଙ୍କୁ ଜଳଯାତ୍ରା କରନ୍ତି, ଏବଂ ବିଦେଶୀମାନେ ସେମାନଙ୍କର ବିଭିନ୍ନ ଦିଗକୁ ଗତି ପଥରେ ଏହିଠାରେ ଅବତରଣ କରନ୍ତି । ବନ୍ଦରର ପ୍ରାଚୀରମାନ ଅତି ସୁଦୃଢ଼ ଏବଂ ଉଚ୍ଚ । ଏଠାରେ ସମସ୍ତ ପ୍ରକାରର ମହାର୍ଘ ଏବଂ ଅମିଳନ ପଦାର୍ଥ ଦେଖିବାକୁ ମିଳେ ।' ଓଡ୍ର ବା ଓଡ଼ିଶାରୁ ଦକ୍ଷିଣ-ପଶ୍ଚିମ ଦିଗରେ ଯାତ୍ରାକରି ହୁଏନ୍‌ସାଂ କନ୍ୟୋଧ ବା କଙ୍ଗୋଦ ରାଜ୍ୟରେ ପ୍ରବେଶ କରିଥିଲେ । 'ଏଠାରେ ବୌଦ୍ଧଧର୍ମ ପ୍ରତି ସେପରି ସମାଦର ନ ଥିଲା ; ହିନ୍ଦୁଧର୍ମହିଁ ଥିଲା ପ୍ରଚଳିତ ଧର୍ମ । ଏ ଦେଶର ଅଧିବାସୀମାନେ ଥିଲେ ଏକ ଶକ୍ତିଶାଳୀ ଜାତି ; ସେମାନଙ୍କର ସହରମାନ ଉନ୍ନତ ଓ ସମୃଦ୍ଧିଶାଳୀ ; ସେମାନଙ୍କର ସୈନ୍ୟମାନେ ବୀର ଏବଂ ସାହସୀ ; ସେମାନେ ପାର୍ଶ୍ୱବର୍ତ୍ତୀ ପ୍ରଦେଶମାନଙ୍କୁ ବଳପୂର୍ବକ ଶାସନ କରୁଥିଲେ ଏବଂ କେହି ସେମାନଙ୍କୁ ବାଧାଦେଇ ପାରୁ ନ ଥିଲେ । ସେମାନଙ୍କର ଦେଶ ସମୁଦ୍ର କୂଳରେ ଅବସ୍ଥିତ ଥିବା ଯୋଗୁଁ ସେମାନେ ମୂଲ୍ୟବାନ ପଦାର୍ଥମାନ ପାଇ ପାରୁଥିଲେ ଏବଂ ବାଣିଜ୍ୟ ବ୍ୟବସାୟରେ କଉଡ଼ି ଓ ମୁକ୍ତା ମୁଦ୍ରାରୂପେ ବ୍ୟବହାର କରୁଥିଲେ । ଏ ଦେଶରେ ହାତୀମାନଙ୍କୁ ଯାନ-ବାହନରୂପେ ବ୍ୟବହାର କରା-ଯାଉଥିଲା ।' କଙ୍ଗୋଦ ରାଜ୍ୟରୁ ଅଗ୍ରସର ହୋଇ ହୁଏନ୍‌ସାଂ କଳିଙ୍ଗ ମଧ୍ୟରେ ପ୍ରବେଶ କରିଥିଲେ । ଯେତେବେଳେ ଗ୍ରୀକ୍ ରାଜଦୂତ ମେଗାସ୍ଥିନିସ୍ ତାହାଙ୍କର ସୁପ୍ରସିଦ୍ଧ ଭାରତ ଇତିହାସ 'ଇଣ୍ଡିକା' ପ୍ରଣୟନ କରୁଥିଲେ ସେତେବେଳେ କଳିଙ୍ଗର ସୀମା

ଗଙ୍ଗା ପାଖରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । କଳିଙ୍ଗର ସେହି ଅତୀତ ଗୌରବ ସପ୍ତମ ଶତାବ୍ଦୀରେ ମଧ୍ୟ ଲୋକେ ଭୁଲିପାରି ନ ଥିଲେ । କାରଣ ଯଦିଚ ହୁଏନ୍‌ସାଂଙ୍କ ଭାରତ ଭ୍ରମଣ ବେଳେ ସେହି ସୁବିସ୍ତୃତ କଳିଙ୍ଗ ତିନି ଭାଗରେ ବିଭକ୍ତ ହୋଇ ସାରିଥିଲା ଏବଂ କଳିଙ୍ଗ ନାମଟି କେବଳ ପ୍ରାୟ ଋଷିକୁଲ୍ୟା ନଦୀ ତୀରରୁ ଗୋଦାବରୀ ପର୍ଯ୍ୟନ୍ତ ଅଞ୍ଚଳ ପ୍ରତି ପ୍ରଯୁକ୍ତ କରାଯାଉଥିଲା ତଥାପି ପ୍ରାଚୀନ କଳିଙ୍ଗର ସମ୍ବନ୍ଧି ସ୍ମରଣ କରି ହୁଏନ୍‌ସାଂ ଲେଖିଥିଲେ, 'ପୁରାତନ ଦିନମାନଙ୍କରେ କଳିଙ୍ଗ ଦେଶ ଅତ୍ୟନ୍ତ ଜନ-ବହୁଳ ଥିଲା ଏବଂ ସେମାନଙ୍କର ରଥଚକ୍ରମାନ ବହୁଳତା ବଶତଃ ପରସ୍ପର ସହ ସଂଯୋଜିତ ଥିଲାପରି ପ୍ରତୀୟମାନ ହେଉଥିଲା । କିନ୍ତୁ କଳିଙ୍ଗର ସେ ସୁଦିନ ଏବେ ଆଉ ନ ଥିଲା ।' 'ଏ ଦେଶରେ ପ୍ରାୟ ଦଶଟି ପର୍ଯ୍ୟନ୍ତ ସଂଘାରାମ ଥିଲା ଏବଂ ପାଞ୍ଚଶହ ପର୍ଯ୍ୟନ୍ତ ସନ୍ନ୍ୟାସୀ ବାସ କରୁଥିଲେ ଯେଉଁମାନେ ମହାଯାନ ପନ୍ଥାର ସ୍ଥବିରବାଦ ଉପରେ ଆସ୍ଥା ରଖିଥିଲେ । କିନ୍ତୁ ଏଠାରେ ଅଧିକ ଦେବମନ୍ଦିର ଥିଲା ।' କଳିଙ୍ଗରୁ କୋଶଳ ଅଭିମୁଖେ ଗମନ କରି ପର୍ଯ୍ୟଟକ ସେଠାରେ ହିନ୍ଦୁ ଏବଂ ବୌଦ୍ଧ ଉଭୟ ଧର୍ମର ଲୋକଙ୍କୁ ବସବାସ କରୁଥିବାର ଦେଖିଥିଲେ । ସେଠାରୁ ଆନ୍ଧ୍ରଦେଶକୁ ଗତକରି ପର୍ଯ୍ୟଟକ ସେଠାରେ କୋଡ଼ିଏଟି ସଂଘାରାମ ଏବଂ ତିରିଶଟି ଦେବମନ୍ଦିର ଦେଖିବାକୁ ପାଇଥିଲେ । ଏଠାରୁ ଦକ୍ଷିଣକୁ ଯାତ୍ରାକରି ସେ ଧନକଟକ ରାଜ୍ୟରେ ପ୍ରବେଶ କରିଥିଲେ । 'ସେଠାରେ ପୁରାତନ ବିହାରମାନ ପ୍ରାୟ ଅଧିକାଂଶ ଧ୍ୱଂସମୁଖରେ ପତିତ ହୋଇ ସାରିଥିଲା । ସେମାନଙ୍କ ମଧ୍ୟରୁ କେବଳ ନବେଗୋଟି ବିହାରରେ ଲୋକଙ୍କୁ ବସବାସ କରୁଥିବାର ଦେଖାଯାଉଥିଲା । ଅଥଚ ଶହେଟି ଦେବମନ୍ଦିରରେ ଅସଂଖ୍ୟ ପୂଜକ ରହିଥିଲେ ।' ଏହାପରେ ଚୋଳରାଜ୍ୟ ଅତିକ୍ରମ କରି ହୁଏନସାଂ ଦକ୍ଷିଣରେ ଦ୍ରାବିଡ଼ ଦେଶରେ ପହଞ୍ଚିଥିଲେ । 'ଏଠାରେ ପ୍ରାୟ ଶହେ ପର୍ଯ୍ୟନ୍ତ ସଂଘାରାମରେ ଦଶହଜାର ଭିକ୍ଷୁ ବାସ କରୁଥିଲେ ।' ଦ୍ରାବିଡ଼ଖଣ୍ଡରୁ ଉତ୍ତରା-ଭିମୁଖେ ଗତ ପର୍ଯ୍ୟଟନ କରି ପରିବ୍ରାଜକ କଙ୍କଣ ଖଣ୍ଡରେ ପ୍ରବେଶ କରିଥିଲେ । ସେଠାରୁ ସେ ମହାରାଷ୍ଟ୍ର ଯାତ୍ରାକରିଥିଲେ । 'ଏଠାକାର ରାଜା ଥିଲେ ଜଣେ କ୍ଷତ୍ରିୟ ଏବଂ ତାହାଙ୍କର ନାମ ଥିଲା ପୁଲକେଶୀ ।' ମହାରାଷ୍ଟ୍ର ପରେ ମାଳବ ରାଷ୍ଟ୍ର ପରିବ୍ରାଜକଙ୍କ ଗତିପଥରେ ପଡ଼ିଥିଲା । 'ଏଠାରେ ପ୍ରାୟ ଶହେ ସଂଘାରାମ ଏବଂ ଶହେ ଦେବମନ୍ଦିର ଅବସ୍ଥିତ ଥିଲା ।' ମାଳବ ପରେ କଚ୍ଛ, ସୌରାଷ୍ଟ୍ର, ଗୁର୍ଜ୍ଜର, ସିନ୍ଧୁ ଏବଂ ମୁଲତାନ ଇତ୍ୟାଦି ଦର୍ଶନ କରି ହୁଏନ୍‌ସାଂ ତାହାଙ୍କର ଭାରତ ଭ୍ରମଣ ଶେଷ କରିଥିଲେ ।

ହୁଏନ୍‌ସାଂଙ୍କ ବିଶଦ ବିବରଣୀ ଅଙ୍ଗରୁ ଏପରି ସଂକ୍ଷେପ ଏବଂ କ୍ଷୁଦ୍ର ଖଣ୍ଡବାକ୍ୟ-ମାନ ବାହାର କରି ଆଣିବାର ଉଦ୍ଦେଶ୍ୟ ହେଉଛି ସପ୍ତମ ଶତାବ୍ଦୀର ଭାରତୀୟ ଧର୍ମ ଉପରେ ଏକ ସାଧାରଣ ଧାରଣା ତିଆରି କରିବା । ଭାରତର ମାତ୍ର କେତୋଟି ସ୍ଥାନ ଛାଡ଼ିଦେଲେ ପୃଥିଆଡ଼େ ବୌଦ୍ଧଧର୍ମ ବିଲୟ୍ନ ଲାଭ କରିସାରିଥିଲା ଏବଂ କରୁଥିଲା । ସହସ୍ର ସହସ୍ର ବୌଦ୍ଧ ସଂଘାରାମ ବା ବିହାର ଧ୍ୱଂସସ୍ତୂପରେ ପରିଣତ ହୋଇ ସାରିଥିଲା । ସେ ସ୍ଥାନରେ ଅଗଣିତ ସଂଖ୍ୟାରେ ହିନ୍ଦୁ ଦେବମନ୍ଦିର ଦଣ୍ଡାୟମାନ ହୋଇଯାଇଥିଲା । ଗୁପ୍ତଯୁଗର ଆରମ୍ଭରୁ ଯେଉଁ ହିନ୍ଦୁ ଉତ୍‌ଥାନ ଚାଲିଥିଲା ଏ ଥିଲା ତାହାର ପରିଣତି । ହୁଏନ୍‌ସାଂ ଥିଲେ ନୈଷ୍ଠିକ ବୌଦ୍ଧ ଏବଂ ସେ ଭାରତର ଯେତେସ୍ଥାନ ବୁଲିଥିଲେ ତାହା ମୁଖ୍ୟତଃ ବୌଦ୍ଧଧର୍ମର ସୂକ୍ଷ୍ମାନୁସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଉଦ୍ଦେଶ୍ୟରେ । ଏହା ଅତି ସମ୍ଭବ ଯେ ସେ ବୌଦ୍ଧ ସଂଘ, ବୌଦ୍ଧ ବିହାର ଏବଂ ବୌଦ୍ଧ ଭିକ୍ଷୁମାନଙ୍କର ଅବସ୍ଥିତି ସମ୍ବନ୍ଧରେ ଯେତେଦୂର ଅନୁସନ୍ଧାନ କରିଥିଲେ ହିନ୍ଦୁ ମନ୍ଦିର, ହିନ୍ଦୁ ମୂର୍ତ୍ତି ଏବଂ ହିନ୍ଦୁ ପୂଜକମାନଙ୍କ ଅବସ୍ଥିତି ସମ୍ପର୍କରେ ସେତେଦୂର ଅନୁସନ୍ଧାନ କରି ନ ଥିଲେ । ତଥାପି ଅତି ସାଧାରଣ ଭାବରେ ହିନ୍ଦୁଧର୍ମ ସମ୍ବନ୍ଧରେ ସେ ଯେତିକି କଥା ଲେଖିଛନ୍ତି ସେଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ହର୍ଷଯୁଗର ଭାରତରେ ଦେଶର ଜାତୀୟ ଧର୍ମ ଥିଲା ହିନ୍ଦୁଧର୍ମ । ଶତ ଶତ ବର୍ଷର ସମୃଦ୍ଧି ପରେ ବୌଦ୍ଧଧର୍ମ ଲୀନ ହୋଇଯିବାକୁ ବସିଥିଲା ଏଥିରେ ସନ୍ଦେହ ନାହିଁ, କିନ୍ତୁ ସେହି ଲୀନମୂଖୀ ବୌଦ୍ଧଧର୍ମର ଧ୍ୱଂସାବଶେଷ ରୂପେ ଏତେ ସୁଦ୍ଧା ଶତ ଶତ ବୌଦ୍ଧ ସଂଘାରାମ ଭାରତର ସ୍ଥାନେ ସ୍ଥାନେ ବିଦ୍ୟମାନ ରହି ସେହି ଧର୍ମର ଅତୀତ ଗୌରବ କଥା ଚୀନ ପରିବ୍ରାଜକ ହୁଏନ୍‌ସାଙ୍କୁ ସ୍ମରଣ କରାଇଥିଲେ ମାତ୍ର ।

ବର୍ତ୍ତମାନ ସେ ଯୁଗର କଳିଙ୍ଗର ଧର୍ମ ଓ ସଂସ୍କୃତି ସମ୍ବନ୍ଧରେ ହୁଏନ୍‌ସାଂଙ୍କ ବିବରଣୀରୁ ଯେତିକି ଆଭାସ ମିଳୁଛି ତାହା ଉପରେ ସଂକ୍ଷେପ ଆଲୋଚନା କରାଯାଉ । ରାଜନୈତିକ ଦୃଷ୍ଟିରୁ ଆମ୍ଭେମାନେ ଦେଖିଛୁଁ ଯେ ସେ ବେଳରେ ବିଶାଳ କଳିଙ୍ଗ ତିନି ରାଜନୈତିକ ଖଣ୍ଡରେ ବିଭକ୍ତ ଥିଲା, ଯଥା, ଓଡ୍ର, କଙ୍ଗୋଦ ଏବଂ କଳିଙ୍ଗ । ଏହି ତିନି ଖଣ୍ଡରେ ସେତେବେଳେ ସାମଗ୍ରିକ ସଂସ୍କୃତି ମଧ୍ୟ ଅତିଶୟ ଉନ୍ନତ ଥିଲା । ଧର୍ମ ଦୃଷ୍ଟିରୁ ହୁଏନ୍‌ସାଂ ଦେଖିଥିଲେ ଯେ ଓଡ୍ର ଦେଶରେ ବୌଦ୍ଧଧର୍ମର ପ୍ରାଧାନ୍ୟ ଏବେସୁଦ୍ଧା ଜ୍ୱଳନ୍ତ ଥିଲା । ଭାରତର ମୁଷ୍ଟିମେୟ କେତୋଟି ମାତ୍ର ବୌଦ୍ଧ କେନ୍ଦ୍ରମାନଙ୍କ ମଧ୍ୟରୁ ଓଡ୍ର ଥିଲା ଅନ୍ୟତମ ।

ଯଦିଚ ଓଡ୍ର ବା ଓଡ଼ିଶା ଖଣ୍ଡରେ ହିନ୍ଦୁଧର୍ମ ଏବଂ ଦେବପୂଜା ହୁଏନ୍‌ସାଂ ଦେଖିବାକୁ ପାଇଥିଲେ ତଥାପି ବୌଦ୍ଧଧର୍ମ ଯେ ଭାରତର ଅନ୍ୟ ସ୍ଥାନମାନଙ୍କ ପରି ଏଠାରେ ମଧ୍ୟ ଏକାଥରକେ ମ୍ଳାନ ହୋଇପଡ଼ିଥିଲା ତାହା ନୁହେଁ । ହୁଏନ୍‌ସାଂଙ୍କ ବର୍ଣ୍ଣନାରୁ ଜଣାପଡ଼େ ଯେ ସେତେବେଳେ ଓଡ଼ିଶାର ଅଧିକାଂଶ ଲୋକେ ବୌଦ୍ଧ-ଧର୍ମାବଲମ୍ବୀ ଥିଲେ ଏବଂ ଓଡ଼ିଶାର ବିଭିନ୍ନ ସ୍ଥାନରେ ପ୍ରାୟ ଏକଶତ ବୌଦ୍ଧ ସଂଘାରାମ ଏବେସୁଦ୍ଧା ଉନ୍ନତ ଅବସ୍ଥାରେ ରହିଥିଲା । ଓଡ଼ିଶାରେ ସେ ଦଶହଜାର ବୌଦ୍ଧ ସନ୍ନ୍ୟାସୀଙ୍କୁ ଦେଖିବାକୁ ପାଇଥିଲେ । ଆମ୍ଭେମାନେ ଆଗରୁ ଜାଣୁ ଯେ ବୁଦ୍ଧଙ୍କ ସମୟରୁ ବିଶେଷତଃ ଅଶୋକଙ୍କ ରାଜତ୍ୱକାଳରୁ ଓଡ଼ିଶା ଭାରତର ଏକ ପ୍ରସିଦ୍ଧ ବୌଦ୍ଧକେନ୍ଦ୍ର ରୂପେ ରହିଆସିଛି । ଗୁପ୍ତ ସମ୍ରାଟମାନଙ୍କ ରାଜତ୍ୱକାଳରେ ଯେତେବେଳେ ପୌରାଣିକ ହିନ୍ଦୁଧର୍ମର ପ୍ରବଳ ଜୁଆରରେ ଭାରତ ଭାସିଗଲା ସେତେବେଳେ ଓଡ଼ିଶା ସେ ସ୍ରୋତରେ ଭାସିଥିଲେ ମଧ୍ୟ ବୌଦ୍ଧଧର୍ମ ପ୍ରତି ସମ୍ପୂର୍ଣ୍ଣ-ରୂପେ ଉଦାସୀନ ହୋଇପଡ଼ି ନ ଥିଲା ; ଅବଶ୍ୟ ବୌଦ୍ଧଧର୍ମ ନିଜ ମନକୁ ନିଜେ ମୃତ୍ୟୁ ବରଣ କରୁଥିଲା ଏବଂ ସେ ମୃତ୍ୟୁର ଲକ୍ଷଣ ଓଡ଼ିଶାରେ ମଧ୍ୟ ଦେଖିବାକୁ ମିଳିଥିଲା । ତଥାପି ଭାରତର ଅନ୍ୟ ଅଞ୍ଚଳମାନଙ୍କ ଅପେକ୍ଷା ଓଡ଼ିଶାରେ ସେ ମୃତ୍ୟୁର ଲକ୍ଷଣ ସେପରି ପ୍ରବଳଭାବେ ଦେଖା ଦେଇ ନ ଥିଲା । ଅନ୍ତତଃ ହୁଏନ୍‌ସାଂଙ୍କ ଅମଳର ଓଡ଼ିଶା ଉପରେ ଏ ମତ ପ୍ରକାଶ କରାଯାଇପାରେ । ଓଡ଼ିଶାରେ ସେ ବେଳରେ ଶହେଟି ବୌଦ୍ଧ ସଂଘାରାମ ଅବସ୍ଥିତ ଥିଲା ଏବଂ ଦଶହଜାର ବୌଦ୍ଧଭିକ୍ଷୁ ସେଥିରେ ବସବାସ କରୁଥିଲେ । ଏପରି ବହୁଳ ସଂଖ୍ୟକ ବୌଦ୍ଧଭିକ୍ଷୁ ଭାରତର ଅନ୍ୟାନ୍ୟ ଅଞ୍ଚଳମାନଙ୍କ ମଧ୍ୟରୁ ମାତ୍ର କେତୋଟି ସ୍ଥାନରେ ଦେଖିବାକୁ ମିଳିଥିଲେ । ହୁଏନ୍‌ସାଂଙ୍କ ମତରେ ଓଡ଼ିଶାର ଏହି ବୌଦ୍ଧମାନେ ସମସ୍ତେ ମହାଯାନପନ୍ଥୀ ଥିଲେ । ହୁଏନ୍‌ସାଂ ନିଜେ ମହାଯାନ ମତବାଦର ଅତିଶୟ ପକ୍ଷପାତୀ ପୃଷ୍ଠପୋଷକ ଥିଲେ । ତେଣୁ ଓଡ଼ିଶାର ମହାଯାନ ବୌଦ୍ଧସଂଘମାନ ଏବଂ ମହାଯାନପନ୍ଥୀ ଭିକ୍ଷୁମାନେ ତାହାଙ୍କ ମନରେ ଯଥେଷ୍ଟ ଆନନ୍ଦ ଦେଇଥିବେ । ହୁଏନ୍‌ସାଂଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ ସେ କାଳର ଓଡ଼ିଶାରେ ପୁଷ୍ପଗିରି ନାମକ ଏକ ଅତି ବୃହତ୍ ଏବଂ ଅତି ପ୍ରସିଦ୍ଧ ବୌଦ୍ଧବିହାର ବା ବିଶ୍ୱବିଦ୍ୟାଳୟ ଅବସ୍ଥିତ ଥିଲା । ଏହି ପୁଷ୍ପଗିରି ବିଶ୍ୱବିଦ୍ୟାଳୟର ଅବସ୍ଥିତି ସମ୍ବନ୍ଧରେ ବିଭିନ୍ନ ଐତିହାସିକ ବିଭିନ୍ନ ମତ ପୋଷଣ କରିଛନ୍ତି । ହୁଏତ ଏହା ଅଶୋକଙ୍କ ରାଜଧାନୀ ବିଖ୍ୟାତ ବୌଦ୍ଧକେନ୍ଦ୍ର ତୋଷଲୀଠାରେ ଅବସ୍ଥିତ ଥିଲା, କିମ୍ବା ଓଡ଼ିଶାର ଅପର ଏକ

ବୌଦ୍ଧକେନ୍ଦ୍ର ପୁଷ୍ପଗିରିଠାରେ ଅବସ୍ଥିତ ଥିଲା, କିମ୍ବା ଉତ୍କଳର ଅପର ଲୁପ୍ତଗର୍ଭ ଅସଂଖ୍ୟ ବୌଦ୍ଧପୀଠ ମଧ୍ୟରୁ କୌଣସି ଗୋଟିଏ ପୀଠରେ ଅବସ୍ଥିତ ଥିଲା । ଏହି ପୁଷ୍ପଗିରି ବିଶ୍ୱବିଦ୍ୟାଳୟ ସମ୍ବନ୍ଧରେ ସୁଦୂର ତିବ୍ବତ ଦେଶୀୟ ବୌଦ୍ଧ ବିବରଣୀମାନଙ୍କରୁ ମଧ୍ୟ ଆଭାସ ମିଳେ । ଏତଦ୍‌ବ୍ୟତୀତ ଦକ୍ଷିଣ ଭାରତୀୟ ପ୍ରାଚୀନ ଅଭିଲେଖ-ମାନଙ୍କରୁ ମଧ୍ୟ ଓଡ଼ିଶାର ଏହି ବିଖ୍ୟାତ ବୌଦ୍ଧ ମହାବିହାର ସ୍ଥିତି ବିଷୟରେ ଜାଣିବାକୁ ମିଳେ । ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ ବୋଧିଶ୍ରୀ ନାମକ ଜଣେ ଖ୍ୟାତନାମା ବୌଦ୍ଧ ସନ୍ନ୍ୟାସୀ ଏହି ପୁଷ୍ପଗିରି ବିଶ୍ୱବିଦ୍ୟାଳୟରେ ବାସ କରୁଥିବା କଥା ପ୍ରାଚୀନ ବିବରଣୀମାନଙ୍କରୁ ଜଣାଯାଏ । ବହୁବିଧ ପ୍ରମାଣରୁ ଏହା ସ୍ପଷ୍ଟ ପ୍ରତୀୟମାନ ହୋଇଛି ଯେ ପ୍ରାଚୀନ ଉତ୍କଳରେ ପୁଷ୍ପଗିରି ନାମକ ଏକ ଭାରତବିଖ୍ୟାତ ବୌଦ୍ଧ ଶିକ୍ଷାପୀଠ ଅବସ୍ଥିତ ଥିଲା ଏବଂ ସପ୍ତମ ଶତାବ୍ଦୀରେ ଯେତେବେଳେ ହୁଏନ୍‌ସାଂ ଉତ୍କଳ ଭ୍ରମଣ କରିଥିଲେ ସେତେବେଳେ ସେ ଏହି ବିଶ୍ୱବିଦ୍ୟାଳୟ ପରିଦର୍ଶନ କରି ଚମତ୍କୃତ ହୋଇଥିଲେ । ଦୁଃଖ ଏବଂ କ୍ଷୋଭର ବିଷୟ ଯେ ଉତ୍କଳର ଏପରି ଏକ ସୁବିଖ୍ୟାତ ଶିକ୍ଷାକେନ୍ଦ୍ରର ଅବସ୍ଥିତି ଆଜିଯାଏ ନିର୍ଭୁଲଭାବେ ନିରୂପିତ ହୋଇ ପାରିଲା ନାହିଁ । କାରଣ ଏପରି ଏକ ନିର୍ଭୁଲ ଏବଂ ନିଶ୍ଚିତ ନିର୍ଣ୍ଣୟ ପାଇଁ ଯେତିକି ଗବେଷଣା ଏବଂ ଅଧ୍ୟବସାୟ ଆବଶ୍ୟକ ତାହା ଉତ୍କଳର ଐତିହାସିକମାନେ ଏପର୍ଯ୍ୟନ୍ତ ବ୍ୟୟ କରିବାକୁ ଇଚ୍ଛା ପ୍ରକାଶ କରି ନାହାନ୍ତି । ସେ ଯାହାହେଉ, ଓଡ଼ିଶାର ତଥା ଭାରତର ଅନେକାନେକ ପଣ୍ଡିତ ଅନୁମାନ କରିଛନ୍ତି ଯେ ଏହି ପୁଷ୍ପଗିରି ବିଶ୍ୱବିଦ୍ୟାଳୟ ଜାଜପୁର ନିକଟବର୍ତ୍ତୀ ରତ୍ନଗିରି ଲଳିତଗିରି ଏବଂ ଉଦୟଗିରି ନାମଧେୟ ପାହାଡ଼ମାନଙ୍କର ଗର୍ଭଦେଶରେ ଅବସ୍ଥିତ ଥିଲା । ଅତି ପ୍ରାଚୀନକାଳରୁ ଉତ୍କଳର ତୋଷଳୀ ଏବଂ ଦନ୍ତପୁର ପରି ରତ୍ନଗିରି, ଲଳିତଗିରି ଓ ଉଦୟଗିରି ମଧ୍ୟ ଏକ ବୌଦ୍ଧକେନ୍ଦ୍ରରେ ପରିଣତ ହୋଇଥିଲା । ଏଠାକାର ବୌଦ୍ଧ ସ୍ଥାପତ୍ୟ ଏ କଥାର ମୂକସାକ୍ଷୀ । ଅବଶ୍ୟ ରତ୍ନଗିରି, ଲଳିତଗିରି ଓ ଉଦୟଗିରିର ବୌଦ୍ଧ ସ୍ଥାପତ୍ୟର ସୁନ୍ଦର ସୁନ୍ଦର ସନ୍ତକମାନଙ୍କୁ କାଳକ୍ରମେ ଭାରତର ବିଭିନ୍ନ ଯାଦୁଘରମାନଙ୍କୁ ଅପସାରିତ କରାଯାଇଛି । ତଥାପି ଆଜିସୁଦ୍ଧା ଉଦୟଗିରିର ନିମ୍ନଦେଶରେ ଏକ ନଅଫୁଟ ଉଚ୍ଚତା ବିଶିଷ୍ଟ ବିଶାଳ ବୌଦ୍ଧମୂର୍ତ୍ତି ଦେଖିବାକୁ ମିଳେ । ଏ ମୂର୍ତ୍ତି ହେଉଛନ୍ତି ଭୂମିସ୍ପର୍ଶ ମୁଦ୍ରାରେ ଆସୀନ ବୁଦ୍ଧଦେବ ଲଳିତଗିରିରେ ମଧ୍ୟ ଅନେକ ଖୋଦିତ ମୂର୍ତ୍ତି ଆଜିଯାଏ ଦେଖିବାକୁ ମିଳେ । ଏହିଠାରେ କେତେକ ପ୍ରାଚୀନ ଶିଳାଲିପି ମଧ୍ୟ ବିଦ୍ୟମାନ । ଏଠାକାର

ଏ ସମସ୍ତ ବୌଦ୍ଧ ସ୍ଥାପତ୍ୟମାନଙ୍କର ଧ୍ୱଂସାବଶେଷ ନିଶ୍ଚିତରୂପେ ପ୍ରମାଣିତ କରେ ଯେ ଦିନେ ଏହି ସ୍ଥାନ ବୌଦ୍ଧଧର୍ମର ଏକ କେନ୍ଦ୍ରସ୍ଥଳୀ ଥିଲା । ତିବ୍ବତ ଦେଶୀୟ ବୌଦ୍ଧ ଗ୍ରନ୍ଥମାନଙ୍କରୁ ମଧ୍ୟ ଉତ୍କଳ ଦେଶର ରତ୍ନଗିରି ବିଷୟରେ ଜାଣିବାକୁ ମିଳେ । ଅନେକାନେକ କାରଣରୁ ଜାଜପୁର ନିକଟସ୍ଥ ଏହି ଉଦୟଗିରି, ଲଳିତଗିରି ଓ ରତ୍ନଗିରିଠାରେ ପ୍ରାଚୀନ ପୁଷ୍ପଗିରି ବିଶ୍ୱବିଦ୍ୟାଳୟ ଅବସ୍ଥିତ ଥିଲା ବୋଲି ଆପାତତଃ ପଣ୍ଡିତମାନେ ଗ୍ରହଣ କରିନେଇଛନ୍ତି । ପୁଷ୍ପଗିରିର ଅବସ୍ଥିତି ଉତ୍କଳର ଯେ କୌଣସି ସ୍ଥାନରେ ହୋଇ ଥାଉନା କାହିଁକି ଏହି ଭାରତ ବିଖ୍ୟାତ ମହାବିହାର ଯେ ଦିନେ ଉତ୍କଳୀୟ ଶିକ୍ଷାର ଚରମ ପୀଠସ୍ଥଳୀ ଥିଲା ଏଥିରେ ସନ୍ଦେହ ନାହିଁ । ଉତ୍କଳ ଖଣ୍ଡରେ ଭୌମ ରାଜତ୍ୱକାଳରେ ଏହି ପ୍ରାଚୀନ ବିଶ୍ୱବିଦ୍ୟାଳୟ ତାହାର ଚରମ ଉତ୍କର୍ଷତା ଲାଭ କରିଥିଲା ବୋଲି ଅନୁମାନ କରିଯାଇପାରେ । କାରଣ ଭୌମ ବଂଶର ରାଜଧାନୀ ଥିଲା ଜାଜପୁର ନଗରୀରେ । ଏହି ନଗରୀର ଅଦୂରବର୍ତ୍ତୀ ସ୍ଥାନରେ ଅବସ୍ଥିତ ରହି ପୁଷ୍ପଗିରି ରାଜପୃଷ୍ଠପୋଷକତା ଲାଭ କରିଥିବାର ଅନୁମାନ । ଏତଦ୍‌ବ୍ୟତୀତ ଅପର ଏକ ବିଶେଷ ଉଲ୍ଲେଖଯୋଗ୍ୟ ଘଟଣାରୁ ଭୌମଯୁଗରେ ପୁଷ୍ପଗିରି କିପରି ସୁଖ୍ୟାତିର ଶୀର୍ଷ ସୀମାରେ ଉପନୀତ ହୋଇଥିଲା ତାହା ସ୍ପଷ୍ଟରୂପେ ଜଣାଯାଏ । ବିଖ୍ୟାତ ଫରାସୀ ପଣ୍ଡିତ ଏସ୍. ସିଲଭାନ୍ ଲେଭିଙ୍କ ଅନୁଦିତ ଚୀନ୍ ଇତିହାସରୁ ଜଣାଯାଏ ଯେ ଉତ୍କଳର କୌଣସି ଜଣେ ଭୌମବଂଶୀୟ ନରପତି 'ଗଣ୍ଡବ୍ୟୂହ' ନାମକ ଏକ ବୌଦ୍ଧ ଗ୍ରନ୍ଥ ସ୍ୱହସ୍ତରେ ଲେଖି ସେ ଶାସ୍ତ୍ର ଝଣ୍ଡିକ ପ୍ରଜ୍ଞା ନାମକ ଏକ ବୌଦ୍ଧ ଭିକ୍ଷୁଙ୍କ ହସ୍ତରେ ତତ୍‌କାଳୀନ ଚୀନ ସମ୍ରାଟଙ୍କ ନିକଟକୁ ଉପହାର ସ୍ୱରୂପ ପ୍ରେରଣ କରିଥିଲେ । ଉକ୍ତ ଭୌମ ନରପତିଙ୍କ ନାମ ଥିଲା ଶୁଭଙ୍କର । ତାହାଙ୍କର ଦୂତରୂପେ ଯେଉଁ ବୌଦ୍ଧ-ଭିକ୍ଷୁ ପ୍ରଜ୍ଞା ସୁଦୂର ଚୀନ ଉଦ୍ଦେଶ୍ୟରେ ଯାତ୍ରା କରିଥିଲେ ସେହି ପ୍ରଜ୍ଞାଙ୍କର ବାସସ୍ଥାନ ଥିଲା କାବୁଲ ନିକଟସ୍ଥ କପିଶା ନଗରୀରେ । ପ୍ରଜ୍ଞା ପ୍ରଥମେ ଉତ୍ତର ଭାରତର ବିଭିନ୍ନ ଶିକ୍ଷାନୁଷ୍ଠାନମାନଙ୍କରେ ଶିକ୍ଷାଲାଭ କରିଥିଲେ । ତାପରେ ସେ ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟରେ କିଛିକାଳ ଅଧ୍ୟୟନ କରିଥିଲେ । ଏହାପରି ଅଧ୍ୟୟନ କାର୍ଯ୍ୟରେ ସେ ଦୀର୍ଘ ଅଠର ବର୍ଷକାଳ ଅତିବାହିତ କରିଥିଲେ । ଅଧ୍ୟୟନ ପରେ ଏହି ଜ୍ଞାନ-ପିପାସୁ ବୌଦ୍ଧ ଭିକ୍ଷୁ ଭାରତର ବହୁତୀର୍ଥ ପରିଭ୍ରମଣ କରିଥିଲେ । ଏପରି ତୀର୍ଥ ପରିଭ୍ରମଣ ପରେ ପରିଶେଷରେ ପ୍ରଜ୍ଞା ଉତ୍କଳ ରାଜାଙ୍କର ବିଶ୍ୱବିଦ୍ୟାଳୟରେ ଦର୍ଶନ ଶାସ୍ତ୍ର ଅଧ୍ୟୟନ କରିବା ପାଇଁ ଅବସ୍ଥାନ କରିଥିଲେ । ରାଜା ଶୁଭଙ୍କର ଏପରି ଏକ

ଜ୍ଞାନବାର ଛାତ୍ରଙ୍କ ହସ୍ତରେ ସ୍ୱହସ୍ତଲିଖିତ 'ଗଣ୍ଡବ୍ୟୁହ' ଗ୍ରନ୍ଥ ଏବଂ ଏକ ବନ୍ଧୁତା-ସୂଚକ ପତ୍ର ଚୀନ ସମ୍ରାଟଙ୍କ ନିକଟକୁ ପ୍ରେରଣ କରିବାକୁ ସିଦ୍ଧାନ୍ତ କରିଥିଲେ । ରାଜାଙ୍କ ଅନୁରୋଧରେ ପ୍ରଜ୍ଞା ଚୀନ ଯାତ୍ରା କରିଥିଲେ ଏବଂ ଯାତ୍ରା ଶେଷରେ ଚୀନ ସମ୍ରାଟ ଟେହ୍‌ସୋଙ୍ଗଙ୍କ ଦରବାରରେ ଉପସ୍ଥିତ ହୋଇ ତାହାଙ୍କୁ ଉତ୍କଳ ନରପତିଙ୍କର ଉପହାରମାନ ପ୍ରଦାନ କରିଥିଲେ । ଉତ୍କଳ ରାଜାଙ୍କର ପ୍ରଜ୍ଞାଙ୍କ ପ୍ରତି ଅନୁରୋଧ ଥିଲା ଯେ ସେ ଯେପରି ତାହାଙ୍କ ପ୍ରଦତ୍ତ ଗ୍ରନ୍ଥଟିକୁ ଚୀନଭାଷାରେ ଅନୁବାଦ କରି ଚୀନ ସମ୍ରାଟଙ୍କୁ ତାହା ବୁଝାଇ ଦିଅନ୍ତି । ପ୍ରଜ୍ଞା ରାଜାଙ୍କର ଏ ଅନୁରୋଧ ପାଳନ କରିଥିଲେ । ସୁଦୂର ଚୀନ ଦେଶରୁ ପ୍ରଜ୍ଞା ଆଉ ମାତୃଭୂମି ଭାରତକୁ ଫେରି ଆସି ନ ଥିଲେ । ସେ ସେଠାରେ ଚୀନଭାଷା ଅଧ୍ୟୟନପୂର୍ବକ ସେ ଭାଷାରେ ଅଗାଧ ପାଣ୍ଡିତ୍ୟ ଲାଭ କରିଥିଲେ ଏବଂ ବହୁ ଗ୍ରନ୍ଥ ଚୀନ ଭାଷାରେ ଅନୂଦିତ କରିଥିଲେ । ଓଡ଼ିଶା ରାଜାଙ୍କ ସ୍ୱହସ୍ତଲିଖିତ ଗ୍ରନ୍ଥ ଏବଂ ଚୀନ ସମ୍ରାଟଙ୍କ ନିକଟକୁ ତାହାଙ୍କର ପତ୍ର, ଏ ଦୁଇଟି ମଧ୍ୟ ଚୀନ ଭାଷାକୁ ରୂପାନ୍ତରିତ ହୋଇଥିଲା ।

ଚୀନ ଭାଷାର ଅଗାଧ ଗର୍ଭରୁ ସିଲଭିନ୍ ଲେଭି ଏ ଯେଉଁ ଅମୂଲ୍ୟ ବିଷୟଟିକୁ ଉଦ୍ଧାର କରିଛନ୍ତି ସେଥିପାଇଁ ଉତ୍କଳ ଇତିହାସ ତାହାଙ୍କ ନିକଟରେ ଋଣୀ ।[1] ଉପର ଲିଖିତ ବିବରଣୀରୁ ଏହା ସ୍ପଷ୍ଟ ଜଣାଯାଏ ଯେ ଭୌମ ରାଜାଭିଷେକ ଉତ୍କଳ ଚୀନ ଦେଶ ସହିତ ଯୋଗାଯୋଗ ସମ୍ପର୍କ ସ୍ଥାପନ କରିଥିଲା । ଭୌମ ନରପତି ସ୍ୱହସ୍ତଲିଖିତ ପୁସ୍ତକ ଚୀନ ସମ୍ରାଟଙ୍କ ନିକଟକୁ ପ୍ରେରଣ କରି ନିଜ ସଂସ୍କୃତିର ଆଦର୍ଶ ପ୍ରମାଣ ଦେଖାଇଥିଲେ । ଏହା ସଙ୍ଗେ ସଙ୍ଗେ ଏକଥା ମଧ୍ୟ ପ୍ରମାଣିତ ହୁଏ ଯେ ତତ୍କାଳୀନ ଉତ୍କଳରେ ଅତି ଉନ୍ନତ ଧରଣର ଏକ ବିଶ୍ୱବିଦ୍ୟାଳୟ ବିଦ୍ୟମାନ ଥିଲା ଯେଉଁ ଅନୁଷ୍ଠାନର ମହତ୍ତ୍ୱ ଭାରତର ଦୂର ଦୂରାନ୍ତରୁ ବିଜ୍ଞ ଛାତ୍ରମାନଙ୍କୁ ଆକୃଷ୍ଟ କରୁଥିଲା । ପ୍ରଜ୍ଞାଙ୍କ ଉଦାହରଣ ଏ ବିଷୟର ପ୍ରମାଣ । ପ୍ରଜ୍ଞା ଉତ୍ତରଭାରତର ଶିକ୍ଷାନୁଷ୍ଠାନମାନଙ୍କରେ ଅଧ୍ୟୟନ ସମାପନ କରି ଏବଂ ନାଳନ୍ଦ ବିଶ୍ୱବିଦ୍ୟାଳୟର କୃତୀଛାତ୍ରରୂପେ ଉତ୍ତୀର୍ଣ୍ଣ ହୋଇସାରି ମଧ୍ୟ ଉତ୍କଳର ଶିକ୍ଷାପୀଠରେ ଛାତ୍ର ହେବାକୁ ଆସିଥିଲେ । ଏହାର ଅର୍ଥ, ସେ କାଳର ଉତ୍କଳରେ ଏପରି ଏକ ବିଶ୍ୱବିଦ୍ୟାଳୟ ବିଦ୍ୟମାନ ଥିଲା ଯାହାକି ନାଳନ୍ଦ ବିଶ୍ୱବିଦ୍ୟାଳୟର ସମକକ୍ଷ ଥିଲା କିମ୍ବା କେତେକ ବିଷୟରେ ନାଳନ୍ଦାଠାରୁ ବରଂ ଉନ୍ନତତର ଥିଲା ।

1. Epigraphia Indica Vol. XV, pp. 363--364.

ପ୍ରଜ୍ଞା ଉତ୍କଳ ବିଦ୍ୟାପୀଠରେ ଯୋଗଦର୍ଶନ ଅଧ୍ୟୟନ କରିଥିଲେ । ହୁଏତ ଏହି ବିଷୟଟିରେ ସେକାଳର ଉତ୍କଳ ବିଶ୍ୱବିଦ୍ୟାଳୟ ଭାରତ ମଧ୍ୟରେ ସର୍ବଶ୍ରେଷ୍ଠ ଶିକ୍ଷାକେନ୍ଦ୍ର ଥିଲା । ପ୍ରାଚୀନ ଉତ୍କଳର ଏହି ବିଶ୍ୱବିଦ୍ୟାଳୟ ଯେ ହୁଏନ୍‌ସାଂଙ୍କ ବର୍ଣ୍ଣିତ ପୁଷ୍ପଗିରି ମହାବିହାର ଏଥିରେ ପ୍ରାୟ ଅଧିକାଂଶ ପଣ୍ଡିତ ଏକମତ । କାରଣ ଉତ୍କଳ ଖଣ୍ଡରେ ଭୌମରାଜତ୍ୱ କାଳରେ ପୁଷ୍ପଗିରି ବିଶ୍ୱବିଦ୍ୟାଳୟ ତାହାର ସମୃଦ୍ଧିର ଶୀର୍ଷ ସୀମା ଲାଭ କରିଥିଲା ଏବଂ ସେହି ରାଜତ୍ୱକାଳରେହିଁ କୃତାସ୍ଥିର ପ୍ରଜ୍ଞା ଭୌମ ରାଜାଙ୍କ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ ସମାପନ କରି ଭୌମ ରାଜାଙ୍କ ଦ୍ୱାରା ଚୀନ ସାମ୍ରାଜ୍ୟକୁ ପ୍ରେରିତ ହୋଇଥିଲେ । ହୁଏନ୍‌ସାଂ ଏହି ଭୌମରାଜତ୍ୱ ବେଳେହିଁ ଓଡ଼ିଶା ଆଗମନ କରିଥିଲେ ଏବଂ ପୁଷ୍ପଗିରି ବିଶ୍ୱବିଦ୍ୟାଳୟ ଅବଲୋକନ କରି ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ । ହୁଏନ୍‌ସାଂଙ୍କ ଦ୍ୱାରା ପୁଷ୍ପଗିରି ଦର୍ଶନର ବହୁବର୍ଷ ପରେ ପ୍ରଜ୍ଞା ସେହି ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରିଥିଲେ । ଏଥିରୁ ପ୍ରମାଣିତ ହୁଏ ଯେ ପୁଷ୍ପଗିରି ବିହୁଶତ ବର୍ଷ ଯାବତ୍ ଉତ୍କଳୀୟ ଶିକ୍ଷା ସଂସ୍କୃତିର ଏକ ସର୍ବଶ୍ରେଷ୍ଠ କେନ୍ଦ୍ରରୂପେ ବିରାଜିତ ହୋଇଥିଲା । ହୁଏନ୍‌ସାଂଙ୍କ ଉତ୍କଳ ଭ୍ରମଣର ବହୁବର୍ଷ ପୂର୍ବରୁ ମଧ୍ୟ ପୁଷ୍ପଗିରି ଏକ ମହାପୀଠରେ ପରିଣତ ହୋଇ ସାରିଥିଲା କାରଣ ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ ଅର୍ଥାତ୍ ହୁଏନ୍‌ସାଂଙ୍କ ଆଗମନର ଦୀର୍ଘ ପାଞ୍ଚଶହ ବର୍ଷ ପୂର୍ବେ ସେହି ପୁଷ୍ପଗିରି ମହାବିହାରରେ ବିଖ୍ୟାତ ବୌଦ୍ଧ ଭିକ୍ଷୁ ବୋଧିଶ୍ରୀ ବାସ କରୁଥିଲେ ଏବଂ ବୌଦ୍ଧ ସଂସ୍କୃତିର ଉନ୍ନତ ସାଧନ କାର୍ଯ୍ୟରେ ଚେଷ୍ଟିତ ରହିଥିଲେ ।

ହୁଏନ୍‌ସାଂଙ୍କ ବର୍ଣ୍ଣିତ ପୁଷ୍ପଗିରି ବିହାରରୁ ସେ ଯୁଗୀୟ ଉତ୍କଳର ଶିକ୍ଷା ଓ ସଂସ୍କୃତି ସମ୍ବନ୍ଧରେ କିଛି ଜଣାପଡ଼ିଲା । ସେହିପରି, ତାହାଙ୍କ ଉତ୍କଳ ବର୍ଣ୍ଣନାରୁ ଉତ୍କଳର ସମୃଦ୍ଧି ସମ୍ବନ୍ଧରେ ମଧ୍ୟ ଅନେକ କଥା ଜଣାପଡ଼େ । ହୁଏନ୍‌ସାଂ ଓଡ଼ିଶାର ଦକ୍ଷିଣ ଉପକୂଳରେ ଚରିତ୍ର (ଚ-ଲି-ତ-ଲୋ) ନାମକ ଏକ ସାମୁଦ୍ରିକ ବନ୍ଦର ଦେଖିଥିଲେ । ଏହି ଚରିତ୍ର ବା ଚଲିତଲୋ ଆଧୁନିକ ଚିଲିକା ବୋଲି ହାଣ୍ଟାର ସାହେବଙ୍କ ମତ । କାରଣ ପ୍ରାଚୀନ କାଳରେ ଚିଲିକା ହ୍ରଦ ଅତ୍ୟନ୍ତ ଗଭୀର ଥିଲା ଏବଂ ସମୁଦ୍ରଗାମୀ ଜାହାଜ, ବୋଇତମାନଙ୍କର ଆଶ୍ରୟ ପାଇଁ ଏକ ଉପଯୁକ୍ତ ସ୍ଥାନ ଥିଲା । ଆଜି ଅବଶ୍ୟ ଚିଲିକା ମାଟିରେ ପୋତି ପଡ଼ୁଲାଣି ଏବଂ ତାହାର ଅଗଭୀର ଗର୍ଭରେ ଜାହାଜମାନ ଆଶ୍ରୟ ନେଇ ପାରୁ ନାହାନ୍ତି ।

ଅନ୍ୟ କେତେକ ଐତିହାସିକଙ୍କ ମତରେ ହୁଏନ୍‌ସାଂଙ୍କ ବର୍ଣ୍ଣିତ 'ଚରିତ୍ର' ହେଉଛି ଆଧୁନିକ ପୁରୀ । କେହି କେହି ଭାବନ୍ତି ଏହା କୋଣାର୍କ । ଅପର କାହାରି ମତରେ ଏହା ହେଉଛି ଚହୋପୁଲା ନାମକ ଏକ ପ୍ରାଚୀନ ବନ୍ଦର । ଚିଲିକା, ପୁରୀ ଏବଂ କୋଣାର୍କ, ଏ ତିନୋଟି ସମୁଦ୍ର କୂଳବର୍ତ୍ତୀ ସ୍ଥାନ ପ୍ରାଚୀନ ଉତ୍କଳର ତିନି ସମୃଦ୍ଧିଶାଳୀ ବନ୍ଦର ଥିଲା, ଏଥିରେ ସନ୍ଦେହ ନାହିଁ । ଏହି ତିନିସ୍ଥାନ ମଧ୍ୟରୁ କୌଣସି ଏକ ସ୍ଥାନ ପ୍ରାଚୀନ କାଳରେ 'ଚରିତ୍ର' ନାମରେ ମଧ୍ୟ ଆଖ୍ୟାତ ହେଉଥିଲା ଏବଂ ସପ୍ତମ ଶତାବ୍ଦୀରେ ହୁଏନ୍‌ସାଂ ସେହି ଚରିତ୍ରନାମ୍ନୀ ବାଣିଜ୍ୟ କେନ୍ଦ୍ରର ଭୂୟସୀ ପ୍ରଶଂସା କରିଯାଇଥିଲେ । ତାହାଙ୍କ ବର୍ଣ୍ଣନାରୁ ଜଣାଯାଏ ଚରିତ୍ର ନଗର ସେତେବେଳେ ସମଗ୍ର ପ୍ରାଚ୍ୟଖଣ୍ଡର ଏକ ବିଖ୍ୟାତ ବାଣିଜ୍ୟ କେନ୍ଦ୍ର ଥିଲା । ଏଠାରୁ ଉତ୍କଳୀୟ ବଣିକମାନେ ଦେଶ ଦେଶାନ୍ତର ଉଦ୍ଦେଶ୍ୟରେ ସମୁଦ୍ରଯାତ୍ରା କରୁଥିଲେ ଏବଂ ଦେଶ-ବିଦେଶରୁ ମଧ୍ୟ ବଣିକମାନେ ଆସି ଏହି ବନ୍ଦରରେ ବାଣିଜ୍ୟ କରୁଥିଲେ । ଚରିତ୍ର ନଗର ଅତିଶୟ ସୁରକ୍ଷିତ ଥିଲା । ଏହା ସେ ନଗରୀର ସମୃଦ୍ଧିର ଲକ୍ଷଣ । ହୁଏନ୍‌ସାଂ ଆଶ୍ଚର୍ଯ୍ୟ ହୋଇଥିଲେ ଯେ କେତେ ପ୍ରକାରର ଦୁଷ୍ପ୍ରାପ୍ୟ ଦ୍ରବ୍ୟ ଏହି ସମୃଦ୍ଧିଶାଳୀ ବାଣିଜ୍ୟ କେନ୍ଦ୍ରରେ କ୍ରୟ ବିକ୍ରୟ ହେଉଥିବାର ଦେଖା ଯାଉଥିଲା । କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ ଭାରତର ଆପାଦମସ୍ତକରେ ହୁଏନ୍‌ସାଂ ଯେତେ ନଗରୀ ଦେଖିଥିଲେ ସେମାନଙ୍କ ମଧ୍ୟରୁ ଧନ ସମ୍ପଦ, ବାଣିଜ୍ୟ ବ୍ୟବସାୟ ଦୃଷ୍ଟିରୁ ଓଡ୍ରଦେଶର ଚରିତ୍ର ନଗରହିଁ ଥିଲା ସର୍ବଶ୍ରେଷ୍ଠ ।

ଚିଲିକା ସୀମାନ୍ତରେ ଓଡ୍ର ଭ୍ରମଣ ଶେଷ କରି ହୁଏନ୍‌ସାଂ ଗଞ୍ଜାମ ଅଞ୍ଚଳରେ ପ୍ରବେଶ କରିଥିଲେ । ସେତେବେଳେ ଗଞ୍ଜାମ ଅଞ୍ଚଳର ନାମ ଥିଲା କଙ୍ଗୋଦ ବା କନ୍ୟୋଧ ଦେଶ । ହୁଏନ୍‌ସାଂଙ୍କ ବିବରଣୀମାନଙ୍କରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ସମ୍ରାଟ ହର୍ଷବର୍ଦ୍ଧନ କଙ୍ଗୋଦ ବିଜୟ କରିଥିଲେ । ତାହାଙ୍କର ଏହି କଙ୍ଗୋଦ ବିଜୟ ଘଟଣାରୁ ପରୋକ୍ଷରୂପେ ତଦାନୀନ୍ତନ କଙ୍ଗୋଦର ଧର୍ମ ଓ ସଂସ୍କୃତି ସମ୍ବନ୍ଧରେ ଅନେକ ବିଷୟ ଜଣାପଡ଼େ । ହର୍ଷ ଶିଳାଦିତ୍ୟ ଏବଂ ହୁଏନ୍‌ସାଂ ଦୁହେଁଯାକ ମହାଯାନପନ୍ଥୀ ବୌଦ୍ଧ ଥିଲେ ଏବଂ ଭାରତରେ ସେହି ମତବାଦର ପ୍ରଚାର ପାଇଁ ଚେଷ୍ଟିତ ହୋଇଥିଲେ । ହୁଏନ୍‌ସାଂ ଲେଖିଛନ୍ତି ଯେ କଙ୍ଗୋଦ ମଣ୍ଡଳରେ ବୌଦ୍ଧ-ଧର୍ମ ହୀନପ୍ରଭ ହୋଇଯାଇଥିଲା ଏବଂ ହିନ୍ଦୁଧର୍ମ ପ୍ରବଳ ହୋଇ ଉଠିଥିଲା । କିନ୍ତୁ ସେ ସେତେବେଳେ ହର୍ଷବର୍ଦ୍ଧନଙ୍କ ସହିତ କଙ୍ଗୋଦର ସମ୍ପର୍କ ବିଷୟରେ ଏବଂ

ହର୍ଷଙ୍କର କଙ୍ଗୋଦ ଅବସ୍ଥାନ ସମ୍ବନ୍ଧରେ ଆଲୋଚନା କରୁଛନ୍ତି ସେତେବେଳେ ସ୍ପଷ୍ଟ ଜଣାପଡ଼ୁଛି ଯେ ହର୍ଷଯୁଗରେ କଙ୍ଗୋଦ ଖଣ୍ଡରେ ହୀନଯାନପନ୍ଥୀ ବୌଦ୍ଧ-ମାନେ ବହୁ ସଂଖ୍ୟାରେ ବସବାସ କରୁଥିଲେ । ହୁଏନ୍‌ସାଂ ମହାଯାନପନ୍ଥୀ ବୌଦ୍ଧ ଥିବାରୁ ସେ କଙ୍ଗୋଦର ଏହି ହୀନଯାନୀମାନଙ୍କୁ ଦେଖିସୁଦ୍ଧା ନ ଦେଖିଲା ପରି ବ୍ୟବହାର କରୁଛନ୍ତି । ଅର୍ଥାତ୍ ଭାରତର ବିଭିନ୍ନ ସ୍ଥାନର ଧର୍ମ ବିଷୟ ବର୍ଣ୍ଣନା ଦେବାକୁ ଯାଇ ସେ ପ୍ରତ୍ୟେକ ସ୍ଥାନରେ ବୌଦ୍ଧଧର୍ମର ପ୍ରଭାବ ବିଷୟ ଉଲ୍ଲେଖ କରିଥିଲେ ସୁଦ୍ଧା କଙ୍ଗୋଦରେ ହୀନଯାନୀମାନଙ୍କର ପ୍ରଭାବ ଏବଂ ପାଣ୍ଡିତ୍ୟ ବିଷୟରେ ବର୍ଣ୍ଣନା କରିବାକୁ ଇଚ୍ଛା କରି ନାହାନ୍ତି । କିନ୍ତୁ କଙ୍ଗୋଦର ହୀନଯାନୀ ବୌଦ୍ଧମାନଙ୍କର ପ୍ରତିଭା ତାହାଙ୍କ ଉଦ୍ଦେଶ୍ୟକୁ ପ୍ରତାରିତ କରି ତାହାଙ୍କ ଲେଖନୀରୁ ନିର୍ଗତ ହୋଇଛି । ହର୍ଷଙ୍କ କଙ୍ଗୋଦ ଅବସ୍ଥାନ ବେଳର ବର୍ଣ୍ଣନା ଦେବାକୁ ଯାଇ ହୁଏନ୍‌ସାଂ ଏହିପରି ନିଜକୁ ନିଜେ ପ୍ରତାରିତ କରିଛନ୍ତି । ଅର୍ଥାତ୍ ହୀନଯାନ ବୌଦ୍ଧମାନଙ୍କର ଅବସ୍ଥିତି ସମ୍ବନ୍ଧରେ ସେ ସିଧା ସଳଖଭାବେ କିଛି କହି ନ ଥିଲେ ସୁଦ୍ଧା ହର୍ଷଙ୍କ କଙ୍ଗୋଦ ଅବସ୍ଥାନ ବିଷୟରେ କହିବାକୁ ଯାଇ ସେ ତାହା ଉଲ୍ଲେଖ କରିବାକୁ ବାଧ୍ୟ ହୋଇଛନ୍ତି । ହୁଏନ୍‌ସାଂଙ୍କ ବର୍ଣ୍ଣନାରୁ ଜଣାପଡ଼େ ଯେ ଶ୍ରୀହର୍ଷ ନାଳନ୍ଦା ନିକଟରେ ଏକ ବିଶାଳ ମନ୍ଦିର ନିର୍ମାଣ କରାଇଥିଲେ । ତାହାପରେ ସେ ଯେତେବେଳେ କଙ୍ଗୋଦ ବିଜୟ ଉତ୍ତାରେ ସେହି ରାଜ୍ୟରେ କିଛିକାଳ ପାଇଁ ଅବସ୍ଥାନ କରୁଥିଲେ ସେତେବେଳେ କଙ୍ଗୋଦର ହୀନଯାନପନ୍ଥୀମାନେ ହର୍ଷଙ୍କୁ ତାହାଙ୍କର ମହାଯାନ ପନ୍ଥାରେ ବିଶ୍ୱାସ ପାଇଁ ଏବଂ ମନ୍ଦିର ନିର୍ମାଣ ଇତ୍ୟାଦି କାର୍ଯ୍ୟ ପାଇଁ ବିଦ୍ରୂପ କରିବାକୁ ଲାଗିଲେ । ହୀନଯାନୀମାନଙ୍କୁ ହର୍ଷଙ୍କର ମନ୍ଦିର ନିର୍ମାଣ କାର୍ଯ୍ୟ କାପାଳିକମାନଙ୍କର କାର୍ଯ୍ୟତୁଲ୍ୟ ପ୍ରତୀୟମାନ ହୋଇଥିଲା । ସେମାନେ ସମଗ୍ର ମହାଯାନ ପନ୍ଥାକୁ ବୌଦ୍ଧଧର୍ମର ଏକ ବିକୃତ ଏବଂ ଅବାଞ୍ଛିତ ଅଙ୍ଗ ବୋଲି ମନେ କରୁଥିଲେ । ସମ୍ରାଟ ହର୍ଷବର୍ଦ୍ଧନ ଅପର ପକ୍ଷରେ ମହାଯାନପନ୍ଥୀ ବୌଦ୍ଧ ଥିଲେ ଏବଂ ସେ କଙ୍ଗୋଦର ଏହି ହୀନଯାନୀମାନଙ୍କର ବିଦ୍ରୂପ ଦ୍ୱାରା ବିଚଳିତ ଏବଂ ଉତ୍ତ୍ୟକ୍ତ ହୋଇଥିଲେ । ତେଣୁ ତାହାଙ୍କ ମଧ୍ୟରେ ଏବଂ ହୀନଯାନୀ ଅଗ୍ରଣୀ-ମାନଙ୍କ ମଧ୍ୟରେ ଏକ ସାଂସ୍କୃତିକ ତର୍କଯୁଦ୍ଧ ଅବଶ୍ୟମ୍ଭାବୀ ହୋଇପଡ଼ିଥିଲା । ସମ୍ରାଟଙ୍କର ରାଜଦଣ୍ଡ ପ୍ରତି ଭୀତି ପ୍ରକାଶ ନ କରି କଙ୍ଗୋଦର ହୀନଯାନପନ୍ଥୀ ଅଗ୍ରଣୀମାନେ ତାହାଙ୍କ ସହିତ ଦେଖା କରିଥିଲେ ଏବଂ ତାହାଙ୍କ ପ୍ରତି ପ୍ରକାଶ୍ୟ ଭାବରେ ତିରସ୍କାରସୂଚକ ବାକ୍ୟମାନ ପ୍ରୟୋଗ କରିଥିଲେ । ସେମାନେ

ହର୍ଷବର୍ଦ୍ଧନଙ୍କୁ ସ୍ପଷ୍ଟଭାବରେ କହିଥିଲେ ଯେ ତାହାଙ୍କର ମହାଯାନ ମତବାଦ ତଥା ନାଳନ୍ଦ ମଠରେ ପ୍ରତିପାଦିତ ଆକାଶ-କୁସୁମ ତତ୍ତ୍ୱ ଏବଂ କାପାଳିକମାନଙ୍କର ମତବାଦ ସହ ସମାନ ଏବଂ ତେଣୁ ଅତିଶୟ ନିକୃଷ୍ଟ । ସମ୍ରାଟଙ୍କୁ ଏପରି ତିରସ୍କାର-ସୂଚକ କଥାମାନ କହିଲା ପରେ ହୀନଯାନପନ୍ଥୀ ଆଚାର୍ଯ୍ୟମାନେ ସେମାନଙ୍କର ନିଜ ମତବାଦ ସମ୍ବନ୍ଧୀୟ ଏକ ଧର୍ମଶାସ୍ତ୍ର ତାହାଙ୍କୁ ଦେଖାଇଥିଲେ ଏବଂ ସେହି ଗ୍ରନ୍ଥରେ ପ୍ରତିପାଦିତ ହୋଇଥିବା ମତକୁ ଯୁକ୍ତିଦ୍ୱାରା ଖଣ୍ଡନ କରିବାକୁ ହର୍ଷଙ୍କୁ ଆହ୍ୱାନ କରିଥିଲେ । ହୀନଯାନୀମାନଙ୍କର ଏହି ଗ୍ରନ୍ଥରେ ମହାଯାନ ମତବାଦ ବିରୁଦ୍ଧରେ ତୀବ୍ର ସମାଲୋଚନା କରାଯାଇଥିଲା ଏବଂ ମହାଯାନ ମତବାଦ ସମ୍ପୂର୍ଣ୍ଣ ଭୁଲ ବୋଲି ପ୍ରତିପାଦିତ କରାଯାଇଥିଲା । ହର୍ଷ ଶିଳାଦିତ୍ୟ ନିଜେ ଜଣେ ମହାପଣ୍ଡିତ ଥିଲେ ଏବଂ ମହାଯାନ ମତ ସମ୍ବନ୍ଧରେ ବହୁଜ୍ଞାନ ଅର୍ଜନ କରିଥିଲେ । କିନ୍ତୁ ତଥାପି କଙ୍ଗୋଦର ସେହି ହୀନଯାନମତାବଲମ୍ବୀ ଆଚାର୍ଯ୍ୟମାନଙ୍କର ସେପରି ଆହ୍ୱାନ ବିରୁଦ୍ଧରେ ହର୍ଷ ଏକାକୀ ଯୁକ୍ତି ଦେଖାଇବାକୁ ସାହସ କରି ନ ଥିଲେ । ତେଣୁ ସେ ସେମାନଙ୍କୁ କହିଥିଲେ ଯେ ହୀନଯାନ ମତବାଦକୁ ତର୍କଦ୍ୱାରା ଭୁଲ୍ ବୋଲି ପ୍ରମାଣ କରିବାକୁ ସେ ନାଳନ୍ଦ ବିଶ୍ୱବିଦ୍ୟାଳୟରୁ ମହାଯାନମତାବଲମ୍ବୀ ପଣ୍ଡିତ-ମାନଙ୍କୁ ନିମନ୍ତ୍ରଣ କରି ପଠାଇବେ ଏବଂ ସେମାନଙ୍କ ଯୁକ୍ତି ସମ୍ମୁଖରେ ହୀନଯାନୀମାନେ ନିଶ୍ଚୟ ପରାଭୂତ ହେବେ । ସମ୍ରାଟଙ୍କର ଏପରି ଉକ୍ତି ଶୁଣି ହୀନଯାନୀ ପଣ୍ଡିତମାନେ ସଙ୍ଗେ ସଙ୍ଗେ ସମ୍ରାଟଙ୍କୁ ଏକ ତର୍କ ସଭା ଡାକିବାକୁ ଅନୁରୋଧ କରିଥିଲେ ଏବଂ ସେହି ସଭାରେ ସେମାନେ ମହାଯାନୀ ପଣ୍ଡିତମାନଙ୍କ ସହ ଯୁକ୍ତି କରି ସେମାନଙ୍କୁ ପରାଜିତ କରିବେ ବୋଲି ସାହସ ପ୍ରକାଶ କରିଥିଲେ । ହୀନଯାନପନ୍ଥୀ ଆଚାର୍ଯ୍ୟମାନଙ୍କର ଏପରି ଦମ୍ଭ ସମ୍ରାଟଙ୍କୁ ବାସ୍ତବ ପକ୍ଷରେ ଅପମାନ ଦେଇଥିଲା ଏବଂ ତେଣୁ ସେ ସଙ୍ଗେ ସଙ୍ଗେ ନାଳନ୍ଦ ବିଶ୍ୱବିଦ୍ୟାଳୟର ଅଧ୍ୟକ୍ଷ ଶୀଳଭଦ୍ରଙ୍କ ନିକଟକୁ ପତ୍ରସହ ଏକ ଦୂତ ପଠାଇଥିଲେ । ଉକ୍ତ ପତ୍ରରେ ସମ୍ରାଟ ହର୍ଷ ଅଧ୍ୟକ୍ଷ ଶୀଳଭଦ୍ରଙ୍କୁ କଙ୍ଗୋଦର ହୀନଯାନୀମାନଙ୍କର ଆସ୍ପର୍ଦ୍ଧା ବିଷୟ ବର୍ଣ୍ଣନା କରି ତୁରନ୍ତ ନାଳନ୍ଦଠାରୁ ଚାରିଜଣ ମହାଯାନୀ ପଣ୍ଡିତଙ୍କୁ କଙ୍ଗୋଦ ପ୍ରେରଣ କରିବା ପାଇଁ ଆଦେଶ ଦେଇଥିଲେ । ହର୍ଷଙ୍କ ପତ୍ରର ମର୍ମ ଥିଲା ଯେ ନାଳନ୍ଦ ବିଶ୍ୱବିଦ୍ୟାଳୟରୁ ଯେପରି ମହାଯାନ ମତବାଦର ନିଗୂଢ଼ ତତ୍ତ୍ୱମାନ ବିଶେଷଭାବରେ ଜାଣିଥିବା ପଣ୍ଡିତମାନଙ୍କ ମଧ୍ୟରୁ ଶ୍ରେଷ୍ଠ ଚାରିଜଣ କଙ୍ଗୋଦ ଆଗମନ କରନ୍ତି । ହର୍ଷଙ୍କର ପତ୍ର ପ୍ରାପ୍ତି ମାତ୍ରେ 'ଅଧ୍ୟକ୍ଷ ଶୀଳଭଦ୍ର ସଙ୍ଗେ ସଙ୍ଗେ

ନାଳନ୍ଦାଠାରେ ମହାଯାନୀ ପଣ୍ଡିତମାନଙ୍କର ଏକ ବିଶେଷ ସଭା ଆହ୍ୱାନ କରିଥିଲେ । ଏହି ସଭାରେ ହର୍ଷଙ୍କର ଆଦେଶ ଏବଂ କଙ୍ଗୋଦର ହୀନଯାନୀ ଆଚାର୍ଯ୍ୟମାନଙ୍କର ମହାଯାନୀ ପନ୍ଥା ବିପକ୍ଷରେ ଯେଉଁ ଆସ୍ଫାଳନ ସେ ସମ୍ବନ୍ଧରେ ଆଲୋଚନା କରାଯାଇଥିଲା । ଆଲୋଚନା ଶେଷରେ ମହାଯାନପନ୍ଥୀ ଆଚାର୍ଯ୍ୟମାନଙ୍କ ଦ୍ୱାରା କଙ୍ଗୋଦରେ ତର୍କଯୁଦ୍ଧ ପାଇଁ ନାଳନ୍ଦାରୁ ପଣ୍ଡିତ ପ୍ରେରଣ ପ୍ରସ୍ତାବନା ଅନୁମୋଦିତ ହୋଇଥିଲା । ତଦନୁରୂପ ଅଧ୍ୟକ୍ଷ ଶୀଳଭଦ୍ର ନାଳନ୍ଦାର ମହାଯାନୀ ପଣ୍ଡିତମାନଙ୍କ ମଧ୍ୟରୁ ଚାରିଜଣ ଶ୍ରେଷ୍ଠ ଆଚାର୍ଯ୍ୟଙ୍କୁ କଙ୍ଗୋଦ ଯିବା ପାଇଁ ମନୋନୀତ କରିଥିଲେ । ସେ ଚାରିଜଣ ପଣ୍ଡିତ ହେଉଛନ୍ତି ସାଗରମତି, ପ୍ରଜ୍ଞାରଶ୍ମି, ସିଂହରଶ୍ମି ଏବଂ ହୁଏନ୍‌ସାଂ । ହୁଏନ୍‌ସାଂଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ ସାଗରମତି ଏବଂ ଅନ୍ୟ ଆଚାର୍ଯ୍ୟମାନେ ଆସନ୍ତା ତର୍କଯୁଦ୍ଧ ବିଷୟ ଭାବନା କରି ପରିଣାମ ସକାଶେ ଚିନ୍ତିତ ହୋଇପଡ଼ିଲେ । ଏଥିରୁ ଏହା ସ୍ପଷ୍ଟ ଜଣାପଡ଼ୁଛି ଯେ ସେତେବେଳେ କଙ୍ଗୋଦ ବା ଗଞ୍ଜାମ ଅଞ୍ଚଳରେ ହୀନଯାନୀ ଆଚାର୍ଯ୍ୟମାନଙ୍କର ପାଣ୍ଡିତ୍ୟ ଏପରି ଗଭୀର ଥିଲା ଯେ ଏପରିକି ନାଳନ୍ଦା ବିଶ୍ୱବିଦ୍ୟାଳୟର ଆଚାର୍ଯ୍ୟମାନେ ମଧ୍ୟ ଓଡ଼ିଶାର ଏହି ପଣ୍ଡିତମାନଙ୍କ ସହିତ ତର୍କଯୁଦ୍ଧ ପାଇଁ ପଶ୍ଚାଦ୍‌ପଦ ହେଉଥିଲେ । ନାଳନ୍ଦା ଆଚାର୍ଯ୍ୟମାନଙ୍କର ଏପରି ବିମର୍ଷଭାବ ଅବଲୋକନ କରି ହୁଏନ୍‌ସାଂ ଆଗଭର ହୋଇ ସେମାନଙ୍କୁ ସାହସ ଦେଇଥିଲେ ଯେ ସେମାନଙ୍କର ଚିନ୍ତା କରିବାର କୌଣସି କାରଣ ନାହିଁ । କାରଣ ସେ ନିଜେ ହୀନଯାନ ପନ୍ଥା ସମ୍ବନ୍ଧୀୟ ଅନେକ ଗୂଢ଼ତତ୍ତ୍ୱ ଜାଣନ୍ତି ଏବଂ ହୀନଯାନ ସମ୍ବନ୍ଧୀୟ ସମସ୍ତ ଶାସ୍ତ୍ର ଅଧ୍ୟୟନ କରିଛନ୍ତି । ତେଣୁ ହୀନଯାନୀମାନଙ୍କୁ ଯୁକ୍ତିରେ ପରାସ୍ତ କରିବାକୁ ତାହାଙ୍କ ପକ୍ଷରେ ବିଶେଷ କଷ୍ଟକର ହେବ ନାହିଁ । ଆଶ୍ୱାସନା ଦେଲା ପରେ ହୁଏନ୍‌ସାଂ ଆଚାର୍ଯ୍ୟମାନଙ୍କ ଆଗରେ ଏପରି ଆସ୍ଫାଳନ ମଧ୍ୟ କରିଥିଲେ ଯେ ସେ ଯଦି ପରାସ୍ତ ହେବେ ତାହାହେଲେ ଚିରଦିନ ପାଇଁ ଭାରତରେ ଚୀନଦେଶୀୟ ଆଚାର୍ଯ୍ୟମାନଙ୍କର ନାମ ଲୁପ୍ତ ହେବ । ହୁଏନ୍‌ସାଂଙ୍କର ଏପରି ସାହସ ଦେଖି ସାଗରମତି, ପ୍ରଜ୍ଞାରଶ୍ମି ଏବଂ ସିଂହରଶ୍ମି ଆନନ୍ଦରେ ଅଧୀର ହୋଇଯାଇଥିଲେ । ବୋଧହୁଏ ଏହାପରେ ସେମାନେ କଙ୍ଗୋଦ ଆଗମନ ପାଇଁ ପ୍ରସ୍ତୁତ ହୋଇଥିଲେ । କିନ୍ତୁ ସେମାନଙ୍କର ଏହି ପ୍ରସ୍ତୁତ ହେବା ମୁହୂର୍ତ୍ତରେ ହର୍ଷବର୍ଦ୍ଧନ ପୁନର୍ବାର କଙ୍ଗୋଦରୁ ଏକ ପତ୍ର ଲେଖି ପଠାଇଲେ ଯେ ତାହାଙ୍କର ଅନୁରୋଧ ରକ୍ଷା କରିବାର ବର୍ତ୍ତମାନ ଆବଶ୍ୟକତା ନାହିଁ ଏବଂ ତେଣୁ ଆଚାର୍ଯ୍ୟମାନଙ୍କର କଙ୍ଗୋଦ ଆଗମନ ବନ୍ଦ

ହେଉ । ହର୍ଷଙ୍କର ଏପରି ଏକ ପତ୍ର ପ୍ରେରଣର ଅର୍ଥ ଏବଂ ତାତ୍ପର୍ଯ୍ୟ ସଠିକଭାବେ ବୁଝି ହେଉନାହିଁ । କାହିଁକି ସେ ନାଳନ୍ଦା ବିଶ୍ୱବିଦ୍ୟାଳୟର ମହାଯାନ-ମତାବଲମ୍ବୀ ଅଗ୍ରର୍ଯ୍ୟମାନଙ୍କୁ ନିମନ୍ତ୍ରଣ କରି ପଠାଇ ପୁନର୍ବାର ସେମାନଙ୍କ ଆଗମନ ବନ୍ଦ କରିଦେବାକୁ କହି ପଠାଇଲେ ତାହା ନିର୍ଦ୍ଧାରଣ କରିବା କଷ୍ଟକର । ସମ୍ରାଟ ହର୍ଷବର୍ଦ୍ଧନ କ'ଣ ଓଡ଼ିଶାର ହୀନଯାନୀ ପଣ୍ଡିତମାନଙ୍କର ସାହସ ଏବଂ ପାଣ୍ଡିତ୍ୟ ଦେଖି ସେମାନଙ୍କ ସହ ଏକ ତର୍କସଭା ଆୟୋଜନ କରିବାକୁ ଭୟ କଲେ ? ହୁଏତ ମହାଯାନ ପୃଷ୍ଠପୋଷକ ସମ୍ରାଟ ଭାବିଥିଲେ ଯେ ଯଦି କଙ୍ଗୋଦର ହୀନଯାନୀମାନଙ୍କ ଦ୍ୱାରା ନାଳନ୍ଦାର ମହାଯାନୀମାନେ ତର୍କଯୁଦ୍ଧରେ ପରାଭୂତ ହୋଇଯିବେ ତେବେ ତାହାଙ୍କ ମତବାଦର ଘୋର ଅପମାନ ଏବଂ ନିନ୍ଦା ହେବ । ହୁଏତ ଏପରି ଏକ ଅନୁମାନ ଦ୍ୱାରା ଭୟପ୍ରାପ୍ତ ହୋଇ ସମ୍ରାଟ ସେପରି ଏକ ତର୍କସଭାର ଅନିଶ୍ଚିତ ଫଳାଫଳ ପ୍ରତି ଭରସା କରି ନ ଥିଲେ ଏବଂ ତେଣୁ କଙ୍ଗୋଦବାସୀଙ୍କ ଇପ୍‌ସିତ ତର୍କସଭା ଆଉ ବାସ୍ତବତାରେ ପରିଣତ ହୋଇପାରି ନ ଥିଲା । ହର୍ଷ ଯେ କୌଣସି କାରଣରୁ ତର୍କସଭା ବନ୍ଦ କରିଥାଆନ୍ତୁ ନା କାହିଁକି ସେହି କାର୍ଯ୍ୟକୁ କଙ୍ଗୋଦର ହୀନଯାନୀ ପଣ୍ଡିତମାନଙ୍କ ହସ୍ତରେ ତାହାଙ୍କର ପରାଜୟ ବୋଲି ଧରିବାକୁ ହେବ । କାରଣ କଙ୍ଗୋଦବାସୀଙ୍କର ଆହ୍ୱାନ ବିରୁଦ୍ଧରେ ସେ କିଛି କରିପାରି ନ ଥିଲେ । ଯେଉଁ ହର୍ଷବର୍ଦ୍ଧନ ମହାଯାନ ମତବାଦର ପ୍ରଗତି ପାଇଁ ସଦା ଚେଷ୍ଟିତ ଥିଲେ ଏବଂ ଯାହାଙ୍କ ଉଦ୍ୟମରେ ବୌଦ୍ଧ ସମ୍ମିଳନୀ ଏବଂ ଧର୍ମମହାସଭା ପ୍ରଭୃତି ବହୁବାର ଅନୁଷ୍ଠିତ ହୋଇ ହର୍ଷଯୁଗର ସଭ୍ୟତା ବିକାଶ କରିଥିଲା ସେହି ହର୍ଷ ଯେ କଙ୍ଗୋଦ ମଣ୍ଡଳରେ ଏକ ତର୍କସଭା ଆୟୋଜନ କରିବାକୁ ପଶ୍ଚାଦ୍‌ପଦ ହୋଇଥିଲେ ଏଥିରୁ ସହଜରେ ଅନୁମାନ କରି ହୁଏ ଯେ କଙ୍ଗୋଦର ଶିକ୍ଷା ଏବଂ ସଂସ୍କୃତି ଅତିଶୟ ଉନ୍ନତ ଥିଲା ଏବଂ ବୌଦ୍ଧଧର୍ମର ସେହି ଚରମ ବିଳୟ ସମୟରେ ମଧ୍ୟ କଙ୍ଗୋଦରେ ହୀନଯାନ-ମତାବଲମ୍ବୀ ପଣ୍ଡିତମାନଙ୍କର ପାଣ୍ଡିତ୍ୟ ଅସାଧାରଣ ଥିଲା । ହୁଏନ୍‌ସାଙ୍ଗଙ୍କ ଲେଖନୀରୁ ଜଣାଯାଏ ଯେ ପରେ ସେ କଙ୍ଗୋଦର ହୀନଯାନୀମାନଙ୍କୁ ତର୍କରେ ପରାଜିତ କରିବା ପାଇଁ ଆସିବାକୁ ଇଚ୍ଛା କରିଥିଲେ । ସେପରି ଏକ ଇଚ୍ଛା ଘେନି ସେ ସେଥିପାଇଁ ପ୍ରସ୍ତୁତ ହେବାକୁ ମଧ୍ୟ ଚେଷ୍ଟା କରିଥିଲେ । ଅର୍ଥାତ୍ ହୀନଯାନୀମାନଙ୍କ ଦ୍ୱାରା ଲିଖିତ ମହାଯାନ ମତବିରୋଧୀ ଗ୍ରନ୍ଥ ଖଣ୍ଡିକ ଗଭୀର ଭାବରେ ଅଧ୍ୟୟନ କରିଥିଲେ । ଏପରିକି ଉକ୍ତ ଗ୍ରନ୍ଥର ଅନେକ ସ୍ଥଳରେ ସେ ଏକାକୀ ଉତ୍ତମରୂପେ ବୁଝି ନ ପାରି ଜନୈକ ବ୍ରାହ୍ମଣଙ୍କ ସାହାଯ୍ୟରେ

ସେ ସବୁ ବୁଝିବାକୁ ଚେଷ୍ଟା କରିଥିଲେ । ଏହାପରେ ହୀନଯାନପନ୍ଥୀର ଲକ୍ଷିତ ତତ୍ତ୍ୱମାନ ଅବଗତ ହୋଇ ସେ ହୀନଯାନ ମତବାଦ ଖଣ୍ଡନ କରି ଏକ ମହାଯାନ ସପକ୍ଷୀୟ ଗ୍ରନ୍ଥ ରଚନା କଲେ । ସେ ଏ ଗ୍ରନ୍ଥର ନାମ ରଖିଥିଲେ 'ବିଧର୍ମବାଦ ବିନାଶ' । ଏହି ଗ୍ରନ୍ଥରେ ସେ ବିଶଦଭାବେ ମହାଯାନ ମତବାଦର ଗୂଢ଼ ତତ୍ତ୍ୱମାନ ଆଲୋଚନା କରିଥିଲେ ଏବଂ ସେହି ମତବାଦର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଥିଲେ । ତାପରେ ହୁଏନ୍‌ସାଂ ଏହି ଗ୍ରନ୍ଥ ଖଣ୍ଡିକ ଅଧ୍ୟକ୍ଷ ଶୀଳଭଦ୍ରଙ୍କୁ ଉପହାର ପ୍ରଦାନ କରିଥିଲେ । ଏହାପରି ଭାବରେ ହୁଏନ୍‌ସାଂ କଙ୍ଗୋଦର ହୀନଯାନୀ ଅଗ୍ରଣୀମାନଙ୍କ ବିରୁଦ୍ଧରେ ସଂଗ୍ରାମ ଘୋଷଣା କରିଥିଲେ ସତ୍ୟ ; କିନ୍ତୁ ତାହାଙ୍କର ଏ ସମସ୍ତ କାର୍ଯ୍ୟ ଏବଂ ଆସ୍ଫାଳନ କଙ୍ଗୋଦ ସୀମାରୁ ବହୁଦୂରରେ ସମ୍ପାଦିତ ହୋଇଥିଲା । ଅର୍ଥାତ୍ ହୁଏନ୍‌ସାଂ କଙ୍ଗୋଦର ହୀନଯାନୀମାନଙ୍କୁ ସାକ୍ଷାତ୍ କ୍ଷେତ୍ରରେ ତର୍କଦ୍ୱାରା ପରାଜିତ କରିବା ପାଇଁ ଅଗ୍ରସର ହୋଇ ନ ଥିଲେ । କେବଳ ଦୂରରୁ ସେମାନଙ୍କ ବିରୁଦ୍ଧରେ ଗ୍ରନ୍ଥ ରଚନା କରି କ୍ଷାନ୍ତ ହୋଇଥିଲେ । ପୂର୍ବରୁ ହୁଏନ୍‌ସାଂ ଯେତେବେଳେ ଓଡ୍ର, କଙ୍ଗୋଦ ଏବଂ କଳିଙ୍ଗ ଭ୍ରମଣ କରିଥିଲେ ସେତେବେଳେ ସେ କଙ୍ଗୋଦର ହୀନଯାନ-ମତାବଲମ୍ବୀ ବୌଦ୍ଧମାନଙ୍କୁ ଦେଖିବା ପାଇଁ ଉତ୍ସୁକ ହୋଇ ନ ଥିଲେ । ପରେ ସେମାନଙ୍କ ଦ୍ୱାରା ତର୍କ ଯୁଦ୍ଧ ପାଇଁ ଆହୂତ ହୋଇଥିବା ସେ ଆସି ନ ଥଲେ ; ଏହି ସମସ୍ତରୁ ଏହା ପରିଷ୍କାର ଜଣାପଡ଼ୁଛି ଯେ ତଦାନୀନ୍ତନ କଙ୍ଗୋଦରେ ହୀନଯାନପନ୍ଥୀ ବୌଦ୍ଧମାନଙ୍କର ଯଥେଷ୍ଟ ପ୍ରତିପତ୍ତି ଥିଲା ଏବଂ ସେମାନଙ୍କ ପାଣ୍ଡିତ୍ୟ ଆଗରେ ସମ୍ରାଟ ହର୍ଷବର୍ଦ୍ଧନଙ୍କୁ ପ୍ରତ୍ୟକ୍ଷ ପରାଜୟ ଏବଂ ତାହାଙ୍କ ବନ୍ଧୁ ହୁଏନ୍‌ସାଂଙ୍କୁ ପରୋକ୍ଷ ପରାଜୟ ଗ୍ରହଣ କରିବାକୁ ପଡ଼ିଥିଲା ।

ହୁଏନ୍‌ସାଂଙ୍କ ବର୍ଣ୍ଣନାରୁ କଙ୍ଗୋଦ ଅଞ୍ଚଳର ବାଣିଜ୍ୟ ବ୍ୟବସାୟ ଏବଂ ସମୃଦ୍ଧି ସମ୍ବନ୍ଧରେ ମଧ୍ୟ ବହୁକଥା ଜଣାପଡ଼େ । ଓଡ୍ର ଅଞ୍ଚଳ ପରି କଙ୍ଗୋଦ ଅଞ୍ଚଳ ମଧ୍ୟ ସାଗରଗାମୀ ବାଣିଜ୍ୟ ପାଇଁ ଭାରତ ପ୍ରସିଦ୍ଧ ଥିଲା । ଆମ୍ଭେମାନେ ଜାଣୁ ଯେ ଅତି ପ୍ରାଚୀନ କାଳରୁ ଚିଲ୍କାମ ଅଞ୍ଚଳର ଋଷିକୁଲ୍ୟା ନଦୀର ମୁହାଣ ଏକ ଅତି ବୃହତ୍ ବାଣିଜ୍ୟ କେନ୍ଦ୍ର ଥିଲା ! ପ୍ରାଚୀନ କାଳର ଗ୍ରୀକ୍ ଏବଂ ରୋମାନ ଭୌଗଳିକ ତଥା ଐତିହାସିକମାନଙ୍କ ଲେଖାରୁ ଏ ବିଷୟ ଉଜ୍ଜ୍ୱଳରୂପେ ପ୍ରମାଣିତ ହୁଏ । ହୁଏନ୍‌ସାଂ ମଧ୍ୟ ସପ୍ତମ ଶତାବ୍ଦୀରେ ଗଞ୍ଜାମର ନୌବାଣିଜ୍ୟ ଓ ନୌକେନ୍ଦ୍ରମାନ ପରିଦର୍ଶନ କରିବାକୁ ଯାଇଥିଲେ । କେହି କେହି ଐତିହାସିକ ଏପରି ମତ ପୋଷଣ

କରନ୍ତି ଯେ ଗଞ୍ଜାମ ଜିଲ୍ଲାର ବିଖ୍ୟାତ ନୌକେନ୍ଦ୍ର 'ପାଲୁର' ହୁଏନ୍‌ସାଂଙ୍କ ସମୟରେ କଙ୍ଗୋଦ ରାଜ୍ୟର ରାଜଧାନୀ ଥିଲା ଏବଂ ଏହି ନଗରୀର ବାଣିଜ୍ୟ ବ୍ୟବସାୟ ଦେଖି ପରିବ୍ରାଜକ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ । ଏହି 'ପାଲୁର' ଋଷିକୁଲ୍ୟା ନଦୀର ମୁହାଣ ଉପରେ ଅବସ୍ଥିତ ଏବଂ ସେହିଠାରୁ ବହୁସଂଖ୍ୟାରେ ବାଣିଜ୍ୟପୋତ ସୁଦୂର ମାଲୟ ଦ୍ୱୀପପୁଞ୍ଜ ଅଭିମୁଖରେ ଯାତ୍ରା କରୁଥିବାର ଦୃଶ୍ୟ ବହୁପୂର୍ବ ଭୌଗଳିକ ଟୋଲେମି ଅବଲୋକନ କରିଥିଲେ । ହୁଏନ୍‌ସାଂଙ୍କ ସମୟରେ ମଧ୍ୟ ଏହିସ୍ଥାନ ପୂର୍ବପରି ସମୃଦ୍ଧିଶାଳୀ ଥିଲା । ଏହିଠାରେ ଏହା ଉଲ୍ଲେଖଯୋଗ୍ୟ ଯେ ସପ୍ତମ ଶତାବ୍ଦୀରେ କଙ୍ଗୋଦରେ ବିଖ୍ୟାତ ଶୈଳୋଦ୍ଭବ ବଂଶୀୟ ନରପତିମାନେ ରାଜତ୍ୱ କରୁଥିଲେ ଏବଂ ସେମାନେ ଗଞ୍ଜାମର ବିଖ୍ୟାତ ନୌକେନ୍ଦ୍ରମାନଙ୍କରୁ ସୁଦୂର ସୁବର୍ଣ୍ଣ ଦ୍ୱୀପ ସହିତ ଅତି ଘନିଷ୍ଠ ଯୋଗାଯୋଗ ଲଗାଇ ରଖିଥିଲେ । ଏହି ସପ୍ତମ ଶତାବ୍ଦୀରେ ଶୈଳୋଦ୍ଭବ-ବଂଶୀମାନେ କଙ୍ଗୋଦ ପରିତ୍ୟାଗ କରି ସୁବର୍ଣ୍ଣଦ୍ୱୀପ ଅଭିମୁଖେ ଯାତ୍ରା କରିଥିଲେ ବୋଲି ଐତିହାସିକମାନେ ଅନୁମାନ କରନ୍ତି ଏବଂ ଏହିମାନେହିଁ ସୁବର୍ଣ୍ଣଦ୍ୱୀପରେ ବିସ୍ତୃତ ଶୈଳେନ୍ଦ୍ର ସାମ୍ରାଜ୍ୟର ସ୍ଥାପୟିତା ବୋଲି ବିଶେଷଜ୍ଞମାନଙ୍କର ମତ ।[1] ସୁତରାଂ ଯେଉଁ ସମୟରେ ହୁଏନ୍‌ସାଂ କଙ୍ଗୋଦ ଭ୍ରମଣ କରିଥିଲେ ସେହି ସମୟରେ ଗଞ୍ଜାମର ଉପକୂଳ ଅଞ୍ଚଳ ଉତ୍କଳୀୟ ବଣିକ ଏବଂ ଔପନିବେଶିକମାନଙ୍କର ବିଦେଶ ଯାତ୍ରା କୋଳାହଳରେ ମୁଖରିତ ହୋଇ ଉଠିଥିଲା । କଙ୍ଗୋଦ ତଟରୁ ସୁବର୍ଣ୍ଣ ଦ୍ୱୀପ ଯାତ୍ରା ଏବଂ ସେଠାରେ ସାମ୍ରାଜ୍ୟ ପ୍ରତିଷ୍ଠା ଏହା ଉତ୍କଳ ଇତିହାସର ସର୍ବଶ୍ରେଷ୍ଠ ଗୌରବଗାଥାମାନଙ୍କ ମଧ୍ୟରୁ ଅନ୍ୟତମ । ଏହି ଦୃଷ୍ଟିରୁ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ଉତ୍କଳ ଇତିହାସର ଏକ ସ୍ମରଣୀୟ ଯୁଗ । ହୁଏନ୍‌ସାଂ ତାହାଙ୍କର ଦ୍ରୁତଗତି ପଥରେ ଏ ସମସ୍ତ ପୁଙ୍ଖାନୁପୁଙ୍ଖ ରୂପେ ଅବଲୋକନ କରିବା ପାଇଁ ସମୟ ପାଇ ନ ଥିଲେ ଏବଂ ତେଣୁ ସୁବର୍ଣ୍ଣଦ୍ୱୀପ ଯାତ୍ରା ଇତ୍ୟାଦି ଉପରେ ନୀରବ । ତଥାପି ତାହାଙ୍କର ବର୍ଣ୍ଣନାରୁ ସେତେବେଳର ନୌବାଣିଜ୍ୟ ଏବଂ ଉତ୍କଳର ସାଗରପାରି ଯାତାୟାତ ସମ୍ବନ୍ଧରେ ଅନେକ ଆଭାସ ମିଳୁଛି ।

କଙ୍ଗୋଦ ପରେ ହୁଏନ୍‌ସାଂ କଳିଙ୍ଗରେ ପ୍ରବେଶ କରିଥିଲେ । ତାହାଙ୍କ ବର୍ଣ୍ଣନା ଅନୁସାରେ କଳିଙ୍ଗର ପରିଧି ଏକ ସହସ୍ର ମାଇଲ ଥିଲା ଏବଂ

1. See 'Suvarna Dvipa'-- R. C. Majumdar.

ଏହାର ରାଜଧାନୀର ପରିଧି ପାଞ୍ଚ ମାଇଲ ଥିଲା । ଏ ରାଜ୍ୟର ମୃତ୍ତିକା ଅତିଶୟ ଉର୍ବର ଥିଲା ଏବଂ ତେଣୁ କୃଷି ପକ୍ଷେ ଅତ୍ୟନ୍ତ ଉପଯୋଗୀ ଥିଲା । ତଥାପି କଳିଙ୍ଗରେ ଅନେକଗୁଡ଼ିଏ ଜଙ୍ଗଲ ମଧ୍ୟ ଥିଲା ଏବଂ ଏହି ଜଙ୍ଗଲମାନଙ୍କରେ ବଣ୍ୟ ହସ୍ତୀମାନ ବାସ କରୁଥିଲେ । କଳିଙ୍ଗରେ ଏତେବେଳକୁ ବୌଦ୍ଧଧର୍ମ ଅବଶେଷ ପ୍ରାୟ ହୋଇ ଆସିଥିଲା । କାରଣ ହୁଏନ୍‌ସାଂ ଏ ରାଜ୍ୟରେ ମାତ୍ର ଦଶଟି ବୌଦ୍ଧ ସଂଘାରାମ ଦେଖିବାକୁ ପାଇଥିଲେ ଏବଂ ସେଗୁଡ଼ିକରେ ମାତ୍ର ପାଞ୍ଚଶହ ସ୍ଥବିରପନ୍ଥୀ ବୌଦ୍ଧ ଭିକ୍ଷୁ ବସବାସ କରୁଥିଲେ । ଅଥଚ କଳିଙ୍ଗରେ ଶହେ ପର୍ଯ୍ୟନ୍ତ ଦେବମନ୍ଦିର ହୁଏନ୍‌ସାଂଙ୍କ ଦୃଷ୍ଟିପଥାରୂଢ଼ ହୋଇଥିଲା । ଏହିଠାରେ ଏହା ଉଲ୍ଲେଖଯୋଗ୍ୟ ଯେ ହୁଏନ୍‌ସାଂଙ୍କ କଳିଙ୍ଗ ଭ୍ରମଣବେଳେ ଅର୍ଥାତ୍ ସପ୍ତମ ଶତାବ୍ଦୀର ପ୍ରଥମ ଭାଗରେ କଳିଙ୍ଗରେ ଶୈବ ମତବାଦ ପ୍ରବଳ ହୋଇ ସାରିଲାଣି । ସେତେବେଳେ ପ୍ରାଚ୍ୟ ଗଙ୍ଗାବଂଶର ନରପତିମାନେ କଳିଙ୍ଗର ଶାସକ । ଏମାନେ ଥିଲେ ଶୈବ-ଧର୍ମାବଲମ୍ବୀ । ଏହି ନରପତିମାନଙ୍କର ପୃଷ୍ଠପୋଷକତାରେ କଳିଙ୍ଗ ଖଣ୍ଡରେ ଶୈବ ମତବାଦ ଦ୍ରୁତ ପ୍ରବୃଦ୍ଧ ହୋଇଥିଲା । କାଳକ୍ରମେ କଳିଙ୍ଗଖଣ୍ଡରୁ ଶୈବଧର୍ମ କଙ୍ଗୋଦ ଓ ଓଡ଼ଶା ଖଣ୍ଡରେ ମଧ୍ୟ ପ୍ରବେଶ କରିଥିଲା ଏବଂ ଦିନେ ସମଗ୍ର କଳିଙ୍ଗର ମୁଖ୍ୟ ଧର୍ମରେ ପରିଣତ ହୋଇଥିଲା । ହୁଏନ୍‌ସାଂଙ୍କ କଳିଙ୍ଗ ଭ୍ରମଣ ପୂର୍ବରୁ ସେ ଦେଶରେ ଗଙ୍ଗାବଂଶୀୟ ନରପତିମାନେ ବହୁ ଶୈବ ମନ୍ଦିର ନିର୍ମାଣ କରି ସାରିଥିଲେ । ସେମାନଙ୍କ ମଧ୍ୟରୁ ଗଙ୍ଗରାଜ ଦେବେନ୍ଦ୍ରବର୍ମାଙ୍କ ଦ୍ୱାରା ନିର୍ମିତ ଗୋକର୍ଣ୍ଣେଶ୍ୱର ମହାଦେବଙ୍କ ମନ୍ଦିର ପ୍ରଧାନ । ଏହି ମନ୍ଦିର ପ୍ରସିଦ୍ଧ ମହେନ୍ଦ୍ର ପର୍ବତ ଉପରେ ନିର୍ମିତ ହୋଇଥିଲା ଏବଂ ବହୁକାଳ ଯାବତ୍ ଏହା ଗଙ୍ଗାବଂଶୀୟ ରାଜା-ମାନଙ୍କର ସର୍ବଶ୍ରେଷ୍ଠ ପୂଜାପୀଠରୂପେ ଖ୍ୟାତିଲାଭ କରିଥିଲା ।

ବିଶାଳ କଳିଙ୍ଗର ଦକ୍ଷିଣ ଖଣ୍ଡରେ ଯେତେବେଳେ ପ୍ରାଚ୍ୟ ଗଙ୍ଗାବଂଶର ରାଜାମାନେ ଶୈବଧର୍ମର ପୃଷ୍ଠପୋଷକତା କରୁଥାଆନ୍ତି ସେତେବେଳେ ଓଡ଼ଶା ଖଣ୍ଡରେ ଭୌମବଂଶର ଶେଷ ନରପତିମାନେ ମଧ୍ୟ ଶୈବଧର୍ମର ପ୍ରଚାରାର୍ଥେ ବ୍ୟସ୍ତ ଥାଆନ୍ତି । ଠିକ୍ ଏତିକବେଳେ କୋଶଳ ରାଜ୍ୟରେ ସୋମବଂଶୀୟ ରାଜାମାନେ ଅତିଶୟ ତତ୍ପରତା ସହିତ ଶୈବ ମତବାଦର ପୃଷ୍ଠପୋଷକତା କରୁଥାଆନ୍ତି । ଏହିପରି ସବୁ ଦିଗରୁ ଶୈବ ମତବାଦ ସାରା କଳିଙ୍ଗଖଣ୍ଡ ଉପରକୁ ପ୍ରବଳ ବେଗରେ ମାଡ଼ି ଆସୁଥାଏ । ସପ୍ତମ ଶତାବ୍ଦୀରେ

ଉତ୍କଳୀୟ ଧର୍ମ ଇତିହାସରେ ଏହାହିଁ ସବୁଠାରୁ ଦ୍ରଷ୍ଟବ୍ୟ ପରିବର୍ତ୍ତନ । ଶୈବଧର୍ମର ଉତ୍ଥାନ ଏବଂ ବୌଦ୍ଧଧର୍ମର ବିଲୟ, ଉତ୍କଳୀୟ ଧର୍ମକ୍ଷେତ୍ରରେ ଏହି ଜୁଆର ଭଟ୍ଟାର ସନ୍ଧିକ୍ଷଣରେ ହର୍ଷଯୁଗର ପରିସମାପ୍ତି ଘଟିଲା । ହର୍ଷଯୁଗର ଅବ୍ୟବହିତ ପରେ ଉତ୍କଳରେ ଆରମ୍ଭ ହେଲା କେଶରୀ-ବଂଶର ରାଜତ୍ୱ । ଖ୍ରୀଷ୍ଟାବ୍ଦ ୬୮୦ରେ ମହାଭବଗୁପ୍ତ ଜନ୍ମେଜୟ ଓଡ଼ିଶାରେ କେଶରୀ ରାଜତ୍ୱ ଆରମ୍ଭ କଲେ । ଏହି କେଶରୀ ସମ୍ରାଟମାନଙ୍କ ରାଜତ୍ୱକାଳରେ ଉତ୍କଳ ଦେଶ ସାରା ଭାରତର ଶ୍ରେଷ୍ଠ ଶୈବପୀଠରେ ପରିଣତ ହେଲା । ସଙ୍ଗେ ସଙ୍ଗେ ଏହି ବଂଶର ତତ୍ତ୍ୱାବଧାନରେ ଓଡ଼ିଶାର ଦୈର୍ଘ୍ୟ ପ୍ରସ୍ଥରେ କଳା ଓ ସ୍ଥାପତ୍ୟର ମଧ୍ୟ ଯେଉଁ ସ୍ରୋତ ବହିଲା ତାହା ଉତ୍କଳୀୟ ସଭ୍ୟତାର ଇତିହାସରେ ଏକ ଉଜ୍ଜ୍ୱଳ ଅଧ୍ୟାୟ ସୃଷ୍ଟି କଲା ।

ହର୍ଷ ଶିଳାଦିତ୍ୟ ହେଉଛନ୍ତି ଭାରତର ଶେଷ ଶକ୍ତିଶାଳୀ ହିନ୍ଦୁ ସମ୍ରାଟ । ଏହାଙ୍କ ମୃତ୍ୟୁ ପରେ ଉତ୍ତର ଭାରତର ରାଜନୈତିକ ଅବସ୍ଥା କ୍ରମେ କ୍ରମେ ଶୋଚନୀୟ ହୋଇପଡ଼ିଲା । ହର୍ଷଯୁଗର ଶେଷ ପାଖରୁ ଭାରତରେ ମୁସଲମାନ ରାଜତ୍ୱର ଆରମ୍ଭ ପର୍ଯ୍ୟନ୍ତ ଦୀର୍ଘ ପାଞ୍ଚଶହ ବର୍ଷରୁ ଊର୍ଦ୍ଧ୍ୱ କାଳବ୍ୟାପୀ ଏକ ସମୟ ମଧ୍ୟରେ ଉତ୍ତର ଭାରତ ଉପରକୁ କୌଣସି ବୈଦେଶିକ ଆକ୍ରମଣ ମାଡ଼ି ଆସି ନ ଥିଲା । ଐତିହାସିକ ପାନିକ୍କାର ଭାବନ୍ତି ଯେ ଏହି ଦୀର୍ଘକାଳବ୍ୟାପୀ ବୈଦେଶିକ ଆକ୍ରମଣ ଦ୍ୱାରା ଆତଙ୍କିତ ନ ହୋଇ ଭାରତବାସୀମାନେ କ୍ରମେ ନିଜ ମଧ୍ୟରେ ଜାତୀୟତାର ପ୍ରେରଣା ଏବଂ ଏକତାର ଆବଶ୍ୟକତା ଭୁଲି ଯାଇଥିଲେ । କ୍ରମେ ଦେଶବାସୀଙ୍କର ଦେଶମାତୃକା ପ୍ରତି ଭକ୍ତି ମଧ୍ୟ କମି ଆସିଥିଲା । ଭାରତବାସୀ-ମାନେ ଭାରତବର୍ଷର ଐକ୍ୟ ରକ୍ଷା କରିବା ପାଇଁ ସତେ ଯେପରି ଏକାଥରକେ ଭୁଲିବାକୁ ବସିଲେ । ସୁଦୂର ଅତୀତରେ ଥରେ ଗ୍ରୀକ୍ ଆକ୍ରମଣଦ୍ୱାରା ଆତଙ୍କିତ ହୋଇ ଭାରତବାସୀମାନେ ହିମାଦ୍ରିଠାରୁ କୁମାରୀକା ପର୍ଯ୍ୟନ୍ତ ଐକ୍ୟ ସଂସ୍ଥାପନ କରିବାକୁ ଚେଷ୍ଟା କରିଥିଲେ । ଏହି ଚେଷ୍ଟାର ପରିଣତି ହୋଇଥିଲା ମୌର୍ଯ୍ୟ ସାମ୍ରାଜ୍ୟ । ସେହିପରି ଥରେ ଶକ ଇତ୍ୟାଦି ବୈଦେଶିକମାନଙ୍କ ବିରୁଦ୍ଧରେ ଯୁଦ୍ଧ କରୁଁ କରୁଁ ଭାରତବାସୀମାନେ ଜାତୀୟତାରେ ଅନୁପ୍ରାଣିତ ହୋଇ ଗଠନ କରିଥିଲେ ଗୁପ୍ତ ସାମ୍ରାଜ୍ୟ । ଶେଷରେ ହୂନ୍‌ମାନଙ୍କ ବିରୁଦ୍ଧରେ ପୁଣି ଥରେ ଉତ୍ତର ଭାରତ ଏକ ହୋଇ ଠିଆ ହୋଇଥିଲା ହର୍ଷଯୁଗରେ । ହୂନ୍‌ମାନଙ୍କ

ପାଖରୁ ସୁଲତାନ ମାମୁଦ୍‌ଙ୍କ ଆକ୍ରମଣ ପର୍ଯ୍ୟନ୍ତ ଭାରତବର୍ଷ ବୈଦେଶିକ ଆକ୍ରମଣରୁ ନିରାପଦ ରହିବା ଦ୍ୱାରା ଭାରତବାସୀଙ୍କ ମନରୁ ଜାତୀୟତାର ପ୍ରେରଣା ଉଭେଇ ଯାଇଥିଲା । ବହିର୍ଶତ୍ରୁ ଅଭାବରୁ ନିଜ ଦେଶ ସୁଦୃଢ଼ କରିବାର ପ୍ରୟାସ ଭାରତବାସୀ ତ୍ୟାଗ କରିଥିଲେ । ଫଳରେ ଭାରତ ଖଣ୍ଡ ବିଖଣ୍ଡ ହୋଇ ଅନୈକ୍ୟ ଏବଂ ଅରାଜକତା ମଧ୍ୟରେ ବୁଡ଼ି ରହିଲା । ହର୍ଷଯୁଗ ପରେ ଏବଂ ମୁସଲମାନଯୁଗ ପୂର୍ବେ ଭାରତ ଇତିହାସରେ ଯେଉଁ ଯୁଗ ଦେଖିବାକୁ ମିଳେ ତାହା ରାଜପୁତ୍ ଯୁଗ ନାମରେ ବିଖ୍ୟାତ । ରାଜପୁତ୍‌ମାନଙ୍କ ପରି ଏକ ବୀର ଜାତି ମନୁଷ୍ୟ ଜାତିର ଇତିହାସରେ ବିରଳ । କିନ୍ତୁ ପରିତାପର ବିଷୟ, ସେମାନଙ୍କର ସମସ୍ତ ବୀରତ୍ୱ, ଶକ୍ତି ଓ ସାହସ ବ୍ୟୟିତ ହୋଇଥିଲା କେବଳ ନିଜ ନିଜ ମଧ୍ୟରେ ଗୃହଯୁଦ୍ଧ କରି । ଯେତେବେଳେ ଉତ୍ତର ଭାରତରେ ରାଜପୁତ୍ ବୀରମାନେ ପରସ୍ପର ମଧ୍ୟରେ ଯୁଦ୍ଧ ରତ ଥାଆନ୍ତି ଏବଂ ଉତ୍ତର ଭାରତ ଖଣ୍ଡ ବିଖଣ୍ଡ ହୋଇ ପଡ଼ିଥାଏ ସେତିକିବେଳେ ମାଡ଼ି ଆସିଲା ମୁସଲମାନ ଆକ୍ରମଣ । ଏକତାହୀନ ଉତ୍ତରାପଥ ତଡ଼ିତ୍ ଗତିରେ ମୁସଲମାନମାନଙ୍କର ପଦାନତ ହେଲା । ତହିଁ ସଙ୍ଗେ ଆରମ୍ଭ ହେଲା ଭାରତ ଇତିହାସରେ ମୁସଲମାନ ଯୁଗ । ଏହି ଐତିହାସିକ ପରିବର୍ତ୍ତନ ଫଳରେ ଉତ୍ତର ଭାରତ ଉପରେ ଯେଉଁ ବିଧର୍ମୀମାନଙ୍କର ଅତ୍ୟାଚାର ଆରମ୍ଭ ହେଲା ତାହାଦ୍ୱାରା ଭାରତୀୟ ଧର୍ମ, କଳା, ସ୍ଥାପତ୍ୟ ଓ ସଂସ୍କୃତି,—ଏ ସମସ୍ତ ମଳିନପ୍ରଭ ହୋଇଆସିଲା । ପ୍ରାଚୀନ ଭାରତର ତକ୍ଷଶୀଳା, ନାଳନ୍ଦା, ପ୍ରଭୃତି ଶିକ୍ଷାସ୍ଥଳୀ , ସୋମନାଥ, ମଥୁରା, ବୃନ୍ଦାବନ, ବାରଣସୀ ପ୍ରଭୃତି ଧର୍ମପୀଠ; ଦିଲ୍ଲୀ, ଆଜମୀର, ଚିତୋର ପ୍ରଭୃତି ସ୍ଥାପତ୍ୟକେନ୍ଦ୍ର; ଏ ସମସ୍ତ ଧ୍ୱଂସ ସ୍ତୁପରେ ପରିଣତ ହେବାକୁ ବସିଲା । ଉତ୍ତର ଭାରତର ଏହି ଦୁର୍ଦ୍ଦିନରେ ହିନ୍ଦୁଧର୍ମ ଓ ହିନ୍ଦୁସଭ୍ୟତା ଦକ୍ଷିଣରେ ଆଶ୍ରୟ ନେବାକୁ ଆରମ୍ଭ କଲା । କିନ୍ତୁ କାଳକ୍ରମେ ମୁସଲମାନ ଆକ୍ରମଣ ଦାକ୍ଷିଣାତ୍ୟ ମଧ୍ୟକୁ ମଧ୍ୟ ମାଡ଼ି ଚାଲିଲା । କାଳକ୍ରମେ ସୁଦୂର ଦକ୍ଷିଣର ମଦୁରା, ରାମେଶ୍ୱର ପ୍ରଭୃତି ସ୍ଥାନଗୁଡ଼ିକ ମଧ୍ୟ ଉତ୍ତରର ସୋମନାଥ, ବାରଣସୀ ଇତ୍ୟାଦିର ଦଶା ଭଜିଲେ । ଏହିପରି ଦିନ ଆସିଲା ଯେତେବେଳେ ସାରା ଭାରତବାସୀ, ବିଧର୍ମୀମାନଙ୍କର ପଦାନତ ହେଲା ।

କିନ୍ତୁ ଭାରତର ଏହି ମଧ୍ୟଯୁଗୀୟ ଦୁର୍ଦ୍ଦିନବେଳେ ଶତ ଶତ ବର୍ଷ ଧରି କଳିଙ୍ଗ ଏକ ସ୍ୱାଧୀନ ରାଷ୍ଟ୍ରରୂପେ ମୁସଲମାନ ଆକ୍ରମଣ ପ୍ରତିହତ କରି ଭାରତୀୟ

ସଭ୍ୟତା ଓ ଧର୍ମର ମହାପୀଠରୂପେ ତିଷ୍ଠି ରହିଥିଲା । ସମଗ୍ର ଭାରତ ମଧ୍ୟରେ କଳିଙ୍ଗହିଁ ଏକମାତ୍ର ହିନ୍ଦୁରାଜ୍ୟ ଯାହାକି ସର୍ବଶେଷରେ ମୁସଲମାନମାନଙ୍କ ଅଧୀନକୁ ଆସିଥିଲା । ଉତ୍ତର ଭାରତର ରାଜପୁତ୍ ଯୁଗୀୟ ଅନୈକ୍ୟବେଳେ କଳିଙ୍ଗରେ କେଶରୀ ରାଜତ୍ୱର ସୁଦିନ । ଯେତେବେଳେ ଭାରତର ଉତ୍ତର ଏବଂ ଦକ୍ଷିଣରେ ତୁର୍କୀ ଏବଂ ପଠାଣ ସୁଲତାନ୍‌ମାନଙ୍କର ରାଜତ୍ୱକାଳ ସେତେବେଳେ କଳିଙ୍ଗରେ ଗଙ୍ଗାବଂଶର ରାଜତ୍ୱ ଏବଂ ଯେତେବେଳେ ଭାରତରେ ମୋଗଲ ସାମ୍ରାଜ୍ୟର ମୂଳପତ୍ତନ ସେତେବେଳେ କଳିଙ୍ଗରେ ସୂର୍ଯ୍ୟ ରାଜତ୍ୱ । କେଶରୀ, ଗଙ୍ଗା ଏବଂ ସୂର୍ଯ୍ୟ ରାଜବଂଶମାନ ଭାରତର ଦୁର୍ଦ୍ଦିନରେ ଶତ ଶତ ବର୍ଷ ଧରି କଳିଙ୍ଗ ଖଣ୍ଡରେ ଏକ ସୁଦୃଢ଼, ଶକ୍ତିଶାଳୀ ହିନ୍ଦୁ ସାମ୍ରାଜ୍ୟ ପ୍ରତିଷ୍ଠିତ କରି ରଖିଥିଲେ । ଏହି ତିନି ପ୍ରଖ୍ୟାତନାମା ରାଜବଂଶର ପୃଷ୍ଠପୋଷକତାରେ ଓଡ଼ିଶାର ଶୈବ, ଶାକ୍ତ, ବୈଷ୍ଣବ ଇତ୍ୟାଦି ହିନ୍ଦୁ ମତବାଦର ଅଭୂତପୂର୍ବ ଉନ୍ନତି ସାଧିତ ହୋଇଥିଲା । ହିନ୍ଦୁ ଭାରତର ଶ୍ରେଷ୍ଠ ଧର୍ମପୀଠରେ ପରିଣତ ହୋଇ ଉତ୍କଳ ଶତ ଶତ ବର୍ଷ ଧରି ଭାରତବାସୀଙ୍କୁ ନିଜର ଧର୍ମ ଧ୍ୱଜା ତଳକୁ ଆହ୍ୱାନ କରିଥିଲା । ସୋମନାଥ, ମଥୁରା ଏବଂ ବାରଣସୀ ଇତ୍ୟାଦି ହିନ୍ଦୁପୀଠମାନଙ୍କର ଯେତେବେଳେ ପତନକାଳ ସେତେବେଳେ ଭୁବନେଶ୍ୱର, ପୁରୀ, କୋଣାର୍କ ଇତ୍ୟାଦିର ଉତ୍ଥାନ ଯୁଗ । ଯେତେବେଳେ ଉତ୍ତର ଭାରତ ଓ ଦାକ୍ଷିଣାତ୍ୟର ସ୍ଥାପତ୍ୟରାଜି ମୁସଲିମ୍ ଆକ୍ରମଣର ସର୍ବଧ୍ୱଂସୀ ଶିଖାତଳେ ଧୂଳିସାତ୍ ହୋଇଯାଉଥାଏ, ସେତିକିବେଳେ ଓଡ଼ିଶାର ସ୍ଥାନେ ସ୍ଥାନେ ଆକାଶଚୁମ୍ବୀ ମନ୍ଦିରମାନ ହିନ୍ଦୁସ୍ଥାପତ୍ୟର ବିଜୟ ଧ୍ୱଜା ଉଡ଼ାଇ ସଗର୍ବେ ଦଣ୍ଡାୟମାନ ହେଉଥାଆନ୍ତି । କେଶରୀ ଓ ଗଙ୍ଗାଯୁଗର ସ୍ଥାପତ୍ୟ ହିନ୍ଦୁ ସ୍ଥାପତ୍ୟର ଶ୍ରେଷ୍ଠ ପ୍ରତିନିଧି । ଶତ ଶତ ବର୍ଷ ଧରି ବିଦେଶୀ ଆକ୍ରମଣକାରୀଙ୍କ ସହ ଜୀବନ ମରଣ ସଂଗ୍ରାମରେ ଲିପ୍ତ ରହିବା ଦ୍ୱାରା ଯେତେବେଳେ ଉତ୍ତର ଭାରତର ସଂସ୍କୃତି ବିଲୟ ଭଜିବାକୁ ବସିଲା ସେତେବେଳେ ଉତ୍କଳ ହେଲା ଭାରତୀୟ ସଂସ୍କୃତିର ଗନ୍ତାଘର । ହର୍ଷଯୁଗ ପାଖରୁ ସୂର୍ଯ୍ୟ ରାଜତ୍ୱର ଅବସାନ ପର୍ଯ୍ୟନ୍ତ ଏହି ଗୌରବମୟ ସୁଦୀର୍ଘ ଆଠଶହ ବର୍ଷ ମଧ୍ୟରେ ଉତ୍କଳ ମାଟିରେ ସ୍ତରେ ସ୍ତରେ ଯେତେସବୁ ଧର୍ମ ଓ ସଭ୍ୟତାର ଉର୍ବର ପଟୁରେଖା ପଡ଼ିଛି ଏବଂ ଉତ୍କଳଦେଶକୁ ଭାରତର ପୁଣ୍ୟ ଭୂମିରେ ପରିଣତ କରିଛି ସେ ସବୁର ଇତିହାସ ଏ ପୁସ୍ତକର ଦ୍ୱିତୀୟ ଖଣ୍ଡରେ ଆଲୋଚିତ ହେବ ।



## ଲେଖକଙ୍କର ଅନ୍ୟାନ୍ୟ ପୁସ୍ତକ

1. Glimpses of Kalinga History ... Rs. 6-8-0
2. Democracy versus Communism ... Rs. 0-8-0
3. The Substance of India's New Constitution ... Rs. 2-8-0

---

ପ୍ରାପ୍ତିସ୍ଥାନ:—

କଟକର ସମସ୍ତ ବଡ଼ ବଡ଼ ବହି ଦୋକାନ